# ଶ୍ରୀମଦ୍

# ବାଲ୍ମୀକିରାମାୟଣମ୍

## (ଅରଣ୍ୟକାଣ୍ଡଃ)

---


ସଂଗ୍ରାହକ ଓ ଅନୁବାଦକ

ପଣ୍ଡିତ ଲିଙ୍ଗରାଜ ମିଶ୍ର, ଏମ୍. ଏ.



ପ୍ରଥମ ସଂସ୍କରଣ

୧୯୫୫






ମୂଲ୍ୟ ୯ ୬୧ ନଅ ଟଙ୍କା ମାତ୍ର

# ଶ୍ରୀମଦ୍ରାମାୟଣସର୍ଗନାମାନୁକ୍ରମଣିକା

## ଅରଣ୍ୟକାଣ୍ଡଃ

# ଶ୍ରୀମଦ୍ ବାଲ୍ମୀକିରାମାୟଣମ୍

## ଅରଣ୍ୟକାଣ୍ଡଃ

## ପ୍ରଥମଃ ସର୍ଗଃ

### ମହର୍ଷିସଙ୍ଗଃ

ପ୍ରବିଶ୍ୟ ତୁ ମହାରଣ୍ୟଂ ଦଣ୍ଡକାରଣ୍ୟମାତ୍ମବାନ୍ ।
ଦଦର୍ଶ ରାମୋ ଦୁର୍ଧର୍ଷସ୍ତାପସାଶ୍ରମମଣ୍ଡଲମ୍ ।୧।
କୁଶଚୀରପରିକ୍ଷିପ୍ତଂ ବ୍ରାହ୍ମ୍ୟା ଲକ୍ଷ୍ମ୍ୟା ସମାବୃତମ୍ ।
ଯଥା ପ୍ରଦୀପ୍ତଂ ଦୁର୍ଦର୍ଶଂ ଗଗନେ ସୂର୍ଯମଣ୍ଡଲମ୍ ।୨।
ଶରଣ୍ୟଂ ସର୍ବଭୂତାନାଂ ସୁସଂମୃଷ୍ଟାଜିରଂ ସଦା ।
ମୃଗୈର୍ବହୁଭିରାକୀର୍ଣଂ ପକ୍ଷିସଂଘୈଃ ସମାବୃତମ୍ ।୩।

---

## ୧ମ ସର୍ଗ

### (ଋଷିମାନଙ୍କ ସହିତ ମିଳନ)

ଦୁର୍ଜେୟ ଆତ୍ମବାନ୍ ରାମ ଦଣ୍ଡକାରଣ୍ୟ ନାମକ ମହାରଣ୍ୟରେ ପ୍ରବେଶ କରି ତାପସମାନଙ୍କର ଆଶ୍ରମସମୂହ ଦେଖିବାକୁ ପାଇଲେ । ୧ । କୁଶ ଓ ବଲ୍କଳ ବସନପରିବ୍ୟାପ୍ତ ତଥା ବ୍ରହ୍ମତେଜର ଶୋଭାରେ ଉଦ୍ଭାସିତ ସୁତରାଂ ଆକାଶରେ ପ୍ରଦୀପ୍ତ ସୂର୍ଯ୍ୟମଣ୍ଡଳ ସଦୃଶ ଦୁର୍ନିରୀକ୍ଷ୍ୟ ଏହି ଆଶ୍ରମସମୂହକୁ ସେ ଦେଖିଲେ ।୨। ଏହା ସମସ୍ତ ପ୍ରାଣୀଙ୍କର ଆଶ୍ରୟସ୍ଥଳ; ଏହାର ପ୍ରାଙ୍ଗଣ ଭୂମି ସର୍ବଦାଃ ପରିଷ୍କୃତ ସୁମାର୍ଜିତ ଏବଂ ଗୃହପାଳିତ ବହୁବିଧ ପଶୁ ଓ ପକ୍ଷିସଂଘଦ୍ୱାରା ସମାକୀର୍ଣ୍ଣ ।୩।

ପୂଜିତଂ ଚୋପନୃତ୍ତଂ ଚ ନିତ୍ୟମପ୍‌ସରସାଂ ଗଣୈଃ ।
ବିଶାଳୈରଗ୍ନିଶରଣୈଃ ସ୍ରୁଗ୍‌ଭାଣ୍ଡୈରଜିନୈଃ କୁଶୈଃ । ୪ ।
ସମିଦ୍ଭିସ୍ତୋୟକଲଶୈଃ ଫଲମୂଲୈଶ୍ଚ ଶୋଭିତମ୍ ।
ଆରଣ୍ୟୈଶ୍ଚ ମହାବୃକ୍ଷୈଃ ପୁଣ୍ୟୈଃ ସ୍ୱାଦୁଫଲୈର୍ୟୁତମ୍ ।୫।
ବଲିହୋମାର୍ଚ୍ଚିତଂ ପୁଣ୍ୟଂ ବ୍ରହ୍ମଘୋଷନିନାଦିତମ୍ ।
ପୁଷ୍ପୈର୍ବନ୍ୟୈଃ ପରିକ୍ଷିପ୍ତଂ ପଦ୍ମିନ୍ୟା ଚ ସପଦ୍ମୟା । ୬।
ଫଲମୂଲାଶନୈର୍ଦାନ୍ତୈଶ୍ଚୀରକୃଷ୍ଣାଜିନାମ୍ବରୈଃ ।
ସୂର୍ଯ୍ୟବୈଶ୍ୱାନରାଭୈଶ୍ଚ ପୁରାଣୈର୍ମୁନିଭିର୍ବୃତମ୍ । ୭ ।
ପୁଣ୍ୟୈଶ୍ଚ ନିୟତାହାରୈଃ ଶୋଭିତଂ ପରମର୍ଷିଭିଃ ।
ତଦ୍ ବ୍ରହ୍ମଭବନପ୍ରଖ୍ୟଂ ବ୍ରହ୍ମଘୋଷନିନାଦିତମ୍ । ୮ ।
ବ୍ରହ୍ମବିଦ୍‌ଭିର୍ମହାଭାଗୈର୍ବ୍ରାହ୍ମଣୈରୁପଶୋଭିତମ୍ ।
ତଦ୍ ଦୃଷ୍ଟ୍ୱା ରାଘବଃ ଶ୍ରୀମାଂସ୍ତାପସାଶ୍ରମମଣ୍ଡଳମ୍ । ୯ ।
ଅଭ୍ୟଗଚ୍ଛନ୍ମହାତେଜା ବିଜ୍ୟଂ କୃତ୍ୱା ମହଦ୍ଧନୁଃ ।
ଦିବ୍ୟଜ୍ଞାନୋପପନ୍ନାସ୍ତେ ରାମଂ ଦୃଷ୍ଟ୍ୱା ମହର୍ଷୟଃ । ୧୦ ।

---

ଅପ୍ସରାଗଣ ନିତ୍ୟ ଏହା ନିକଟରେ ନୃତ୍ୟ କରି ସମ୍ମାନ ଦେଖାଇଥାନ୍ତି । ବିସ୍ତୃତ ଅଗ୍ନିଶାଳା, ସ୍ରୁଗ୍‌ଭାଣ୍ଡ, ମୃଗଚର୍ମ, କୁଶ, ସମିଧ, ଜଳପୂର୍ଣ୍ଣ କଳଶ ଓ ଫଳ ମୂଳାଦିଦ୍ୱାରା ଏହା ସୁଶୋଭିତ ହୋଇଅଛି ଏବଂ ବଡ ବଡ଼ ଅରଣ୍ୟଜାତ ସୁସ୍ୱାଦୁ ଫଳବିଶିଷ୍ଟ ପବିତ୍ର ବୃକ୍ଷସମୂହରେ ପରିପୂର୍ଣ୍ଣ ହୋଇଅଛି ।୪-୫। ଏହି ଆଶ୍ରମମାନଙ୍କରେ ସର୍ବଦା ବଳି ଓ ହୋମ କରା ହେଉଅଛି ଏବଂ ନିରନ୍ତର ପୁଣ୍ୟ ବେଦଧ୍ୱନିରେ ଏହା ପରିପୂର୍ଣ୍ଣ ହୋଇଅଛି । ନାନାବିଧ ବନ୍ୟ ପୁଷ୍ପ ସକଳ ଚାରିଆଡ଼େ ପରିବ୍ୟାପ୍ତ ରହିଅଛି ଏବଂ ପବିତ୍ର ପଦ୍ମପୂର୍ଣ୍ଣ ସରୋବରମାନ ବିରାଜିତ ରହିଅଛି ।୬। ଏହି ଆଶ୍ରମସମୂହରେ ଫଳମୂଳାହାରୀ, ବଲ୍‌କଲ ଓ କୃଷ୍ଣାଜିନଧାରୀ, ସୂର୍ଯ୍ୟ ଏବଂ ଅଗ୍ନି ସଦୃଶ ଦୀପ୍ତିମନ୍ତ ଶାନ୍ତ ସ୍ୱଭାବ ପ୍ରାଚୀନ ମୁନିମାନେ ବାସ କରୁଛନ୍ତି । ୭ । ସଂଯତାହାରୀ ପବିତ୍ର ଶ୍ରେଷ୍ଠ ଋଷିମାନଙ୍କଦ୍ୱାରା ଶୋଭିତ ଏବଂ ସତତ ବେଦଧ୍ୱନିଦ୍ୱାରା ପ୍ରତିଧ୍ୱନିତ ହେବାରୁ ଏହି ଆଶ୍ରମ ସକଳ ବ୍ରହ୍ମଲୋକସଦୃଶ ହୋଇଅଛନ୍ତି । ୮ । ଏହା ବ୍ରହ୍ମଜ୍ଞ ମହାନୁଭବ ବ୍ରାହ୍ମଣମାନଙ୍କ ଦ୍ୱାରା ସୁଶୋଭିତ ହୋଇଅଛି । ଶ୍ରୀମାନ୍ ମହାତେଜା ରାମଚନ୍ଦ୍ର ଏହି ଆଶ୍ରମମଣ୍ଡଳକୁ ଦେଖି ନିଜ ମହାଧନୁର ଗୁଣ ଫିଟାଇ ଦେଇ ସେହି ଆଡ଼କୁ ଅଗ୍ରସର ହେଲେ । ଦିବ୍ୟଜ୍ଞାନସମ୍ପନ୍ନ ସେହି ମହର୍ଷିମାନେ ରାମଙ୍କୁ ଓ ଯଶସ୍ୱିନୀ ବୈଦେହୀଙ୍କୁ

ଅଭ୍ୟଗଚ୍ଛଂସ୍ତଥା ପ୍ରୀତା ବୈଦେହୀଂ ଚ ଯଶସ୍ୱିନୀମ୍ ।
ତେ ତଂ ସୋମମିବୋଦ୍ୟନ୍ତଂ ଦୃଷ୍ଟ୍ୱା ବୈ ଧର୍ମଚାରିଣଃ । ୧୧।
ଲକ୍ଷ୍ମଣଂ ଚୈବ ଦୃଷ୍ଟ୍ୱା ତୁ ବୈଦେହୀଂ ଚ ଯଶସ୍ୱିନୀମ୍ ।
ମଙ୍ଗଳାନି ପ୍ରଯୁଞ୍ଜାନାଃ ପ୍ରତ୍ୟଗୃହ୍ଣନ୍ ଦୃଢ଼ବ୍ରତାଃ । ୧୨ ।
ରୂପସଂହନନଂ ଲକ୍ଷ୍ମୀଂ ସୌକୁମାର୍ଯ୍ୟଂ ସୁବେଷତାମ୍ ।
ଦଦୃଶୁର୍ବିସ୍ମିତାକାରା ରାମସ୍ୟ ବନବାସିନଃ । ୧୩ ।
ବୈଦେହୀଂ ଲକ୍ଷ୍ମଣଂ ରାମଂ ନେତ୍ରୈରନିମିଷୈରିବ ।
ଆଶ୍ଚର୍ଯ୍ୟଭୂତାନ୍ ଦଦୃଶୁଃ ସର୍ବେ ତେ ବନଚାରିଣଃ । ୧୪ ।
ଅତ୍ରୈନଂ ହି ମହାଭାଗାଃ ସର୍ବଭୂତହିତେ ରତମ୍ ।
ଅତିଥିଂ ପର୍ଣଶାଲାୟାଂ ରାଘବଂ ସଂନ୍ୟବେଶୟନ୍ । ୧୫ ।
ତତୋ ରାମସ୍ୟ ସତ୍କୃତ୍ୟ ବିଧିନା ପାବକୋପମାଃ ।
ଆଜହ୍ରୁସ୍ତେ ମହାଭାଗାଃ ସଲିଳଂ ଧର୍ମଚାରିଣଃ । ୧୬ ।
ମୂଳଂ ପୁଷ୍ପଂ ଫଳଂ ବନ୍ୟମାଶ୍ରମଂ ଚ ମହାତ୍ମନଃ ।
ନିବେଦୟିତ୍ୱା ଧର୍ମଜ୍ଞାସ୍ତତଃ ପ୍ରାଞ୍ଜଳୟୋଽବ୍ରୁବନ୍ । ୧୭ ।
ଧର୍ମପାଳୋ ଜନସ୍ୟାସ୍ୟ ଶରଣ୍ୟସ୍ତ୍ୱଂ ମହାଯଶାଃ ।
ପୂଜନୀୟଶ୍ଚ ମାନ୍ୟଶ୍ଚ ରାଜା ଦଣ୍ଡଧରୋ ଗୁରୁଃ । ୧୮ ।

---

ଦେଖି ପ୍ରୀତିସହକାରେ ସେମାନଙ୍କୁ ପାଛୋଟି ନେଲେ । ସେହି ଦୃଢ଼ବ୍ରତ ଧର୍ମଜ୍ଞ ମହର୍ଷିମାନେ ଚନ୍ଦ୍ର ସଦୃଶ ଉଦୀୟମାନ ରାମଙ୍କୁ, ଲକ୍ଷ୍ମଣଙ୍କୁ ଓ ଯଶସ୍ୱିନୀ ବୈଦେହୀଙ୍କୁ ଦେଖି ମଙ୍ଗଳମନ୍ତ୍ର ଉଚ୍ଚାରଣପୂର୍ବକ ସେମାନଙ୍କୁ ପାଛୋଟି ନେଲେ । । ୯-୧୨ । ସେହି ବନବାସୀ ତପସ୍ୱୀମାନେ ବିସ୍ମିତ ହୋଇ ରାମଙ୍କର ରୂପଲାବଣ୍ୟ ସୌକୁମାର୍ଯ୍ୟ ଏବଂ ସୁବେଶକୁ ଦର୍ଶନ କରିବାକୁ ଲାଗିଲେ । ୧୩ । ସେମାନେ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ରାମ ଲକ୍ଷ୍ମଣ ଓ ବୈଦେହୀଙ୍କୁ ନିର୍ନିମେଷନୟନରେ ଦେଖିବାକୁ ଲାଗିଲେ । ୧୪ । ମହାଭାଗ ମହର୍ଷିମାନେ ସର୍ବଭୂତହିତୈଷୀ ରାମଙ୍କୁ ପର୍ଣ୍ଣଶାଳାମଧ୍ୟରେ ନେଇ ରଖାଇଲେ।୧୫।ଅନନ୍ତର ସେହି ଧର୍ମଜ୍ଞ ଅଗ୍ନି ସଦୃଶ ତେଜସ୍ୱୀ ମହାଭାଗ ମହର୍ଷିମାନେ ଯଥାବିଧାନରେ ରାମଙ୍କର ସତ୍କାର କରି ଜଳ ପ୍ରଭୃତି ସଂଗ୍ରହ କରି ଆଣିଦେଲେ ।୧୬। ତତ୍ପରେ ସେହି ଧର୍ମଜ୍ଞ ମହର୍ଷିମାନେ ବନ୍ୟ ଫଳ ମୂଳ ଓ ପୁଷ୍ପ ରାମଙ୍କଠାରେ ଅର୍ପଣ କରି ଏବଂ ତାଙ୍କର ସ୍ତୁତିକରି କୃତାଞ୍ଜଳିପୁଟରେ କହିଲେ।୧୭। "ହେ ମହାଯଶା ! ତୁମେ ଧର୍ମରକ୍ଷାକାରୀ ଏବଂ ଏ ସମସ୍ତ ଲୋକଙ୍କର ଆଶ୍ରୟସ୍ଥଳ ଅଟ । ତୁମେ ଦଣ୍ଡଧାରୀ ରାଜା, ସୁତରାଂ ଗୁରୁସଦୃଶ ସମସ୍ତଙ୍କର ପୂଜନୀୟ ଓ ମାନ୍ୟଅଟ । ୧୮।

ଇନ୍ଦ୍ରସ୍ୟେହ ଚତୁର୍ଭାଗଃ ପ୍ରଜା ରକ୍ଷତି ରାଘବ ।
ରାଜା ତସ୍ମାଦ୍‌ବରାନ୍ ଭୋଗାନ୍ ଭୁଂକ୍ତେ ଲୋକନମସ୍କୃତଃ । ୧୯ ।
ତେ ବୟଂ ଭବତା ରକ୍ଷ୍ୟା ଭବଦ୍‌ବିଷୟବାସିନଃ ।
ନଗରସ୍ଥୋ ବନସ୍ଥୋ ବା ତ୍ୱଂ ନୋ ରାଜା ଜନେଶ୍ୱରଃ । ୨୦ ।
ନ୍ୟସ୍ତଦଣ୍ଡାବୟଂ ରାଜଞ୍ଜିତକ୍ରୋଧା ଜିତେନ୍ଦ୍ରିୟାଃ ।
ରକ୍ଷିତବ୍ୟାସ୍ତ୍ୱୟା ଶଶ୍ୱଦ୍‌ଗର୍ଭଭୂତାସ୍ତପୋଧନାଃ । ୨୧ ।
ଏବମୁକ୍ତ୍ୱା ଫଳୈର୍ମୂଳୈଃ ପୁଷ୍ପୈର୍ବନ୍ୟୈଶ୍ଚ ରାଘବମ୍ ।
ଅନ୍ୟୈଶ୍ଚ ବିବିଧାହାରୈଃ ସଲକ୍ଷ୍ମଣମପୂଜୟନ୍ । ୨୨ ।
ତଥାନ୍ୟେ ତାପସାଃ ସିଦ୍ଧା ରାମଂ ବୈଶ୍ୱାନରୋପମାଃ ।
ନ୍ୟାୟବୃତ୍ତା ଯଥାନ୍ୟାୟଂ ତର୍ପୟାମାସୁରୀଶ୍ୱରମ୍ । ୨୩ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ ଅରଣ୍ୟକାଣ୍ଡେ ମହର୍ଷିସଙ୍ଗୋ ନାମ
ପ୍ରଥମଃ ସର୍ଗଃ

---

ହେ ରାଘବ ! ରାଜା ଇନ୍ଦ୍ରଙ୍କର ଚତୁର୍ଥ ଅଂଶ ହୋଇ ପ୍ରଜାମାନଙ୍କୁ ରକ୍ଷା କରନ୍ତି । ସୁତରାଂ ସେ ସର୍ବଲୋକରେ ନମସ୍କୃତ ହୋଇ ଶ୍ରେଷ୍ଠ ଭୋଗମାନ ଉପଭୋଗ କରନ୍ତି । । ୧୯ । ସୁତରାଂ ତୁମ ରାଜ୍ୟର ଅଧିବାସୀ ଆମମାନଙ୍କୁ ତୁମ୍ଭର ରକ୍ଷା କରିବା କର୍ତ୍ତବ୍ୟ । ହେ ନରେଶ୍ୱର ! ତୁମେ ନଗରରେ ଥାଅ ବା ବନରେ ଥାଅ, ତୁମେ ହିଁ ଆମମାନଙ୍କର ରାଜା । ୨୦ । ଆମେମାନେ ଜିତକ୍ରୋଧ ଜିତେନ୍ଦ୍ରିୟ ଏବଂ ଦଣ୍ଡକୁ ଅଲଗା ଥୋଇ ଦେଇଛୁ । ତପସ୍ୟା ବ୍ୟତୀତ ଆମମାନଙ୍କର ଅନ୍ୟ ଧନ ନାହିଁ । ଅତଏବ ଗର୍ଭସ୍ଥ ବାଳକପରି ତୁମେ ଆମମାନଙ୍କୁ ସର୍ବଦା ରକ୍ଷା କର"।୨୧। ଏହା କହି ସେମାନେ ଫଳମୂଳ,ବିବିଧ ପୁଷ୍ପ ଓ ବିବିଧ ବନ୍ୟାହାରଦ୍ୱାରା ଲକ୍ଷ୍ମଣଙ୍କ ସହିତ ରାମଙ୍କର ସମ୍ବର୍ଦ୍ଧନା କଲେ । ୨୨ । ଏହାପରେ ଅଗ୍ନିସଦୃଶ ତେଜସ୍ୱୀ ନ୍ୟାୟପରାୟଣ ଅନ୍ୟାନ୍ୟ ସିଦ୍ଧ ତପସ୍ୱୀମାନେ ସେହି ପ୍ରଭୁଙ୍କର ଯଥାଯଥ ତୃପ୍ତିବିଧାନ କଲେ । ୨୩ ।

---

# ଦ୍ୱିତୀୟଃ ସର୍ଗଃ

## ବିରାଧସଂରୋଧଃ

କୃତାତିଥ୍ୟୋଽଥ ରାମସ୍ତୁ ସୂର୍ଯ୍ୟସ୍ୟୋଦୟନଂ ପ୍ରତି ।
ଆମନ୍ତ୍ର୍ୟ ସ ମୁନୀନ୍ ସର୍ବାନ୍ ବନମେବାନ୍ୱଗାହତ । ୧ ।
ନାନାମୃଗଗଣାକୀର୍ଣ୍ଣଂ ଶାର୍ଦ୍ଦୂଲବୃକସେବିତମ୍ ।
ଧ୍ୱସ୍ତବୃକ୍ଷଲତାଗୁଲ୍ମଂ ଦୁର୍ଦ୍ଦର୍ଶସଲିଳାଶୟମ୍ । ୨ ।
ନିଷ୍କୂଜନାନାଶକୁନି ଝିଲ୍ଲିକାଗଣନାଦିତମ୍ ।
ଲକ୍ଷ୍ମଣାନୁଚରୋ ରାମୋ ବନମଧ୍ୟଂ ଦଦର୍ଶ ହ । ୩ ।
ବନମଧ୍ୟେ ତୁ କାକୁତ୍ସ୍ଥସ୍ତସ୍ମିନ୍ ଘୋରମୃଗାୟୁତେ ।
ଦଦର୍ଶ ଗିରିଶୃଙ୍ଗାଭଂ ପୁରୁଷାଦଂ ମହାସ୍ୱନମ୍ । ୪ ।
ଗମ୍ଭୀରାକ୍ଷଂ ମହାବକ୍ତ୍ରଂ ବିକଟଂ ବିଷମୋଦରମ୍ ।
ବୀଭତ୍ସଂ ବିଷମଂ ଦୀର୍ଘଂ ବିକୃତଂ ଘୋରଦର୍ଶନମ୍ । ୫ ।
ବସାନଂ ଚର୍ମ ବୈୟାଘ୍ରଂ ବସାର୍ଦ୍ରଂ ରୁଧିରୋକ୍ଷିତମ୍ ।
ତ୍ରାସନଂ ସର୍ବଭୂତାନାଂ ବ୍ୟାଦିତାସ୍ୟମିବାନ୍ତକମ୍ । ୬ ।

---

## ୨ୟ ସର୍ଗ

### ( ବିରାଧର ଆକ୍ରମଣ )

ରାମ ଅତିଥିସତ୍କାର ଲାଭ କରି ସୂର୍ଯ୍ୟୋଦୟ ସମୟରେ ମୁନିମାନଙ୍କଠାରୁ ବିଦାୟ ନେଇ ବନ ମଧ୍ୟରେ ପ୍ରବେଶ କଲେ । ୧ । ଏହି ବନ ନାନାବିଧ ପଶୁମାନଙ୍କ ଦ୍ୱାରା ପରିପୂର୍ଣ୍ଣ ଥିଲା ଏବଂ ବାଘ ଓ ଗଧିଆମାନେ ସେଠାରେ ବାସ କରୁଥିଲେ । ଏହି ବନର ବୃକ୍ଷ ଲତା ସବୁ ଧ୍ୱସ୍ତ ବିଧ୍ୱସ୍ତ ହୋଇ ଯାଇଥିଲା ଏବଂ ସେଠାର ଜଳାଶୟମାନ ଅତି କଦର୍ଯ୍ୟ ଦେଖାଯାଉଥିଲା । ୨ । ନାନାଜାତିର ପକ୍ଷୀମାନେ ରାବ କରୁଥିଲେ ଏବଂ ଝିଙ୍କାରିମାନଙ୍କର ଶବ୍ଦ ଶୁଣାଯାଉଥିଲା । ଅନୁଚର ଲକ୍ଷ୍ମଣଙ୍କ ସହିତ ରାମ ବନ ମଧ୍ୟରେ ଏ ଅବସ୍ଥା ଦେଖିଲେ । ୩ । କାକୁତ୍ସ୍ଥ ସେହି ଭୀଷଣ ପଶୁସଂକୀର୍ଣ୍ଣ ବନ ମଧ୍ୟରେ ଭୟଙ୍କର ଶବ୍ଦକାରୀ ଗିରିଶୃଙ୍ଗ ସଦୃଶ ଗୋଟିଏ ନରଭକ୍ଷକ ବିଶାଳକାୟ ରାକ୍ଷସକୁ ଦେଖିଲେ । ୪ । ଏହାର ଚକ୍ଷୁ ଅତିଗଭୀର, ବଦନ ଅତିବିଶାଳ, ଉଦର ନତୋନ୍ନତ ଏବଂ ଅବୟବ ଅସମାନ । ସେ ବୀଭତ୍ସ, ବିଷମ, ଦୀର୍ଘ, ବିକଟାକାର ଓ ଭୟଙ୍କର ଦେଖାଯାଉଥିଲା । ୫ । ସେ ରୁଧିରସିକ୍ତ ବ୍ୟାଘ୍ରଚର୍ମ ପରିଧାନ କରିଥିଲା ଏବଂ ମୁହଁ ମେଲିକରିବାଦ୍ୱାରା ଯମ ପରି ସବୁ ପ୍ରାଣୀଙ୍କର

ତ୍ରୀନ୍ ସିଂହାଂଶ୍ଚତୁରୋ ବ୍ୟାଘ୍ରାନ୍ ଦ୍ୱୌ ବୃକୌ ପୃଷତାନ୍ ଦଶ ।
ସବିଷାଣଂ ବସାଦିଗ୍ଧଂ ଗଜସ୍ୟ ଚ ଶିରୋ ମହତ୍ । ୬ ।
ଅବସଜ୍ୟାୟସେ ଶୂଲେ ବିନଦନ୍ତଂ ମହାସ୍ୱନମ୍ ।
ସ ରାମଂ ଲକ୍ଷ୍ମଣଂ ଚୈବ ସୀତାଂ ଦୃଷ୍ଟ୍ୱାଥ ମୈଥିଲୀମ୍ । ୮ ।
ଅଭ୍ୟଧାବତ ସଂକ୍ରୁଦ୍ଧଃ ପ୍ରଜାଃ କାଳ ଇବାନ୍ତକଃ ।
ସ କୃତ୍ୱା ଭୈରବଂ ନାଦଂ ଚାଳୟନ୍ନିବ ମେଦିନୀମ୍ । ୯ ।
ଅଙ୍କେନାଦାୟ ବୈଦେହୀମପକ୍ରମ୍ୟ ତତୋଽବ୍ରବୀତ୍ ।
ଯୁବାଂ ଜଟାଚୀରଧରୌ ସଭାର୍ଯ୍ୟୌ କ୍ଷୀଣଜୀବିତୌ । ୧୦ ।
ପ୍ରବିଷ୍ଟୌ ଦଣ୍ଡକାରଣ୍ୟଂ ଶରଚାପାସିଧାରିଣୌ ।
କଥଂ ତାପସୟୋର୍ବାଂ ଚ ବାସଃ ପ୍ରମଦୟା ସହ । ୧୧ ।
ଅଧର୍ମଚାରିଣୌ ପାପୌ କୌ ଯୁବାଂ ମୁନିଦୂଷକୌ ।
ଅହଂ ବନମିଦଂ ଦୁର୍ଗଂ ବିରାଧୋ ନାମ ରାକ୍ଷସଃ । ୧୨ ।
ଚରାମି ସାୟୁଧୋ ନିତ୍ୟମୃଷିମାଂସାନି ଭକ୍ଷୟନ୍ ।
ଇୟଂ ନାରୀ ବରାରୋହା ମମ ଭାର୍ଯ୍ୟା ଭବିଷ୍ୟତି । ୧୩ ।

---

ଭୟ ଜାତ କରିଉଥିଲା । ୬ । ସେ ତିନୋଟି ସିଂହ, ଚାରୋଟି ବ୍ୟାଘ୍ର, ଦୁଇଟି ଗଧିଆ, ଦଶଟି ପୃଷତ୍ ମୃଗ ଓ ଗୋଟିଏ ଦନ୍ତଯୁକ୍ତ ବସାଦିଗ୍ଧ ବୃହତ୍ ହସ୍ତିମସ୍ତକ ଲୌହ ଶୂଳରେ ବିଦ୍ଧ କରି ଭୀଷଣ ଗର୍ଜନ କରୁଥିଲା । ସେ ରାମ, ଲକ୍ଷ୍ମଣ ଓ ମୈଥିଳୀ ସୀତାଙ୍କୁ ଦେଖି ଅତିଶୟ କ୍ରୁଦ୍ଧ ହୋଇ ସଂହାରକାଳୀନ କୃତାନ୍ତ ପରି ସେମାନଙ୍କ ଆଡ଼କୁ ଧାଇଁ ଆସିଲା । ସେ ଭୈରବନାଦରେ ମେଦିନୀକୁ କମ୍ପିତ କରି ବୈଦେହୀଙ୍କୁ କୋଡ଼ରେ ଧରି କିଛିଦୂର ଚାଲିଯିବା ଉତ୍ତାରୁ କହିଲା, "ତୁମେ ଦୁହେଁ ଜଟା ବଲ୍କଳ ଧାରଣ କରିଛ ? ତୁମମାନଙ୍କର ଆୟୁ ଅତିକ୍ଷୀଣ । ତୁମେ ଭାର୍ଯ୍ୟାକୁ ସଙ୍ଗରେ ଧରି ଏବଂ ଧନୁଶର ଓ ଖଡ଼୍ଗ ଧାରଣ କରି ଦଣ୍ଡକାରଣ୍ୟରେ ପ୍ରବେଶ କରିଛ । ତୁମେ ଦୁହେଁ ତପସ୍ୱୀ ହୋଇ କାହିଁକି ସ୍ତ୍ରୀଲୋକ ସହିତ ବାସ କରୁଛ ? ।୭-୧୧। ତୁମେ ଅଧର୍ମାଚାରୀ, ପାପସ୍ୱଭାବ ଏବଂ ତୁମଦ୍ୱାରା ମୁନିଚରିତ୍ର ଦୂଷିତ ହୋଇଅଛି । ତୁମେ ଦୁହେଁ କିଏ ? ମୁଁ ବିରାଧ ନାମକ ରାକ୍ଷସ । ମୁଁ ପ୍ରତ୍ୟହ ଋଷିମାଂସ ଭକ୍ଷଣକରି ଓ ଶସ୍ତ୍ରଧାରୀ ହୋଇ ଏହି ଦୁର୍ଗମ ବନରେ ବିଚରଣ କରୁଛି । ଏହି ବରାରୋହା ନାରୀ ମୋର ଭାର୍ଯ୍ୟା ହେବ । ୧୨-୧୩ । ତୁମେ ଦୁହେଁ ପାପାଚାରୀ, ଯୁଦ୍ଧରେ ମୁଁ ତୁମ ଦୁହିଙ୍କର

ଯୁବୟୋଃ ଚାପୟୋଶ୍ଚାହଂ ପାସ୍ୟାମି ରୁଧିରଂ ମୃଧେ ।
ତସ୍ୟୈବଂ ବ୍ରୁବତୋ ଧୃଷ୍ଟଂ ବିରାଧସ୍ୟ ଦୁରାତ୍ମନଃ । ୧୪ ।
ଶ୍ରୁତ୍ୱା ସଗର୍ବିତଂ ବାକ୍ୟଂ ସଂଭ୍ରାନ୍ତା ଜନକାତ୍ମଜା ।
ସୀତା ପ୍ରାବେପତୋଦ୍‌ବେଗାତ୍ ପ୍ରବାତେ କଦଳୀ ଯଥା । ୧୫ ।
ତାଂ ଦୃଷ୍ଟ୍ୱା ରାଘବଃ ସୀତାଂ ବିରାଧାଙ୍କଗତାଂ ଶୁଭାମ୍ ।
ଅବ୍ରବୀଲ୍ଲକ୍ଷ୍ମଣଂ ବାକ୍ୟଂ ମୁଖେନ ପରିଶୁଷ୍ୟତା । ୧୬ ।
ପଶ୍ୟ ସୌମ୍ୟ ନରେନ୍ଦ୍ରସ୍ୟ ଜନକସ୍ୟାତ୍ମସଂଭବାମ ।
ମମ ଭାର୍ଯାଂ ଶୁଭାଚାରାଂ ବିରାଧାଙ୍କେ ପ୍ରବେଶିତାମ୍ । ୧୭ ।
ଅତ୍ୟନ୍ତସୁଖସଂବୃଦ୍ଧାଂ ରାଜପୁତ୍ରୀଂ ଯଶସ୍ୱିନୀମ୍ ।
ଯଦଭିପ୍ରେତମସ୍ମାସୁ ପ୍ରିୟଂ ବରବୃତଂ ଚ ଯତ୍ । ୧୮ ।
କୈକେୟ୍ୟାସ୍ତୁ ସୁସଂପନ୍ନଂ କ୍ଷିପ୍ରମଦ୍ୟୈବ ଲକ୍ଷ୍ମଣ ।
ଯା ନ ତୁଷ୍ୟତି ରାଜ୍ୟେନ ପୁତ୍ରାର୍ଥେ ଦୀର୍ଘଦର୍ଶିନୀ । ୧୯ ।
ଯୟାହଂ ସର୍ବଭୂତାନାଂ ହିତଃ ପ୍ରସ୍ଥାପିତୋ ବନମ୍ ।
ଅଦ୍ୟେଦାନୀଂ ସକାମା ସା ଯା ମାତା ମମ ମଧ୍ୟମା । ୨୦ ।
ପରସ୍ପର୍ଶାତ୍ତୁ ବୈଦେହ୍ୟା ନ ଦୁଃଖତରମସ୍ତି ମେ ।
ପିତୁର୍ବିୟୋଗାତ୍ସୌମିତ୍ରେ ସ୍ୱରାଜ୍ୟହରଣାତ୍ତଥା । ୨୧ ।

---

ରକ୍ତ ପାନକରିବି" । ସେହି ଦୁରାତ୍ମା ଦୁଷ୍ଟ ବିରାଧର ଏହି ସଗର୍ବ ବାକ୍ୟ ଶ୍ରବଣ କରି ଜନକନନ୍ଦିନୀ ସୀତା ଅତିଶୟ ତ୍ରସ୍ତ ହୋଇ ଉଦ୍‌ବେଗରେ ବାତାହତ କଦଳୀବୃକ୍ଷ ପରି କମ୍ପିବାକୁ ଲାଗିଲେ । ୧୪-୧୫ । ରାମ ସୁନ୍ଦରୀ ସୀତାଙ୍କୁ ବିରାଧର କୋଡ଼ରେ ଦେଖି ମୁହଁ ଶୁଖାଇ ଲକ୍ଷ୍ମଣଙ୍କୁ କହିଲେ । ୧୬ । "ହେ ସୌମ୍ୟ ! ଜନକରାଜ-ଦୁହିତା ଶୁଭାଚାରସମ୍ପନ୍ନା ମୋର ଭାର୍ଯ୍ୟା ବିରାଧକୋଡ଼ରେ ପ୍ରବେଶ କରିଛନ୍ତି ଦେଖ । ଏହି ଯଶସ୍ୱିନୀ ରାଜପୁତ୍ରୀ ଅତିଶୟ ସୁଖରେ ଲାଳିତପାଳିତ ହୋଇ ଅଛନ୍ତି । ହେ ଲକ୍ଷ୍ମଣ ! କୈକେୟୀଙ୍କର ଆମ ପ୍ରତି ଯାହା ଉଦ୍ଦେଶ୍ୟ ଥିଲା ଏବଂ ସେ ଯେଉଁ ପ୍ରିୟ ବର ମାଗିଥିଲେ ତାହା ଆଜ ସଙ୍ଗେ ସଙ୍ଗେ ସଫଳ ହୋଇଅଛି । ସେହି ଦୂରଦର୍ଶିନୀ କୈକେୟୀ ନିଜର ପୁତ୍ର ନିମନ୍ତେ କେବଳ ରାଜ୍ୟଲାଭରେ ସନ୍ତୁଷ୍ଟ ନ ହୋଇ ସମସ୍ତ ପ୍ରାଣୀଙ୍କର ପ୍ରିୟ ବୋଲି ଜାଣି ମୋତେ ବନକୁ ନିର୍ବାସିତ କରିଅଛନ୍ତି । ବର୍ତ୍ତମାନ ମୋର ସେହି ମଧ୍ୟମା ଜନନୀ କୈକେୟୀ ସଫଳମନୋରଥା ହୋଇ ଅଛନ୍ତି ।୧୭-୨୦। ହେ ସୌମିତ୍ରେ ! ରାଜ୍ୟହରଣ, ପିତୃବିୟୋଗ ଏବଂ ପରପୁରୁଷଦ୍ୱାରା ଜାନକୀଙ୍କର ସ୍ପର୍ଶ ଅପେକ୍ଷା ମୋ ପକ୍ଷରେ ଆଉ ଅଧିକ ଦୁଃଖ ହୋଇ ନ ପାରେ ।"୨୧।

ଇତି ବ୍ରୁବତି କାକୁତ୍‌ସ୍ଥେ ବାଷ୍ପଶୋକପରିପ୍ଳୁତେ ।
ଅବ୍ରବୀଲ୍ଲକ୍ଷ୍ମଣଃ କ୍ରୁଦ୍ଧୋ ରୁଦ୍ଧୋ ନାଗ ଇବ ଶ୍ବସନ୍ । ୨୨ ।
ଅନାଥ ଇବ ଭୂତାନାଂ ନାଥସ୍ତ୍ୱଂ ବାସବୋପମଃ ।
ମୟା ପ୍ରେଷ୍ୟେଣ କାକୁତ୍‌ସ୍ଥ କିମର୍ଥଂ ପରିତପ୍ୟସେ । ୨୩ ।
ଶରେଣ ନିହତସ୍ୟାଦ୍ୟ ମୟା କ୍ରୁଦ୍ଧେନ ରକ୍ଷସଃ ।
ବିରାଧସ୍ୟ ଗତାସୋର୍ହି ମହୀ ପାସ୍ୟତି ଶୋଣିତମ୍ । ୨୪ ।
ରାଜ୍ୟକାମେ ମମ କ୍ରୋଧୋ ଭରତେ ଯୋ ବଭୂବ ହ ।
ତଂ ବିରାଧେ ପ୍ରମୋକ୍ଷ୍ୟାମି ବଜ୍ରୀ ବଜ୍ରମିବାଚଲେ । ୨୫ ।
ମମ ଭୁଜବଲବେଗବେଗିତଃ
ପତତୁ ଶରୋଽସ୍ୟ ମହାନ୍ ମହୋରସି ।
ବ୍ୟପନୟତୁ ତନୋଶ୍ଚ ଜୀବିତମ୍
ପତତୁ ତତଃ ସ ମହୀଂ ବିଘୂର୍ଣ୍ଣିତଃ । ୨୬ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତି ସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ବିରାଧସଂରୋଧେ
ନାମ ଦ୍ୱିତୀୟଃ ସର୍ଗଃ

———

ରାମ ଏହିପରି କହି ଶୋକ ଏବଂ ଲୋତକରେ ଅଭିଭୂତ ହୋଇ-ପଡ଼ିବାରୁ ଲକ୍ଷ୍ମଣ ରୁଦ୍ଧ ସର୍ପ ପରି ଫଁ ଫଁ ହୋଇ କ୍ରୋଧରେ କହିଲେ । ୨୨ । "ହେ କାକୁତ୍ସ୍ଥ ! ଆପଣ ଇନ୍ଦ୍ରଙ୍କ ପରି ସର୍ବପ୍ରାଣୀଙ୍କର ନାଥ ହୋଇ ମୋ ପରି ଭୃତ୍ୟ ଥାଉ ଥାଉ କାହିଁକି ଅନାଥ ଭଳି ଏପରି ପରିତାପ କରୁଛନ୍ତି ? । ୨୩ । ମୁଁ କ୍ରୁଦ୍ଧ ହୋଇ ଏହି ବିରାଧ ରାକ୍ଷସପ୍ରତି ଶର ନିକ୍ଷେପ କଲେ ସେ ନିହତ ହେବ ଏବଂ ପୃଥିବୀ ତାର ରକ୍ତ ପାନକରିବ ।୨୪। ବଜ୍ରପାଣି ଇନ୍ଦ୍ର ଯେପରି ପର୍ବତ ଉପରେ ବଜ୍ର ନିକ୍ଷେପ କରନ୍ତି, ସେହିପରି ମୁଁ ରାଜ୍ୟକାମୀ ଭରତ ପ୍ରତି ମୋର ଯେ କ୍ରୋଧ ହୋଇଥିଲା ତାହା ଏହି ବିରାଧ ପ୍ରତି ମୋଚନ କରିବି । ୨୫ । ମୋ ବାହୁବଳର ବେଗରେ ବେଗଯୁକ୍ତ ହୋଇ ମୋର ମହାଶର ଏହାର ବକ୍ଷରେ ପତିତ ହେଉ, ଏହାର ଶରୀରରୁ ଜୀବନକୁ ବିଚ୍ୟୁତ କରୁ ଏବଂ ସେ ବୁଲି ବୁଲି ଭୂଇଁରେ ପଡ଼ିଯାଉ" । ୨୬ ।

———

# ତୃତୀୟଃ ସର୍ଗଃ

## ବିରାଧପ୍ରହାରଃ

ଅଥୋବାଚ ପୁନର୍ବାକ୍ୟଂ ବିରାଧଃ ପୂରୟନ୍ ବନମ୍ ।
ଆତ୍ମାନଂ ପୃଚ୍ଛତେ ବ୍ରୂତଂ କୌ ଯୁବାଂ କ୍ୱ ଗମିଷ୍ୟଥଃ । ୧
ତମୁବାଚ ତତୋ ରାମୋ ରାକ୍ଷସଂ ଜ୍ୱଳିତାନନମ୍ ।
ପୃଚ୍ଛନ୍ତଂ ସୁମହାତେଜା ଇକ୍ଷ୍ୱାକୁକୁଳମାତ୍ମନଃ । ୨ ।
କ୍ଷତ୍ରିୟୌ ବୃତ୍ତସଂପନ୍ନୌ ବିଦ୍ଧି ନୌ ବନଗୋଚରୌ ।
ତ୍ୱାଂ ତୁ ବେଦିତୁମିଚ୍ଛାବଃ କସ୍ତ୍ୱଂ ଚରସି ଦଣ୍ଡକାନ୍ । ୩ ।
ତମୁବାଚ ବିରାଧସ୍ତୁ ରାମଂ ସତ୍ୟପରାକ୍ରମମ୍ ।
ହନ୍ତ ବକ୍ଷ୍ୟାମି ତେ ରାଜନ୍ନିବୋଧ ମମ ରାଘବ । ୪ ।
ପୁତ୍ରଃ କିଲ ଜବସ୍ୟାହଂ ମମ ମାତା ଶତହ୍ରଦା ।
ବିରାଧ ଇତି ମାମାହୁଃ ପୃଥିବ୍ୟାଂ ସର୍ବରାକ୍ଷସାଃ । ୫ ।
ତପସା ଚାପି ମେ ପ୍ରାପ୍ତା ବ୍ରହ୍ମଣୋ ହି ପ୍ରସାଦଜା ।
ଶସ୍ତ୍ରେଣାବଧ୍ୟତା ଲୋକେଽଚ୍ଛେଦ୍ୟାଭେଦ୍ୟତ୍ୱମେବ ଚ । ୬ ।

---

# ୩ୟ ସର୍ଗ

## ( ବିରାଧକୁ ପ୍ରହାର )

ଅନନ୍ତର ବିରାଧ ସେହି ବନକୁ ପ୍ରତିଧ୍ୱନିତ କରି କହିଲା, “ମୁଁ ପଚାରୁଛି, ତୁମେ ଦୁହେଁ କହ, ତୁମେ କିଏ ଏବଂ କେଉଁଆଡ଼କୁ ଯିବ ?” । ୧ । ସେହି ଜ୍ୱଳନ୍ତ-ବଦନ ରାକ୍ଷସ ଏହିପରି ପଚାରିବାରୁ ରାମ ନିଜର କୁଳ ଇକ୍ଷ୍ୱାକୁବଂଶ ବୋଲି ପରିଚୟ ଦେଲେ । ୨ । “ଆମେ ଦୁହେଁ ସଦାଚାରସମ୍ପନ୍ନ କ୍ଷତ୍ରିୟ ଏବଂ ବର୍ତ୍ତମାନ ବନଚାରୀ ହୋଇଅଛୁଁ, ଏହା ଜାଣିରଖ । ଆମର ମଧ୍ୟ ତୁମକୁ ଜାଣିବାକୁ ଇଚ୍ଛା ହେଉଛି । ତୁମେ କିଏ ଏବଂ କାହିଁକି ଏ ଦଣ୍ଡକାରଣ୍ୟରେ ବିଚରଣ କରୁଛ ?” । ୩ । ଅନନ୍ତର ବିରାଧ ସେହି ସତ୍ୟପରାକ୍ରମ ରାମଙ୍କୁ କହିଲା, “ହେ ରାଜା ରାଘବ ! ମୁଁ ମୋର ନିଜ ବୃତ୍ତାନ୍ତ କହିବି, ଶୁଣ ।୪। ମୁଁ ଜବ ନାମକ ରାକ୍ଷସର ପୁତ୍ର ଅଟେ ଏବଂ ମୋ ମାତାର ନାମ ଶତହ୍ରଦା । ପୃଥିବୀର ସବୁ ରାକ୍ଷସ ମୋତେ ବିରାଧ ବୋଲି କହନ୍ତି । ୫ । ମୁଁ ତପସ୍ୟା ଦ୍ୱାରା ବ୍ରହ୍ମାଙ୍କ ଅନୁଗ୍ରହରୁ ଏ ସଂସାରରେ ଶସ୍ତ୍ରଦ୍ୱାରା ଅଚ୍ଛେଦ୍ୟତ୍ୱ ଅଭେଦ୍ୟତ୍ୱ ଏବଂ ଅବଧ୍ୟତ୍ୱ ଲାଭ କରିଅଛି । ୬ । ତୁମ୍ଭେ ଏ ରମଣୀକୁ ଛାଡ଼ିଦେଇ

ଉତ୍ସୃଜ୍ୟ ପ୍ରମଦାମେନାମନପେକ୍ଷୌ ଯଥାଗତମ୍ ।
ତ୍ୱରମାଣୌ ପଲାୟେଥାଂ ନ ବାଂ ଜୀବିତମାଦଦେ । ୭ ।
ତଂ ରାମଃ ପ୍ରତ୍ୟୁବାଚେଦଂ କୋପସଂରକ୍ତଲୋଚନଃ ।
ରାକ୍ଷସଂ ବିକୃତାକାରଂ ବିରାଧଂ ପାପଚେତସମ୍ । ୮ ।
କ୍ଷୁଦ୍ର ଧିକ୍ ତ୍ୱାଂ ତୁ ହୀନାର୍ଥଂ ମୃତ୍ୟୁମନ୍ୱେଷସେ ଧ୍ରୁବମ୍ ।
ରଣେ ସଂପ୍ରାପ୍ସ୍ୟସେ ତିଷ୍ଠ ନ ମେ ଜୀବନ୍ ଗମିଷ୍ୟସି । ୯ ।
ତତଃ ସଜ୍ୟଂ ଧନୁଃ କୃତ୍ୱା ରାମଃ ସୁନିଶିତାନ୍ ଶରାନ୍ ।
ସୁଶୀଘ୍ରମଭିସନ୍ଧାୟ ରାକ୍ଷସଂ ନିଜଘାନ ହ । ୧୦ ।
ଧନୁଷା ଜ୍ୟାଗୁଣବତା ସପ୍ତ ବାଣାନ୍ ମୁମୋଚ ହ ।
ରୁକ୍ମପୁଙ୍ଖାନ୍ ମହାବେଗାନ୍ ସୁପର୍ଣାନିଲତୁଲ୍ୟଗାନ୍ । ୧୧ ।
ତେ ଶରୀରଂ ବିରାଧସ୍ୟ ଭିତ୍ତ୍ୱା ବର୍ହିଣବାସସଃ ।
ନିପେତୁଃ ଶୋଣିତାଦିଗ୍ଧା ଧରଣ୍ୟାଂ ପାବକୋପମାଃ । ୧୨ ।
ସ ବିଦ୍ଧୋ ନ୍ୟସ୍ୟ ବୈଦେହୀଂ ଶୂଳମୁଦ୍ୟମ୍ୟ ରାକ୍ଷସଃ ।
ଅଭ୍ୟଦ୍ରବତ୍ସୁସଂକ୍ରୁଦ୍ଧସ୍ତଦା ରାମଂ ସଲକ୍ଷ୍ମଣମ୍ । ୧୩ ।

---

ଏବଂ ତାର ଅପେକ୍ଷା ନ ରଖି ଯେଉଁଠାରୁ ଆସିଛ ସେଠାକୁ ଶୀଘ୍ର ପଳାଇଯାଅ । ମୁଁ ତୁମମାନଙ୍କର ଜୀବନ ନେବିନାହିଁ” । ୭ । ରାମ କ୍ରୋଧରେ ଆରକ୍ତଲୋଚନ ହୋଇ ସେହି ବିକୃତାକାର ପାପଚେତା ବିରାଧ ରାକ୍ଷସକୁ ଏହି କଥା ଉତ୍ତର ଦେଲେ । ୮ । “ରେ ନୀଚ ! ତୋତେ ଧିକ୍ । ତୁ ଅତି ନୀଚ ଉଦ୍ଦେଶ୍ୟରେ ମୃତ୍ୟୁକୁ ଲୋଡ଼ୁଛୁ, ଏଥିରେ ସନ୍ଦେହ ନାହିଁ । ତୁ ରହ, ଯୁଦ୍ଧରେ ସେହି ମୃତ୍ୟୁ ପାଇବୁ; ତୁ ଜୀଇକରି ମୋଠାରୁ ବର୍ତ୍ତି ଯିବୁନାହିଁ” । ୯। ଅନନ୍ତର ରାମ ଅତିଶୀଘ୍ର ଧନୁରେ ଜ୍ୟା ଆରୋପଣ କରି ବହୁ ତୀକ୍ଷ୍ଣ ଶର ସନ୍ଧାନପୂର୍ବକ ସେ ରାକ୍ଷସ ପ୍ରତି ନିକ୍ଷେପକଲେ । ୧୦ । ସେ ଜ୍ୟାଯୁକ୍ତ ଧନୁଦ୍ୱାରା ସ୍ୱର୍ଣ୍ଣପୁଙ୍ଖ, ଅତିବେଗଯୁକ୍ତ, ଗରୁଡ଼ ଏବଂ ବାୟୁତୁଲ୍ୟ ଦ୍ରୁତଗାମୀ ସାତଗୋଟି ଶର ନିକ୍ଷେପକଲେ । ୧୧ । ସେହି ସମସ୍ତ ଅଗ୍ନିତୁଲ୍ୟ ମୟୂରପୁଚ୍ଛଯୁକ୍ତ ଶର ବିରାଧର ଶରୀର ଭେଦକରି ରକ୍ତଲିପ୍ତ ହୋଇ ଭୂତଳରେ ନିପତିତ ହେଲା । ୧୨ । ସେହି ରାକ୍ଷସ ବାଣରେ ବିଦ୍ଧହୋଇ, ବୈଦେହୀଙ୍କୁ ଭୂମିରେ ଥୋଇଦେଇ, ଶୂଳ ଉତ୍ତୋଳନପୂର୍ବକ ଅତିକ୍ରୋଧରେ ରାମ ଏବଂ ଲକ୍ଷ୍ମଣଙ୍କ ଆଡ଼କୁ ପ୍ରଧାବିତ ହେଲା । ୧୩ । ସେ ଅତିଶୟ ଗର୍ଜନକରି ଇନ୍ଦ୍ରଧ୍ୱଜସଦୃଶ ସେହି ଶୂଳ-

ସ ବିନଦ୍ୟ ମହାନାଦଂ ଶୂଳଂ ଶକ୍ରଧ୍ୱଜୋପମମ୍ ।
ପ୍ରଗୃହ୍ୟାଶୋଭତ ତଦା ବ୍ୟାତ୍ତାନନ ଇବାନ୍ତକଃ । ୧୪ ।
ଅଥ ତୌ ଭ୍ରାତରୌ ଦୀପ୍ତଂ ଶରବର୍ଷଂ ବବର୍ଷତୁଃ ।
ବିରାଧେ ରାକ୍ଷସେ ତସ୍ମିନ୍ କାଳାନ୍ତକଯମୋପମେ । ୧୫ ।
ସ ପ୍ରହସ୍ୟ ମହାରୌଦ୍ରଃ ସ୍ଥିତ୍ୱାଜୃମ୍ଭତ ରାକ୍ଷସଃ ।
ଜୃମ୍ଭମାଣସ୍ୟ ତେ ବାଣାଃ କାୟାନ୍ନିଷ୍ପେତୁରାଶୁଗାଃ । ୧୬ ।
ସ୍ପର୍ଶାତ୍ତୁ ବରଦାନେନ ପ୍ରାଣାନ୍ ସଂରୁଧ୍ୟ ରାକ୍ଷସଃ ।
ବିରାଧଃ ଶୂଳମୁଦ୍ୟମ୍ୟ ରାଘବାବଭ୍ୟଧାବତ । ୧୭ ।
ତଚ୍ଛୂଳଂ ବଜ୍ରସଂକାଶଂ ଗଗନେ ଜ୍ୱଳନୋପମମ୍ ।
ଦ୍ୱାଭ୍ୟାଂ ଚିଚ୍ଛେଦ ବାଣାଭ୍ୟାଂ ରାମଃ ଶସ୍ତ୍ରଭୃତାଂ ବରଃ । ୧୮ ।
ତଦ୍ରାମବିଶିଖଚ୍ଛିନ୍ନଂ ଶୂଳଂ ତସ୍ୟ କରାଦ୍ଭୁବି ।
ପପାତାଶନିନା ଛିନ୍ନଂ ମେରୋରିବ ଶିଳାତଳମ୍ । ୧୯ ।
ତୌ ଖଡ୍ଗୌ କ୍ଷିପ୍ରମୁଦ୍ୟମ୍ୟ କୃଷ୍ଣସର୍ପୋପମୌ ଶୁଭୌ ।
ତୂର୍ଣମାପତତସ୍ତସ୍ୟ ତଦାପ୍ରାହରତାଂ ବଲାତ୍ । ୨୦ ।

---

ଧାରଣ କରି ମୁଖବ୍ୟାଦାନକାରୀ କୃତାନ୍ତପରି ସେତେବେଳେ ଶୋଭା ପାଇଲା । ୧୪ । ଅନନ୍ତର ସେ ଦୁଇ ଭାଇ ସେହି ଯମସଦୃଶ ବିରାଧ ରାକ୍ଷସପ୍ରତି ପ୍ରଦୀପ୍ତ ଶରସମୂହ ବର୍ଷଣ କରିବାକୁ ଲାଗିଲେ । ୧୫ । ସେହି ରୁଦ୍ରମୂର୍ତ୍ତି ରାକ୍ଷସ ଟିକିଏ ହସିଦେଇ ଠିଆହୋଇ ହାଇମାରିଲା । ସେ ହାଇ ମାରିବାରୁ ସେହି ସମସ୍ତ ଦ୍ରୁତଗାମୀ ଶର ତାହା ଦେହରୁ ଖସିପଡ଼ି ଭୂଇଁରେ ପଡ଼ିଗଲା । ୧୬ । ସେହି ରାକ୍ଷସ ନିଜ ବଳହେତୁରୁ ଏବଂ ବରପ୍ରଭାବରେ ନିଜର ପ୍ରାଣବାୟୁମାନଙ୍କୁ ନିରୋଧ କରି ଶୂଳ ଉତ୍ତୋଳନପୂର୍ବକ ରାମ ଏବଂ ଲକ୍ଷ୍ମଣଙ୍କ ଆଡ଼କୁ ପ୍ରଧାବିତ ହେଲା । ୧୭ । ସେହି ବଜ୍ରସଦୃଶ ଶୂଳ ଆକାଶରେ ଅଗ୍ନିସଦୃଶ ଶୋଭାପାଇଲା । ଶସ୍ତ୍ରଧାରୀଶ୍ରେଷ୍ଠ ରାମଚନ୍ଦ୍ର ତାହାକୁ ଦୁଇଟି ଶରଦ୍ୱାରା ଛେଦନ କରି ପକାଇଲେ ।୧୮। ବଜ୍ରଦ୍ୱାରା ଛିନ୍ନହୋଇ ମେରୁ ପର୍ବତର ବୃହତ୍ ଶିଳାଖଣ୍ଡ ଯେପରି ଭୂତଳରେ ପତିତ ହୁଏ, ସେହିପରି ରାମଙ୍କ ଶରଦ୍ୱାରା ଛିନ୍ନହୋଇ ସେହି ଶୂଳ ବିରାଧ ହାତରୁ ଖସି ଭୂମିରେ ପତିତ ହେଲା । ୧୯ । ଅନନ୍ତର ରାମ ଲକ୍ଷ୍ମଣ ଅତି ଶୀଘ୍ର କୃଷ୍ଣସର୍ପ ସଦୃଶ ଦୁଇଟି ସୁନ୍ଦର ଖଡ଼୍ଗ ଉତ୍ତୋଳନ କରି ଶୀଘ୍ର ତାହାକୁ ଆକ୍ରମଣ କଲେ ଏବଂ ଖୁବ୍ ଜୋରରେ ତାକୁ ପ୍ରହାର କଲେ । ୨୦ । ସେ ଏହିପରି ବଧ୍ୟମାନ ହୋଇ

ସ ବଧ୍ୟମାନଃ ସୁଭୃଶଂ ବାହୁଭ୍ୟାଂ ପରିରଭ୍ୟ ତୌ ।
ଅପ୍ରକମ୍ପ୍ୟୌ ନରବ୍ୟାଘ୍ରୌ ରୌଦ୍ରଃ ପ୍ରସ୍ଥାତୁମୈଚ୍ଛତ । ୨୧ ।
ତସ୍ୟାଭିପ୍ରାୟମାଜ୍ଞାୟ ରାମୋ ଲକ୍ଷ୍ମଣମବ୍ରବୀତ୍ ।
ବହତ୍ୱୟମଲଂ ତାବତ୍ପଥାନେନ ତୁ ରାକ୍ଷସଃ । ୨୨ ।
ଯଥା ଚେଚ୍ଛତି ସୌମିତ୍ରେ ତଥା ବହତୁ ରାକ୍ଷସଃ ।
ଅୟମେବ ହି ନଃ ପନ୍ଥା ଯେନ ଯାତି ନିଶାଚରଃ । ୨୩ ।
ସ ତୁ ସ୍ୱବଲବୀର୍ଯ୍ୟେଣ ସମୁତ୍କ୍ଷିପ୍ୟ ନିଶାଚରଃ ।
ବାଲାବିବ ସ୍କନ୍ଧଗତୌ ଚକାରାତିବଲୋଦ୍ଧତଃ । ୨୪ ।
ତାବାରୋପ୍ୟ ତତଃ ସ୍କନ୍ଧଂ ରାଘବୌ ରଜନୀଚରଃ ।
ବିରାଧୋ ନିନଦନ୍ ଘୋରଂ ଜଗାମାଭିମୁଖୋ ବନମ୍ । ୨୫ ।
ବନଂ ମହାମେଘନିଭଂ ପ୍ରବିଷ୍ଟୋ
ଦ୍ରୁମୈର୍ମହଦ୍ଭିର୍ବିବିଧୈରୁପେତମ୍ ।
ନାନାବିଧୈଃ ପକ୍ଷିଶତୈର୍ବିଚିତ୍ରମ୍
ଶିବାୟୁତଂ ବ୍ୟାଳମୃଗୈର୍ବିକୀର୍ଣ୍ଣମ୍ । ୨୬ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ବିରାଧପ୍ରହାରୋ ନାମ
ତୃତୀୟଃ ସର୍ଗଃ

---

ସେହି ଦୁଇ ଦୃଢ଼ ନରଶ୍ରେଷ୍ଠଙ୍କୁ ବାହୁରେ ଖୁବ୍ ଜୋରରେ ଜାକିଧରି ଚାଲିଯିବାକୁ ଉଦ୍ୟତ ହେଲା । ୨୧ । ପରେ ରାମ ସେହି ରାକ୍ଷସର ଅଭିପ୍ରାୟ ବୁଝି ଲକ୍ଷ୍ମଣଙ୍କୁ କହିଲେ "ଏ ରାକ୍ଷସ ଆମକୁ ବହନ କରି ଏହି ପଥରେ ଗମନକରୁ । ୨୨ । ହେ ସୌମିତ୍ରେ! ଏହି ରାକ୍ଷସ ଯେଉଁଠାକୁ ଆମକୁ ନେଇଯିବାକୁ ଚାହୁଁଛି ସେଠାକୁ ନେଉ । ଏ ଯେଉଁ ପଥ ଦେଇ ଯାଉଛି ତାହାହିଁ ଆମମାନଙ୍କର ଗନ୍ତବ୍ୟ ପଥ" । ୨୩ । ସେହି ଅତିବଳବାନ୍ ବିରାଧ ରାକ୍ଷସ ନିଜ ବଳଦ୍ୱାରା ସେ ଦୁହିଁଙ୍କୁ ବାଳକ ସଦୃଶ ଉତ୍ତୋଳନ କରି କାନ୍ଧରେ ବସାଇଲା । ୨୪ । ଅନନ୍ତର ସେହି ରାକ୍ଷସ ବିରାଧ ରାମ ଲକ୍ଷ୍ମଣ ଦୁହିଙ୍କୁ କାନ୍ଧରେ ବହାଇ ଘୋର ଗର୍ଜନପୂର୍ବକ ବନ ଅଭିମୁଖରେ ଧାବିତ ହେଲା । ସେ ରାକ୍ଷସ ନାନାବିଧ ବଡ଼ ବଡ଼ ବୃକ୍ଷଯୁକ୍ତ ଶତଶତ ବିବିଧ ପକ୍ଷି ସମୂହଙ୍କଦ୍ୱାରା ଶୋଭିତ, ଶୃଗାଳ ଓ ଶିକାରୀପଶୁପରିପୂର୍ଣ୍ଣ ମହାମେଘ ସଦୃଶ ନିବିଡ଼ ବନରେ ପ୍ରବେଶ କଲା । ୨୬ ।

---

# ଚତୁର୍ଥଃ ସର୍ଗଃ

## ବିରାଧନିଖନନମ୍

ହ୍ରିୟମାଣୌ ତୁ ତୌ ଦୃଷ୍ଟ୍ୱା ବୈଦେହୀ ରାମଲକ୍ଷ୍ମଣୌ ।
ଉଚ୍ଚୈଃସ୍ୱରେଣ ଚୁକ୍ରୋଶ ପ୍ରଗୃହ୍ୟ ସୁଭୁଜା ଭୁଜୌ । ୧ ।
ଏଷ ଦାଶରଥୀ ରାମଃ ସତ୍ୟବାନ୍ ଶୀଲବାନ୍ ଶୁଚଃ ।
ରକ୍ଷସା ରୌଦ୍ରରୂପେଣ ହ୍ରିୟତେ ସହଲକ୍ଷ୍ମଣଃ । ୨ ।
ମାଂ ବୃକା ଭକ୍ଷୟିଷ୍ୟନ୍ତି ଶାର୍ଦ୍ଦୂଲା ଦ୍ୱିପିନସ୍ତଥା ।
ମାଂ ହରୋତ୍ସୃଜ୍ୟ କାକୁତ୍ସ୍ଥୌ ନମସ୍ତେ ରାକ୍ଷସୋତ୍ତମ । ୩ ।
ତସ୍ୟାସ୍ତଦ୍ୱଚନଂ ଶ୍ରୁତ୍ୱା ବୈଦେହ୍ୟା ରାମଲକ୍ଷ୍ମଣୌ ।
ବେଗଂ ପ୍ରଚକ୍ରତୁର୍ବୀରୌ ବଧେ ତସ୍ୟ ଦୁରାତ୍ମନଃ । ୪ ।
ତସ୍ୟ ରୌଦ୍ରସ୍ୟ ସୌମିତ୍ରିର୍ବାହୁଂ ସବ୍ୟଂ ବଭଞ୍ଜ ହ ।
ରାମସ୍ତୁ ଦକ୍ଷିଣଂ ବାହୁଂ ତରସା ତସ୍ୟ ରକ୍ଷସଃ । ୫ ।
ସ ଭଗ୍ନବାହୁଃ ସଂବଗ୍ନୋ ନିପପାତାଶୁ ରାକ୍ଷସଃ ।
ଧରଣ୍ୟାଂ ମେଘସଂକାଶୋ ବଜ୍ରଭିନ୍ନ ଇବାଚଲଃ । ୬ ।

---

# ଚତୁର୍ଥ ସର୍ଗ

## (ବିରାଧର ସମାଧି)

ରାମ ଏବଂ ଲକ୍ଷ୍ମଣଙ୍କୁ ହରଣକରି ନେଇଯାଉଥିବାର ଦେଖି ବୈଦେହୀ ନିଜର ଭୁଜଦ୍ୱୟକୁ ଉତ୍ତୋଳିତ କରି ଉଚ୍ଚୈସ୍ୱରରେ କ୍ରନ୍ଦନ କରିବାକୁ ଲାଗିଲେ । ୧ । "ଏହି ଦେଖ ରୁଦ୍ରମୂର୍ତ୍ତି ରାକ୍ଷସ ସାଧୁସ୍ୱଭାବ ସତ୍ୟବାଦୀ ପବିତ୍ର ଦଶରଥାତ୍ମଜ ରାମଙ୍କୁ ଲକ୍ଷ୍ମଣଙ୍କ ସହିତ ହରଣକରି ନେଇଯାଉଅଛି । ୨ । ଗଧିଆବାଘ ଏବଂ ଚିତାବାଘମାନେ ମୋତେ ଖାଇପିବେ । ହେ ରାକ୍ଷସଶ୍ରେଷ୍ଠ ! ମୁଁ ତୁମକୁ ନମସ୍କାର କରୁଛି, ତୁମେ ରାମ ଲକ୍ଷ୍ମଣ ଦୁହିଁଙ୍କୁ ଛାଡ଼ିଦେଇ ମୋତେ ହରଣକରି ନେଇଯାଅ" । ୩ । ରାମ, ଲକ୍ଷ୍ମଣ ଦୁହେଁ ବୈଦେହୀଙ୍କର ଏହି କଥା ଶୁଣି ଦୁରାତ୍ମା ବିରାଧର ବଧ ବିଷୟରେ ସତ୍ୱର ହେଲେ । ୪ । ସୁମିତ୍ରାନନ୍ଦନ ଲକ୍ଷ୍ମଣ ସେହି ରୁଦ୍ରାକୃତି ରାକ୍ଷସର ବାମବାହୁ ଏବଂ ରାମ ସବେଗରେ ତାହାର ଦକ୍ଷିଣ ବାହୁ ଭାଙ୍ଗିଦେଲେ । ୫ । ମେଘ ସଦୃଶ ସେହି ବିରାଧର ହାତ ଭାଙ୍ଗିଯିବାରୁ ସେ ଏକାନ୍ତ ଅବସନ୍ନ ହୋଇ ତତ୍‌କ୍ଷଣାତ୍, ପର୍ବତ ବଜ୍ରାଘାତରେ ଭାଙ୍ଗିଗଲାପରି ଭୂମିରେ ପଡ଼ିଗଲା । ୬ ।

ମୁଷ୍ଟିଭିର୍ଜାନୁଭିଃ ପଦ୍ଭିଃ ସୂଦୟନ୍ତୌ ତୁ ରାକ୍ଷସମ୍ ।
ଉଦ୍ୟମ୍ୟୋଦ୍ୟମ୍ୟ ଚାପ୍ୟେନଂ ସ୍ଥଣ୍ଡିଲେ ନିଷ୍ପିପେଷତୁଃ । ୭ ।
ସ ବିଦ୍ଧୋ ବହୁଭିର୍ବାଣୈଃ ଖଡ୍ଗାଭ୍ୟାଂ ଚ ପରିକ୍ଷତଃ ।
ନିଷ୍ପିଷ୍ଟୋ ବହୁଧା ଭୂମୌ ନ ମମାର ସ ରାକ୍ଷସଃ । ୮ ।
ତଂ ପ୍ରେକ୍ଷ୍ୟ ରାମଃ ସୁଭୃଶମବଧ୍ୟମଚଲୋପମମ୍ ।
ଭୟେଷ୍ୱଭୟଦଃ ଶ୍ରୀମାନିଦଂ ବଚନମବ୍ରବୀତ୍ । ୯ ।
ତପସା ପୁରୁଷବ୍ୟାଘ୍ର ରାକ୍ଷସୋଽୟଂ ନ ଶକ୍ୟତେ ।
ଶସ୍ତ୍ରେଣ ଯୁଧି ନିର୍ଜେତୁଂ ରାକ୍ଷସଂ ନିଖନାବହେ । ୧୦ ।
କୁଞ୍ଜରସ୍ୟେବ ରୌଦ୍ରସ୍ୟ ରାକ୍ଷସସ୍ୟାସ୍ୟ ଲକ୍ଷ୍ମଣ ।
ବନେଽସ୍ମିନ୍ ସୁମହଚ୍ଛ୍ୱଭ୍ରଂ ଖନ୍ୟତାଂ ରୌଦ୍ରକର୍ମଣଃ । ୧୧ ।
ଇତ୍ୟୁକ୍ତ୍ୱା ଲକ୍ଷ୍ମଣଂ ରାମଃ ପ୍ରଦରଃ ଖନ୍ୟତାମିତି ।
ତସ୍ଥୌ ବିରାଧମାକ୍ରମ୍ୟ କଣ୍ଠେ ପାଦେନ ବୀର୍ଯ୍ୟବାନ୍ । ୧୨ ।
ତଚ୍ଛ୍ରୁତ୍ୱା ରାଘବେଣୋକ୍ତଂ ରାକ୍ଷସଃ ପ୍ରଶ୍ରିତଂ ବଚଃ ।
ଇଦଂ ପ୍ରୋବାଚ କାକୁତ୍ସ୍ଥଂ ବିରାଧଃ ପୁରୁଷର୍ଷଭଂ । ୧୩ ।
ହତୋଽହଂ ପୁରୁଷବ୍ୟାଘ୍ର ଶକ୍ରତୁଲ୍ୟବଲେନ ବୈ ।
ମୟା ତୁ ପୂର୍ବଂ ତ୍ୱଂ ମୋହାନ୍ନ ଜ୍ଞାତଃ ପୁରୁଷର୍ଷଭ । ୧୪ ।

ରାମ ଓ ଲକ୍ଷ୍ମଣ ଜାନୁ ମୁଷ୍ଟି ଓ ପଦାଘାତଦ୍ୱାରା ସେହି ରାକ୍ଷସକୁ ନିପୀଡ଼ିତକରି ଏବଂ ବାରମ୍ବାର ତାହାକୁ ଉତ୍ତୋଳନପୂର୍ବକ ଭୂତଳରେ ନିକ୍ଷେପ କରି ପେଷିଦେଲେ ।୭। ସେହି ରାକ୍ଷସ ବହୁ ବାଣଦ୍ୱାରା ବିଦ୍ଧ ହୋଇ ଓ ସେ ଦୁହିଁଙ୍କ ଖଡ୍‌ଗ ଦ୍ୱାରା କ୍ଷତ ବିକ୍ଷତ ହୋଇ ବାରମ୍ବାର ଭୂମିରେ ନିଷ୍ପିଷ୍ଟ ହେଲେ ମଧ୍ୟ ନିହତ ହେଲା ନାହିଁ । ୮ । ଭୟସ୍ଥଳେ ଅଭୟଦାନକାରୀ ଶ୍ରୀମାନ୍ ରାମ ପର୍ବତସଦୃଶ ସେହି ରାକ୍ଷସକୁ ଅଚଳ-ପର୍ବତସଦୃଶ ଅବଧ୍ୟ ବୋଲି ଦେଖିପାରି ଲକ୍ଷ୍ମଣଙ୍କୁ ଏହି କଥା କହିଲେ । ୯ । "ହେ ନରଶ୍ରେଷ୍ଠ ! ତପସ୍ୟା ବଳରୁ ଏ ରାକ୍ଷସକୁ ଯୁଦ୍ଧରେ ଶସ୍ତ୍ରଦ୍ୱାରା ବଧ କରି ହେବନାହିଁ; ସୁତରାଂ ଆମେ ଏ ରାକ୍ଷସକୁ ମାଟିରେ ପୋତି ପକାଇବା ।୧୦ । ହେ ଲକ୍ଷ୍ମଣ ! ତୁମେ ଏବେ ହସ୍ତିସଦୃଶ ପ୍ରଚଣ୍ଡମୂର୍ତ୍ତି ଏହି ରୁଦ୍ରକର୍ମା ରାକ୍ଷସପାଇଁ ବନ ମଧ୍ୟରେ ଏକ ଅତିବୃହତ୍ ଗର୍ତ୍ତ ଖନନକର" । ୧୧ । ବୀର୍ଯ୍ୟବାନ୍ ରାମ ଲକ୍ଷ୍ମଣଙ୍କୁ 'ଗାତ ଖୋଳ' ବୋଲି ଆଦେଶ ଦେଇ, ନିଜେ ପାଦଦ୍ୱାରା ରାକ୍ଷସର କଣ୍ଠ-ଦେଶକୁ ମାଡ଼ିଧରି ଠିଆ ହୋଇରହିଲେ । ୧୨ । ରାକ୍ଷସ ବିରାଧ ପୁରୁଷଶ୍ରେଷ୍ଠ ରାମଙ୍କର ଏହି କଥା ଶୁଣି ତାଙ୍କୁ ବିନୀତ ବାକ୍ୟରେ କହିଲା । ୧୩ । "ହେ ପୁରୁଷୋତ୍ତମ ! ମୁଁ ତୁମ୍ଭର ଇନ୍ଦ୍ରତୁଲ୍ୟ ପରାକ୍ରମରେ ମୃତତୁଲ୍ୟ ହୋଇଅଛି । ହେ ନରଶ୍ରେଷ୍ଠ ! ମୁଁ ମୋହବଶତଃ ଇତିପୂର୍ବରୁ ତୁମକୁ ଜାଣିପାରି ନ ଥିଲି । ୧୪ ।

କୌସଲ୍ୟା ସୁପ୍ରଜା ତାତ ରାମସ୍ତ୍ୱଂ ବିଦିତୋ ମୟା ।
ବୈଦେହୀ ଚ ମହାଭାଗା ଲକ୍ଷ୍ମଣଶ୍ଚ ମହାଯଶାଃ ।୧୫।
ଅଭିଶାପାଦହଂ ଘୋରାଂ ପ୍ରବିଷ୍ଟୋ ରାକ୍ଷସୀଂ ତନୁମ୍ ।
ତୁମ୍ବୁରୁର୍ନାମ ଗନ୍ଧର୍ବଃ ଶପ୍ତୋ ବୈଶ୍ରବଣେନ ହି ।୧୬।
ପ୍ରସାଦ୍ୟମାନଶ୍ଚ ମୟା ସୋଽବ୍ରବୀନ୍ମାଂ ମହାଯଶାଃ ।
ଯଦା ଦାଶରଥୀ ରାମସ୍ତ୍ୱାଂ ବଧିଷ୍ୟତି ସଂଯୁଗେ । ୧୭ ।
ତଦା ପ୍ରକୃତିମାପନ୍ନୋ ଭବାନ୍ ସ୍ୱର୍ଗଂ ଗମିଷ୍ୟତି ।
ଇତି ବୈଶ୍ରବଣୋ ରାଜା ରମ୍ଭାସକ୍ତଂ ପୁରାନଘ । ୧୮ ।
ଅନୁପସ୍ଥୀୟମାନୋ ମାଂ ସଂକ୍ରୁଦ୍ଧୋ ବ୍ୟାଜହାର ହ ।
ତବ ପ୍ରସାଦାନ୍ମୁକ୍ତୋଽହମଭିଶାପାତ୍ସୁଦାରୁଣାତ୍ । ୧୯ ।
ଭୁବନଂ ସ୍ୱଂ ଗମିଷ୍ୟାମି ସ୍ୱସ୍ତି ବୋଽସ୍ତୁ ପରନ୍ତପ ।
ଇତୋ ବସତି ଧର୍ମାତ୍ମା ଶରଭଙ୍ଗଃ ପ୍ରତାପବାନ୍ । ୨୦ ।
ଅଧ୍ୟର୍ଦ୍ଧଯୋଜନେ ତାତ ମହର୍ଷିଃ ସୂର୍ଯ୍ୟସଂନିଭଃ ।
ତଂ କ୍ଷିପ୍ରମଭିଗଚ୍ଛ ତ୍ୱଂ ସ ତେ ଶ୍ରେୟୋ ବିଧାସ୍ୟତି । ୨୧ ।

---

ହେ ତାତ! ମୁଁ ଜାଣିଲି, ତୁମେ କୌଶଲ୍ୟାଙ୍କର ସୁପୁତ୍ର ରାମ; ଏ ମହାଭାଗା ଜାନକୀ; ଏବଂ ଏ ମହାଯଶସ୍ୱୀ ଲକ୍ଷ୍ମଣ । ୧୫ । ମୁଁ ଅଭିଶାପ ହେତୁରୁ ଏହି ଭୟଙ୍କର ରାକ୍ଷସ ଶରୀରରେ ପ୍ରବେଶ କରିଅଛି । ମୁଁ ତୁମ୍ବୁରୁ ନାମକ ଗନ୍ଧର୍ବ ଅଟେ; କୁବେରଙ୍କ ଦ୍ୱାରା ଅଭିଶପ୍ତ ହୋଇଥିଲି । ୧୬ । ସେହି ମହାଯଶସ୍ୱୀ କୁବେରଙ୍କୁ ମୁଁ ପ୍ରସନ୍ନ କରାଇବାରୁ ସେ ମୋତେ କହିଥିଲେ ଯେ, ଯେତେବେଳେ ଦଶରଥନନ୍ଦନ ରାମ ତୋତେ ଯୁଦ୍ଧରେ ବଧ କରିବେ, ସେତେବେଳେ ତୁ ନିଜର ପ୍ରକୃତି ଲାଭକରି ସ୍ୱର୍ଗକୁ ଗମନ କରିବୁ । ହେ ନିଷ୍ପାପ ! ମୁଁ ରମ୍ଭାଙ୍କ ପ୍ରତି ଆସକ୍ତ ହୋଇ କୁବେରଙ୍କ ନିଯୋଗରେ ଉପସ୍ଥିତ ନ ହେବାରୁ ସେ ଅତିଶୟ କ୍ରୁଦ୍ଧ ହୋଇ ମୋତେ ଏହା କହିଥିଲେ । ବର୍ତ୍ତମାନ ତୁମ ଅନୁଗ୍ରହରୁ ମୁଁ ସେହି ଦାରୁଣ ଅଭିଶାପରୁ ମୁକ୍ତ ହୋଇଅଛି । ୧୭-୧୯ । ହେ ଶତ୍ରୁଦମନ ! ତୁମମାନଙ୍କର ମଙ୍ଗଳ ହେଉ । ମୁଁ ବର୍ତ୍ତମାନ ନିଜ ଲୋକକୁ ଯିବି । ହେ ତାତ ! ଏଠାରୁ ଅର୍ଦ୍ଧ ଯୋଜନରୁ ଅଧିକ ଦୂରରେ ସୂର୍ଯ୍ୟସମ ତେଜସ୍ୱୀ ପ୍ରତାପଶାଳୀ ଧର୍ମାତ୍ମା ମହର୍ଷି ଶରଭଙ୍ଗ ରହିଅଛନ୍ତି । ତୁମେ ଅତିଶୀଘ୍ର ତାଙ୍କ ନିକଟକୁ ଗମନକର । ସେ ତୁମର ଶ୍ରେୟବିଧାନ କରିବେ । ୨୦-୨୧ ।

ଅବଟେ ଚାପି ମାଂ ରାମ ପ୍ରକ୍ଷିପ୍ୟ କୁଶଲୀ ବ୍ରଜ ।
ରକ୍ଷସାଂ ଗତସତ୍ତ୍ୱାନାମେଷ ଧର୍ମଃ ସନାତନଃ । ୨୨ ।
ଅବଟେ ଯେ ନିଧୀୟନ୍ତେ ତେଷାଂ ଲୋକାଃ ସନାତନାଃ ।
ଏବମୁକ୍ତ୍ୱା ତୁ କାକୁତ୍ସ୍ଥଂ ବିରାଧଃ ଶରପୀଡ଼ିତଃ । ୨୩ ।
ବଭୂବ ସ୍ୱର୍ଗତଂ ପ୍ରାପ୍ତୋ ନ୍ୟସ୍ତଦେହୋ ମହାବଲଃ ।
ତଚ୍ଛ୍ରୁତ୍ୱା ରାଘବୋ ବାକ୍ୟଂ ଲକ୍ଷ୍ମଣଂ ବ୍ୟାଦିଦେଶ ହ । ୨୪ ।
ତତଃ ଖନିତ୍ରମାଦାୟ ଲକ୍ଷ୍ମଣଃ ଶ୍ୱଭ୍ରମୁତ୍ତମମ୍ ।
ଅଖନତ୍ପାର୍ଶ୍ୱତସ୍ତସ୍ୟ ବିରାଧସ୍ୟ ମହାତ୍ମନଃ । ୨୫ ।
ତଂ ମୁକ୍ତକଣ୍ଠଂ ନିଷ୍ପିଷ୍ୟ ଶଙ୍କୁକର୍ଣ୍ଣଂ ମହାସ୍ୱନମ୍ ।
ବିରାଧଂ ପ୍ରାକ୍ଷିପଚ୍ଛ୍ୱଭ୍ରେ ନଦନ୍ତଂ ଭୈରବସ୍ୱନମ୍ । ୨୬ ।

ତମାହବେ ନିର୍ଜିତମାଶୁବିକ୍ରମୌ
ସ୍ଥିରାବୁଭୌ ସଂଯତି ରାମଲକ୍ଷ୍ମଣୌ ।
ମୁଦାନ୍ୱିତୌ ଚିକ୍ଷିପତୁର୍ଭୟାବହମ୍
ନଦନ୍ତମୁତ୍କ୍ଷିପ୍ୟ ବଳେ ତୁ ରାକ୍ଷସମ୍ । ୨୭ ।

---

ହେ ରାମ ! ଏବେ ତୁମେ ମୋତେ ଗର୍ତ୍ତମଧ୍ୟରେ ନିକ୍ଷେପ କରିଦେଇ କୁଶଳରେ ଗମନକର । ଗର୍ତ୍ତ ମଧ୍ୟରେ ନିକ୍ଷିପ୍ତ ହେବା ହିଁ ମୃତ ରାକ୍ଷସମାନଙ୍କର ଚିରନ୍ତନ ରୀତି । ୨୨ । ଯେଉଁମାନେ ଗର୍ତ୍ତ ମଧ୍ୟରେ ପ୍ରୋଥିତ ହୁଅନ୍ତି, ସେମାନେ ଶାଶ୍ୱତ ଲୋକ ଲାଭ କରନ୍ତି ।" ଶରପୀଡ଼ିତ ମହାବଳୀ ବିରାଧ ରାମଙ୍କୁ ଏହି କଥା କହି ଦେହତ୍ୟାଗ-ପୂର୍ବକ ସ୍ୱର୍ଗଲାଭ କଲେ । ରାମ ଏହିକଥା ଶୁଣି ଲକ୍ଷ୍ମଣଙ୍କୁ ଆଦେଶ ଦେଲେ । ୨୩-୨୪। ଅନନ୍ତର ଲକ୍ଷ୍ମଣ ଖଣତି ଆଣି ମହାତ୍ମା ବିରାଧଙ୍କ ନିକଟରେ ଗୋଟିଏ ବୃହତ୍‌ଗର୍ତ୍ତ ଖନନକଲେ । ୨୫ । ଅନନ୍ତର ଶଙ୍କୁ ସଦୃଶ କର୍ଣ୍ଣବିଶିଷ୍ଟ ବିରାଧର ଗଳାକୁ କାଟି ଦେଇ ତାହାକୁ ମାଡ଼ିମୋଡ଼ି ସେହି ଗର୍ତ୍ତରେ ପକାଇଦେଲେ । ସେତେବେଳେ ସେ ଅତିଭୈରବ ରବରେ ଚିତ୍କାର କରୁଥିଲା । ୨୬ । ଯୁଦ୍ଧରେ ଦୃଢ଼ଚିତ୍ତ ଓ ଆଶୁ-ବିକ୍ରମ ରାମ ଲକ୍ଷ୍ମଣ ଦୁହେଁ ଆନନ୍ଦିତ ହୋଇ ସେହି ଭୟାବହ ରାକ୍ଷସକୁ ଯୁଦ୍ଧରେ ପରାଜୟ କରି ଏବଂ ସେ ଚିତ୍କାର କରୁଥିବା ଅବସ୍ଥାରେ ତାକୁ ଉପରକୁ ଉଠାଇ ସେହି ଗର୍ତ୍ତ ମଧ୍ୟରେ ନିକ୍ଷେପକଲେ । ୨୭ ।

ଅବଧ୍ୟତାଂ ପ୍ରେକ୍ଷ୍ୟ ମହାସୁରସ୍ୟ ତୌ
ଶିତେନ ଶସ୍ତ୍ରେଣ ତଦା ନରର୍ଷଭୌ ।
ସମର୍ଥ୍ୟ ଚାତ୍ୟର୍ଥବିଶାରଦାବୁଭୌ
ବିଲେ ବିରାଧସ୍ୟ ବଧଂ ପ୍ରଚକ୍ରତୁଃ ।୨୮।
ସ୍ୱୟଂ ବିରାଧେନ ହି ମୃତ୍ୟୁମାତ୍ମନଃ
ପ୍ରସହ୍ୟ ରାମେଣ ବଧାର୍ଥମୀପ୍ସିତଃ ।
ନିବେଦିତଃ କାନନଚାରିଣା ସ୍ୱୟଂ
ନ ମେ ବଧଃ ଶସ୍ତ୍ରକୃତୋ ଭବେଦିତି ।୨୯।
ତଦେବ ରାମେଣ ନିଶମ୍ୟ ଭାଷିତମ୍
କୃତା ମତିସ୍ତସ୍ୟ ବିଲପ୍ରବେଶନେ ।
ବିଲଂ ଚ ରାମେଣ ବଲେନ ରକ୍ଷସା
ପ୍ରବେଶ୍ୟମାନେନ ବନଂ ବିନାଦିତମ୍ ।୩୦।
ପ୍ରହୃଷ୍ଟରୂପାବିବ ରାମଲକ୍ଷ୍ମଣୌ
ବିରାଧମୁର୍ବ୍ୟାଂ ପ୍ରଦରେ ନିଖାୟ ତମ୍ ।
ନନନ୍ଦତୁର୍ବୀତଭୟୌ ମହାବନେ
ଶିଳାଭିରନ୍ତର୍ଦଧତୁଶ୍ଚ ରାକ୍ଷସମ୍ ।୩୧।

---

ଦୁହେଁ ସୁତୀକ୍ଷ୍ଣ ଅସ୍ତ୍ରରେ ସେହି ମହାସୁର ବିରାଧକୁ ସଂହାର କରି ହେବ ନାହିଁ ଦେଖି ତାହାକୁ ଗର୍ତ୍ତମଧ୍ୟରେ ନିକ୍ଷେପ କରି ବଧ କଲେ ।୨୮। ରାମ ନିଜର ପ୍ରୟୋଜନାନୁସାରେ ବିରାଧକୁ ଯେପରି ବଧ କରିବାକୁ ଇଚ୍ଛାକଲେ, କାନନଚାରୀ ବିରାଧ ମଧ୍ୟ ସେହିପରି ରାମଙ୍କ ଦ୍ୱାରା ନିହତ ହେବାକୁ ଇଚ୍ଛା କରି ନିଜେ ତାଙ୍କୁ କହିଲା "ଶସ୍ତ୍ରଦ୍ୱାରା ମୋତେ ବଧ କରିପାରିବ ନାହିଁ" ।୨୯। ରାମ ତାହାର ସେହି କଥା ଶୁଣି ତାହାକୁ ଗର୍ତ୍ତମଧ୍ୟରେ ପୂରାଇବାକୁ ଇଚ୍ଛା କଲେ । ରାମ ରାକ୍ଷସକୁ ସେହି ଗର୍ତ୍ତ ମଧ୍ୟରେ ପୂରାଇବାବେଳେ ସେହି ରାକ୍ଷସ ସମଗ୍ର ବନକୁ ଓ ସେହି ଗର୍ତ୍ତକୁ ନିଜର ଗର୍ଜ୍ଜନ ଦ୍ୱାରା ପ୍ରତିଧ୍ୱନିତ କରିଦେଲା ।୩୦। ଏହିପରି ସେହି ମହାରଣ୍ୟ ମଧ୍ୟରେ ରାମ ଓ ଲକ୍ଷ୍ମଣ ବିରାଧକୁ ଭୂଗର୍ଭ ମଧ୍ୟରେ ପୋତି ଦେଇ ଉଭୟେ ଅତିଶୟ ଆନନ୍ଦିତ ହେଲେ ଏବଂ ଭୟହୀନ ହୋଇ ପ୍ରସ୍ତରଦ୍ୱାରା ସେ ରାକ୍ଷସକୁ ଘୋଡ଼ାଇ ପକାଇଲେ ।୩୧। ଅନନ୍ତର ଧନୁ ଓ ଖଡ୍‌ଗଧାରୀ ରାମ ଲକ୍ଷ୍ମଣ ଦୁହେଁ ସେହି

**ତତସ୍ତୌ କାର୍ମୁକଖଡ୍ଗଧାରିଣୌ**
**ନିହତ୍ୟ ରକ୍ଷଃ ପରିଗୃହ୍ୟ ମୈଥିଲୀମ୍ ।**
**ବିଜହ୍ରତୁସ୍ତୌ ମୁଦିତୌ ମହାବନେ**
**ଦିବି ସ୍ଥିତୌ ଚନ୍ଦ୍ରଦିବାକରାବିବ । ୩୬ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ବିରାଧନିଖନନମ୍
ନାମ ଚତୁର୍ଥଃ ସର୍ଗଃ ।

---

ରାକ୍ଷସକୁ ବଧକରି ଏବଂ ଜାନକୀଙ୍କୁ ସଙ୍ଗରେ ଧରି ଆନନ୍ଦିତ ହୋଇ ସେହି ମହାବନରେ ବିହାର କରିବାକୁ ଲାଗିଲେ । ସେତେବେଳେ ସେ ଦୁହେଁ ଆକାଶରେ ଚନ୍ଦ୍ର ଓ ସୂର୍ଯ୍ୟ ଦୁହିଙ୍କପରି ସେଠାରେ ଶୋଭା ପାଇଥିଲେ । ୩୬ ।

# ପଞ୍ଚମଃ ସର୍ଗଃ

## ଶରଭଙ୍ଗବ୍ରହ୍ମଲୋକପ୍ରସ୍ଥାନମ୍

ହତ୍ୱା ତୁ ତଂ ଭୀମବଲଂ ବିରାଧଂ ରାକ୍ଷସଂ ବନେ ।
ତତଃ ସୀତାଂ ପରିଷ୍ୱଜ୍ୟ ସମାଶ୍ୱାସ୍ୟ ଚ ବୀର୍ଯ୍ୟବାନ୍ । ୧ ।
ଅବ୍ରବୀଲ୍ଲକ୍ଷ୍ମଣଂ ରାମୋ ଭ୍ରାତରଂ ଦୀପ୍ତତେଜସମ୍ ।
କଷ୍ଟଂ ବନମିଦଂ ଦୁର୍ଗଂ ନ ଚ ସ୍ମ ବନଗୋଚରାଃ । ୨ ।
ଅଭିଗଚ୍ଛାମହେ ଶୀଘ୍ରଂ ଶରଭଙ୍ଗଂ ତପୋଧନମ୍ ।
ଆଶ୍ରମଂ ଶରଭଙ୍ଗସ୍ୟ ରାଘବୋଽଭିଜଗାମ ହ । ୩ ।
ତସ୍ୟ ଦେବପ୍ରଭାବସ୍ୟ ତପସା ଭାବିତାତ୍ମନଃ ।
ସମୀପେ ଶରଭଙ୍ଗସ୍ୟ ଦଦର୍ଶ ମହଦଦ୍ଭୁତମ୍ । ୪ ।
ବିଭ୍ରାଜମାନଂ ବପୁଷା ସୂର୍ଯ୍ୟବୈଶ୍ୱାନରୋପମମ୍ ।
ଅବରୁହ୍ୟ ରଥୋତ୍ସଙ୍ଗାତ୍ସ୍ରକାଶେ ବିବୁଧାନୁଗମ୍ । ୫ ।
ଅସଂସ୍ପୃଶନ୍ତଂ ବସୁଧାଂ ଦଦର୍ଶ ବିବୁଧେଶ୍ୱରମ୍ ।
ସୁପ୍ରଭାଭରଣଂ ଦେବଂ ବିରଜୋଽମ୍ବରଧାରିଣମ୍ । ୬ ।

---

## ୫ମ ସର୍ଗ

( ଶରଭଙ୍ଗଙ୍କର ବ୍ରହ୍ମଲୋକପ୍ରସ୍ଥାନ )

ବୀର୍ଯ୍ୟବାନ୍ ରାମ ବନମଧ୍ୟରେ ସେହି ଭୀମପରାକ୍ରମ ବିରାଧ ରାକ୍ଷସକୁ ହତ୍ୟାକରି ଏବଂ ସୀତାଙ୍କୁ ଆଲିଙ୍ଗନ ଓ ଆଶ୍ୱାସନା ପ୍ରଦାନ କରି ଦୀପ୍ତତେଜା ଭାଇ ଲକ୍ଷ୍ମଣଙ୍କୁ କହିଲେ, "ଏହି ବନ ଦୁର୍ଗମ ଓ ଅତ୍ୟନ୍ତ କଷ୍ଟକର । ଆମେମାନେ ମଧ୍ୟ ଏ ବନ ସହିତ ଆଗରୁ ପରିଚିତ ନ ଥାଉଁ । ୧-୨ । ସୁତରାଂ ଆମେମାନେ ଶୀଘ୍ର ତପସ୍ୱୀ ଶରଭଙ୍ଗଙ୍କ ସମୀପକୁ ଯିବା ।" ଅନନ୍ତର ରାମ ଶରଭଙ୍ଗଙ୍କ ଆଶ୍ରମ ଆଡ଼କୁ ଗଲେ । ୩ । ତପୋବଳରେ ବିଶୁଦ୍ଧାତ୍ମା ଓ ଦେବପ୍ରଭାବ ବିଶିଷ୍ଟ ସେହି ଶରଭଙ୍ଗଙ୍କ ଆଶ୍ରମ ନିକଟରେ ସେ ଏକ ଅଦ୍ଭୁତ ଘଟଣା ଦେଖିଲେ । ୪ । ସେ ଦେଖିଲେ, ସୂର୍ଯ୍ୟ ଓ ଅଗ୍ନିଙ୍କ ସଦୃଶ ପ୍ରଭାବଶିଷ୍ଟ ଦେବରାଜ ଇନ୍ଦ୍ର ସ୍ୱୀୟ ଶରୀରପ୍ରଭାରେ ସମୁଜ୍ଜ୍ୱଳ ଏବଂ ଦେବତାମାନଙ୍କ ଦ୍ୱାରା ପରିବୃତ ହୋଇ ଶ୍ରେଷ୍ଠତମ ରଥରେ ଆରୋହଣ କରି ଧରାତଳକୁ ସ୍ପର୍ଶ ନ କରି ଶୂନ୍ୟରେ ଅବସ୍ଥିତ ଅଛନ୍ତି । ତାଙ୍କର ଆଭରଣ-ସମୂହ ପ୍ରଭାଶାଳୀ ଏବଂ ପରିଧେୟ ବସ୍ତ୍ର ଅତିସ୍ୱଚ୍ଛ । ୫-୬ । ତାଙ୍କର ପରି ଅନ୍ୟାନ୍ୟ

ତଦ୍ଵିଧୈରେବ ବହୁଭିଃ ପୂଜ୍ୟମାନଂ ମହାତ୍ମଭିଃ ।
ହରିଭିର୍ବାଜିଭିର୍ଯୁକ୍ତମନ୍ତରିକ୍ଷଗତଂ ରଥମ୍ । ୭ ।
ଦଦର୍ଶାଦୂରତସ୍ତସ୍ୟ ତରୁଣାଦିତ୍ୟସଂନିଭମ୍ ।
ପାଣ୍ଡରାଭ୍ରଘନପ୍ରଖ୍ୟଂ ଚନ୍ଦ୍ରମଣ୍ଡଳସଂନିଭମ୍ । ୮ ।
ଅପଶ୍ୟଦ୍ଵିମଳଂ ଛତ୍ରଂ ଚିତ୍ରମାଲ୍ୟୋପଶୋଭିତମ୍ ।
ଚାମରବ୍ୟଜନେ ଚାଗ୍ର୍ୟେ ରୁକ୍ମଦଣ୍ଡେ ମହାଧନେ । ୯ ।
ଗୃହୀତେ ବରନାରୀଭ୍ୟାଂ ଧୂୟମାନେ ଚ ମୂର୍ଧନି ।
ଗନ୍ଧର୍ବାମରସିଦ୍ଧାଶ୍ଚ ବହବଃ ପରମର୍ଷୟଃ । ୧୦ ।
ଅନ୍ତରିକ୍ଷଗତଂ ଦେବଂ ବାଗ୍‌ଭିରଗ୍ର୍ୟାଭିରୀଡ଼ିରେ ।
ସହ ସଂଭାଷମାଣେ ତୁ ଶରଭଙ୍ଗେଣ ବାସବେ । ୧୧ ।
ଦୃଷ୍ଟ୍ୱା ଶତକ୍ରତୁଂ ତତ୍ର ରାମୋ ଲକ୍ଷ୍ମଣମବ୍ରବୀତ୍ ।
ରାମୋଽଥ ରଥମୁଦ୍ଦିଶ୍ୟ ଲକ୍ଷ୍ମଣାୟ ପ୍ରଦର୍ଶୟନ୍ । ୧୨ ।
ଅର୍ଚିଷ୍ମନ୍ତଂ ଶ୍ରିୟା ଜୁଷ୍ଟମଦ୍ଭୁତଂ ପଶ୍ୟ ଲକ୍ଷ୍ମଣ ।
ପ୍ରତପନ୍ତମିବାଦିତ୍ୟମନ୍ତରିକ୍ଷଗତଂ ରଥମ୍ । ୧୩ ।
ଯେ ହୟାଃ ପୁରୁହୂତସ୍ୟ ପୁରା ଶକ୍ରସ୍ୟ ନଃ ଶ୍ରୁତାଃ ।
ଅନ୍ତରିକ୍ଷଗତା ଦିବ୍ୟାସ୍ତ ଇମେ ହରୟୋ ଧ୍ରୁବମ୍ । ୧୪ ।

---

ଅନେକ ମହାତ୍ମା ତାଙ୍କୁ ପୂଜା କରୁଅଛନ୍ତି ଏବଂ ତାଙ୍କର ରଥ ହରିତବର୍ଣ୍ଣ ଅଶ୍ୱମାନଙ୍କଦ୍ୱାରା ସଂଯୋଜିତ ହୋଇ ଆକାଶରେ ଅବସ୍ଥାନ କରୁଅଛି । ତାହାର ଅଳ୍ପ ଦୂରରେ ରାମ ଦେଖିଲେ ଯେ ବାଳସୂର୍ଯ୍ୟ ସଦୃଶ ଏବଂ ଶ୍ୱେତବର୍ଣ୍ଣ ମେଘତୁଲ୍ୟ ତଥା ଚନ୍ଦ୍ରମଣ୍ଡଳ ସଦୃଶ ଏକ ବିମଳଛତ୍ର ବିଚିତ୍ର ପୁଷ୍ପମାଳାଦ୍ୱାରା ସୁଶୋଭିତ ହୋଇ ରହିଅଛି ଓ ତାଙ୍କର ଚାମର ବ୍ୟଜନ ବହୁମୂଲ୍ୟ ସ୍ୱର୍ଣ୍ଣନିର୍ମିତ ଦଣ୍ଡସମନ୍ୱିତ ହୋଇଅଛି ଏବଂ ଦୁଇଟି ସୁନ୍ଦରୀ ରମଣୀ ଏହି ଚାମର ବ୍ୟଜନ ହସ୍ତରେ, ଧାରଣ କରି ତାଙ୍କ ମସ୍ତକରେ ଆଲୋଡ଼ନ କରୁଅଛନ୍ତି । ବହୁସଂଖ୍ୟକ ଗନ୍ଧର୍ବ ଦେବତା ସିଦ୍ଧ ଓ ପରମ ଋଷିମାନେ ସେହି ଆକାଶରେ ଅବସ୍ଥିତ ଇନ୍ଦ୍ରଦେବଙ୍କୁ ଉତ୍କୃଷ୍ଟ ସ୍ତୁତିଦ୍ୱାରା ସ୍ତବ କରୁଅଛନ୍ତି । ଏପରି ଅବସ୍ଥାରେ ଇନ୍ଦ୍ର ଶରଭଙ୍ଗ ମହର୍ଷିଙ୍କ ସହିତ କଥୋପକଥନ କରୁଅଛନ୍ତି । ୭-୧୧ । ରାମ ସେଠାରେ ଇନ୍ଦ୍ରଙ୍କୁ ଦେଖି ସେହି ରଥକୁ ଲକ୍ଷ୍ମଣଙ୍କୁ ଦେଖାଇଦେଇ କହିଲେ । ୧୨ । "ହେ ଲକ୍ଷ୍ମଣ ! ଦେଖ, ପରମଦୀପ୍ତିମାନ୍, ଶୋଭାସମ୍ପନ୍ନ ଓ ସୂର୍ଯ୍ୟଙ୍କପରି ପ୍ରଭାବିଶିଷ୍ଟ ଏହି ରଥ କିପରି ଆକାଶରେ ଅବସ୍ଥାନ କରିଅଛି । ୧୩ । ପୂର୍ବେ ଶତକ୍ରତୁ ଇନ୍ଦ୍ରଙ୍କର ଯେଉଁସବୁ ଅଶ୍ୱଙ୍କ ବର୍ଣ୍ଣନା ଆମେମାନେ ଶୁଣିଥିଲେଁ, ବର୍ତ୍ତମାନ ଆକାଶରେ ଅବସ୍ଥାନ କରୁଥିବା ଅଶ୍ୱମାନେ

ଇମେ ଚ ପୁରୁଷବ୍ୟାଘ୍ରା ଯେ ତିଷ୍ଠନ୍ତ୍ୟଭିତୋ ରଥମ୍ ।
ଶତଂ ଶତଂ କୁଣ୍ଡଳିନୋ ଯୁବାନଃ ଖଡ୍ଗପାଣୟଃ । ୧୫ ।
ବିସ୍ତୀର୍ଣ୍ଣବିପୁଳୋରସ୍କାଃ ପରିଘାୟତବାହବଃ ।
ଶୋଣାଂଶୁବସନାଃ ସର୍ବେ ବ୍ୟାଘ୍ରା ଇବ ଦୁରାସଦାଃ । ୧୬ ।
ଉରୋଦେଶେଷୁ ସର୍ବେଷାଂ ହାରା ଜ୍ୱଳନସଂନିଭାଃ ।
ରୂପଂ ବିଭ୍ରତି ସୌମିତ୍ରେ ପଞ୍ଚବିଂଶତିବାର୍ଷିକମ୍ । ୧୭ ।
ଏତଦ୍ଧି କିଲ ଦେବାନାଂ ବୟୋ ଭବତି ନିତ୍ୟଦା ।
ଯଥେମେ ପୁରୁଷବ୍ୟାଘ୍ରା ଦୃଶ୍ୟନ୍ତେ ପ୍ରିୟଦର୍ଶନାଃ । ୧୮ ।
ଇହୈବ ସହ ବୈଦେହ୍ୟା ମୁହୂର୍ତ୍ତଂ ତିଷ୍ଠ ଲକ୍ଷ୍ମଣ ।
ଯାବଜ୍ଜାନାମ୍ୟହଂ ବ୍ୟକ୍ତଂ କ ଏଷ ଦ୍ୟୁତିମାନ୍ ରଥେ । ୧୯ ।
ତମେବମୁକ୍ତ୍ୱା ସୌମିତ୍ରିମିହୈବ ସ୍ଥୀୟତାମିତି ।
ଅଭିଚକ୍ରାମ କାକୁତ୍ସ୍ଥଃ ଶରଭଙ୍ଗାଶ୍ରମଂ ପ୍ରତି । ୨୦ ।
ତତଃ ସମଭିଗଚ୍ଛନ୍ତଂ ପ୍ରେକ୍ଷ୍ୟ ରାମଂ ଶଚୀପତିଃ ।
ଶରଭଙ୍ଗମନୁଜ୍ଞାପ୍ୟ ବିବୁଧାନିଦମବ୍ରବୀତ୍ । ୨୧ ।

---

ନିଷ୍ଟୟ ସେହି ଅଶ୍ୱ ହେବେ । ୧୪ । ଏହି ରଥର ଉଭୟ ପାର୍ଶ୍ୱରେ ଯେଉଁ ଶ୍ରେଷ୍ଠ ପୁରୁଷମାନେ ଶତ ଶତ ସଂଖ୍ୟାରେ ଠିଆହୋଇ ରହିଛନ୍ତି ସେମାନେ ସମସ୍ତେ ଯୁବକ, କୁଣ୍ଡଳଧାରୀ ଓ ହସ୍ତରେ ଖଡ୍ଗ ଧାରଣ କରିଅଛନ୍ତି । ୧୫ । ସେସମସ୍ତଙ୍କର ବକ୍ଷସ୍ଥଳ ଅତିଶୟ ବିଶାଳ, ବାହୁ ଅର୍ଗଳ ସଦୃଶ ଦୀର୍ଘ, ପରିଧେୟ ବସ୍ତ୍ର ରକ୍ତବର୍ଣ୍ଣ, ଏବଂ ସେମାନେ ସମସ୍ତେ ବ୍ୟାଘ୍ର ସଦୃଶ ଦୁର୍ଦ୍ଧର୍ଷ ଅଟନ୍ତି । ୧୬ । ସେମାନଙ୍କର ସମସ୍ତଙ୍କ ବକ୍ଷସ୍ଥଳରେ ଅଗ୍ନି ସଦୃଶ ଦୀପ୍ତିମନ୍ତ ହାର ସବୁ ଶୋଭା ପାଉଅଛି । ହେ ସୌମିତ୍ରେ ! ଏମାନେ ସମସ୍ତେ ପଞ୍ଚବିଂଶତିବର୍ଷୀୟ ପୁରୁଷର ରୂପ ଧାରଣ କରିଅଛନ୍ତି । ୧୭ । ଏହିସବୁ ପୁରୁଷଶ୍ରେଷ୍ଠମାନେ ଯେପରି ପ୍ରିୟଦର୍ଶନ ହୋଇଛନ୍ତି, ଦେବତାମାନଙ୍କରହିଁ ସଚରାଚର ଏପରି ବୟସ ଦେଖାଯାଇଥାଏ । ।୦୧୮ । ହେ ଲକ୍ଷ୍ମଣ ! ତୁମେ ବୈଦେହୀଙ୍କ ସହିତ କ୍ଷଣକାଳ ଏହିଠାରେ ଅପେକ୍ଷା କରିରହ । ମୁଁ ଏ ମଧ୍ୟରେ ଯାଇ ଭଲକରି ଜାଣି ଆସେଁ, ଏହି ରଥରେ ଯେଉଁ ଦୀପ୍ତିମାନ ତେଜସ୍ୱୀ ପୁରୁଷ ବସିଛନ୍ତି ସେ କିଏ । ୧୯ । ରାମ ଲକ୍ଷ୍ମଣଙ୍କୁ "ଏହିଠାରେ ଥାଅ" ବୋଲି କହିଦେଇ ଶରଭଙ୍ଗଙ୍କ ଆଶ୍ରମଆଡ଼କୁ ଅଗ୍ରସର ହେଲେ । ୨୦ । ଅନନ୍ତର ଇନ୍ଦ୍ର ରାମଙ୍କୁ ସେ ଆଡ଼କୁ ଆସୁଥିବାର ଦେଖି ଓ ଶରଭଙ୍ଗଙ୍କଠାରୁ ବିଦାୟ ନେଇସାରି ଦେବତାମାନଙ୍କୁ କହିଲେ । ୨୧ । "ହୋଇଟି ରାମ ଏଣିକି ଆସୁଛନ୍ତି, ସେ

ଇହୋପୟାତ୍ୟସୌ ରାମୋ ଯାବନ୍ନାଂ ନାଭିଭାଷତେ ।
ନିଷ୍ଠାଂ ନୟତୁ ତାବତ୍ତୁ ତତୋ ମାଂ ଦ୍ରଷ୍ଟୁମର୍ହତି ।୨୨।
ଜିତବନ୍ତଂ କୃତାର୍ଥଂ ଚ ଦ୍ରଷ୍ଟାହମଚିରାଦିମମ୍ ।
କର୍ମ ହ୍ୟନେନ କର୍ତ୍ତବ୍ୟଂ ମହଦନ୍ୟୈଃ ସୁଦୁଷ୍କରମ୍ । ୨୩ ।
ନିଷ୍ପାଦୟିତ୍ୱା ତତ୍କର୍ମ ତତୋ ମାଂ ଦ୍ରଷ୍ଟୁମର୍ହତି ।
ଅଥ ବଜ୍ରୀ ତମାମନ୍ତ୍ୟ ମାନୟିତ୍ୱା ଚ ତାପସମ୍ । ୨୪ ।
ରଥେନ ହରିଯୁକ୍ତେନ ଯଯୌ ଦିବମରିନ୍ଦମଃ ।
ପ୍ରୟାତେ ତୁ ସହସ୍ରାକ୍ଷେ ରାଘବଃ ସପରିଚ୍ଛଦେ । ୨୫ ।
ଅଗ୍ନିହୋତ୍ରମୁପାସୀନଂ ଶରଭଙ୍ଗମୁପାଗମତ୍ ।
ତସ୍ୟ ପାଦୌ ଚ ସଂଗୃହ୍ୟ ରାମଃ ସୀତା ଚ ଲକ୍ଷ୍ମଣଃ । ୨୬ ।
ନିଷେଦୁଃ ସମନୁଜ୍ଞାତା ଲବ୍ଧବାସା ନିମନ୍ତ୍ରିତାଃ ।
ତତଃ ଶକ୍ରୋପୟାନଂ ତୁ ପର୍ଯ୍ୟପୃଚ୍ଛତ୍ସ ରାଘବଃ । ୨୭ ।
ଶରଭଙ୍ଗଶ୍ଚ ତତ୍ସର୍ବଂ ରାଘବାୟ ନ୍ୟବେଦୟତ୍ ।
ମାମେଷ ବରଦୋ ରାମ ବ୍ରହ୍ମଲୋକଂ ନିନୀଷତି । ୨୮ ।

---

ମୋସଙ୍ଗରେ ଆଳାପ କରିବାପୂର୍ବରୁ ତୁମେମାନେ ମୋତେ ଅନ୍ତର୍ହିତ କରିନିଅ । ସେ ପରେ ମୋର ସାକ୍ଷାତ ପାଇବେ । ୨୨। ଏହାଙ୍କଦ୍ୱାରା ଅତି ଦୁଷ୍କର ମହତ୍ କର୍ମ ସମ୍ପାଦିତ ହେବାକୁ ଅଛି । ସେ ଶତ୍ରୁ ଜୟ କରି କୃତକାର୍ଯ୍ୟ ହେବା ପରେ ମୁଁ ଅଚିରାତ୍ ତାଙ୍କୁ ଦେଖାଦେବି । ୨୩। ସେ ସେ କାର୍ଯ୍ୟ ସମ୍ପାଦନ କରିସାରିବା ଉତ୍ତାରୁ ମୋ ସହିତ ସାକ୍ଷାତ କରିବା ଉଚିତ ।" ଅନନ୍ତର ଶତ୍ରୁଦମନ ଇନ୍ଦ୍ର ତପସ୍ୱୀ ଶରଭଙ୍ଗଙ୍କୁ ସମ୍ମାନ କରି ଓ ତାଙ୍କଠାରୁ ବିଦାୟ ନେଇ ଅଶ୍ୱଯୁକ୍ତ ରଥରେ ବସି ସ୍ୱର୍ଗକୁ ଗମନକଲେ । ଇନ୍ଦ୍ର ସମଗ୍ର ଅନୁଚରବର୍ଗଙ୍କ ସେହି ଚାଲିଯିବାଉତ୍ତାରୁ ରାମ ଅଗ୍ନିହୋତ୍ର ଯଜ୍ଞଶାଳାରେ ବସିଥିବା ଶରଭଙ୍ଗଙ୍କ ନିକଟରେ ଯାଇ ଉପସ୍ଥିତ ହେଲେ । ରାମ, ଲକ୍ଷ୍ମଣ ଓ ସୀତା ସମସ୍ତେ ତାଙ୍କ ପଦଦ୍ୱୟ ବନ୍ଦନା କରିବାପରେ ଏବଂ ସେ ସେମାନଙ୍କୁ ବାସସ୍ଥାନ ପ୍ରଦାନ ଓ ଭୋଜନାଦି ନିମନ୍ତେ ନିମନ୍ତ୍ରଣ କରି ସେଠାରେ ବସିବାକୁ ଆଦେଶ ଦେବାପରେ ସେମାନେ ସେଠାରେ ଉପବିଷ୍ଟ ହେଲେ । ଅନନ୍ତର ରାମ ତାଙ୍କୁ ଇନ୍ଦ୍ରଙ୍କ ଆଗମନ ବିଷୟରେ ପଚାରିଲେ । । ୨୪-୨୭ । ଶରଭଙ୍ଗ ସେସମସ୍ତ କଥା ରାମଙ୍କୁ ଜଣାଇଦେଲେ । ସେ କହିଲେ, "ହେ ରାମ ! ଇନ୍ଦ୍ର ମୋ ପ୍ରତି ବରଦ ହୋଇ ମୋତେ ବ୍ରହ୍ମଲୋକକୁ ନେବାକୁ ଇଚ୍ଛାକରନ୍ତି । ୨୮। ମୁଁ ଉଗ୍ରତପସ୍ୟାବଳରେ ଅଜିତେନ୍ଦ୍ରିୟ ଲୋକମାନଙ୍କ-

ଜିତମୁଗ୍ରେଣ ତପସା ଦୁଷ୍ପ୍ରାପମକୃତାତ୍ମଭିଃ ।
ଅହଂ ଜ୍ଞାତ୍ୱା ନରବ୍ୟାଘ୍ର ବର୍ତ୍ତମାନମଦୂରତଃ । ୨୯ ।
ବ୍ରହ୍ମଲୋକଂ ନ ଗଚ୍ଛାମି ତ୍ୱାମଦୃଷ୍ଟ୍ୱା ପ୍ରିୟାତିଥିମ୍ ।
ତ୍ୱୟାହଂ ପୁରୁଷବ୍ୟାଘ୍ର ଧାର୍ମିକେଣ ମହାତ୍ମନା । ୩୦ ।
ସମାଗମ୍ୟ ଗମିଷ୍ୟାମି ତ୍ରିଦିବଂ ଦେବସେବିତମ୍ ।
ଅକ୍ଷୟା ନରଶାର୍ଦ୍ଦୂଳ ମୟା ଲୋକା ଜିତାଃ ଶୁଭାଃ । ୩୧ ।
ବ୍ରାହ୍ମ୍ୟାଶ୍ଚ ନାକପୃଷ୍ଠ୍ୟାଶ୍ଚ ପ୍ରତିଗୃହ୍ଣୀଷ୍ୱ ମାମକାନ୍ ।
ଏବମୁକ୍ତୋ ନରବ୍ୟାଘ୍ରଃ ସର୍ବଶାସ୍ତ୍ରବିଶାରଦଃ । ୩୨ ।
ଋଷିଣା ଶରଭଙ୍ଗେଣ ରାଘବୋ ବାକ୍ୟମବ୍ରବୀତ୍ ।
ଅହମେବାହରିଷ୍ୟାମି ସର୍ବଲୋକାନ୍ ମହାମୁନେ । ୩୩ ।
ଆବାସଂ ତ୍ୱହମିଚ୍ଛାମି ପ୍ରଦିଷ୍ଟମିହ କାନନେ ।
ରାଘବେଣୈବମୁକ୍ତସ୍ତୁ ଶକ୍ରତୁଲ୍ୟବଲେନ ବୈ । ୩୪ ।
ଶରଭଙ୍ଗୋ ମହାପ୍ରାଜ୍ଞଃ ପୁନରେବାବ୍ରବୀଦ୍ୱଚଃ ।
ଇହ ରାମ ମହାତେଜାଃ ସୁତୀକ୍ଷ୍ଣୋ ନାମ ଧାର୍ମିକଃ । ୩୫ ।

---

ଦ୍ୱାରା ଦୁଷ୍ପ୍ରାପ୍ୟ ବ୍ରହ୍ମଲୋକ ଜୟ କରିଅଛି; କିନ୍ତୁ ହେ ନରବ୍ୟାଘ୍ର ! ତୁମେ ଅତି ନିକଟରେ ଅବସ୍ଥାନ କରୁଥିବା ଜାଣିପାରି ପ୍ରିୟ ଅତିଥି ତୁମକୁ ନ ଦେଖି ମୁଁ ବ୍ରହ୍ମଲୋକକୁ ଯାଇନାହିଁ । ହେ ନରଶ୍ରେଷ୍ଠ ! ତୁମେ ଧାର୍ମିକ ଓ ମହାତ୍ମା ଅଟ, ସୁତରାଂ ତୁମ ସହିତ ସମ୍ମିଳିତ ହେବା ପରେ ମୁଁ ଦେବତାମାନଙ୍କଦ୍ୱାରା ଅଧ୍ୟୁଷିତ ସ୍ୱର୍ଗଲୋକକୁ ଗମନ କରିବି । ହେ ନରଶ୍ରେଷ୍ଠ ! ମୁଁ ସ୍ୱର୍ଗ ଓ ବ୍ରହ୍ମଲୋକ ପ୍ରଭୃତି ଅକ୍ଷୟ ଶୁଭଲୋକସକଳ ଜୟ କରିଅଛି । ମୋର ସେହି ସମସ୍ତ ଲୋକ ତୁମକୁ ପ୍ରଦାନ କରୁଅଛି; ତାହା ତୁମେ ଗ୍ରହଣକର ।” ଶରଭଙ୍ଗ ଏହିପରି କହିବାରୁ ସର୍ବଶାସ୍ତ୍ର-ବିଶାରଦ ପୁରୁଷଶ୍ରେଷ୍ଠ ରାମ ତାଙ୍କୁ କହିଲେ, “ହେ ମହାମୁନେ ! ମୁଁ ନିଜେହିଁ ମୋର କାର୍ଯ୍ୟଦ୍ୱାରା ପରେ ସମସ୍ତ ଲୋକ ଅର୍ଜନ କରିବି । ୨୯-୩୩ ।

ବର୍ତ୍ତମାନ ଏହି ଅରଣ୍ୟରେ ଆପଣଙ୍କ କର୍ତ୍ତୃକ ଆଦିଷ୍ଟ ହୋଇ କୌଣସି ବାସସ୍ଥାନ ପାଇବାକୁ ଇଚ୍ଛା କରୁଅଛି ।”ଇନ୍ଦ୍ରତୁଲ୍ୟ ବଳଶାଳୀ ରାମ ଏହିପ୍ରକାର କହିବାଉତ୍ତାରୁ ମହାପ୍ରାଜ୍ଞ ଶରଭଙ୍ଗ ପୁନର୍ବାର କହିଲେ, “ହେ ରାମ ! ଏହି ବନରେ ସୁତୀକ୍ଷ୍ଣ ନାମରେ ଜଣେ ପରମତେଜସ୍ୱୀ ଧାର୍ମିକ ତପସ୍ୱୀ ବାସ କରନ୍ତି । ସେ ତୁମ୍ଭର

ବସତ୍ୟରଣ୍ୟେ ଧର୍ମାତ୍ମା ସ ତେ ବାସଂ ବିଧାସ୍ୟତି ।
ସୁତୀକ୍ଷ୍ଣମଭିଗଚ୍ଛ ତ୍ୱଂ ଶୁଚୌ ଦେଶେ ତପସ୍ୱିନମ୍ । ୩୬ ।
ରମଣୀୟେ ବନୋଦ୍ଦେଶେ ସ ତେ ବାସଂ ବିଧାସ୍ୟତି ।
ଇମାଂ ମନ୍ଦାକିନୀଂ ରାମ ପ୍ରତିସ୍ରୋତାମନୁବ୍ରଜ । ୩୭ ।
ନଦୀଂ ପୁଷ୍ପୋଡୁପବହାଂ ତତ ତତ୍ର ଗମିଷ୍ୟସି ।
ଏଷ ପନ୍ଥା ନରବ୍ୟାଘ୍ର ମୁହୂର୍ତ୍ତଂ ପଶ୍ୟ ତାତ ମାମ୍ । ୩୮ ।
ଯାବଜ୍ଜହାମି ଗାତ୍ରାଣି ଜୀର୍ଣ୍ଣାଂ ତ୍ୱଚମିବୋରଗଃ ।
ତତୋଽଗ୍ନିଂ ସୁସମାଧାୟ ହୁତ୍ୱା ଚାଜ୍ୟେନ ମନ୍ତ୍ରବତ୍ । ୩୯।
ଶରଭଙ୍ଗୋ ମହାତେଜାଃ ପ୍ରବିବେଶ ହୁତାଶନମ୍ ।
ତସ୍ୟ ରୋମାଣି କେଶାଂଶ୍ଚ ଦଦାହାଗ୍ନିର୍ମହାତ୍ମନଃ । ୪୦ ।
ଜୀର୍ଣ୍ଣାଂ ତ୍ୱଚଂ ତଥାସ୍ଥୀନି ଯଚ୍ଚ ମାଂସଂ ସଶୋଣିତମ୍ ।
ରାମସ୍ତୁ ବିସ୍ମିତୋ ଭ୍ରାତ୍ରା ଭାର୍ଯ୍ୟୟା ଚ ସହାତ୍ମବାନ୍ । ୪୧ ।
ସ ଚ ପାବକସଂକାଶଃ କୁମାରଃ ସମପଦ୍ୟତ ।
ଉତ୍ଥାୟାଗ୍ନିଚୟାତ୍ତସ୍ମାଚ୍ଛରଭଙ୍ଗୋ ବ୍ୟରୋଚତ । ୪୨ ।

---

ବାସସ୍ଥାନର ବ୍ୟବସ୍ଥା କରିଦେବେ । ତୁମେ ସେହି ପବିତ୍ର ସ୍ଥାନରେ ଥିବା ତପସ୍ୱୀ ସୁତୀକ୍ଷ୍ଣଙ୍କ ନିକଟକୁ ଯାଅ । ସେହି ରମଣୀୟ ବନପ୍ରଦେଶରେ ସେ ତୁମ ବାସସ୍ଥାନର ବିଧାନ କରିବେ । ଏହି ଯେ ପୁଷ୍ପଭେଳାସୁଶୋଭିତା ମନ୍ଦାକିନୀ ନଦୀ ପୂର୍ବାଭିମୁଖରେ ପ୍ରବାହିତ ହେଉଅଛି, ତୁମେ ତାହାର ସ୍ରୋତର ବିପରୀତ ଅଭିମୁଖରେ ଅନୁଗମନ କଲେ ସେହି ସ୍ଥାନରେ ଯାଇ ଉପସ୍ଥିତ ହେବ । ହେ ପୁରୁଷସିଂହ ! ସେଠାକୁ ଏହି ବାଟ ପଡ଼ିଅଛି । ହେ ବତ୍ସ ! ସର୍ପ ନିଜର ପୁରାତନ କାତି ଛାଡ଼ିଦେଲା ପରି ମୁଁ ବର୍ତ୍ତମାନ ମୋର ଏ ଶରୀର ତ୍ୟାଗ କରିବି । ତୁମେ ମୁହୂର୍ତ୍ତେ ଏଠାରେ ରହି ଦେଖ ।” ଅନନ୍ତର ମନ୍ତ୍ରଜ୍ଞ ମହାତେଜା ଶରଭଙ୍ଗ ଅଗ୍ନି-ସଂସ୍ଥାପନ କରି ଏବଂ ସେଥିରେ ଘୃତ ଆହୁତି ଦେଇ ସେହି ଅଗ୍ନିରେ ପ୍ରବେଶ କଲେ । ଅଗ୍ନି ସେହି ମହାତ୍ମାଙ୍କର ଲୋମ, କେଶ, ଜୀର୍ଣ୍ଣ ତ୍ୱକ, ଅସ୍ଥି, ମାଂସ ଓ ଶୋଣିତ ଦଗ୍ଧ କରିଦେଲେ । ଆତ୍ମବାନ୍ ରାମ ଭାର୍ଯ୍ୟା ଓ ଭାଇଙ୍କ ସହିତ ବିସ୍ମିତ ହୋଇ ଦେଖିଲେ ଯେ ସେହି ଶରଭଙ୍ଗ ଅଗ୍ନିସ୍ତୂପମଧ୍ୟରୁ ଅଗ୍ନିସଦୃଶ କୁମାର ରୂପେ ସମୁଦ୍ଭୂତ ହୋଇ ଶୋଭା ପାଇଲେ । ୩୩-୪୨ । ଅନନ୍ତର ସେ ଆହିତାଗ୍ନିମାନଙ୍କର, ମହାତ୍ମା ଋଷିମାନଙ୍କର ଓ ଦେବଗଣଙ୍କର ଲୋକସମୂହ

ସ ଲୋକାନାହିତାଗ୍ନୀନାମୃଷୀଣାଂ ଭାବିତାତ୍ମନାମ୍ ।
ଦେବାନାଂ ଚ ବ୍ୟତିକ୍ରମ୍ୟ ବ୍ରହ୍ମଲୋକଂ ବ୍ୟରୋହତ । ୪୩ ।
ସ ପୁଣ୍ୟକର୍ମା ଭବନେ ଦ୍ୱିଜର୍ଷଭଃ
ପିତାମହଂ ସାନୁଚରଂ ଦଦର୍ଶ ହ ।
ପିତାମହଶ୍ଚାପି ସମୀକ୍ଷ୍ୟ ତଂ ଦ୍ୱିଜମ୍
ନନନ୍ଦ ସୁସ୍ୱାଗତମିତ୍ୟୁବାଚ ହ । ୪୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ଶରଭଙ୍ଗବ୍ରହ୍ମଲୋକପ୍ରସ୍ଥାନମ୍
ନାମ ପଞ୍ଚମଃ ସର୍ଗଃ

---

ଅତିକ୍ରମ କରି ବ୍ରହ୍ମଲୋକକୁ ଆରୋହଣ କଲେ । ୪୩ । ସେହି ପୁଣ୍ୟକର୍ମା ଦ୍ୱିଜଶ୍ରେଷ୍ଠ ଶରଭଙ୍ଗ ଋଷି ଅନୁଚରପରିବେଷ୍ଟିତ ପିତାମହ ବ୍ରହ୍ମାଙ୍କୁ ସେଠାରେ ଦର୍ଶନ କଲେ । ବ୍ରହ୍ମା ମଧ୍ୟ ସେହି ଦ୍ୱିଜଙ୍କୁ ଦର୍ଶନ କରି ଆନନ୍ଦିତ ହେଲେ ଏବଂ ତାଙ୍କୁ ସ୍ୱାଗତ ସମ୍ଭାଷଣ କଲେ । ୪୪ ।

# ଷଷ୍ଠଃ ସର୍ଗଃ

## ରକ୍ଷୋବଧପ୍ରତିଜ୍ଞାନମ୍

ଶରଭଙ୍ଗେ ଦିବଂ ଯାତେ ମୁନିସଂଘାଃ ସମାଗତାଃ ।
ଅଭ୍ୟଗଚ୍ଛନ୍ତ କାକୁତ୍‌ସ୍ଥଂ ରାମଂ ଜ୍ୱଳିତତେଜସମ୍ । ୧ ।
ବୈଖାନସା ବାଲଖିଲ୍ୟାଃ ସଂପ୍ରକ୍ଷାଲା ମରୀଚିପାଃ ।
ଅଶ୍ମକୁଟ୍ଟାଶ୍ଚ ବହବଃ ପତ୍ରାହାରାଶ୍ଚ ତାପସାଃ । ୨ ।
ଦନ୍ତୋଲୂଖଲିନଶ୍ଚୈବ ତଥୈବୋନ୍ମଜ୍ଜକାଃ ପରେ ।
ଗାତ୍ରଶଯ୍ୟା ଅଶଯ୍ୟାଶ୍ଚ ତଥୈବାନବକାଶିକାଃ । ୩ ।
ମୁନୟଃ ସଲିଲାହାରା ବାୟୁଭକ୍ଷାସ୍ତଥାପରେ ।
ଆକାଶନିଲୟାଶ୍ଚୈବ ତଥା ସ୍ଥଣ୍ଡିଲଶାୟିନଃ । ୪ ।
ତଥୋର୍ଦ୍ଧ୍ୱବାସିନୋ ଦାନ୍ତାସ୍ତଥାଦ୍ରପଟବାସସଃ ।
ସଜପାଶ୍ଚ ତପୋନିତ୍ୟାସ୍ତଥା ପଞ୍ଚତପୋଽନ୍ୱିତାଃ । ୫ ।
ସର୍ବେ ବ୍ରାହ୍ମ୍ୟା ଶ୍ରିୟା ଜୁଷ୍ଟା ଦୃଢ଼ଯୋଗାଃ ସମାହିତାଃ ।
ଶରଭଙ୍ଗାଶ୍ରମେ ରାମମଭିଜଗ୍ମୁଶ୍ଚ ତାପସାଃ । ୬ ।

---

# ୬ଷ୍ଠ ସର୍ଗ

## ( ରାକ୍ଷସମାନଙ୍କୁ ବଧକରିବାର ପ୍ରତିଜ୍ଞା )

ଶରଭଙ୍ଗ ବ୍ରହ୍ମଲୋକକୁ ଗମନ କରିବାଉତ୍ତାରୁ ବିଭିନ୍ନ ମୁନିଗୋଷ୍ଠୀ ସମସ୍ତେ ସମାଗତ ହୋଇ ଜ୍ୱଳିତତେଜା କାକୁସ୍ଥ ରାମଙ୍କର ଶରଣାପନ୍ନ ହେଲେ । ୧ । ବୈଖାନସ, ବାଲଖିଲ୍ୟ, ସଂପ୍ରକ୍ଷାଳ, ମରୀଚପ, ଅଶ୍ମକୁଟ୍ଟ, ପତ୍ରାହାରୀ, ଦନ୍ତୋଲୂଖଳୀ, ଉନ୍ମଜ୍ଜକ, ଗାତ୍ରଶଯ୍ୟ, ଅଶଯ୍ୟ, ଅନବକାଶିକ, ଜଳାହାରୀ, ବାୟୁଭୋଗୀ, ଆକାଶ-ନିଳୟ, ସ୍ଥଣ୍ଡିଳଶାୟୀ, ଉର୍ଦ୍ଧ୍ୱବାହୁ, ଦାନ୍ତ, ଆଦ୍ରବସ୍ତ୍ରଧାରୀ, ସଜପା ଏବଂ ପଞ୍ଚତପା ଋଷିମାନେ ସମସ୍ତେ ଶରଭଙ୍ଗଙ୍କ ଆଶ୍ରମକୁ ଆସି ରାମଙ୍କର ଶରଣ ଗ୍ରହଣ କଲେ । ଏମାନେ ସମସ୍ତେ ବ୍ରହ୍ମଣ୍ୟଶ୍ରୀସମ୍ପନ୍ନ ଏବଂ ଯୋଗନିଷ୍ଠରତ ଥିଲେ । ୨-୬ ।

---

* ବୈଖାନସ—ନଖଲୋମଧାରୀ ମୁନିସଂପ୍ରଦାୟ । ବାଲଖିଲ୍ୟ—ବାମନ । ସଂପ୍ରକ୍ଷାଳ—ଭଗବାନଙ୍କର ପାଦୋଦକରୁ ଉତ୍ପନ୍ନ ଋଷିଗଣ । ମରୀଚପ—ସୂର୍ଯ୍ୟ, ଚନ୍ଦ୍ରଙ୍କ କିରଣପାୟୀ । ଅଶ୍ମକୁଟ୍ଟ—ପ୍ରସ୍ତର ଦ୍ୱାରା ଧାନ ପ୍ରଭୃତି କୁଟି ଯେଉଁମାନେ

ଅଭିଗମ୍ୟ ଚ ଧର୍ମଜ୍ଞା ରାମଂ ଧର୍ମଭୃତାଂ ବରମ୍ ।
ଊଚୁଃ ପରମଧର୍ମଜ୍ଞମୃଷିସଙ୍ଘାଃ ସମାହୃତାଃ । ୭ ।
ତ୍ୱମିକ୍ଷ୍ୱାକୁକୁଳସ୍ୟାସ୍ୟ ପୃଥିବ୍ୟାଶ୍ଚ ମହାରଥ ।
ପ୍ରଧାନଶ୍ଚାସି ନାଥଶ୍ଚ ଦେବାନାଂ ମଘବାନିବ । ୮ ।
ବିଶ୍ରୁତସ୍ତ୍ରିଷୁ ଲୋକେଷୁ ଯଶସା ବିକ୍ରମେଣ ଚ ।
ପିତୃବ୍ରତତ୍ୱଂ ସତ୍ୟଂ ଚ ତ୍ୱୟି ଧର୍ମଶ୍ଚ ପୁଷ୍କଳଃ । ୯ ।
ତ୍ୱାମାସାଦ୍ୟ ମହାତ୍ମାନଂ ଧର୍ମଜ୍ଞଂ ଧର୍ମବତ୍ସଳମ୍ ।
ଅର୍ଥିତ୍ୱାନ୍ନାଥ ବକ୍ଷ୍ୟାମସ୍ତଚ୍ଚ ନଃ କ୍ଷନ୍ତୁମର୍ହସି । ୧୦ ।
ଅଧର୍ମସ୍ତୁ ମହାଂସ୍ତାତ ଭବେତ୍ତସ୍ୟ ମହୀପତେଃ ।
ଯୋ ହରେଦ୍ ବଳିଷଡ୍ ଭାଗଂ ନ ଚ ରକ୍ଷତି ପୁତ୍ରବତ୍ । ୧୧ ।
ଯୁଞ୍ଜାନଃ ସ୍ୱାନିବ ପ୍ରାଣାନ୍ ପ୍ରାଣୈରିଷ୍ଟାନ୍ ସୁତାନିବ ।
ନିତ୍ୟଯୁକ୍ତଃ ସଦା ରକ୍ଷନ୍ ସର୍ବାନ୍ ବିଷୟବାସିନଃ । ୧୨ ।

---

ଏହି ଧର୍ମଜ୍ଞ ଋଷିମାନେ ସମସ୍ତେ ସମବେତ ହୋଇ ଧାର୍ମିକଶ୍ରେଷ୍ଠ ରାମଙ୍କ ନିକଟକୁ ଆସି କହିଲେ । ୭ । "ହେ ମହାରଥ ! ଇନ୍ଦ୍ର ଯେପରି ଦେବତାମାନଙ୍କର ପ୍ରଭୁ ଅଟନ୍ତି, ତୁମେ ସେହିପରି ଇକ୍ଷ୍ୱାକୁବଂଶର ଏବଂ ଏହି ସମଗ୍ର ପୃଥିବୀର ପ୍ରଧାନ ଓ ପ୍ରଭୁ ଅଟ । ୮ । ତୁମେ ଯଶ ଏବଂ ବିକ୍ରମରେ ତିନି ଲୋକରେ ବିଖ୍ୟାତ ହୋଇଅଛ । ତୁମଠାରେ ପିତୃସତ୍ୟପାଳନବ୍ରତ ଏବଂ ସତ୍ୟଧର୍ମ ପ୍ରଭୂତ-ଭାବରେ ପ୍ରତିଷ୍ଠିତ ହୋଇ ରହିଅଛି । ୯ । ତୁମେ ମହାତ୍ମା ଧର୍ମଜ୍ଞ ଏବଂ ଧର୍ମବତ୍ସଳ ଅଟ । ଅତଏବ ହେ ନାଥ ! ଆମେମାନେ ପ୍ରାର୍ଥୀ ହୋଇ ତୁମ ନିକଟରେ ଯାହା କହିବୁ, ସେଥିପାଇଁ ତୁମେ ଆମମାନଙ୍କୁ କ୍ଷମା କରିବା ଉଚିତ । ୧୦ । ହେ ତାତ ! ଯେଉଁ ରାଜା ବଳିର ଷଷ୍ଠାଂଶ ଗ୍ରହଣ କରନ୍ତି, ମାତ୍ର ପ୍ରଜାମାନଙ୍କୁ ପୁତ୍ରବତ୍ ପ୍ରତିପାଳନ ନ କରନ୍ତି ତାଙ୍କର ମହାନ୍ ଅଧର୍ମ ହୁଏ । ୧୧ । ହେ ରାମ ! ସତତ ଯତ୍ନପରାୟଣ ଓ ସାବଧାନ ହୋଇ ଯେ ନିଜ ରାଜ୍ୟବାସୀ ପ୍ରଜାମାନଙ୍କୁ ନିଜର ପ୍ରାଣପରି ଅଥବା ପ୍ରାଣଠାରୁ ଅଧିକ ପ୍ରିୟପୁତ୍ର ପରି ସର୍ବଦା ରକ୍ଷା କରନ୍ତି

---

ଜୀବନ ନିର୍ବାହ କରନ୍ତି । ଦନ୍ତୋଲୂଖଳୀ—ଦାନ୍ତ ସାହାଯ୍ୟରେ ଯେଉଁମାନେ ଧାନ ପ୍ରଭୃତି ଶସ୍ୟର ଖୋଳ ଛଡ଼ାନ୍ତି । ଉନ୍ମଜ୍ଜକ—ପାଣିରେ ବୁଡ଼ିରହି ଯେଉଁମାନେ ତପସ୍ୟା କରନ୍ତି । ଅନବକାଶିକ—ସବୁ ଋତୁରେ ଯେଉଁମାନେ ଅନାବୃତ ସ୍ଥାନରେ ଥାନ୍ତି ।

ପ୍ରାପ୍ନୋତି ଶାଶ୍ୱତୀଂ ରାମ କୀର୍ତ୍ତିଂ ସ ବହୁବାର୍ଷିକୀମ୍ ।
ବ୍ରହ୍ମଣଃ ସ୍ଥାନମାସାଦ୍ୟ ତତ୍ର ଚାପି ମହୀୟତେ । ୧୩ ।
ଯତ୍କରୋତି ପରଂ ଧର୍ମଂ ମୁନିର୍ମୂଲଫଲାଶନଃ ।
ତତ୍ର ରାଜ୍ଞଶ୍ଚତୁର୍ଭାଗଃ ପ୍ରଜା ଧର୍ମେଣ ରକ୍ଷତଃ । ୧୪ ।
ସୋଽୟଂ ବ୍ରାହ୍ମଣଭୂୟିଷ୍ଠୋ ବାନପ୍ରସ୍ଥଗଣୋ ମହାନ୍ ।
ତ୍ୱନ୍ନାଥୋଽନାଥବଦ୍ରାମ ରାକ୍ଷସୈର୍ବଧ୍ୟତେ ଭୃଶମ୍ । ୧୫ ।
ଏହି ପଶ୍ୟ ଶରୀରାଣି ମୁନୀନାଂ ଭାବିତାତ୍ମନାମ୍ ।
ହତାନାଂ ରାକ୍ଷସୈର୍ଘୋରୈର୍ବହୂନାଂ ବହୁଧା ବନେ । ୧୬ ।
ପମ୍ପାନଦୀନିବାସାନାମନୁମନ୍ଦାକିନୀମପି ।
ଚିତ୍ରକୂଟାଳୟାନାଂ ଚ କ୍ରିୟତେ କଦନଂ ମହତ୍ । ୧୭ ।
ଏବଂ ବୟଂ ନ ମୃଷ୍ୟାମୋ ବିପ୍ରକାରଂ ତପସ୍ୱିନାମ୍ ।
କ୍ରିୟମାଣଂ ବନେ ଘୋରଂ ରକ୍ଷୋଭିର୍ଭୀମକର୍ମଭିଃ । ୧୮ ।

---

ସେହି ରାଜା ଇହଲୋକରେ ବହୁବର୍ଷବ୍ୟାପୀ ଚିରସ୍ଥାୟୀ କୀର୍ତ୍ତି ଲାଭ କରନ୍ତି ଏବଂ ଶେଷରେ ବ୍ରହ୍ମଲୋକରେ ମହତ୍ତ୍ୱ ଲାଭକରନ୍ତି ।୧୨-୧୩। ମୁନିମାନେ ଫଳ ମୂଳ ଭକ୍ଷଣ କରି ଯେଉଁ ଶ୍ରେଷ୍ଠ ଧର୍ମ ଅର୍ଜନ କରନ୍ତି,ତାହାର ଚାରି ଭାଗରୁ ଭାଗେ ଧର୍ମ ଅନୁସାରେ ପ୍ରଜାମାନଙ୍କୁ ରକ୍ଷା କରୁଥିବା ରାଜା ପାଇଥାନ୍ତି । ୧୪ । ଏହି ଯେଉଁ ମହାବାନପ୍ରସ୍ଥ ଋଷିମାନେ ଏଠାକୁ ଆସିଛନ୍ତି, ସେମାନଙ୍କ ମଧ୍ୟରେ ବ୍ରାହ୍ମଣଙ୍କର ସଂଖ୍ୟାହିଁ ବେଶି । ସେମାନେ ତୁମକୁ ରକ୍ଷକରୂପେ ପାଇ ମଧ୍ୟ ଏକାନ୍ତ ଅନାଥଙ୍କ ପରି ରାକ୍ଷସମାନଙ୍କଦ୍ୱାରା ବିଶେଷଭାବରେ ନିହତ ହେଉଅଛନ୍ତି । ୧୫ । ତୁମେ ଆସ, ଦେଖ, ଏ ବନରେ କିପରି ଭୀଷଣ ରାକ୍ଷସମାନଙ୍କଦ୍ୱାରା ନିହତ ବହୁସଂଖ୍ୟକ ବିଶୁଦ୍ଧଚିତ୍ତ ମୁନିମାନଙ୍କର ଶରୀର ସବୁ ପଡ଼ିରହିଛି । ୧୬ । ପମ୍ପା ନଦୀ ଓ ମନ୍ଦାକିନୀ ନଦୀର ତୀରବାସୀ ଏବଂ ଚିତ୍ରକୂଟନିବାସୀ ବହୁସଂଖ୍ୟକ ମୁନି ଏହି ରାକ୍ଷସମାନଙ୍କଦ୍ୱାରା ବିଶେଷଭାବରେ ନିପୀଡ଼ିତ ହେଉଅଛନ୍ତି ।୧୭। ଏହି ନିବିଡ଼ ଅରଣ୍ୟରେ ଘୋରକର୍ମା ରାକ୍ଷସମାନଙ୍କଦ୍ୱାରା ତପସ୍ୱୀମାନଙ୍କ ପ୍ରତି କରାହେଉଥିବା ଏହି ନିର୍ଯ୍ୟାତନା ଆମେମାନେ ସହ୍ୟ କରି ପାରୁନାହୁଁ । ୧୮ । ସେହିହେତୁରୁ ଆମମାନଙ୍କର ଶରଣଯୋଗ୍ୟ

ତତସ୍ତ୍ୱାଂ ଶରଣାର୍ଥଂ ଚ ଶରଣ୍ୟଂ ସମୁପସ୍ଥିତାଃ ।
ପରିପାଳୟ ନୋ ରାମ ବଧ୍ୟମାନାନ୍ନିଶାଚରୈଃ । ୧୯ ।
ପରା ତ୍ୱତ୍ତୋ ଗତିର୍ବୀର ପୃଥିବ୍ୟାଂ ନୋପପଦ୍ୟତେ ।
ପରିପାଳୟ ନଃ ସର୍ବାନ୍ ରାକ୍ଷସେଭ୍ୟୋ ନୃପାତ୍ମଜ । ୨୦ ।
ଏତଚ୍ଛ୍ରୁତ୍ୱା ତୁ କାକୁତ୍ସ୍ଥସ୍ତାପସାନାଂ ତପସ୍ୱିନାମ୍ ।
ଇଦଂ ପ୍ରୋବାଚ ଧର୍ମାତ୍ମା ସର୍ବାନେବ ତପସ୍ୱିନଃ । ୨୧ ।
ନୈବମର୍ହଥ ମାଂ ବକ୍ତୁମାଜ୍ଞାପ୍ୟୋଽହଂ ତପସ୍ୱିନାମ୍ ।
କେବଳେନାତ୍ମକାର୍ଯ୍ୟେଣ ପ୍ରବେଷ୍ଟବ୍ୟଂ ମୟା ବନମ୍ । ୨୨ ।
ବିପ୍ରକାରମପାକ୍ରଷ୍ଟୁଂ ରାକ୍ଷସୈର୍ଭବତାମିମମ୍ ।
ପିତୁସ୍ତୁ ନିର୍ଦ୍ଦେଶକରଃ ପ୍ରବିଷ୍ଟୋଽହମିଦଂ ବନମ୍ । ୨୩ ।
ଭବତାମର୍ଥସିଦ୍ଧ୍ୟର୍ଥମାଗତୋଽହଂ ଯଦୃଚ୍ଛୟା ।
ତସ୍ୟ ମେଽୟଂ ବନେ ବାସୋ ଭବିଷ୍ୟତି ମହାଫଳଃ । ୨୪ ।
ତପସ୍ୱିନାଂ ରଣେ ଶତ୍ରୂନ୍ ହନ୍ତୁମିଚ୍ଛାମି ରାକ୍ଷସାନ୍ ।
ପଶ୍ୟନ୍ତୁ ବୀର୍ଯ୍ୟମୃଷୟଃ ସଭ୍ରାତୁର୍ମେ ତପୋଧନାଃ । ୨୫ ।

---

ତୁମଠାରେ ଶରଣ ପଶିବା ପାଇଁ ଆମେମାନେ ଉପସ୍ଥିତ ହୋଇଅଛୁଁ । ହେ ରାମ ! ରାକ୍ଷସମାନଙ୍କଦ୍ୱାରା ନିହତ ହେଉଥିବା ଆମମାନଙ୍କୁ ତୁମେ ରକ୍ଷାକର । ୧୯ । ହେ ବୀର ରାଜପୁତ୍ର ! ଏ ପୃଥିବୀରେ ତୁମଛଡ଼ା ଆମମାନଙ୍କର ଆଉ ଶ୍ରେଷ୍ଠତର ଆଶ୍ରୟ ନାହିଁ । ଆମ ସମସ୍ତଙ୍କୁ ତୁମେ ରାକ୍ଷସମାନଙ୍କଠାରୁ ରକ୍ଷାକର" । ୨୦ । ଧର୍ମାତ୍ମା କକୁତ୍ସ୍ଥନନ୍ଦନ ରାମ ତପସ୍ୱୀ ଋଷିମାନଙ୍କଠାରୁ ଏହି କଥା ଶୁଣି ସେ ସମସ୍ତଙ୍କୁ କହିଲେ । ୨୧ । "ଆପଣମାନେ ମୋତେ ଏପରି କହିବା ଉଚିତ ନୁହେଁ । ମୁଁ ତପସ୍ୱୀମାନଙ୍କର ଆଜ୍ଞାବହ ଅଟେ । ନିଜର କର୍ତ୍ତବ୍ୟସାଧନ କରିବା ଉଦ୍ଦେଶ୍ୟରେହିଁ ଏହି ବନରେ ମୋତେ ପ୍ରବେଶ କରିବାକୁ ହେବ । ୨୨ । ରାକ୍ଷସମାନଙ୍କଦ୍ୱାରା ଆପଣମାନଙ୍କ ପ୍ରତି ଏହି ଅତ୍ୟାଚାରର ନିରାକରଣ କରିବା ପାଇଁ ମୁଁ ପିତାଙ୍କର ଆଦେଶ ପାଳନ କରି ଏହି ବନରେ ପ୍ରବେଶ କରିଅଛି । ୨୩ । ମୁଁ ନିଜ ଇଚ୍ଛାରେ ଆପଣମାନଙ୍କ ପ୍ରୟୋଜନସିଦ୍ଧି ନିମନ୍ତେ ଏଠାକୁ ଆସିଅଛି; ସୁତରାଂ ମୋର ଏହି ବନବାସ ମହାଫଳପ୍ରଦ ହେବ । ୨୪ । ତପସ୍ୱୀମାନଙ୍କ ଶତ୍ରୁ ରାକ୍ଷସମାନଙ୍କୁ ଯୁଦ୍ଧରେ ବଧ କରିବା ପାଇଁ ମୁଁ ଇଚ୍ଛା କରୁଅଛି । ତପୋଧନ ଋଷିମାନେ ମୋର ଏବଂ ମୋ ଭାଇର ବଳବୀର୍ଯ୍ୟ ଦେଖନ୍ତୁ" । ୨୫ ।

ଦତ୍ତ୍ୱାଭୟଂ ଚାପି ତପୋଧନାନାମ୍
ଧର୍ମେ ଧୃତାତ୍ମା ସହ ଲକ୍ଷ୍ମଣେନ ।
ତପୋଧନୈଶ୍ଚାପି ସଭାଜ୍ୟବୃତ୍ତଃ
ସୁତୀକ୍ଷ୍ଣମେବାଭିଜଗାମ ବୀରଃ । ୨୬ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ରକ୍ଷୋବଧପ୍ରତିଜ୍ଞାନମ୍
ନାମ ଷଷ୍ଠଃ ସର୍ଗଃ ।

---

ଧର୍ମରେ ସ୍ଥିରମତି ବୀର ରାମଚନ୍ଦ୍ର ତପସ୍ୱୀମାନଙ୍କୁ ଅଭୟପ୍ରଦାନ କରି ଏବଂ ସେମାନଙ୍କ ଠାରୁ ସମ୍ମାନ ଲାଭ କରି ଲକ୍ଷ୍ମଣଙ୍କ ସହିତ ସୁତୀକ୍ଷ୍ଣଙ୍କ ନିକଟକୁ ଯାତ୍ରାକଲେ । ୨୬ ।

# ସପ୍ତମଃ ସର୍ଗଃ

## ସୁତୀକ୍ଷ୍ଣାଶ୍ରମଃ

ରାମସ୍ତୁ ସହିତୋ ଭ୍ରାତ୍ରା ସୀତୟା ଚ ପରଂତପଃ ।
ସୁତୀକ୍ଷ୍ଣସ୍ୟାଶ୍ରମପଦଂ ଜଗାମ ସହ ତୈର୍ଦ୍ୱିଜୈଃ । ୧ ।
ସ ଗତ୍ୱାଦୂରମଧ୍ୱାନଂ ନଦୀସ୍ତୀର୍ତ୍ୱା ବହୂଦକାଃ ।
ଦଦର୍ଶ ବିପୁଲଂ ଶୈଳଂ ମହାମେଘମିବୋନ୍ନତମ୍ । ୨ ।
ତତସ୍ତଦିକ୍ଷ୍ୱାକୁବରୌ ସଂତତଂ ବିବିଧୈର୍ଦ୍ରୁମୈଃ ।
କାନନଂ ତୌ ବିବିଶତୁଃ ସୀତୟା ସହ ରାଘବୌ । ୩ ।
ପ୍ରବିଷ୍ଟସ୍ତୁ ବନଂ ଘୋରଂ ବହୁପୁଷ୍ପଫଲଦ୍ରୁମମ୍ ।
ଦଦର୍ଶାଶ୍ରମମେକାନ୍ତେ ଚୀରମାଲାପରିଷ୍କୃତମ୍ । ୪ ।
ତତ୍ର ତାପସମାସୀନଂ ମଲପଙ୍କଜଟାଧରମ୍ ।
ରାମଃ ସୁତୀକ୍ଷ୍ଣଂ ବିଧିବତ୍ତପୋଧନମଭାଷତ । ୫ ।
ରାମୋଽହମସ୍ମି ଭଗବନ୍ ଭବନ୍ତଂ ଦ୍ରଷ୍ଟୁମାଗତଃ ।
ତନ୍ମାଭିବଦ ଧର୍ମଜ୍ଞ ମହର୍ଷେ ସତ୍ୟବିକ୍ରମ । ୬ ।

---

## ୭ମ ସର୍ଗ

### ( ସୁତୀକ୍ଷ୍ଣଙ୍କ ଆଶ୍ରମ )

ଶତ୍ରୁଦମନକାରୀ ରାମଚନ୍ଦ୍ର ସୀତା ଓ ଭାଇଙ୍କ ସହିତ ସେହି ବ୍ରାହ୍ମଣମାନଙ୍କୁ ସଙ୍ଗରେ ଘେନି ସୁତୀକ୍ଷ୍ଣ ମହର୍ଷିଙ୍କ ଆଶ୍ରମସ୍ଥାନକୁ ଗମନକଲେ । ୧ । ସେ ବହୁଦୂର ପଥ ଗମନ କରି ଏବଂ ବହୁ ଜଳପୂର୍ଣ୍ଣ ନଦୀମାନ ପାର ହୋଇ ମହାମେଘ-ସଦୃଶ ଏକ ଅତ୍ୟୁଚ୍ଚ ଓ ବିଶାଳ ପର୍ବତ ଦେଖିଲେ । ୨ । ଅନନ୍ତର ଇକ୍ଷ୍ୱାକୁବଂଶୀୟ ସେହି ରାମ ଲକ୍ଷ୍ମଣ ଦୁହେଁ ସୀତାଙ୍କ ସହିତ ନାନାବିଧ ବୃକ୍ଷସମୂହ ପରିପୂର୍ଣ୍ଣ ବନମଧ୍ୟରେ ପ୍ରବେଶ କଲେ । ୩ । ସେ ଏହି ଘୋର ବନରେ ପ୍ରବେଶ କରି ନାନାବିଧ ଫଳ-ପୁଷ୍ପଶାଳୀ ବୃକ୍ଷସମନ୍ୱିତ ଏବଂ ବଲ୍କଲମାଳାଦ୍ୱାରା ପରିଶୋଭିତ ଗୋଟିଏ ଆଶ୍ରମ ସେହି ବିଜନ ସ୍ଥାନରେ ଦେଖିଲେ ।୪। ରାମ ସେଠାରେ ବସିରହିଥିବା ତପସ୍ୟାନିରତ ଧୂଳି ପଙ୍କ ଓ ଜଟାଧାରୀ ସୁତୀକ୍ଷ୍ଣଙ୍କୁ ଯଥାବିଧାନରେ ସମ୍ଭାଷଣ କରି କହିଲେ । ୫ । "ହେ ଭଗବନ୍ ! ମୋର ନାମ ରାମ । ମୁଁ ଆପଣଙ୍କୁ ଦେଖିବାକୁ ଆସିଅଛି; ସୁତରାଂ ହେ ସତ୍ୟପରାକ୍ରମ ଧର୍ମଜ୍ଞ ମହର୍ଷେ ! ଆପଣ ମୋତେ କଥା କହନ୍ତୁ" । ୬ ।

ସ ନିରୀକ୍ଷ୍ୟ ତତୋ ବୀରଂ ରାମଂ ଧର୍ମଭୃତାଂ ବରମ୍ ।
ସମାଶ୍ଳିଷ୍ୟ ଚ ବାହୁଭ୍ୟାମିଦଂ ବଚନମବ୍ରବୀତ୍ ।୭।
ସ୍ୱାଗତଂ ଖଲୁ ତେ ବୀର ରାମ ଧର୍ମଭୃତାଂ ବର ।
ଆଶ୍ରମୋଽୟଂ ତ୍ୱୟା ପ୍ରାପ୍ତଃ ସନାଥ ଇବ ସାଂପ୍ରତମ୍ ।୮।
ପ୍ରତୀକ୍ଷମାଣସ୍ତ୍ୱାମେବ ନାରୋହେଽହଂ ମହାଯଶଃ ।
ଦେବଲୋକମିତୋ ବୀର ଦେହଂ ତ୍ୟକ୍ତ୍ୱା ମହୀତଲେ ।୯।
ଚିତ୍ରକୂଟମୁପାଦାୟ ରାଜ୍ୟଭ୍ରଷ୍ଟୋଽସି ମେ ଶ୍ରୁତଃ ।
ଇହୋପଯାତଃ କାକୁତ୍ସ୍ଥ ଦେବରାଜଃ ଶତକ୍ରତୁଃ ।୧୦।
ଉପାଗମ୍ୟ ଚ ମାଂ ଦେବୋ ମହାଦେବଃ ସୁରେଶ୍ୱରଃ ।
ସର୍ବାଁଲ୍ଲୋକାଞ୍ଜିତାନାହ ମମ ପୁଣ୍ୟେନ କର୍ମଣା ।୧୧।
ତେଷୁ ଦେବର୍ଷିଜୁଷ୍ଟେଷୁ ଜିତେଷୁ ତପସା ମୟା ।
ମତ୍ପ୍ରସାଦାତ୍ ସଭାର୍ଯ୍ୟସ୍ତ୍ୱଂ ବିହରସ୍ୱ ସଲକ୍ଷ୍ମଣଃ ।୧୨।
ତମୁଗ୍ରତପସା ଯୁକ୍ତଂ ମହର୍ଷିଂ ସତ୍ୟବାଦିନମ୍ ।
ପ୍ରତ୍ୟୁବାଚାତ୍ମବାନ୍ ରାମୋ ବ୍ରହ୍ମାଣମିବ ବାସବଃ ।୧୩।
ଅହମେବାହରିଷ୍ୟାମି ସ୍ୱୟଂ ଲୋକାନ୍ ମହାମୁନେ ।
ଆବାସଂ ତ୍ୱହମିଚ୍ଛାମି ପ୍ରଦିଷ୍ଟମିହ କାନନେ ।୧୪।

---

ଅନନ୍ତର ସେହି ମହର୍ଷି ଧାର୍ମିକଶ୍ରେଷ୍ଠ ବୀର ରାମଙ୍କୁ ଦେଖି ତାଙ୍କୁ ଦୁଇବାହୁଦ୍ୱାରା ଆଲିଙ୍ଗନ କରି କହିଲେ ।୭। "ହେ ଧାର୍ମିକଶ୍ରେଷ୍ଠ ବୀର ରାମ ! ମୁଁ ତୁମ୍ଭର ସ୍ୱାଗତ କରୁଅଛି । ଏ ଆଶ୍ରମ ବର୍ତ୍ତମାନ ତୁମକୁ ପାଇ ସନାଥ ହୋଇଅଛି ।୮। ହେ ମହାଯଶା ବୀର ! ମୁଁ କେବଳ ତୁମକୁହିଁ ଅପେକ୍ଷା କରି ଥିବାରୁ ଏ ସଂସାରରୁ ଦେହତ୍ୟାଗ କରି ଏଠାରୁ ଦେବଲୋକକୁ ଚାଲିଯାଇ ନାହିଁ ।୯। ମୁଁ ଶୁଣିଥିଲି ଯେ ତୁମେ ରାଜ୍ୟଭ୍ରଷ୍ଟ ହୋଇ ଚିତ୍ରକୂଟରେ ଉପସ୍ଥିତ ହୋଇଅଛ । ହେ କାକୁତ୍ସ୍ଥ ! ଏଠାକୁ ଦେବରାଜ ଇନ୍ଦ୍ର ଆସିଥିଲେ ।୧୦। ସୁରେଶ୍ୱର ମହାଦେବ ଇନ୍ଦ୍ର ମୋ ନିକଟକୁ ଆସି କହିଲେ ଯେ ମୁଁ ପୁଣ୍ୟବଳରେ ସମସ୍ତ ଲୋକକୁ ଜୟ କରିଅଛି ।୧୧। ମୁଁ ତପୋବଳରେ ସେହି ଯେଉଁ ସବୁ ଦେବର୍ଷିସେବିତ ଲୋକ ଜୟ କରିଅଛି, ସେହି ସମସ୍ତ ଲୋକରେ ତୁମେ ଲକ୍ଷ୍ମଣ ଓ ତୁମ ଭାର୍ଯ୍ୟାଙ୍କ ସହିତ ଆନନ୍ଦରେ କାଳଯାପନ କର" ।୧୨। ଇନ୍ଦ୍ର ବ୍ରହ୍ମାଙ୍କୁ କହିଲାପରି ମନସ୍ୱୀ ରାମ କଠୋରତପୋବିଶିଷ୍ଟ ସତ୍ୟବାଦୀ ମହର୍ଷିଙ୍କୁ ପ୍ରତ୍ୟୁତ୍ତର ଦେଲେ ।୧୩। "ହେ ମହାମୁନେ ! ମୁଁ ନିଜେ ସମସ୍ତ ଲୋକ ଅର୍ଜନ କରିବି । ବର୍ତ୍ତମାନ ମୁଁ ଚାହେଁ ଯେ ଏ ବନରେ ମୁଁ

ଭବାନ୍ ସର୍ବତ୍ର କୁଶଳଃ ସର୍ବଭୂତହିତେ ରତଃ ।
ଆଖ୍ୟାତଃ ଶରଭଙ୍ଗେଣ ଗୌତମେନ ମହାତ୍ମନା । ୧୫ ।
ଏବମୁକ୍ତସ୍ତୁ ରାମେଣ ମହର୍ଷିର୍ଲୋକବିଶ୍ରୁତଃ ।
ଅବ୍ରବୀନ୍ମଧୁରଂ ବାକ୍ୟଂ ହର୍ଷେଣ ମହତାପ୍ଲୁତଃ । ୧୬ ।
ଅୟମେବାଶ୍ରମୋ ରାମ ଗୁଣବାନ୍ ରମ୍ୟତାମିହ ।
ଋଷିସଙ୍ଘାନୁଚରିତଃ ସଦା ମୂଳଫଳାନ୍ୱିତଃ । ୧୭ ।
ଇମମାଶ୍ରମମାଗମ୍ୟ ମୃଗସଙ୍ଘା ମହୀୟସଃ ।
ଅହତ୍ୱା ପ୍ରତିଗଚ୍ଛନ୍ତି ଲୋଭୟିତ୍ୱାକୁତୋଭୟାଃ । ୧୮ ।
ନାନ୍ୟୋ ଦୋଷୋ ଭବେଦତ୍ର ମୃଗେଭ୍ୟୋଽନ୍ୟତ୍ର ବିଦ୍ଧି ବୈ ।
ତଚ୍ଛ୍ରୁତ୍ୱା ବଚନଂ ତସ୍ୟ ମହର୍ଷେର୍ଲକ୍ଷ୍ମଣାଗ୍ରଜଃ । ୧୯ ।
ଉବାଚ ବଚନଂ ଧୀରୋ ବିକୃଷ୍ୟ ସଶରଂ ଧନୁଃ ।
ତାନହଂ ସୁମହାଭାଗ ମୃଗସଙ୍ଘାନ୍ ସମାଗତାନ୍ । ୨୦ ।
ହନ୍ୟାଂ ନିଶିତଧାରେଣ ଶରେଣାଶନିବର୍ଚସା ।
ଭବାଂସ୍ତତ୍ରାଭିଷଜ୍ୟେତ କିଂ ସ୍ୟାତ୍କୃଚ୍ଛ୍ରତରଂ ତତଃ । ୨୧ ।

---

କେଉଁଠାରେ ବାସ କରିବି ଆପଣ ତାହା ନିର୍ଦ୍ଦେଶ କରନ୍ତୁ ।୧ । ଗୌତମବଂଶୀୟ ମହାତ୍ମା ଶରଭଙ୍ଗ କହିଛନ୍ତି ଯେ ଆପଣ ସବୁ ବିଷୟରେ ନିପୁଣ ଏବଂ ସବୁ ପ୍ରାଣୀଙ୍କର ହିତସାଧନରେ ରତ ଅଟନ୍ତି” । ୧୫ । ରାମ ଏହିପରି କହିବାରୁ ଜଗଦ୍‌ବିଖ୍ୟାତ ମହର୍ଷି ସୁତୀକ୍ଷ୍ଣ ଅତିଶୟ ଆନନ୍ଦିତ ହୋଇ ମଧୁର ବଚନରେ କହିଲେ । । ୧୬ । “ହେ ରାମ ! ଏହି ଆଶ୍ରମ ବିଶେଷ ସଦ୍‌ଗୁଣବିଶିଷ୍ଟ ଓ ସର୍ବଦା ଫଳମୂଳପୂର୍ଣ୍ଣ ଅଟେ । ବହୁସଂଖ୍ୟକ ଋଷି ଏଠାରେ ବାସ କରନ୍ତି । ତୁମେ ଏଠାରେ ଆନନ୍ଦରେ ବିହାର କର । ଏହି ଆଶ୍ରମକୁ ଅନେକ ବଡ଼ ବଡ଼ ମୃଗ ଆସନ୍ତି ଏବଂ ସେମାନେ ସମସ୍ତଙ୍କୁ ପ୍ରଲୋଭିତ କଲେ ମଧ୍ୟ କେହି ସେମାନଙ୍କୁ ବଧ କରନ୍ତି ନାହିଁ; ସେମାନେ ନିର୍ଭୀକଭାବରେ ଫେରି ଯାଆନ୍ତି । ୧୭-୧୮ । ତୁମେ ଜାଣିରଖ ଯେ ସେହି ମୃଗମାନଙ୍କ ଛଡ଼ା ଏଠାରେ ଅନ୍ୟ କୌଣସି ଦୋଷ ନାହିଁ”। ଧୀର ଲକ୍ଷ୍ମଣାଗ୍ରଜ ରାମ ତାଙ୍କର ସେହି କଥା ଶୁଣି ଶରଯୁକ୍ତ ଧନୁରୁ ଗୁଣ କାଢ଼ି ଦେଇ କହିଲେ, “ହେ ମହାଭାଗ ! ମୁଁ ସେହି ସମସ୍ତ ସମାଗତ ମୃଗପଲଙ୍କୁ ବଜ୍ରସଦୃଶ ତୀକ୍ଷ୍ଣଧାରଯୁକ୍ତ ଶରରେ ସଂହାର କରିବି ଏବଂ ତଦ୍ଦ୍ୱାରା ଆପଣଙ୍କ ମନରେ କଷ୍ଟ ହେବ, ଏହାଠାରୁ ବଳି ଦୁଃଖକର ବିଷୟ କ’ଣ ହୋଇପାରେ ! ୧୯-୨୧ । ସେହିହେତୁରୁ ଏ ଆଶ୍ରମରେ ଦୀର୍ଘକାଳ

ଏତସ୍ମିନ୍ନାଶ୍ରମେ ବାସଂ ଚିରଂ ତୁ ନ ସମର୍ଥୟେ ।
ତମେବମୁକ୍ତ୍ୱାପରମଂ ରାମଃ ସନ୍ଧ୍ୟାମୁପାନ୍ୱଗାତ୍ । ୨୨ ।
ଅନ୍ୱାସ୍ୟ ପଶ୍ଚିମାଂ ସନ୍ଧ୍ୟାଂ ତତ୍ର ବାସମକଳ୍ପୟତ୍ ।
ସୁତୀକ୍ଷ୍ଣସ୍ୟାଶ୍ରମେ ରମ୍ୟେ ସୀତୟା ଲକ୍ଷ୍ମଣେନ ଚ । ୨୩ ।
ତତଃ ଶୁଭଂ ତାପସଭୋଜ୍ୟମନ୍ନମ୍
ସ୍ୱୟଂ ସୁତୀକ୍ଷ୍ଣଃ ପୁରୁଷର୍ଷଭାଭ୍ୟାମ୍ ।
ତାଭ୍ୟାଂ ସୁସତ୍କୃତ୍ୟ ଦଦୌ ମହାତ୍ମା
ସନ୍ଧ୍ୟାନିବୃତ୍ତୌ ରଜନୀମବେକ୍ଷ୍ୟ । ୨୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ ଅରଣ୍ୟକାଣ୍ଡେ ସୁତୀକ୍ଷ୍ଣାଶ୍ରମୋ ନାମ
ସପ୍ତମଃ ସର୍ଗଃ

---

---

ବାସ କରିବା ମୁଁ ସମର୍ଥନ କରୁନାହିଁ” । ତାଙ୍କୁ ଏହା କହି ରାମଚନ୍ଦ୍ର କ୍ଷାନ୍ତ ହୋଇ ସନ୍ଧ୍ୟା ଉପାସନା କରିବାରେ ପ୍ରବୃତ୍ତ ହେଲେ । ୨୨ । ସେ ସାୟଂସନ୍ଧ୍ୟା ସମାପନ କରି ସୀତା ଓ ଲକ୍ଷ୍ମଣଙ୍କ ସହିତ ସୁତୀକ୍ଷ୍ଣଙ୍କର ସେହି ରମଣୀୟ ଆଶ୍ରମରେ ବାସ କରି ରହିଲେ । ୨୩ । ଅନନ୍ତର ସନ୍ଧ୍ୟା ଅତିକ୍ରାନ୍ତ ହୋଇ ରାତ୍ରି ଆଗତ ହେବାର ଦେଖି ମହାତ୍ମା ସୁତୀକ୍ଷ୍ଣ ନିଜେ ସେହି ଦୁଇ ପୁରୁଷ ଶ୍ରେଷ୍ଠଙ୍କୁ ଉତ୍ତମରୂପେ ଅଭ୍ୟର୍ଥନା କରି ତପସ୍ୱିଯୋଗ୍ୟ ଶୁଦ୍ଧ ଅନ୍ନ ସେମାନଙ୍କୁ ଖାଇବାକୁ ଦେଲେ । ୨୪ ।

---

# ଅଷ୍ଟମଃ ସର୍ଗଃ

## ସୁତୀକ୍ଷ୍ଣାଭ୍ୟନୁଜ୍ଞା

ରାମସ୍ତୁ ସହସୌମିତ୍ରିଃ ସୁତୀକ୍ଷ୍ଣେନାଭିପୂଜିତଃ ।
ପରିଣାମ୍ୟ ନିଶାଂ ତତ୍ର ପ୍ରଭାତେ ପ୍ରତ୍ୟବୁଧ୍ୟତ । ୧ ।
ଉତ୍ଥାୟ ତୁ ଯଥାକାଲଂ ରାଘବଃ ସହ ସୀତୟା ।
ଉପାସ୍ପୃଶତ୍ ସୁଶୀତେନ ଜଲେନୋତ୍ପଲଗନ୍ଧିନା । ୨ ।
ଅଥ ତେଽଗ୍ନିଂ ସୁରାଂଶ୍ଚୈବ ବୈଦେହୀ ରାମଲକ୍ଷ୍ମଣୌ ।
କଲ୍ୟଂ ବିଧିବଦଭ୍ୟର୍ଚ୍ୟ ତପସ୍ୱିଶରଣେ ବନେ । ୩ ।
ଉଦୟନ୍ତଂ ଦିନକରଂ ଦୃଷ୍ଟ୍ୱା ବିଗତକଲ୍ମଷାଃ ।
ସୁତୀକ୍ଷ୍ଣମଭିଗମ୍ୟେଦଂ ଶ୍ଳକ୍ଷ୍ଣଂ ବଚନମବ୍ରୁବନ୍ । ୪ ।
ସୁଖୋଷିତାଃ ସ୍ମ ଭଗବଂସ୍ତ୍ୱୟା ପୂଜ୍ୟେନ ପୂଜିତାଃ ।
ଆପୃଚ୍ଛାମଃ ପ୍ରୟାସ୍ୟାମୋ ମୁନୟସ୍ତ୍ୱରୟନ୍ତି ନଃ । ୫ ।
ତ୍ୱରାମହେ ବୟଂ ଦ୍ରଷ୍ଟୁଂ କୃତ୍ସ୍ନମାଶ୍ରମମଣ୍ଡଲମ୍ ।
ଋଷୀଣାଂ ପୁଣ୍ୟଶୀଲାନାଂ ଦଣ୍ଡକାରଣ୍ୟବାସିନାମ୍ । ୬ ।

---

## ୮ମ ସର୍ଗ

### ( ସୁତୀକ୍ଷ୍ଣଙ୍କର ବିଦାୟଦାନ )

ରାମ ସୁତୀକ୍ଷ୍ଣଙ୍କ କର୍ତ୍ତୃକ ଅଭ୍ୟର୍ଥିତ ହୋଇ ଏବଂ ସେହିଠାରେ ଲକ୍ଷ୍ମଣଙ୍କ ସହିତ ରାତ୍ରି ଯାପନ କରି ପ୍ରଭାତରେ ଜାଗରିତ ହେଲେ । ୧ । ରାଘବ ଯଥାସମୟରେ ଉଠି ସୀତାଙ୍କ ସହିତ ନୀଳୋତ୍ପଳଗନ୍ଧଯୁକ୍ତ ସୁଶୀତଳ ଜଳରେ ସ୍ନାନ କଲେ । ୨। ଅନନ୍ତର ରାମ ଲକ୍ଷ୍ମଣ ଓ ସୀତା ତପସ୍ୱିସେବିତ ସେହି ବନରେ ପ୍ରାତଃକାଳୀନ ବିଧାନ ଅନୁସାରେ ଅଗ୍ନି ଓ ଦେବତାମାନଙ୍କୁ ଅର୍ଚ୍ଚନା କରି, ଉଦିତ ହେଉଥିବା ସୂର୍ଯ୍ୟଙ୍କୁ ଦେଖି ନିଷ୍ପାପ ହୋଇ, ସୁତୀକ୍ଷ୍ଣଙ୍କ ନିକଟକୁ ଯାଇ ଲଳିତ ବାକ୍ୟରେ କହିଲେ ।୩-୪। "ହେ ଭଗବନ୍ ! ଆପଣଙ୍କ ପରି ପୂଜ୍ୟବ୍ୟକ୍ତିଙ୍କ ଦ୍ୱାରା ଅଭ୍ୟର୍ଥିତ ହୋଇ ଆମେମାନେ ସୁଖରେ ବାସ କରିଛୁ । ବର୍ତ୍ତମାନ ମୁନିମାନେ ଆମମାନଙ୍କୁ ତ୍ୱରାନ୍ୱିତ କରୁଛନ୍ତି । ସୁତରାଂ ଆପଣଙ୍କଠାରୁ ବିଦାୟ ମାଗୁଛୁ; ଆମେମାନେ ଏଠାରୁ ଯାତ୍ରା କରିବୁ । ୫ । ଦଣ୍ଡକାରଣ୍ୟବାସୀ ପବିତ୍ରସ୍ୱଭାବ ଋଷିମାନଙ୍କର ସମସ୍ତ ଆଶ୍ରମମଣ୍ଡଳ ଦେଖିବାପାଇଁ ଆମେମାନେ ବ୍ୟଗ୍ର ହୋଇଅଛୁ । ୬ । ଆପଣ ଅନୁମତି ଦିଅନ୍ତୁ, ଆମେମାନେ

ଅଭ୍ୟନୁଜ୍ଞାତୁମିଚ୍ଛାମଃ ସହୈଭିର୍ମୁନିପୁଙ୍ଗବୈଃ ।
ଧର୍ମନିତ୍ୟୈସ୍ତପୋଦାନ୍ତୈର୍ବିଶିଖୈରିବ ପାବକୈଃ । ୭ ।
ଅବିଷହ୍ୟାତପୋ ଯାବତ୍ସୂର୍ଯ୍ୟୋ ନାତିବିରାଜତେ ।
ଅମାର୍ଗେଣାଗତାଂ ଲକ୍ଷ୍ମୀଂ ପ୍ରାପ୍ୟେବାନ୍ୱୟବର୍ଜିତଃ । ୮ ।
ତାବଦିଚ୍ଛାମହେ ଗନ୍ତୁମିତ୍ୟୁକ୍ତ୍ୱା ଚରଣୌ ମୁନେଃ ।
ବବନ୍ଦେ ସହସୌମିତ୍ରିଃ ସୀତୟା ସହ ରାଘବଃ । ୯ ।
ତୌ ସଂସ୍ପୃଶନ୍ତୌ ଚରଣାବୁତ୍ଥାପ୍ୟ ମୁନିପୁଙ୍ଗବଃ ।
ଗାଢ଼ମାଲିଙ୍ଗ୍ୟ ସସ୍ନେହମିଦଂ ବଚନମବ୍ରବୀତ୍ । ୧୦ ।
ଅରିଷ୍ଟଂ ଗଚ୍ଛ ପନ୍ଥାନଂ ରାମ ସୌମିତ୍ରିଣା ସହ ।
ସୀତୟା ଚାନୟା ସାର୍ଦ୍ଧଂ ଛାୟୟେବାନୁବୃତ୍ତୟା । ୧୧ ।
ପଶ୍ୟାଶ୍ରମପଦଂ ରମ୍ୟଂ ଦଣ୍ଡକାରଣ୍ୟବାସିନାମ୍ ।
ଏଷାଂ ତପସ୍ୱିନାଂ ବୀର ତପସା ଭାବିତାତ୍ମନାମ୍ । ୧୨ ।
ସୁପ୍ରାଜ୍ୟଫଳମୂଳାନି ପୁଷ୍ପିତାନି ବନାନି ଚ ।
ପ୍ରଶାନ୍ତମୃଗୟୂଥାନି ଶାନ୍ତପକ୍ଷିଗଣାନି ଚ । ୧୩ ।
ଫୁଲ୍ଲପଙ୍କଜଷଣ୍ଡାନି ପ୍ରସନ୍ନସଲିଳାନି ଚ ।
କାରଣ୍ଡବବିକୀର୍ଣ୍ଣାନି ତଟାକାନି ସରାଂସି ଚ । ୧୪ ।

---

ନିର୍ଧୂମ ବହ୍ନି-ସଦୃଶ-ପ୍ରଭାଶାଳୀ ଧର୍ମନିଷ୍ଠ ତପୋଦାନ୍ତ ଏହି ସମସ୍ତ ମୁନିଶ୍ରେଷ୍ଠମାନଙ୍କ ସହିତ ଗମନ କରିବୁଁ ।୭। ଅନ୍ୟାୟ କରି ଐଶ୍ୱର୍ଯ୍ୟପ୍ରାପ୍ତ ହୋଇଥିବା ଅକୁଳୀନ ପୁରୁଷ ଯେପରି ଅନ୍ୟର ଅସହ୍ୟ ହୋଇଉଠେ, ସେହିପରି ସୂର୍ଯ୍ୟଙ୍କର ତାପ ଅସହ୍ୟ ହେବା ପୂର୍ବରୁ ଆମେମାନେ ଚାଲିଯିବାକୁ ଇଚ୍ଛାକରୁ" । ରାମ ଏହା କହି ସୀତା ଓ ସୌମିତ୍ରିଙ୍କ ସହିତ ମୁନିଙ୍କର ଚରଣଦ୍ୱୟ ବନ୍ଦନାକଲେ ।୮-୯। ମୁନିଶ୍ରେଷ୍ଠ ସୁତୀକ୍ଷ୍ଣ ତାଙ୍କର ପାଦ ସ୍ପର୍ଶ କରୁଥିବା ସେ ଦୁହିଙ୍କୁ ଉଠାଇ ଓ ଗାଢ଼ ଆଲିଙ୍ଗନ କରି ସ୍ନେହର ସହିତ ଏହି କଥା କହିଲେ ।୧୦। "ହେ ରାମ ! ତୁମେ ସୌମିତ୍ରି ଏବଂ ଛାୟାସଦୃଶ ତୁମର ଅନୁଗମନ କରୁଥିବା ଏହି ସୀତାଙ୍କ ସହିତ ନିର୍ବିଘ୍ନରେ ଏହି ପଥରେ ଗମନ କର ।୧୧। ହେ ବୀର ! ତପଃପ୍ରଭାବରେ ଶୁଦ୍ଧଚିତ୍ତ ଏହି ଦଣ୍ଡକାରଣ୍ୟ-ବାସୀ ତପସ୍ୱୀମାନଙ୍କର ଏହି ରମଣୀୟ ଆଶ୍ରମମାନ ତୁମେ ଦେଖ ।୧୨। ତୁମେ ପ୍ରଶାନ୍ତ-ମୃଗସମାକୁଳ ଶାନ୍ତପକ୍ଷିଗଣସେବିତ ପ୍ରଚୁରଫଳମୂଳସମନ୍ୱିତ ପୁଷ୍ପିତ ବନମାନଙ୍କୁ ଏବଂ ପ୍ରଫୁଲ୍ଲପଦ୍ମବନଶୋଭିତ ନିର୍ମଳଜଳପୂର୍ଣ୍ଣ ଓ କାରଣ୍ଡବପକ୍ଷିପୂର୍ଣ୍ଣ

ଦ୍ରକ୍ଷ୍ୟସେ ଦୃଷ୍ଟିରମ୍ୟାଣି ଗିରିପ୍ରସ୍ରବଣାନି ଚ ।
ରମଣୀୟାନ୍ୟରଣ୍ୟାନି ମୟୂରାଭିରୁତାନି ଚ । ୧୫ ।
ଗମ୍ୟତାଂ ବତ୍ସ ସୌମିତ୍ରେ ଭବାନପି ଚ ଗଚ୍ଛତୁ ।
ଆଗନ୍ତବ୍ୟଂ ତ୍ୱୟା ତାତ ପୁନରେବାଶ୍ରମଂ ମମ । ୧୬ ।
ଏବମୁକ୍ତସ୍ତଥେତ୍ୟୁକ୍ତ୍ୱା କାକୁତ୍ସ୍ଥଃ ସହଲକ୍ଷ୍ମଣଃ ।
ପ୍ରଦକ୍ଷିଣଂ ମୁନିଂ କୃତ୍ୱା ପ୍ରସ୍ଥାତୁମୁପଚକ୍ରମେ । ୧୭ ।
ତତଃ ଶୁଭତରେ ତୂଣୀ ଧନୁଷୀ ଚାୟତେକ୍ଷଣା ।
ଦଦୌ ସୀତା,ତୟୋର୍ଭ୍ରାତ୍ରୋଃ ଖଡ୍ଗୌ ଚ ବିମଲୌ ତତଃ ।୧୮
ଆବଧ୍ୟ ଚ ଶୁଭେ ତୂଣୀ ଚାପୌ ଚାଦାୟ ସସ୍ୱନୌ ।
ନିଷ୍କ୍ରାନ୍ତାବାଶ୍ରମାଦ୍‌ଗନ୍ତୁମୁଭୌ ତୌ ରାମଲକ୍ଷ୍ମଣୌ । ୧୯ ।
ଶ୍ରୀମନ୍ତୌ ରୂପସମ୍ପନ୍ନୌ ଦୀପ୍ୟମାନୌ ସ୍ୱତେଜସା ।
ପ୍ରସ୍ଥିତୌ ଧୃତଚାପୌ ତୌ ସୀତୟା ସହ ରାଘବୌ ।୨୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତ ସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ସୁତୀକ୍ଷ୍ଣାଭ୍ୟନୁଜ୍ଞା ନାମ
ଅଷ୍ଟମଃ ସର୍ଗଃ

———

ବହୁବିଧ ତଡାଗ ଓ ସରୋବର ଦର୍ଶନକର । ୧୩-୧୪ । ତୁମେ ଦୃଷ୍ଟିମନୋହର ଗିରିପ୍ରସ୍ରବଣ ଏବଂ ମୟୂରନିନାଦିତ ରମଣୀୟ ଅରଣ୍ୟମାନ ଦେଖିବ । ୧୫ । ହେ ବତ୍ସ ସୌମିତ୍ରେ ! ତୁମେ ଯାଅ । ହେ ବତ୍ସ ରାମ ! ତୁମେ ମଧ୍ୟ ଯାଅ । ତୁମେ ପୁଣି ମୋ ଆଶ୍ରମକୁ ଫେରି ଆସିବ" ।୧୬। ସେ ଏହିପରି କହିବା ଉତ୍ତାରୁ ରାମ 'ଯେ ଆଜ୍ଞା, ବୋଲି କହି ଲକ୍ଷ୍ମଣଙ୍କ ସହିତ ମୁନିଙ୍କୁ ପ୍ରଦକ୍ଷିଣ କରି ଯାତ୍ରା କରିବାକୁ ଉଦ୍ୟତ ହେଲେ । । ୧୭ । ଅନନ୍ତର ସୁଦୀର୍ଘଲୋଚନା ସୀତା ସେ ଦୁଇ ଭ୍ରାତାଙ୍କୁ ଦୁଇଟି ଶୁଭତୂଣୀର, ଧନୁ ଓ ଦୁଇଟି ନିର୍ମଳ ଖଡ୍ଗ ଦେଲେ ।୧୮। ଅନନ୍ତର ରାମ ଲକ୍ଷ୍ମଣ ଦୁହେଁ ଦୁଇଟି ଶୁଭତୂଣୀର୍ ବାନ୍ଧି ଏବଂ ଦୁଇଟି ସଶବ୍ଦ ଧନୁ ଧରି ଯାତ୍ରା କରିବା ପାଇଁ ଆଶ୍ରମରୁ ବାହାରିଲେ ୧୯। ରୂପବାନ୍ ଶ୍ରୀମନ୍ତ ଦୁଇ ରଘୁନନ୍ଦନ ନିଜ ତେଜରେ,ଉଦ୍ଭାସିତ ହୋଇ ଧନୁର୍ଦ୍ଧାରଣପୂର୍ବକ ସୀତାଙ୍କ ସହିତ ପ୍ରସ୍ଥାନକଲେ । ୨୦ ।

———

# ନବମଃ ସର୍ଗଃ

## ସୀତାଧର୍ମାବେଦନମ୍

ସୁତୀକ୍ଷ୍ଣେନାଭ୍ୟନୁଜ୍ଞାତଂ ପ୍ରସ୍ଥିତଂ ରଘୁନନ୍ଦନମ୍ ।
ହୃଦ୍ୟୟା ସ୍ନିଗ୍ଧୟା ବାଚା ଭର୍ତାରମିଦମବ୍ରବୀତ୍ । ୧ ।
ଅଧର୍ମସ୍ତୁ ସୁସୂକ୍ଷ୍ମେଣ ବିଧିନା ପ୍ରାପ୍ୟତେ ମହାନ୍ ।
ନିବୃତ୍ତେନ ତୁ ଶକ୍ୟୋଽୟଂ ବ୍ୟସନାତ୍କାମଜାଦିହ । ୨ ।
ତ୍ରୀଣ୍ୟେବ ବ୍ୟସନାନ୍ୟତ୍ର କାମଜାନି ଭବନ୍ତ୍ୟୁତ ।
ମିଥ୍ୟା ବାକ୍ୟଂ ପରମକଂ ତସ୍ମାଦ୍‌ଗୁରୁତରାବୁଭୌ । ୩ ।
ପରଦାରାଭିଗମନଂ ବିନା ବୈରଂ ଚ ରୌଦ୍ରତା ।
ମିଥ୍ୟା ବାକ୍ୟଂ ନ ତେ ଭୂତଂ ନ ଭବିଷ୍ୟତି ରାଘବ । ୪ ।
କୁତୋଽଭିଲଷଣଂ ସ୍ତ୍ରୀଣାଂ ପରେଷାଂ ଧର୍ମନାଶନମ୍ ।
ତବ ନାସ୍ତି ମନୁଷ୍ୟେନ୍ଦ୍ର ନ ଚାଭୂତ୍ତେ କଦାଚନ । ୫ ।
ମନସ୍ୟପି ତଥା ରାମ ନ ଚୈତଦ୍ ବିଦ୍ୟତେ କ୍ୱଚିତ୍ ।
ସ୍ୱଦାରନିରତସ୍ତ୍ୱଂ ଚ ନିତ୍ୟମେବ ନୃପାତ୍ମଜ । ୬ ।

---

## ୯ମ ସର୍ଗ

### ( ସୀତାଙ୍କର ଧର୍ମମତବ୍ୟାଖ୍ୟାନ )

ରାମ ସୁତୀକ୍ଷ୍ଣଙ୍କଠାରୁ ବିଦାୟ ନେଇ ଯାଉଥିଲାବେଳେ ସୀତା ହୃଦୟଗ୍ରାହୀ ମଧୁର ବଚନରେ ସ୍ୱାମୀଙ୍କୁ କହିଲେ । ୧ । "ସୂକ୍ଷ୍ମଭାବରେ ବିଗ୍ଭର କଲେ ତୁମ୍ଭର ଏ କାର୍ଯ୍ୟ ଦ୍ୱାରା ମହାନ୍ ଅଧର୍ମ ସଞ୍ଚିତ ହେବ; କିନ୍ତୁ ତୁମେ ଏ କାମଜ ବ୍ୟସନରୁ ନିବୃତ୍ତ ହେଲେ ଏ ଅଧର୍ମରୁ ରକ୍ଷା ପାଇବାକୁ ସମର୍ଥ ହେବ । ୨ । କାମଜ ବ୍ୟସନ ତିନି-ପ୍ରକାର ହୁଏ । ମିଥ୍ୟା କହିବା ଏକ ପ୍ରଧାନ ବ୍ୟସନ; ମାତ୍ର ପରସ୍ତ୍ରୀଗମନ ଏବଂ ବିନା ଶତ୍ରୁତାରେ ହିଂସା କରିବା ଏହାଠାରୁ ମଧ୍ୟ ଗୁରୁତର । ହେ ରାଘବ ! ତୁମ୍ଭେ ମିଥ୍ୟା କହି ନାହଁ କି କହିବ ନାହିଁ । ୩-୪ । ହେ ନରଶ୍ରେଷ୍ଠ ! ତୁମ୍ଭର ଧର୍ମନାଶକ ପରସ୍ତ୍ରୀବାଞ୍ଛା ନାହିଁ ବା କେବେ ହୋଇ ନ ଥିଲା । ୫ । ହେ ରାମ ! ତୁମ ମନରେ ମଧ୍ୟ କେବେହେଲେ ଏ ପ୍ରବୃତ୍ତି ନାହିଁ । ହେ ରାଜକୁମାର ! ତୁମେ ସର୍ବଦା ନିଜ ପତ୍ନୀ ପ୍ରତି ଆସକ୍ତ ରହିଅଛ । ୬ । ତୁମେ ଧର୍ମିଷ୍ଠ, ସତ୍ୟପ୍ରତିଜ୍ଞ ଏବଂ ପିତାଙ୍କ ନିର୍ଦ୍ଦେଶ-

ଧର୍ମିଷ୍ଠଃ ସତ୍ୟସନ୍ଧଶ୍ଚ ପିତୁର୍ନିର୍ଦ୍ଦେଶକାରକଃ ।
ତ୍ୱୟି ସତ୍ୟଂ ଚ ଧର୍ମଶ୍ଚ ତ୍ୱୟି ସର୍ବଂ ପ୍ରତିଷ୍ଠିତମ୍ । ୭ ।
ତଚ୍ଚ ସର୍ବଂ ମହାବାହୋ ଶକ୍ୟଂ ଧର୍ତ୍ତୁଂ ଜିତେନ୍ଦ୍ରିୟୈଃ ।
ତବ ବଶ୍ୟେନ୍ଦ୍ରିୟତ୍ୱଂ ଚ ଜାନାମି ଶୁଭଦର୍ଶନ । ୮ ।
ତୃତୀୟଂ ଯଦିଦଂ ରୌଦ୍ରଂ ପରପ୍ରାଣାଭିହିଂସନମ୍ ।
ନିର୍ବୈରଂ କ୍ରିୟତେ ମୋହାତ୍ତଚ୍ଚ ତେ ସମୁପସ୍ଥିତମ୍ । ୯ ।
ପ୍ରତିଜ୍ଞାତସ୍ତ୍ୱୟା ବୀର ଦଣ୍ଡକାରଣ୍ୟବାସିନାମ୍ ।
ଋଷୀଣାଂ ରକ୍ଷଣାର୍ଥାୟ ବଧଃ ସଂଯତି ରକ୍ଷସାମ୍ । ୧୦ ।
ଏତନ୍ନିମିତ୍ତଂ ଚ ବନଂ ଦଣ୍ଡକା ଇତି ବିଶ୍ରୁତମ୍ ।
ପ୍ରସ୍ଥିତସ୍ତ୍ୱଂ ସହ ଭ୍ରାତ୍ରା ଧୃତବାଣଶରାସନଃ । ୧୧ ।
ତତସ୍ତ୍ୱାଂ ପ୍ରସ୍ଥିତଂ ଦୃଷ୍ଟ୍ୱା ମମ ଚିନ୍ତାକୁଳଂ ମନଃ ।
ତ୍ୱଦ୍‌ବୃତ୍ତଂ ଚିନ୍ତୟନ୍ତ୍ୟା ବୈ ଭବେନ୍ନିଃଶ୍ରେୟସଂ ମହତ୍ । ୧୨ ।
ନ ହି ମେ ରୋଚତେ ବୀର ଗମନଂ ଦଣ୍ଡକାନ୍ ପ୍ରତି ।
କାରଣଂ ତତ୍ର ବକ୍ଷ୍ୟାମି ବଦନ୍ତ୍ୟାଃ ଶ୍ରୂୟତାଂ ମମ । ୧୩ ।
ତ୍ୱଂ ହି ବାଣଧନୁଷ୍ପାଣିର୍ଭ୍ରାତ୍ରା ସହ ବନଂ ଗତଃ ।
ଦୃଷ୍ଟ୍ୱା ବନଚରାନ୍ ସର୍ବାନ୍ କଚ୍ଚିତ୍କୁର୍ଯ୍ୟାଃ ଶରବ୍ୟୟମ୍ । ୧୪ ।

---

ପାଳନକାରୀ ଅଟ । ଧର୍ମ ଏବଂ ସତ୍ୟ ତୁମଠାରେ ଦୃଢ଼ଭାବରେ ପ୍ରତିଷ୍ଠିତ ହୋଇ-ରହିଅଛି । ୭ । ହେ ମହାବାହୋ ! ଜିତେନ୍ଦ୍ରିୟ ଲୋକମାନେ ଏହିସବୁ ଗୁଣଧାରଣ କରିପାରନ୍ତି । ହେ ଶୁଭଦର୍ଶନ ! ତୁମେ ଯେ ଇନ୍ଦ୍ରିୟମାନଙ୍କୁ ବଶୀଭୂତ କରିଅଛ ଏହା ମୁଁ ଜାଣେ ।୮। କିନ୍ତୁ ବିନା ଶତ୍ରୁତାରେ ପ୍ରାଣିହିଂସା କରିବାର ଯେଉଁ ତୃତୀୟ ବ୍ୟସନ ତାହା ବର୍ତ୍ତମାନ ତୁମ୍ଭର ଉପସ୍ଥିତ ହୋଇଅଛି । ୯ । ହେ ବୀର ! ତୁମେ ଦଣ୍ଡକାରଣ୍ୟବାସୀ ଋଷିମାନଙ୍କୁ ରକ୍ଷାକରିବାନିମନ୍ତେ ଯୁଦ୍ଧରେ ରାକ୍ଷସମାନଙ୍କୁ ସଂହାର କରିବ ବୋଲି ପ୍ରତିଜ୍ଞା କରିଅଛ । ୧୦ । ଏଥିନିମନ୍ତେ ତୁମେ ଧନୁଶର-ଧାରଣ ପୂର୍ବକ ଭାଇଙ୍କ ସହିତ ଦଣ୍ଡକା ନାମକ ବିଖ୍ୟାତ ବନକୁ ଯାତ୍ରା କରିଅଛ ।୧୧। ଅତଏବ ତୁମକୁ ପ୍ରସ୍ଥାନ କରିବାର ଦେଖି ଏବଂ ତୁମ୍ଭର କାର୍ଯ୍ୟ ଚିନ୍ତା କରି ମୋର ମନ ଚିନ୍ତାକୁଳ ହୋଇପଡ଼ୁଛି । କାରଣ ଏହାଦ୍ୱାରା ଘୋର ଅନିଷ୍ଟ ହେବ । ୧୨ । ହେ ବୀର ! ଏଇଥିପାଇଁ ଦଣ୍ଡକାରଣ୍ୟକୁ ଯିବାକୁ ମୋର ମନ ବଳୁନାହିଁ; ତାର କାରଣ ମୁଁ କହୁଅଛି ତୁମେ ଶୁଣ । ୧୩ । ଧନୁର୍ବାଣହସ୍ତରେ ଭାଇଙ୍କ ସହିତ ବନକୁ ଗମନ କରିବାର ଦେଖି ମୋର ଆଶଙ୍କା ହୁଏ, ତୁମେ ବନଚରମାନଙ୍କୁ ଦେଖି କାଳେ

କ୍ଷତ୍ରିୟାଣାଂ ଚ ହି ଧନୁର୍ହୁତାଶସ୍ୟେନ୍ଧନାନି ଚ ।
ସମୀପତଃ ସ୍ଥିତଂ ତେଜୋ ବଳମୁଚ୍ଛ୍ରୟତେ ଭୃଶମ୍ । ୧୫ ।
ପୁରା କିଲ ମହାବାହୋ ତପସ୍ୱୀ ସତ୍ୟବାକ୍ ଶୁଚିଃ ।
କସ୍ମିଂଶ୍ଚିଦଭବତ୍ ପୁଣ୍ୟେ ବନେ ରତମୃଗଦ୍ୱିଜେ । ୧୬ ।
ତସ୍ୟୈବ ତପସୋ ବିଘ୍ନଂ କର୍ତୁମିନ୍ଦ୍ରଃ ଶଚୀପତିଃ ।
ଖଡ୍‌ଗପାଣିରଥାଗଚ୍ଛଦାଶ୍ରମଂ ଭଟରୂପଧୃକ୍ । ୧୭ ।
ତସ୍ମିଂସ୍ତଦାଶ୍ରମପଦେ ନିଶିତଃ ଖଡ୍‌ଗ ଉତ୍ତମଃ ।
ସ ନ୍ୟାସବିଧିନା ଦତ୍ତଃ ପୁଣ୍ୟେ ତପସି ତିଷ୍ଠତଃ । ୧୮ ।
ସ ତଚ୍ଛସ୍ତ୍ରମନୁପ୍ରାପ୍ୟ ନ୍ୟାସରକ୍ଷଣତତ୍ପରଃ ।
ବନେ ତଂ ବିଚରତ୍ୟେବ ରକ୍ଷନ୍ ପ୍ରତ୍ୟୟମାତ୍ମନଃ । ୧୯ ।
ଯତ୍ର ଗଚ୍ଛତ୍ୟୁପାଦାତୁଂ ମୂଲାନି ଚ ଫଲାନି ଚ ।
ନ ବିନା ଯାତି ତଂ ଖଡ୍‌ଗଂ ନ୍ୟାସରକ୍ଷଣତତ୍ପରଃ । ୨୦ ।
ନିତ୍ୟଂ ଶସ୍ତ୍ରଂ ପରିବହନ୍ କ୍ରମେଣ ସ ତପୋଧନଃ ।
ଚକାର ରୌଦ୍ରୀଂ ସ୍ୱାଂ ବୁଦ୍ଧିଂ ତ୍ୟକ୍ତ୍ୱା ତପସି ନିଶ୍ଚୟମ୍ । ୨୧ ।

---

ସେମାନଙ୍କ ପ୍ରତି ଶରମୋଚନ କରିବ । ୧୪ । କାଷ୍ଠାଦି ଇନ୍ଧନ ଅଗ୍ନିକୁ ଉତ୍ତେଜିତ କଲାପରି କ୍ଷତ୍ରିୟମାନଙ୍କ ନିକଟରେ ଧନୁ ଥିଲେ ତାହା ସେମାନଙ୍କର ତେଜ ଓ ବଳକୁ ବିଶେଷ ଉତ୍ତେଜିତ କରାଏ । ୧୫ । ହେ ମହାବାହୋ ! ପୂର୍ବେ କୌଣସି ଗୋଟିଏ ମୃଗପକ୍ଷିସେବିତ ବନରେ ଜଣେ ସତ୍ୟନିଷ୍ଠ ପବିତ୍ରାତ୍ମା ଋଷି ଥିଲେ ।୧୬। ଶଚୀପତି ଇନ୍ଦ୍ର ସେହି ତପସ୍ୱୀଙ୍କର ତପୋବିଘ୍ନ ଘଟାଇବାନିମନ୍ତେ ଗୋଟିଏ ଯୋଦ୍ଧା ରୂପ ଧାରଣ କରି ଓ ଖଡ୍‌ଗଟିଏ ହାତରେ ଧରି ସେହି ଆଶ୍ରମରେ ଆସି ଉପସ୍ଥିତ ହେଲେ । । ୧୭ । ସେ ସେହି ଆଶ୍ରମରେ ଏ ତପୋନିଷ୍ଠ ମୁନିଙ୍କ ନିକଟରେ ସେହି ତୀକ୍ଷ୍ଣ-ଧାର ଖଡ୍‌ଗଟି ନ୍ୟାସରୂପେ ରଖିଦେଇ ଚାଲିଗଲେ । ୧୮ । ସେହି ମୁନି ଏହି ଅସ୍ତ୍ରକୁ ନ୍ୟାସରୂପେ ପାଇ ଓ ତାହାର ସୁରକ୍ଷା ବିଷୟରେ ଅତ୍ୟନ୍ତ ଯତ୍ନବାନ୍ ହୋଇ ସର୍ବଦା ସଙ୍ଗରେ ଧରି ବନରେ ବିଚରଣ କରିବାକୁ ଲାଗିଲେ । ୧୯ । ସେ ଏହି ନ୍ୟସ୍ତ ଅସ୍ତ୍ରର ରକ୍ଷା ନିମନ୍ତେ ଯତ୍ନବାନ୍ ହୋଇ ଫଳ ମୂଳ ଆହରଣ ନିମନ୍ତେ ଯେଉଁଠାକୁ ଯେତେବେଳେ ଯାଉଥିଲେ ସେତେବେଳେ ଏ ଖଡ୍‌ଗକୁ କେବେ ସଙ୍ଗରେ ନ ନେଇ ଯାଉ ନ ଥିଲେ । ୨୦ । ସର୍ବଦା ଖଡ୍‌ଗ ବହନ କରିବାଦ୍ୱାରା କ୍ରମେ ସେହି ତପସ୍ୱୀଙ୍କର ତପୋନିଷ୍ଠା ଦୂର ହୋଇ ତାଙ୍କର ପ୍ରକୃତି ଉଗ୍ର

ତତଃ ସ ରୌଦ୍ରେଽଭିରତଃ ପ୍ରମତ୍ତୋଽଧର୍ମକର୍ଶିତଃ ।
ତସ୍ୟ ଶସ୍ତ୍ରସ୍ୟ ସଂବାସାଜ୍ଜଗାମ ନରକଂ ମୁନିଃ । ୨୨ ।
ଏବମେତତ୍ପୁରାବୃତ୍ତଂ ଶସ୍ତ୍ରସଂଯୋଗକାରଣମ୍ ।
ଅଗ୍ନିସଂଯୋଗବଦ୍ଧେତୁଃ ଶସ୍ତ୍ରସଂଯୋଗ ଉଚ୍ୟତେ । ୨୩ ।
ସ୍ନେହାଚ୍ଚ ବହୁମାନାଚ୍ଚ ସ୍ମାରୟେ ତ୍ୱାଂ ନ ଶିକ୍ଷୟେ ।
ନ କଥଂଚନ ସା କାର୍ଯ୍ୟା ଗୃହୀତଧନୁଷା ତ୍ୱୟା । ୨୪ ।
ବୁଦ୍ଧିର୍ବୈରଂ ବିନା ହନ୍ତୁଂ ରାକ୍ଷସାନ୍ ଦଣ୍ଡକାଶ୍ରିତାନ୍ ।
ଅପରାଧଂ ବିନା ହନ୍ତୁଂ ଲୋକାନ୍ ବୀର ନ କାମୟେ । ୨୫।
କ୍ଷତ୍ରିୟାଣାଂ ତୁ ବୀରାଣାଂ ବନେଷୁ ନିରତାତ୍ମନାମ୍ ।
ଧନୁଷା କାର୍ଯମେତାବଦାର୍ତ୍ତାନାମଭିରକ୍ଷଣମ୍ । ୨୬ ।
କ୍ୱ ଚ ଶସ୍ତ୍ରଂ କ୍ୱ ଚ ବନଂ କ୍ୱ ଚ କ୍ଷାତ୍ରଂ ତପଃ କ୍ୱ ଚ ।
ବ୍ୟାବିଦ୍ଧମିଦମସ୍ମାଭିର୍ଦେଶଧର୍ମସ୍ତୁ ପୂଜ୍ୟତାମ୍ । ୨୭ ।
ତଦାର୍ଯ କଲୁଷା ବୁଦ୍ଧିର୍ଜାୟତେ ଶସ୍ତ୍ରସେବନାତ୍ ।
ପୁନର୍ଗତ୍ୱା ତ୍ୱୟୋଧ୍ୟାୟାଂ କ୍ଷତ୍ରଧର୍ମଂ ଚରିଷ୍ୟସି । ୨୮ ।

---

ହୋଇ ଉଠିଲା । ୨୧ । ଅନନ୍ତର ସେ ଏହି ଶସ୍ତ୍ରସଂଯୋଗହେତୁ ରୌଦ୍ର କାର୍ଯ୍ୟରେ ରତ ଏବଂ ପ୍ରମତ୍ତ ହୋଇ ଉଠିଲେ ଏବଂ ଅଧର୍ମାକ୍ରାନ୍ତ ହେବାଦ୍ୱାରା ନରକକୁ ଗମନ କଲେ । ୨୨ । ଶସ୍ତ୍ରର ସାହଚର୍ଯ୍ୟହେତୁ ପୂର୍ବେ ଏହିପରି ଘଟିଥିଲା । ତେଣୁ ଶସ୍ତ୍ରସଂଯୋଗକୁ ଅଗ୍ନିସଂଯୋଗସଦୃଶ ବିକାରର ହେତୁ ବୋଲି ଲୋକେ କହନ୍ତି । ୨୩ । ତୁମପ୍ରତି ସ୍ନେହ ଏବଂ ସମ୍ମାନ ହେତୁରୁ ମୁଁ ଏକଥା ତୁମକୁ ସ୍ମରଣ କରାଇଦେଉଛି; ମାତ୍ର ଶିକ୍ଷା ଦେଉ ନାହିଁ । ତୁମେ ଧନୁର୍ଦ୍ଧାରଣ କରି ଦଣ୍ଡକାରଣ୍ୟବାସୀ ରାକ୍ଷସମାନଙ୍କୁ ବିନା ଶତ୍ରୁତାରେ ହତ୍ୟା କରିବାକୁ ଇଚ୍ଛାକରିବା କୌଣସିମତେ ଉଚିତ ନୁହେଁ । ହେ ବୀର ! ତୁମେ ବିନା ଅପରାଧରେ ଲୋକଙ୍କୁ ହତ୍ୟା କରିବ ଏହା ମୁଁ କଦାପି ଇଚ୍ଛା କରେଁ ନାହିଁ । ୨୪-୨୫ । ବନରେ ଆର୍ତ୍ତମାନଙ୍କର ରକ୍ଷା କରିବା ନିମନ୍ତେହିଁ କ୍ଷତ୍ରିୟ ବୀରମାନଙ୍କର ଧନୁରେ ପ୍ରୟୋଜନ ।୨୬। ବନବାସୀର ଶସ୍ତ୍ର ଧରିବା ଆବଶ୍ୟକ କ'ଣ ? କ୍ଷତ୍ରିୟଧର୍ମ ଏବଂ ତପସ୍ୟା ମଧ୍ୟରେ ସଂପୂର୍ଣ୍ଣ ବିରୋଧ ଅଛି। ଆମେମାନେ ବର୍ତ୍ତମାନ ଏହି ପରସ୍ପରବିରୁଦ୍ଧ କାର୍ଯ୍ୟ କରୁଥାଉଁ । ତୁମେ ଯେଉଁ ସ୍ଥାନରେ ରହିଲ ସେହି ସ୍ଥାନର ଧର୍ମପ୍ରତି ସମ୍ମାନକର । ୨୭ । ହେ ଆର୍ଯ୍ୟ ! ଶସ୍ତ୍ରର ଉପାସନା କରିବାଦ୍ୱାରା ତପୋବୁଦ୍ଧି କଳୁଷିତ ହୋଇଯାଏ । ତୁମେ ପୁଣି ଅଯୋଧ୍ୟାକୁ ଗଲାଉତ୍ତାରୁ ସେଠାରେ କ୍ଷତ୍ରିୟଧର୍ମ ଆଚରଣ କରିବ । ୨୮ ।

ଅକ୍ଷୟ୍ୟା ତୁ ଭବେତ୍ ପ୍ରୀତିଃ ଶ୍ୱଶ୍ରୂଶ୍ୱଶୁରୟୋର୍ମମ ।
ଯଦି ରାଜ୍ୟଂ ପରିତ୍ୟଜ୍ୟ ଭବେସ୍ତ୍ୱଂ ନିରତୋ ମୁନିଃ । ୨୯ ।
ଧର୍ମାଦର୍ଥଃ ପ୍ରଭବତେ ଧର୍ମାତ୍ ପ୍ରଭବତେ ସୁଖମ୍ ।
ଧର୍ମେଣ ଲଭତେ ସର୍ବଂ ଧର୍ମସାରମିଦଂ ଜଗତ୍ । ୩୦ ।
ଆତ୍ମାନଂ ନିୟମୈସ୍ତୈସ୍ତୈଃ କର୍ଷୟିତ୍ୱା ପ୍ରଯତ୍ନତଃ ।
ପ୍ରାପ୍ୟତେ ନିପୁଣୈର୍ଧର୍ମୋ ନ ସୁଖାଲ୍ଲଭ୍ୟତେ ସୁଖମ୍ । ୩୧ ।
ନିତ୍ୟଂ ଶୁଚିମତିଃ ସୌମ୍ୟ ଚର ଧର୍ମଂ ତପୋବନେ ।
ସର୍ବଂ ହି ବିଦିତଂ ତୁଭ୍ୟଂ ତ୍ରୈଲୋକ୍ୟମପି ତତ୍ତ୍ୱତଃ । ୩୨ ।
ସ୍ତ୍ରୀଚାପଲାଦେତଦୁଦାହୃତଂ ମେ
ଧର୍ମଂ ଚ ବକ୍ତୁଂ ତବ କଃ ସମର୍ଥଃ ।
ବିଚାର୍ଯ ବୁଦ୍ଧ୍ୟା ତୁ ସହାନୁଜେନ
ଯଦ୍ରୋଚତେ ତତ୍ କୁରୁ ମା ଚିରେଣ । ୩୩ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ସୀତାଧର୍ମାବେଦନମ୍
ନାମ ନବମଃ ସର୍ଗଃ ।

---

ତୁମେ ଯଦି ରାଜ୍ୟ ପରିତ୍ୟାଗ କରି ଚିରକାଳପାଇଁ ଋଷି ହୋଇରହିବ, ତେବେ ମୋର ଶାଶୁ ଏବଂ ଶଶୁରଙ୍କର ପ୍ରୀତି ପ୍ରାପ୍ତି ହେବ । ୨୯ । ଧର୍ମରୁ ଅର୍ଥଲାଭ ହୁଏ, ଧର୍ମରୁ ସୁଖପ୍ରାପ୍ତି ହୁଏ, ଧର୍ମଦ୍ୱାରା ସମସ୍ତ ଲାଭ ହୁଏ ଏବଂ ଧର୍ମହିଁ ସଂସାରରେ ଏକମାତ୍ର ସାରବସ୍ତୁ । ୩୦ । ସୁଦକ୍ଷ ବ୍ୟକ୍ତିମାନେ ଯତ୍ନସହକାରେ ଯଥାବିହିତ ନିୟମ ପାଳନ ଦ୍ୱାରା ଶରୀରକୁ କ୍ଷୀଣ କରି ଧର୍ମଲାଭ କରନ୍ତି; କାରଣ ସୁଖରୁ କଦାପି ସୁଖ ଲାଭ ହୁଏ ନାହିଁ । ୩୧ । ହେ ସୌମ୍ୟ ! ତୁମେ ସତତ ଶୁଦ୍ଧଚିତ୍ତ ହୋଇ ତପୋବନରେ ଧର୍ମ ଆଚରଣ କର । ତ୍ରିଭୁବନର ସମସ୍ତ କଥାର ତତ୍ତ୍ୱ ତୁମକୁ ଭଲରୂପେ ଜଣାଅଛି । ୩୨ । ମୁଁ ସ୍ତ୍ରୀସ୍ୱଭାବଚପଳତା ହେତୁରୁ ଏକଥା ତୁମକୁ କହି ପକାଇଲି । ତୁମକୁ କିଏ ଧର୍ମ ବିଷୟରେ ଉପଦେଶ ଦେଇପାରିବ ? ତୁମେ ଅନୁଜଙ୍କ ସହିତ ବିଚାର କରି ଯାହା ତୁମ ମନକୁ ପାଉଛି ବିଳମ୍ବ ନ କରି ତାହାହିଁ କର । ୩୩ ।

---

# ଦଶମଃ ସର୍ଗଃ

## ରକ୍ଷୋବଧସମର୍ଥନମ୍

ବାକ୍ୟମେତତ୍ତୁ ବୈଦେହ୍ୟା ବ୍ୟାହୃତଂ ଭର୍ତ୍ତୃଭକ୍ତୟା ।
ଶ୍ରୁତ୍ୱା ଧର୍ମେ ସ୍ଥିତୋ ରାମଃ ପ୍ରତ୍ୟୁବାଚାଥ ମୈଥିଲୀମ୍ । ୧ ।
ହିତମୁକ୍ତଂ ତ୍ୱୟା ଦେବି ସ୍ନିଗ୍ଧୟା ସଦୃଶଂ ବଚଃ ।
କୁଲଂ ବ୍ୟପଦିଶନ୍ତ୍ୟା ଚ ଧର୍ମଜ୍ଞେ ଜନକାତ୍ମଜେ । ୨ ।
କିଂ ତୁ ବକ୍ଷ୍ୟାମ୍ୟହଂ ଦେବି ତ୍ୱମେବୋକ୍ତମିଦଂ ବଚଃ ।
କ୍ଷତ୍ରିୟୈର୍ଧାର୍ଯତେ ଚାପୋ ନାର୍ତଶବ୍ଦୋ ଭବେଦିତି । ୩ ।
ମାଂ ସୀତେ ସ୍ୱୟମାଗମ୍ୟ ଶରଣ୍ୟାଃ ଶରଣଂଗତାଃ ।
ତେ ଚାର୍ତା ଦଣ୍ଡକାରଣ୍ୟେ ମୁନୟଃ ସଂଶିତବ୍ରତାଃ । ୪ ।
ବସନ୍ତୋ ଧର୍ମନିରତା ବନେ ମୂଳଫଳାଶନାଃ ।
ନ ଲଭନ୍ତେ ସୁଖଂ ଭୀତା ରାକ୍ଷସୈଃ କ୍ରୂରକର୍ମଭିଃ । ୫ ।
କାଲେ କାଲେ ଚ ନିରତା ନିୟମୈର୍ବିବିଧୈର୍ବନେ ।
ଭକ୍ଷ୍ୟନ୍ତେ ରାକ୍ଷସୈର୍ଭୀମୈର୍ନରମାଂସୋପଜୀବିଭିଃ । ୬ ।

---

## ୧୦ମ ସର୍ଗ

### ( ରାକ୍ଷସବଧର ସମର୍ଥନ )

ପତିଭକ୍ତା ସୀତାଙ୍କର ଏହି କଥା ଶୁଣି ଧର୍ମନିଷ୍ଠ ରାମ ତାଙ୍କୁ ଉତ୍ତର ଦେଲେ । ୧ । "ହେ ଧର୍ମଜ୍ଞେ, ଜନକନନ୍ଦିନି ! ତୁମେ ସ୍ନେହବଚନରେ ନିଜର କୁଳଧର୍ମନିଦର୍ଶନପୂର୍ବକ ଯାହା କହିଲ, ତାହା ହିତଜନକ ଓ ତୁମପକ୍ଷେ ସର୍ବଥା ଉପଯୁକ୍ତ । ୨। କିନ୍ତୁ ହେ ଦେବି ! ମୁଁ କହିବି ତୁମେ ନିଜେହିଁ କହିଛ ଯେ ପୃଥିବୀରେ ଆର୍ତ୍ତ ଶବ୍ଦ ରହିନପାରେ; ଏଥିପାଇଁ କ୍ଷତ୍ରିୟମାନେ ଧନୁ ଧରିଥାନ୍ତି । ୩। ଦଣ୍ଡକାରଣ୍ୟବାସୀ ସମ୍ମାନାର୍ହ ଋଷିଗଣ ଆର୍ତ୍ତ ହୋଇ ନିଜେ ଆସି ଶରଣଯୋଗ୍ୟ ମୋର ଶରଣାପନ୍ନ ହୋଇଛନ୍ତି । ସେମାନେ ନିତ୍ୟ ଫଳମୂଳ ଭକ୍ଷଣକରି ଓ ଧର୍ମନିଷ୍ଠ ହୋଇ ଅରଣ୍ୟ-ମଧ୍ୟରେ ବାସ କରନ୍ତି । ସେମାନେ କ୍ରୂରକର୍ମା ରାକ୍ଷସମାନଙ୍କଦ୍ୱାରା ଭୟଭୀତ ହୋଇ ସୁଖ ଲାଭକରି ପାରୁ ନାହାନ୍ତି । ୪-୫ । ସେମାନେ ସର୍ବଦା ବିବିଧ ନିୟମ ପାଳନ-ପୂର୍ବକ ବନରେ ଧର୍ମନିରତ ହୋଇ ରହିଥିଲେ ମଧ୍ୟ ନରମାଂସଭୋଜୀ ଭୀମକର୍ମା

ତେ ଭକ୍ଷ୍ୟମାଣା ମୁନୟୋ ଦଣ୍ଡକାରଣ୍ୟବାସିନଃ ।
ଅସ୍ମାନଭ୍ୟବପଦ୍ୟେତ ମାମୂଚୁର୍ଦ୍ୱିଜସତ୍ତମାଃ ।୭ ।
ମଯା ତୁ ବଚନଂ ଶ୍ରୁତ୍ୱା ତେଷାମେବଂ ମୁଖାଚ୍ଚ୍ୟୁତମ୍ ।
କୃତ୍ୱା ଚରଣଶୁଶ୍ରୂଷାଂ ବାକ୍ୟମେତଦୁଦାହୃତମ୍ ।୮ ।
ପ୍ରସୀଦନ୍ତୁ ଭବନ୍ତୋ ମେ ହ୍ରୀରେଷା ହି ମମାତୁଲା ।
ଯଦୀଦୃଶୈରହଂ ବିପ୍ରୈରୁପସ୍ଥେୟୈରୁପସ୍ଥିତଃ । ୯ ।
କିଂ କରୋମୀତି ଚ ମଯା ବ୍ୟାହୃତଂ ଦ୍ୱିଜସନ୍ନିଧୌ ।
ସର୍ବୈରେତୈଃ ସମାଗମ୍ୟ ବାଗିୟଂ ସମୁଦାହୃତା । ୧୦ ।
ରାକ୍ଷସୈର୍ଦଣ୍ଡକାରଣ୍ୟେ ବହୁଭିଃ କାମରୂପିଭିଃ ।
ଅର୍ଦିତାଃ ସ୍ମ ଭୃଶଂ ରାମ ଭବାନ୍ନସ୍ତ୍ରାତୁମର୍ହତି । ୧୧।
ହୋମକାଲେଷୁ ସଂପ୍ରାପ୍ତାଃ ପର୍ବକାଲେଷୁ ଚାନଘ ।
ଧର୍ଷୟନ୍ତି ସୁଦୁର୍ଧର୍ଷା ରାକ୍ଷସାଃ ପିଶିତାଶନାଃ । ୧୨ ।
ରାକ୍ଷସୈର୍ଧର୍ଷିତାନାଂ ଚ ତାପସାନାଂ ତପସ୍ୱିନାମ୍ ।
ଗତିଂ ମୃଗୟମାଣାନାଂ ଭବାନ୍ନଃ ପରମା ଗତିଃ । ୧୩ ।

---

ରାକ୍ଷସମାନେ ସେମାନଙ୍କୁ ଭକ୍ଷଣ କରୁଅଛନ୍ତି । ୭ । ରାକ୍ଷସମାନେ ସେମାନଙ୍କୁ ଭକ୍ଷଣ କରୁଥିବାରୁ ସେହି ବ୍ରାହ୍ମଣଶ୍ରେଷ୍ଠ ଦଣ୍ଡକାରଣ୍ୟବାସୀ ଋଷିମାନେ ଆମ ନିକଟକୁ ଆସି ମୋତେ ତାହା କହିଲେ । ୭ । ସେମାନଙ୍କର ମୁଖନିଃସୃତ ସେହି କଥା ଶୁଣି ମୁଁ ସେମାନଙ୍କ ଚରଣସେବା କରି ତାଙ୍କୁ କହିଲି । ୮ । 'ଆପଣମାନେ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ । ମୁଁ ଆପଣମାନଙ୍କର ଶରଣାପନ୍ନ ହେବାର କଥା, ଅଥଚ ଆପଣମାନେ ଯେ ମୋ ପାଖରେ ଶରଣାପନ୍ନ ହେଉଛନ୍ତି, ଏହା ମୋ ପକ୍ଷରେ ବିଶେଷ ଲଜ୍ଜାର କଥା' । ୯ । ମୁଁ ସେମାନଙ୍କ ନିକଟରେ କହିଲି 'ମୁଁ କଣ କରିବି ?' ଅନନ୍ତର ସେମାନେ ସମସ୍ତେ ସମବେତ ହୋଇ ମୋତେ ଏହି କଥା କହିଲେ । ୧୦ । 'ହେ ରାମ ! ଦଣ୍ଡକାରଣ୍ୟରେ ବହୁସଂଖ୍ୟକ କାମରୂପୀ ରାକ୍ଷସ ଆମମାନଙ୍କ ପ୍ରତି ଅତିଶୟ ଅତ୍ୟାଚାର କରୁଛନ୍ତି । ଆପଣ ଆମମାନଙ୍କୁ ରକ୍ଷା କରିବା ଉଚିତ । ୧୧ । ହେ ନିଷ୍ପାପ ! ସେହି ମାଂସଭୋଜୀ ଦୁର୍ଜେୟ ରାକ୍ଷସମାନେ ହୋମସମୟରେ ଏବଂ ପର୍ବସମୟରେ ଆସି ଉପସ୍ଥିତ ହୋଇ ଆମମାନଙ୍କ ଉତ୍ପୀଡ଼ନ କରୁଛନ୍ତି । ୧୨ । ତପୋନିରତ ତପସ୍ୱୀମାନେ ରାକ୍ଷସମାନଙ୍କ ଦ୍ୱାରା ବିପର୍ଯ୍ୟସ୍ତ ହୋଇ ସେଥିରୁ ପରିତ୍ରାଣର ଉପାୟ ଖୋଜୁଛନ୍ତି । ଆପଣହିଁ ଆମମାନଙ୍କର ପ୍ରଧାନ ଆଶ୍ରୟ । ୧୩ ।

କାମଂ ତପଃ ପ୍ରଭାବେଣ ଶକ୍ତା ହନ୍ତୁଂ ନିଶାଚରାନ୍ ।
ଚିରାର୍ଜିତଂ ତୁ ନେଚ୍ଛାମସ୍ତପଃ ଖଣ୍ଡୟିତୁଂ ବୟମ୍ । ୧୪ ।
ବହୁବିଘ୍ନଂ ତପୋ ନିତ୍ୟଂ ଦୁଶ୍ଚରଂ ଚୈବ ରାଘବ ।
ତେନ ଶାପଂ ନ ମୁଞ୍ଚାମୋ ଭକ୍ଷ୍ୟମାଣାଶ୍ଚ ରାକ୍ଷସୈଃ । ୧୫ ।
ତଦର୍ଦ୍ୟମାନାନ୍ ରକ୍ଷୋଭିର୍ଦଣ୍ଡକାରଣ୍ୟବାସିଭିଃ ।
ରକ୍ଷ ନସ୍ତ୍ୱଂ ସହ ଭ୍ରାତ୍ରା ତ୍ୱନ୍ନାଥା ହି ବୟଂ ବନେ । ୧୬ ।
ମୟା ଚୈତଦ୍‌ବଚଃ ଶ୍ରୁତ୍ୱା କାର୍ତ୍ସ୍ନ୍ୟେନ ପରିପାଳନମ୍ ।
ଋଷୀଣାଂ ଦଣ୍ଡକାରଣ୍ୟେ ସଂଶ୍ରୁତଂ ଜନକାତ୍ମଜେ । ୧୭ ।
ସଂଶ୍ରୁତ୍ୟ ଚ ନ ଶକ୍ଷ୍ୟାମି ଜୀବମାନଃ ପ୍ରତିଶ୍ରବମ୍ ।
ମୁନୀନାମନ୍ୟଥା କର୍ତ୍ତୁଂ ସତ୍ୟମିଷ୍ଟଂ ହି ମେ ସଦା । ୧୮ ।
ଅପ୍ୟହଂ ଜୀବିତଂ ଜହ୍ୟାଂ ତ୍ୱାଂ ବା ସୀତେ ସଲକ୍ଷ୍ମଣାମ୍ ।
ନ ତୁ ପ୍ରତିଜ୍ଞାଂ ସଂଶ୍ରୁତ୍ୟ ବ୍ରାହ୍ମଣେଭ୍ୟୋ ବିଶେଷତଃ । ୧୯ ।
ତଦବଶ୍ୟଂ ମୟା କାର୍ଯ୍ୟମୃଷୀଣାଂ ପରିପାଳନମ୍ ।
ଅନୁକ୍ତେନାପି ବୈଦେହି ପ୍ରତିଜ୍ଞାୟ ତୁ କିଂ ପୁନଃ । ୨୦।

---

ଅବଶ୍ୟ ତପସ୍ୟାପ୍ରଭାବରେ ଆମେମାନେ ରାକ୍ଷସମାନଙ୍କୁ ହତ୍ୟା କରିବାକୁ ପୂର୍ଣ୍ଣମାତ୍ରାରେ ସମର୍ଥ ଅଛୁଁ । ମାତ୍ର ଆମେମାନେ ଚିରସାଧନା ଦ୍ୱାରା ଅର୍ଜିତ ଏହି ତପୋବଳକୁ ଏପରିଭାବରେ ଖର୍ବ କରିବାକୁ ଇଚ୍ଛା କରୁନାହୁଁ । ୧୪ । ହେ ରାଘବ ! ତପସ୍ୟା ଅତିକଷ୍ଟରେ ଅର୍ଜନ କରାଯାଏ ଏବଂ ତାହା ଅର୍ଜନ କରିବାରେ ନାନା ବିଘ୍ନ ରହିଛି । ସେଥିପାଇଁ ରାକ୍ଷସମାନେ ଆମମାନଙ୍କୁ ଖାଇ ଯାଉଥିଲେ ମଧ୍ୟ ଆମେମାନେ ସେମାନଙ୍କ ପ୍ରତି ଶାପମୋଚନ କରୁନାହୁଁ । ୧୫ । ସୁତରାଂ ତୁମେ ଭାଇଙ୍କ ସହିତ ଦଣ୍ଡକାରଣ୍ୟବାସୀ ରାକ୍ଷସମାନଙ୍କ ଅତ୍ୟାଚାରରୁ ଆମମାନଙ୍କୁ ରକ୍ଷା କର । ଏ ବନରେ ତୁମେହିଁ ଆମମାନଙ୍କର ରକ୍ଷାକର୍ତ୍ତା ଅଛ' । ୧୬ । ହେ ଜନକନନ୍ଦନ ! ମୁଁ ସେମାନଙ୍କର ଏହି କଥା ଶୁଣି ଦଣ୍ଡକାରଣ୍ୟରେ ଋଷିମାନଙ୍କୁ ସର୍ବତୋଭାବରେ ରକ୍ଷାକରିବ ବୋଲି ପ୍ରତିଶ୍ରୁତି ଦେଇଅଛୁ । ୧୭ । ମୁଁ ସେମାନଙ୍କ ନିକଟରେ ଏ ପ୍ରତିଜ୍ଞା କରି ସାରି ଜୀଇ ଥାଉଁ ଥାଉଁ ମୁନିମାନଙ୍କ ପ୍ରତି ଏ ପ୍ରତିଶ୍ରୁତିର ଅନ୍ୟଥା କରିପାରିବି ନାହିଁ । କାରଣ ସତ୍ୟହିଁ ମୋର ସର୍ବଦା ଅଭୀଷ୍ଟତମ ବସ୍ତୁ ।୧୮। ହେ ସୀତେ ! ମୁଁ ବରଂ ତୁମକୁ ଲକ୍ଷ୍ମଣଙ୍କୁ ଏବଂ ନିଜର ପ୍ରାଣ ପର୍ଯ୍ୟନ୍ତ ମଧ୍ୟ ତ୍ୟାଗ କରିପାରେଁ; କିନ୍ତୁ ପ୍ରତିଜ୍ଞା କରି, ବିଶେଷତଃ ବ୍ରାହ୍ମଣମାନଙ୍କ ସମକ୍ଷରେ ପ୍ରତିଶ୍ରୁତି ଦେଇ, ତାହା କଦାପି ଅନ୍ୟଥା କରିପାରିବି ନାହିଁ । ୧୯ । ସୁତରାଂ ଋଷିମାନଙ୍କର ପରିପାଳନ ମୋର ଅବଶ୍ୟକର୍ତ୍ତବ୍ୟ ।

ମମ ସ୍ନେହାଚ୍ଚ ସୌହାର୍ଦାଦିଦମୁକ୍ତଂ ତ୍ୱୟାନଘେ ।
ପରିତୁଷ୍ଟୋଽସ୍ମ୍ୟହଂ ସୀତେ ନ ହ୍ୟନିଷ୍ଟୋଽନୁଶିଷ୍ୟତେ ।୨୧ ।
ସଦୃଶଂ ଚାନୁରୂପଂ ଚ କୁଲସ୍ୟ ତବ ଚାତ୍ମନଃ ।
ସଧର୍ମଚାରିଣୀ ମେ ତ୍ୱଂ ପ୍ରାଣେଭ୍ୟୋଽପି ଗରୀୟସୀ । ୨୨ ।
ଇତ୍ୟେବମୁକ୍ତ୍ୱା ବଚନଂ ମହାତ୍ମା
ସୀତାଂ ପ୍ରିୟାଂ ମୈଥିଲରାଜପୁତ୍ରୀମ୍ ।
ରାମୋ ଧନୁଷ୍ମାନ୍ ସହ ଲକ୍ଷ୍ମଣେନ
ଜଗାମ ରମ୍ୟାଣି ତପୋବନାନି । ୨୩ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାଂ
ସଂହିତାୟାଂ ଅରଣ୍ୟକାଣ୍ଡେ ରକ୍ଷୋବଧସମର୍ଥନମ୍
ନାମ ଦଶମଃ ସର୍ଗଃ

---

ହେ ବୈଦେହି ! ସେମାନେ ନ କହିଥିଲେ ମଧ୍ୟ ମୋର ଏହା କର୍ତ୍ତବ୍ୟ; ପୁଣି ମୁଁ ସେମାନଙ୍କୁ ଯେତେବେଳେ ପ୍ରତିଶ୍ରୁତି ଦେଇଛି, ସେତେବେଳେ ଆଉ କଥା କ'ଣ ଅଛି । ୨୦ । ହେ ସୀତେ ! ତୁମେ ମୋ ପ୍ରତି ସ୍ନେହ ଓ ସୌହାର୍ଦ୍ଦ୍ୟବଶତଃ ଯାହା କହିଲ ମୁଁ ସେଥିରେ ସନ୍ତୁଷ୍ଟ ହୋଇଅଛି । କାରଣ ଅପ୍ରିୟ ଲୋକକୁ କେହି କେବେ ହିତୋପଦେଶ ଦିଏ ନାହିଁ । ୨୧ । ଏ ଉପଦେଶ ତୁମର ଏବଂ ତୁମ କୁଳର ସର୍ବଥା ଉପଯୁକ୍ତ । ତୁମେ ମୋର ସହଧର୍ମଚାରିଣୀ ଏବଂ ମୋର ପ୍ରାଣରୁ ବଳି ପ୍ରିୟତମା ଅଛ" ।୨୨। ଧନୁର୍ଦ୍ଧାରୀ ମହାନୁଭାବ ରାମ ମୈଥିଲରାଜନନ୍ଦନୀ ପ୍ରିୟା ସୀତାଙ୍କୁ ଏହିପରି କଥା କହି ଲକ୍ଷ୍ମଣଙ୍କ ସହିତ ରମଣୀୟ ତପୋବନମାନଙ୍କ ଆଡ଼କୁ ଗମନକଲେ । ୨୩ ।

---

# ଏକାଦଶଃ ସର୍ଗଃ

## ଅଗସ୍ତ୍ୟାଶ୍ରମଃ

ଅଗ୍ରତଃ ପ୍ରୟଯୌ ରାମଃ ସୀତା ମଧ୍ୟେ ସୁମଧ୍ୟମା ।
ପୃଷ୍ଠତସ୍ତୁ ଧନୁଷ୍ପାଣି ଲକ୍ଷ୍ମଣୋଽନୁଜଗାମ ହ । ୧ ।
ତୌ ପଶ୍ୟମାନୌ ବିବିଧାନ୍ ଶୈଳପ୍ରସ୍ଥାନ୍ ବନାନି ଚ ।
ନଦୀଶ୍ଚ ବିବିଧା ରମ୍ୟା ଜଗ୍ମତୁଃ ସୀତୟା ସହ । ୨ ।
ସାରସାଂଶ୍ଚକ୍ରବାକାଂଶ୍ଚ ନଦୀପୁଳିନଚାରିଣଃ ।
ସରାଂସି ଚ ସପଦ୍ମାନି ଯୁକ୍ତାନି ଜଳଜୈଃ ଖଗୈଃ । ୩ ।
ଯୂଥବଦ୍ଧାଂଶ୍ଚ ପୃଷତାନ୍ ମଦୋନ୍ମତ୍ତାନ୍ ବିଷାଣିନଃ ।
ମହିଷାଂଶ୍ଚ ବରାହାଂଶ୍ଚ ନାଗାଂଶ୍ଚ ଦ୍ରୁମବୈରିଣଃ । ୪ ।
ତେ ଗତ୍ୱା ଦୂରମଧ୍ୱାନଂ ଲମ୍ବମାନେ ଦିବାକରେ ।
ଦଦୃଶୁଃ ସହିତା ରମ୍ୟଂ ତଟାକଂ ଯୋଜନାୟତମ୍ । ୫ ।
ପଦ୍ମପୁଷ୍କରସଂବାଧଂ ଗଜଯୂଥୈରଲଂକୃତମ୍ ।
ସାରସୈର୍ହଂସକାଦମ୍ବୈଃ ସଂକୁଳଂ ଜଳଚାରିଭିଃ । ୬ ।

---

# ୧୧ଶ ସର୍ଗ

## ( ଅଗସ୍ତିଙ୍କ ଆଶ୍ରମ )

ଆଗେ ଆଗେ ରାମ, ମଝିରେ ସୁନ୍ଦରମଧ୍ୟା ସୀତା ଏବଂ ପଛରେ ଧନୁର୍ଦ୍ଧାରୀ ଲକ୍ଷ୍ମଣ ଚାଲିବାକୁ ଲାଗିଲେ ।୧। ସେଦୁହେଁ ସୀତାଙ୍କସହିତ ବିବିଧ ପର୍ବତ ପାର୍ଶ୍ୱଦେଶ, ଅରଣ୍ୟ ଏବଂ ରମଣୀୟ ନଦୀମାନ ଦେଖି ଦେଖି ଚାଲିଲେ । ୨ । ନଦୀତୀରବିହାରୀ ସାରସ ଓ ଚକ୍ରବାକସମୂହ, ଜଳଚର ପକ୍ଷିସେବିତ ଓ ପଦ୍ମପୂର୍ଣ୍ଣ ସରୋବରମାନ, ଯୂଥବଦ୍ଧ ପୃଷତ ମୃଗ ଏବଂ ବଡ଼ ଶୃଙ୍ଗବିଶିଷ୍ଟ ମହିଷ, ବରାହ ଓ ବୃକ୍ଷମାନଙ୍କ ଶତ୍ରୁ ହସ୍ତୀମାନଙ୍କୁ ମଧ୍ୟ ସେମାନେ ଦେଖିଲେ । ୩-୪ । ଅନନ୍ତର ସୂର୍ଯ୍ୟ ଆକାଶରେ ଓହ୍ଲାଇ ପଡ଼ନ୍ତବେଳକୁ ଅର୍ଥାତ୍ ସନ୍ଧ୍ୟାସମୟରେ ସେମାନେ ସମସ୍ତେ ମିଶି ବହୁଦୂର ପଥ ଅତିକ୍ରମ କରି ଯୋଜନବିସ୍ତୃତ ଏକ ବୃହତ୍ ରମଣୀୟ ପୁଷ୍କରିଣୀ ଦେଖିଲେ ।୫। ସେହି ପୁଷ୍କରିଣୀ ହସ୍ତୀଯୂଥମାନଙ୍କ ଦ୍ୱାରା ଅଲଂକୃତ, ରକ୍ତପଦ୍ମ ଓ ଶ୍ୱେତ ପଦ୍ମରେ ପରିପୂର୍ଣ୍ଣ ଏବଂ ଜଳଚାରୀ ହଂସ ଓ ସାରସସମୂହଦ୍ୱାରା ପରିବ୍ୟାପ୍ତ ହୋଇଥିଲା ।୬।

ପ୍ରସନ୍ନସଲିଲେ ରମ୍ୟେ ତସ୍ମିନ୍ ସରସି ଶୁଶ୍ରୁବେ ।
ଗୀତବାଦିତ୍ରନିର୍ଘୋଷୋ ନ ତୁ କଶ୍ଚନ ଦୃଶ୍ୟତେ । ୭ ।
ତତଃ କୌତୂହଲାଦ୍ରାମୋ ଲକ୍ଷ୍ମଣଶ୍ଚ ମହାବଳଃ ।
ମୁନିଂ ଧର୍ମଭୃତଂ ନାମ ପ୍ରଷ୍ଟୁଂ ସମୁପଚକ୍ରମେ । ୮ ।
ଇଦମତ୍ୟଦ୍ଭୁତଂ ଶ୍ରୁତ୍ୱା ସର୍ବେଷାଂ ନୋ ମହାମୁନେ ।
କୌତୂହଲଂ ମହଜ୍ଜାତଂ କିମିଦଂ ସାଧୁ କଥ୍ୟତାମ୍ । ୯ ।
ବକ୍ତବ୍ୟଂ ଯଦି ଚେଦ୍‌ବିପ୍ର ନାତିଗୁହ୍ୟମପି ପ୍ରଭୋ ।
ତେନୈବମୁକ୍ତୋ ଧର୍ମାତ୍ମା ରାଘବେଣ ମୁନିସ୍ତଦା । ୧୦ ।
ପ୍ରଭାବଂ ସରସଃ କୃତ୍ସ୍ନମାଖ୍ୟାତୁମୁପଚକ୍ରମେ ।
ଇଦଂ ପଞ୍ଚାପ୍ସରୋ ନାମ ତଟାକଂ ସାର୍ବକାଳିକମ୍ । ୧୧।
ନିର୍ମିତଂ ତପସା ରାମ ମୁନିନା ମାଣ୍ଡକର୍ଣିନା ।
ସ ହି ତେପେ ତପସ୍ତୀବ୍ରଂ ମାଣ୍ଡକର୍ଣିର୍ମହାମୁନିଃ । ୧୨ ।
ଦଶ ବର୍ଷସହସ୍ରାଣି ବାୟୁଭକ୍ଷୋ ଜଳାଶ୍ରୟଃ ।
ତତଃ ପ୍ରବ୍ୟଥିତାଃ ସର୍ବେ ଦେବାଃ ସାଗ୍ନିପୁରୋଗମାଃ । ୧୩ ।
ଅବ୍ରୁବନ୍ ବଚନଂ ସର୍ବେ ପରସ୍ପରସମାଗତାଃ ।
ଅସ୍ମାକଂ କସ୍ୟଚିତ୍‌ସ୍ଥାନମେଷ ପ୍ରାର୍ଥୟତେ ମୁନିଃ । ୧୪ ।

---

ସେହି ରମଣୀୟ ନିର୍ମଳ ଜଳପୂର୍ଣ୍ଣ ପୁଷ୍କରିଣୀରେ ସଙ୍ଗୀତ ଓ ବାଦ୍ୟର ଶବ୍ଦ ଶୁଣାଯାଉଥିଲା; ମାତ୍ର କେହି ଲୋକ ଦେଖାଯାଉ ନ ଥିଲା । ୭ । ଅନନ୍ତର ରାମ ଓ ଲକ୍ଷ୍ମଣ କୌତୂହଳବଶତଃ ଧର୍ମଭୃତ ନାମକ ଜଣେ ମୁନିଙ୍କୁ ପଚାରିଲେ । ୮ । "ହେ ମହାମୁନେ ! ଏହି ଅତ୍ୟଦ୍ଭୁତ ଶବ୍ଦ ଶୁଣି ଆମ ସମସ୍ତଙ୍କର ବିଶେଷ କୌତୁକ ଜାତ ହୋଇଅଛି; ଏ ବ୍ୟାପାର କଅଣ ? ହେ ପ୍ରଭୋ ! ଏହା ଯଦି ବିଶେଷ ଗୋପନୀୟ କଥା ନୁହେଁ ଏବଂ କହିବାଯୋଗ୍ୟ କଥା, ତେବେ ଆମକୁ ଭଲକରି କହନ୍ତୁ" । ରାମ ଏପରି କହିବାରୁ ଧର୍ମାତ୍ମା ମୁନି ସେତେବେଳେ ଏହି ସରୋବରର ପ୍ରଭାବ ବିଷୟରେ କହିବାକୁ ଉଦ୍ୟତ ହେଲେ ।"ହେ ରାମ ! ଏହି ତଡ଼ାଗର ନାମ'ପଞ୍ଚାପ୍ସର'। ଏଥିରେ ସବୁକାଳେ ଜଳ ପୂର୍ଣ୍ଣ ହୋଇଥାଏ । ଏହା ମାଣ୍ଡକର୍ଣ୍ଣି ମୁନିଙ୍କଦ୍ୱାରା ତପୋବଳରେ ନିର୍ମିତ ହୋଇଥିଲା । ସେହି ମହାମୁନି ମାଣ୍ଡକର୍ଣ୍ଣି ଦଶସହସ୍ର ବର୍ଷକାଳ କେବଳ ବାୟୁଭକ୍ଷଣପୂର୍ବକ ଜଳାଶୟରେ ରହି ତୀବ୍ର ତପସ୍ୟା କରିଥିଲେ । ଅନନ୍ତର ଅଗ୍ନିପ୍ରମୁଖ ଦେବତାମାନେ ଅତ୍ୟନ୍ତ ବ୍ୟଥିତଭାବରେ ସମାଗତ ହୋଇ ପରସ୍ପର କଥାବାର୍ତ୍ତା ହେଲେ । 'ଏ ମୁନି ନିଶ୍ଚୟ ଆମର ଭିତରୁ କାହାର ପଦ ଲାଭ

ଇତି ସଂବଗ୍ନମନସଃ ସର୍ବେ ତେ ବିବୁଧୌକସଃ ।
ତସ୍ୟ କର୍ତ୍ତୁଂ ତପୋବଘ୍ନଂ ଦେବୈଃ ସର୍ବୈର୍ନିଯୋଜିତାଃ । ୧୫ ।
ପ୍ରଧାନାପ୍ସରସଃ ପଞ୍ଚ ବିଦ୍ୟୁଚ୍ଚଳିତବର୍ଚ୍ଚସଃ ।
ଅପ୍ସରୋଭିସ୍ତତସ୍ତାଭିର୍ମୁନିଦୃଷ୍ଟପରାବରଃ । ୧୬ ।
ନୀତୋ ମଦନବଶ୍ୟତ୍ୱଂ ସୁରାଣାଂ କାର୍ଯସିଦ୍ଧୟେ ।
ତାଶ୍ଚୈବାପ୍ସରସଃ ପଞ୍ଚ ମୁନେଃ ପତ୍ନୀତ୍ୱମାଗତାଃ । ୧୭ ।
ତଟାକେ ନିର୍ମିତଂ ତାସାମସ୍ମିନ୍ନନ୍ତର୍ହିତଂ ଗୃହମ୍ ।
ତଥୈବାପ୍ସରସଃ ପଞ୍ଚ ନିବସନ୍ତ୍ୟୋ ଯଥାସୁଖମ୍ । ୧୮ ।
ରମୟନ୍ତି ତପୋଯୋଗାନ୍ମୁନିଂ ଯୌବନମାସ୍ଥିତମ୍ ।
ତାସାଂ ସଂକ୍ରୀଡମାନାନାମେଷ ବାଦିତ୍ରନିଃସ୍ୱନଃ । ୧୯ ।
ଶ୍ରୂୟତେ ଭୂଷଣୋନ୍ମିଶ୍ରୋ ଗୀତଶବ୍ଦୋ ମନୋହରଃ ।
ଆଶ୍ଚର୍ଯ୍ୟମିତି ତସ୍ୟୈତଦ୍ୱଚନଂ ଭାବିତାତ୍ମନଃ । ୨୦ ।
ରାଘବଃ ପ୍ରତିଜଗ୍ରାହ ସହ ଭ୍ରାତ୍ରା ମହାଯଶାଃ ।
ଏବଂ କଥୟମାନସ୍ୟ ଦଦର୍ଶାଶ୍ରମମଣ୍ଡଲମ୍ । ୨୧ ।

---

କରିବାପାଇଁ ଏ ତପସ୍ୟା ଦ୍ୱାରା ପ୍ରାର୍ଥନା କରୁଛନ୍ତି' । ୯-୧୪ । ସେହି ସ୍ୱର୍ଗବାସୀ ଦେବତାମାନେ ସମସ୍ତେ ଏହିପରି ଉଦ୍‌ବିଗ୍ନମନା ହୋଇ ତାଙ୍କ ତପସ୍ୟାରେ ବିଘ୍ନ ଘଟାଇବା ପାଇଁ ବିଦ୍ୟୁତସଦୃଶ ଦୀପ୍ତିମତୀ ପାଞ୍ଚଗୋଟି ପ୍ରଧାନ ଅପ୍‌ସରାଙ୍କୁ ନିଯୁକ୍ତ କଲେ । ଅନନ୍ତର ସେହି ଅପ୍‌ସରାମାନେ ଦେବତାମାନଙ୍କର କାର୍ଯ୍ୟସିଦ୍ଧି ନିମନ୍ତେ ପରାପର ବିଷୟରେ ଅଭିଜ୍ଞ ମାଣ୍ଡକର୍ଣ୍ଣି ମୁନିଙ୍କୁ କନ୍ଦର୍ପର ବଶୀଭୂତ କରାଇଲେ । ସେହି ପାଞ୍ଚଟିଯାକ ଅପ୍‌ସରା ସେ ମୁନିଙ୍କର ପତ୍ନୀ ହେଲେ । ୧୫-୧୭ । ଏହି ସରୋବର ମଧ୍ୟରେ ସେମାନଙ୍କ ନିମନ୍ତେ ଗୁପ୍ତ ଗୃହ ନିର୍ମିତ ହେଲା । ସେହିଠାରେ ଏହି ପାଞ୍ଚଟି ଅପ୍‌ସରା ଯଥାସୁଖରେ ବାସ କରି ତପଃ ପ୍ରଭାବରେ ଯୌବନସମ୍ପନ୍ନ ସେହି ମୁନିଙ୍କର ଚିତ୍ତବିନୋଦନ କରିବାକୁ ଲାଗିଲେ । ସେହି କ୍ରୀଡ଼ାପରାୟଣା ଅପ୍‌ସରାମାନଙ୍କ ବାଦ୍ୟସ୍ୱନ ଏବଂ ଅଳଙ୍କାରମିଶ୍ରିତ ମନୋହର ଗୀତଶବ୍ଦ ଏହି ଶୁଣାଯାଉଅଛି ।" ରାମ ଭ୍ରାତାଙ୍କ ସହିତ ମହାଯଶା ମୁନିଙ୍କର ଏହି କଥା ଶୁଣି 'ଏହା ଅତି ଆଶ୍ଚର୍ଯ୍ୟ ବ୍ୟାପାର' ବୋଲି କହି ତାହା ଗ୍ରହଣ କଲେ । ଏହିପରି କଥାବାର୍ତ୍ତା ହେଉ ହେଉ ସେ ଚତୁର୍ଦ୍ଦିଗରେ କୁଶ ଓ ବଲ୍‌କଳଶୋଭିତ ବ୍ରାହ୍ମୀଶୋଭାସମନ୍ୱିତ ଆଶ୍ରମମଣ୍ଡଳ ଦର୍ଶନକଲେ । ମହାଯଶା ରାମ ଲକ୍ଷ୍ମଣ ଓ ବୈଦେହୀଙ୍କ ସହିତ ସେହି ଆଶ୍ରମ

କୁଶଚୀରପରିକ୍ଷିପ୍ତଂ ବ୍ରାହ୍ମ୍ୟା ଲକ୍ଷ୍ମ୍ୟା ସମାବୃତମ୍ ।
ପ୍ରବିଶ୍ୟ ସହ ବୈଦେହ୍ୟା ଲକ୍ଷ୍ମଣେନ ଚ ରାଘବଃ । ୨୨ ।
ଉବାସ ମୁନିଭିଃ ସର୍ବୈଃ ପୂଜ୍ୟମାନୋ ମହାତ୍ମଣାଃ ।
ତଥା ତସ୍ମିନ୍ ସ କାକୁତ୍ସ୍ଥଃ ଶ୍ରୀମତ୍ୟାଶ୍ରମମଣ୍ଡଲେ । ୨୩ ।
ଉଷିତ୍ୱା ତୁ ସୁଖଂ ତତ୍ର ପୂଜ୍ୟମାନୋ ମହର୍ଷିଭିଃ ।
ଜଗାମ ଚାଶ୍ରମାଂସ୍ତେଷାଂ ପର୍ଯ୍ୟାୟେଣ ତପସ୍ୱିନାମ୍ । ୨୪ ।
ଯେଷାମୁଷିତବାନ୍ ପୂର୍ବଂ ସକାଶେ ସ ମହାସ୍ତ୍ରବିତ୍ ।
କ୍ୱଚିତ୍ ପରିଦଶାନ୍ ମାସାନେକଂ ସଂବତ୍ସରଂ କ୍ୱଚିତ୍ । ୨୫ ।
କ୍ୱଚିଚ୍ଚ ଚତୁରୋ ମାସାନ୍ ପଞ୍ଚଷଟ୍ ଚାପରାନ୍ କ୍ୱଚିତ୍ ।
ଅପରତ୍ରାଧିକଂ ମାସାଦପ୍ୟର୍ଧମଧିକଂ କ୍ୱଚିତ୍ । ୨୬ ।
ତ୍ରୀନ୍ ମାସାନଷ୍ଟମାସାଂଶ୍ଚ ରାଘବୋ ନ୍ୟବସତ୍ ସୁଖମ୍ ।
ଏବଂ ସଂବସତସ୍ତସ୍ୟ ମୁନୀନାମାଶ୍ରମେଷୁ ବୈ । ୨୭ ।
ରମତଶ୍ଚାନୁକୂଲ୍ୟେନ ଯଯୁଃ ସଂବତ୍ସରା ଦଶ ।
ପରିବୃତ୍ୟ ଚ ଧର୍ମଜ୍ଞୋ ରାଘବଃ ସହ ସୀତୟା । ୨୮ ।
ସୁତୀକ୍ଷ୍ଣସ୍ୟାଶ୍ରମଂ ଶ୍ରୀମାନ୍ ପୁନରେବାଜଗାମ ହ ।
ସ ତମାଶ୍ରମମାସାଦ୍ୟ ମୁନିଭିଃ ପ୍ରତିପୂଜିତଃ । ୨୯ ।

---

ମଣ୍ଡଳରେ ପ୍ରବେଶକରି ଏବଂ ସେହି ମୁନିମାନଙ୍କ ଦ୍ୱାରା ଅଭ୍ୟର୍ଥିତ ହୋଇ ସେଠାରେ ବାସ କରିବାକୁ ଲାଗିଲେ । ଏହିପରିଭାବରେ କାକୁସ୍ଥ ରାମ ସେହି ଶୋଭାସମ୍ପନ୍ନ ଆଶ୍ରମମଣ୍ଡଳରେ ମହର୍ଷିମାନଙ୍କ ଦ୍ୱାରା ପୂଜିତ ହୋଇ ଓ ସୁଖରେ ବାସ କରି ଗୋଟିକ ପରେ ଗୋଟିଏ ଏହି କ୍ରମରେ ତପସ୍ୱୀମାନଙ୍କ ଆଶ୍ରମକୁ ଗଲେ । ୧୮-୨୪ । ସେହି ମହାଅସ୍ତ୍ରବିତ୍ ରାମ ପୂର୍ବେ ଯେଉଁମାନଙ୍କ ଆଶ୍ରମରେ ବାସ କରିଥିଲେ ବର୍ତ୍ତମାନ ପୁଣି ସେହିମାନଙ୍କ ଆଶ୍ରମରେ ଯାଇ ରହିଲେ । ସେ କେଉଁ ଆଶ୍ରମରେ ପୂର୍ଣ୍ଣ ଦଶ ମାସ, କେଉଁଠାରେ ପୂର୍ଣ୍ଣ ଏକ ବର୍ଷ; କେଉଁଠାରେ ଚାରି ମାସ, କେଉଁଠାରେ ପାଞ୍ଚ ମାସ, କେଉଁଠାରେ ଛ ମାସ, କେଉଁଠି ବା ଏକ ବର୍ଷରୁ ଅଧିକ, କେଉଁଠି ବା ଅର୍ଦ୍ଧମାସରୁ ଅଧିକ, କେଉଁଠାରେ ତିନିମାସ, କେଉଁଠାରେ ଆଠମାସ, ସୁଖରେ ଅବସ୍ଥାନ କଲେ । ଏହିପରିଭାବରେ ମୁନିମାନଙ୍କ ଆଶ୍ରମରେ ବାସ କରି ଓ ସେମାନଙ୍କ ଆନୁକୂଲ୍ୟରେ ପ୍ରୀତି ଲାଭକରି ତାଙ୍କର ଦଶ ବର୍ଷ କଟିଗଲା । ଶ୍ରୀମାନ୍ ଧର୍ମଜ୍ଞ ରାମ, ସୀତାଙ୍କ ସହିତ ବୁଲି ବୁଲି, ପୁଣି ସୁତୀକ୍ଷ୍ଣଙ୍କ ଆଶ୍ରମକୁ ଆସିଲେ । ଶତ୍ରୁସୂଦନ ରାମ ସେ ଆଶ୍ରମରେ ପହଞ୍ଚି ଓ ମୁନିମାନଙ୍କ ଦ୍ୱାରା ବିଶେଷଭାବରେ ଅଭ୍ୟର୍ଥିତ ହୋଇ ସେଠାରେ ମଧ୍ୟ

ତତ୍ରାପି ନ୍ୟବସଦ୍ରାମଃ କିଂଚିତ୍କାଲମରିଂଦମଃ ।
ଅଥାଶ୍ରମସ୍ଥୋ ବିନୟାତ୍ କଦାଚିତ୍ତଂ ମହାମୁନିମ୍ । ୩୦ ।
ଉପାସୀନଃ ସ କାକୁତ୍ସ୍ଥଃ ସୁତୀକ୍ଷ୍ଣମିଦମବ୍ରବୀତ୍ ।
ଅସ୍ମିନ୍ନରଣ୍ୟେ ଭଗବନ୍ନଗସ୍ତ୍ୟୋ ମୁନିସତ୍ତମଃ । ୩୧ ।
ବସତୀତି ମୟା ନିତ୍ୟଂ କଥାଃ କଥୟତାଂ ଶ୍ରୁତମ୍ ।
ନ ତୁ ଜାନାମି ତଂ ଦେଶଂ ବନସ୍ୟାସ୍ୟ ମହତ୍ତୟା । ୩୨ ।
କୁତ୍ରାଶ୍ରମମିଦଂ ପୁଣ୍ୟଂ ମହର୍ଷେସ୍ତସ୍ୟ ଧୀମତଃ ।
ପ୍ରସାଦାତ୍ତତ୍ରଭବତଃ ସାନୁଜଃ ସହ ସୀତୟାଃ । ୩୩ ।
ଅଗସ୍ତ୍ୟମଭିଗଚ୍ଛେୟମଭିବାଦୟିତୁଂ ମୁନିମ୍ ।
ମନୋରଥୋ ମହାନେଷ ହୃଦି ମେ ପରିବର୍ତ୍ତତେ । ୩୪ ।
ଯଦହଂ ତଂ ମୁନିବରଂ ଶୁଶ୍ରୂଷେୟମପି ସ୍ୱୟମ୍ ।
ଇତି ରାମସ୍ୟ ସ ମୁନିଃ ଶ୍ରୁତ୍ୱା ଧର୍ମାତ୍ମନୋ ବଚଃ । ୩୫ ।
ସୁତୀକ୍ଷ୍ଣଃ ପ୍ରତ୍ୟୁବାଚେଦଂ ପ୍ରୀତୋ ଦଶରଥାତ୍ମଜମ୍ ।
ଅହମପ୍ୟେତଦେବ ତ୍ୱାଂ ବକ୍ତୁକାମଃ ସଲକ୍ଷ୍ମଣମ୍ । ୩୬ ।
ଅଗସ୍ତ୍ୟମଭିଗଚ୍ଛେତି ସୀତୟା ସହ ରାଘବ ।
ଦିଷ୍ଟ୍ୟା ତ୍ୱିଦାନୀମର୍ଥେଽସ୍ମିନ୍ ସ୍ୱୟମେବ ବ୍ରବୀଷି ମାମ୍ । ୩୭ ।

---

କିଛିକାଳ ରହିଲେ । ଅନନ୍ତର ରାମ ଏହି ଆଶ୍ରମରେ ବାସ କରୁଥିବା ସମୟରେ ମହର୍ଷି ସୁତୀକ୍ଷ୍ଣଙ୍କ ନିକଟରେ ବସି ବିନୟ ସହକାରେ ତାଙ୍କୁ ପଚାରିଲେ । "ହେ ଭଗବନ୍! ଏଠାରେ ଲୋକେ କଥାବାର୍ତ୍ତା ହେବାଦ୍ୱାରା ମୁଁ ଶୁଣୁଛି ଯେ ମୁନିଶ୍ରେଷ୍ଠ ଅଗସ୍ତ୍ୟ ଏହି ଅରଣ୍ୟରେହିଁ ବାସ କରନ୍ତି । ମାତ୍ର ଏହି ବନର ବିଶାଳତା ହେତୁରୁ ସେ ସ୍ଥାନ କେଉଁ-ଠାରେ ତାହା ମୁଁ ଜାଣେ ନାହିଁ ।୨୫-୩୨। ସେହି ଧୀମାନ୍ ମହର୍ଷିଙ୍କର ପବିତ୍ର ଆଶ୍ରମ କେଉଁଠାରେ ? ଆପଣଙ୍କ ଅନୁଗ୍ରହରୁ ମୁଁ ମୋର ସାନ ଭାଇ ଏବଂ ସୀତାଙ୍କ ସହିତ ଅଗସ୍ତ୍ୟ ମୁନିଙ୍କୁ ଅଭିବାଦନ କରିବା ପାଇଁ ତାଙ୍କ ନିକଟକୁ ଯିବି, ଏହି ମହାନ୍ ଅଭିଳାଷ ମୋର ହୃଦୟରେ ଖେଳୁଅଛି । ୩୩-୩୪ । ମୁଁ ନିଜେ ସେ ମୁନିଙ୍କର ସେବା କରିବି ।" ସୁତୀକ୍ଷ୍ଣ ମୁନି ଧର୍ମାତ୍ମା ରାମଙ୍କର ଏହି କଥା ଶୁଣି ପ୍ରୀତ ହୋଇ ଦଶରଥନନ୍ଦନଙ୍କୁ କହିଲେ, "ହେ ରାଘବ! ତୁମେ ସୀତାଙ୍କ ସହିତ ଅଗସ୍ତ୍ୟଙ୍କ ନିକଟକୁ ଯାଅ ଏହି କଥା ତୁମକୁ ଓ ଲକ୍ଷ୍ମଣଙ୍କୁ କହିବି ବୋଲି ମୁଁ ଇଚ୍ଛା କରୁଥିଲି । ଭାଗ୍ୟକ୍ରମେ ସେହି ବିଷୟରେ ତୁମେ ଏବେ ତୁମଆଡୁ ମୋତେ କହିଲଣି । ୩୫-୩୭

ଅହମାଖ୍ୟାମି ତେ ବତ୍ସ ଯତ୍ରାଗସ୍ତ୍ୟୋ ମହାମୁନିଃ ।
ଯୋଜନାନ୍ୟାଶ୍ରମାଦସ୍ମାତ୍ତଥା ଚତ୍ୱାରି ବୈ ତତଃ । ୩୮ ।
ଦକ୍ଷିଣେନ ମହାଞ୍ଛ୍ରୀମାନଗସ୍ତ୍ୟଭ୍ରାତୁରାଶ୍ରମଃ ।
ସ୍ଥଳୀପ୍ରାୟେ ବନୋଦ୍ଦେଶେ ପିପ୍‌ପଲୀବନଶୋଭିତେ । ୩୯ ।
ବହୁପୁଷ୍ପଫଲେ ରମ୍ୟେ ନାନାଶକୁନିନାଦିତେ ।
ପଦ୍ମିନ୍ୟୋ ବିବିଧାସ୍ତତ୍ର ପ୍ରସନ୍ନ ସଲିଲାଃ ଶିବାଃ । ୪୦ ।
ହଂସକାରଣ୍ଡବାକୀର୍ଣ୍ଣାଶ୍ଚକ୍ରବାକୋପଶୋଭିତାଃ ।
ତତ୍ରୈକାଂ ରଜନୀଂ ବ୍ୟୁଷ୍ୟ ପ୍ରଭାତେ ରାମ ଗମ୍ୟତାମ୍ । ୪୧ ।
ଦକ୍ଷିଣାଂ ଦିଶମାସ୍ଥାୟ ବନଷଣ୍ଡସ୍ୟ ପାର୍ଶ୍ୱତଃ ।
ତତ୍ରାଗସ୍ତ୍ୟାଶ୍ରମପଦଂ ଗତ୍ୱା ଯୋଜନମନ୍ତରମ୍ । ୪୨ ।
ରମଣୀୟେ ବନୋଦ୍ଦେଶେ ବହୁପାଦପସଂବୃତେ ।
ରଂସ୍ୟତେ ତତ୍ର ବୈଦେହୀ ଲକ୍ଷ୍ମଣଶ୍ଚ ସହ ତ୍ୱୟା । ୪୩ ।
ସ ହି ରମ୍ୟୋ ବନୋଦ୍ଦେଶୋ ବହୁପାଦପସଂକୁଳଃ ।
ଯଦି ବୁଦ୍ଧିଃ କୃତା ଦ୍ରଷ୍ଟୁମଗସ୍ତ୍ୟଂ ତଂ ମହାମୁନିମ୍ । ୪୪ ।

---

ହେ ରାମ ! ମହର୍ଷି ଅଗସ୍ତ୍ୟ ଯେଉଁଠି ବାସକରନ୍ତି ତାହା ମୁଁ କହୁଅଛି । ହେବତ୍ସ ! ଏହି ଆଶ୍ରମରୁ ଦକ୍ଷିଣ ଦିଗକୁ ଚାରିଯୋଜନ ପଥ ଗମନକର; ତତ୍‌ପରେ ତୁମେ ଅଗସ୍ତ୍ୟ ମୁନିଙ୍କ ଭ୍ରାତାଙ୍କ ରମଣୀୟ ବିଶାଳ ଆଶ୍ରମ ଦେଖିବ । ସେହି ଆଶ୍ରମ ବହୁ ସମତଳଭୂମିବିଶିଷ୍ଟ । ସେଠାରେ ପିପ୍‌ପଳୀ ବୃକ୍ଷର ବନ ଶୋଭାପାଉଅଛି ଓ ନାନା-ଜାତୀୟ ପକ୍ଷୀ ଶବ୍ଦ କରୁଅଛନ୍ତି । ସେଠାରେ ବହୁ ପୁଷ୍ପ ଓ ଫଳପୂର୍ଣ୍ଣ ରମଣୀୟବୃକ୍ଷମାନ ରହିଅଛି । ସେଠାରେ ସ୍ୱଚ୍ଛଜଳପୂର୍ଣ୍ଣ ବିବିଧ ସୁନ୍ଦର ସରୋବର ଅଛି । ତାହା ହଂସ ଓ କାରଣ୍ଡବମାନଙ୍କଦ୍ୱାରା ପୂର୍ଣ୍ଣ ଏବଂ ଚକ୍ରବାକମାନଙ୍କଦ୍ୱାରା ସୁଶୋଭିତ ହୋଇଅଛି । ହେ ରାମ ! ତୁମେ ସେଠାରେ ଗୋଟିଏ ରାତ୍ରିଯାପନ କରି ପ୍ରାତଃକାଳରେ ତାହାର ନିକଟବର୍ତ୍ତୀ ବନର ପାର୍ଶ୍ୱଭାଗ ଦେଇ ଦକ୍ଷିଣ ଦିଗକୁ ଗମନ କରିବ । ଏକଯୋଜନ ପଥ ଗଲେ ବିବିଧ ବୃକ୍ଷଶୋଭିତ ରମଣୀୟ ବନମଧ୍ୟରେ ଅଗସ୍ତ୍ୟଙ୍କର ଆଶ୍ରମସ୍ଥାନ ଦେଖିବ । ସେଠାରେ ସୀତା ଓ ଲକ୍ଷ୍ମଣ ତୁମ ସହିତ ବାସକରି ଆନନ୍ଦଲାଭ କରିବେ । ୩୮-୪୩ । ସେହି ବନପ୍ରଦେଶ ଅତିଶୟ ରମଣୀୟ ଓ ବହୁବୃକ୍ଷପରିପୂର୍ଣ୍ଣ ଅଟେ । ହେ ମହାଯଶା ! ତୁମେ ଯଦି ମହାମୁନି ଅଗସ୍ତ୍ୟଙ୍କୁ ଦେଖିବାକୁ ଇଚ୍ଛାକରିଛ ତେବେ ଆଜହିଁ ଏଠାରୁ ଯିବାକୁ ସ୍ଥିରକର ।” ରାମ ମୁନିଙ୍କର

ଅତ୍ରୈବ ଗମନେ ବୁଦ୍ଧିଂ ରୋଚୟସ୍ୱ ମହାଯଶଃ ।
ଇତି ରାମୋ ମୁନେଃ ଶ୍ରୁତ୍ୱା ସହ ଭ୍ରାତ୍ରାଭିବାଦ୍ୟ ଚ । ୪୫ ।
ପ୍ରତସ୍ଥେଽଗସ୍ତ୍ୟମୁଦ୍ଦିଶ୍ୟ ସାନୁଜଃ ସୀତୟା ସହ ।
ପଶ୍ୟନ୍ ବନାନି ରମ୍ୟାଣି ପର୍ବତାଂଶ୍ଚାଭ୍ରସନ୍ନିଭାନ୍ । ୪୬ ।
ସରାଂସି ସରିତଶ୍ଚୈବ ପଥି ମାର୍ଗବଶାନୁଗାଃ ।
ସୁତୀକ୍ଷ୍ଣେନୋପଦିଷ୍ଟେନ ଗତ୍ୱା ତେନ ପଥା ସୁଖମ୍ । ୪୭ ।
ଇଦଂ ପରମସଂହୃଷ୍ଟୋ ବାକ୍ୟଂ ଲକ୍ଷ୍ମଣମବ୍ରବୀତ୍ ।
ଏତଦେବାଶ୍ରମପଦଂ ନୂନଂ ତସ୍ୟ ମହାତ୍ମନଃ । ୪୮ ।
ଅଗସ୍ତ୍ୟସ୍ୟ ମୁନେର୍ଭ୍ରାତୁର୍ଦୃଶ୍ୟତେ ପୁଣ୍ୟକର୍ମଣଃ ।
ଯଥା ହି ମେ ବନସ୍ୟାସ୍ୟ ଜ୍ଞାତାଃ ପଥି ସହସ୍ରଶଃ । ୪୯ ।
ସଂନତାଃ ଫଲଭାରେଣ ପୁଷ୍ପଭାରେଣ ଚ ଦ୍ରୁମାଃ ।
ପିପ୍ପଲୀନାଂ ଚ ପକ୍ୱାନାଂ ବନାଦସ୍ମାଦୁପାଗତଃ । ୫୦ ।
ଗନ୍ଧୋଽୟଂ ପବନୋତ୍କ୍ଷିପ୍ତଃ ସହସା କଟୁକୋଦୟଃ ।
ତତ୍ର ତତ୍ର ଚ ଦୃଶ୍ୟନ୍ତେ ସଂକ୍ଷିପ୍ତା କାଷ୍ଠସଂଚୟାଃ । ୫୧ ।
ଲୂନାଶ୍ଚ ପଥି ଦୃଶ୍ୟନ୍ତେ ଦର୍ଭା ବୈଡୂର୍ଯ୍ୟବର୍ଚସଃ ।
ଏତଚ୍ଚ ବନମଧ୍ୟସ୍ଥଂ କୃଷ୍ଣାଭ୍ରଶିଖରୋପମମ୍ । ୫୨ ।

---

ଏହି କଥା ଶୁଣିଲାଉତ୍ତାରୁ ଭାଇଙ୍କ ସହିତ ତାହାଙ୍କୁ ଅଭିବାଦନ କରି ସୀତା ଓ ସାନ ଭାଇଙ୍କ ସହିତ ଅଗସ୍ତ୍ୟଙ୍କ ଆଶ୍ରମକୁ ଯାତ୍ରାକଲେ । ଯାଉ ଯାଉ ବାଟରେ ସେମାନେ ବହୁସଂଖ୍ୟକ ରୁଚିର ବନ, ମେଘସଦୃଶ ପର୍ବତ, ବହୁ ସରୋବର ଓ ନଦୀ ଦେଖିଲେ । ସୁତୀକ୍ଷ୍ଣ ମୁନି ବତାଇ ଦେଇଥିବା ବାଟରେ ସୁଖରେ ଗମନ କଲାବେଳେ ରାମ ଅତିଶୟ ଆନନ୍ଦିତ ହୋଇ ଲକ୍ଷ୍ମଣଙ୍କୁ କହିଲେ । "ହେଇଟି ଦେଖ, ପୁଣ୍ୟକର୍ମା ମହାନୁଭାବ ଅଗସ୍ତ୍ୟଙ୍କ ଆଶ୍ରମ ଦେଖାଯାଉଅଛି । ମୁଁ ଯେପରି ଶୁଣିଥିଲି ଠିକ ସେହିପରି ବାଟରେ ଫଳ ଓ ପୁଷ୍ପଭାରନତ ସହସ୍ର ସହସ୍ର ଦ୍ରୁମ ଦେଖାଯାଉଅଛି । ଏ ବନରୁ ପକ୍ୱ ପିପ୍ପଳୀ ଫଳର କଟୁ ଗନ୍ଧ ପବନ ଦ୍ୱାରା ସଂଗୃହୀତ ହୋଇ ଆସୁଅଛି । ସ୍ଥାନେ ସ୍ଥାନେ ସଞ୍ଚିତ କାଷ୍ଠରାଶି ମଧ୍ୟ ଦେଖାଯାଉଅଛି । ପଥରେ ବୈଡୂର୍ଯ୍ୟମଣିସଦୃଶ ବର୍ଣ୍ଣବିଶିଷ୍ଟ କୁଶରାଜି ଛିନ୍ନ ହୋଇଥିବାର ଦେଖାଯାଉଛି । ଆଶ୍ରମସ୍ଥ ଅଗ୍ନିର ଏହି ଧୂମ୍ରଶିଖା କୃଷ୍ଣମେଘଯୁକ୍ତ ପର୍ବତ ଶିଖରପରି ବନମଧ୍ୟରେ ଦେଖାଯାଉଅଛି ଏବଂ ବ୍ରାହ୍ମଣମାନେ ନିର୍ଜନ ଘାଟମାନଙ୍କରେ ସ୍ନାନ କରି ନିଜେ ସଂଗ୍ରହ କରିଥିବା ପୁଷ୍ପରାଶି ଦେବତାମାନଙ୍କୁ ଉପହାର ଦେଉଛନ୍ତି ।

ପାବକସ୍ୟାଶ୍ରମସ୍ଥସ୍ୟ ଧୂମାଗ୍ରଂ ସଂପ୍ରଦୃଶ୍ୟତେ ।
ବଲ୍କଲୈଷୁ ଚ ତୀର୍ଥେଷୁ କୃତସ୍ନାନା ଦ୍ୱିଜାତୟଃ । ୫୩ ।
ପୁଷ୍ପୋପହାରଂ କୁର୍ବନ୍ତି କୁସୁମୈଃ ସ୍ୱୟମାର୍ଜିତୈଃ ।
ତତ୍ସୁତୀକ୍ଷ୍ଣସ୍ୟ ବଚନଂ ଯଥା ସୌମ୍ୟ ମୟା ଶ୍ରୁତମ୍ । ୫୪ ।
ଅଗସ୍ତ୍ୟସ୍ୟାଶ୍ରମୋ ଭ୍ରାତୁର୍ନୂନମେଷ ଭବିଷ୍ୟତି ।
ନିଗୃହ୍ୟ ତରସା ମୃତ୍ୟୁଂ ଲୋକାନାଂ ହିତକାମ୍ୟୟା । ୫୫ ।
ଯସ୍ୟ ଭ୍ରାତା କୃତେୟଂ ଦିକ୍ ଶରଣ୍ୟା ପୁଣ୍ୟକର୍ମଣା ।
ଇହୈକଦା କିଲ କ୍ରୂରୋ ବାତାପିରପି ଚେଲ୍ୱଲଃ । ୫୬ ।
ଭ୍ରାତରୌ ସହିତାବାସ୍ତାଂ ବ୍ରାହ୍ମଣଘ୍ନୌ ମହାସୁରୌ ।
ଧାରୟନ୍ ବ୍ରାହ୍ମଣଂ ରୂପମିଲ୍ୱଲଃ ସଂସ୍କୃତଂ ବଦନ୍ । ୫୭ ।
ଆମନ୍ତ୍ରୟତ ବିପ୍ରାନ୍ ସ୍ମ ଶ୍ରାଦ୍ଧମୁଦ୍ଦିଶ୍ୟ ନିର୍ଘୃଣଃ ।
ଭ୍ରାତରଂ ସଂସ୍କୃତଂ କୃତ୍ୱା ତତସ୍ତଂ ମେଷରୂପିଣମ୍ । ୫୮ ।
ତାନ୍ ଦ୍ୱିଜାନ୍ ଭୋଜୟାମାସ ଶ୍ରାଦ୍ଧଦୃଷ୍ଟେନ କର୍ମଣା ।
ତତୋ ଭୁକ୍ତବତାଂ ତେଷାଂ ବିପ୍ରାଣାମିଲ୍ୱଲୋଽବ୍ରବୀତ୍ । ୫୯ ।
ବାତାପେ ନିଷ୍କ୍ରମସ୍ୱେତି ସ୍ୱରେଣ ମହତା ବଦନ୍ ।
ତତୋ ଭ୍ରାତୁର୍ବଚଃ ଶ୍ରୁତ୍ୱା ବାତାପିର୍ମେଷବନ୍ନଦନ୍ । ୬୦ ।
ଭିତ୍ତ୍ୱା ଭିତ୍ତ୍ୱା ଶରୀରାଣି ବ୍ରାହ୍ମଣାନାଂ ବିନିଷ୍ପତତ୍ ।
ବ୍ରାହ୍ମଣାନାଂ ସହସ୍ରାଣି ତୈରେବଂ କାମରୂପିଭିଃ । ୬୧ ।

---

ହେ ସୌମ୍ୟ ! ମୁଁ ସୁତୀକ୍ଷ୍ଣଙ୍କଠାରୁ ଯେପରି ଶୁଣିଥିଲି ସେଥିରୁ ଅନୁମାନ ହୁଏ ଏହା ନିଶ୍ଚୟ ଅଗସ୍ତ୍ୟ ମୁନିଙ୍କ ଭାଇଙ୍କର ଆଶ୍ରମ ହେବ । ସେହି ପୁଣ୍ୟକର୍ମା ଅଗସ୍ତ୍ୟ ମହର୍ଷି ପ୍ରାଣୀମାନଙ୍କ ହିତକାମନାରେ ମୃତ୍ୟୁକୁ ଜୟ କରି ଏହି ଦିଗକୁ ଆଶ୍ରୟ କରିଥିଲେ । ଏହିଠାରେ ଏକ ସମୟରେ ମହାଘୋର ବ୍ରାହ୍ମଣଘାତି କ୍ରୂରକର୍ମା ବାତାପି ଏବଂ ଇଲ୍ୱଲ ଦୁଇ ଭାଇ ବାସ କରୁଥିଲେ । ନିଷ୍ଠୁର ଇଲ୍ୱଲ ବ୍ରାହ୍ମଣବେଶଧରି ସଂସ୍କୃତ କହି ଶ୍ରାଦ୍ଧ ଉଦ୍ଦେଶ୍ୟରେ ବ୍ରାହ୍ମଣମାନଙ୍କୁ ନିମନ୍ତ୍ରଣ କରୁଥିଲା । ଅନନ୍ତର ସେ ତାହାର ମେଷରୂପଧାରୀ ଭାଇକୁ ମନ୍ତ୍ରଦ୍ୱାରା ସଂସ୍କୃତ କରି ଶ୍ରାଦ୍ଧବିଧାନ ଅନୁସାରେ ବ୍ରାହ୍ମଣ-ମାନଙ୍କୁ ଖୁଆଉଥିଲା । ୫୪-୫୯ । ଅନନ୍ତର ସେହି ବ୍ରାହ୍ମଣମାନେ ଖାଇସାରିଲାଉତାରୁ ଇଲ୍ୱଲ ଉଚ୍ଚ ସ୍ୱରରେ "ହେ ବାତାପି ! ବାହାରି ଆସ" ବୋଲି ଚିତ୍କାରକରୁଥିଲା । ବାତାପି ଭାଇର କଥା ଶୁଣି ମେଣ୍ଢାପରି ଶବ୍ଦକରି ବ୍ରାହ୍ମଣମାନଙ୍କର ଶରୀରକୁ ଭେଦକରି ବାହାରି ଆସୁଥିଲା । ଏହି କାମରୂପୀ ମାଂସଭୋଜୀ ରାକ୍ଷସମାନେ

ବନାଶିତାନ ସଂହୃତ୍ୟ ନିତ୍ୟଶଃ ପିଶିତାଶନୈଃ
ଅଗସ୍ତ୍ୟେନ ତଦା ଦେବୈଃ ପ୍ରାର୍ଥିତେନ ମହର୍ଷିଣା । ୭୨ ।
ଅନୁଭୂୟ କାଲ ଶ୍ରାଦ୍ଧେ ଭକ୍ଷିତଃ ସ ମହାସୁରଃ ।
ତତଃ ସଂପନ୍ନମିତ୍ୟୁକ୍ତ୍ୱା ଦତ୍ତ୍ୱା ହସ୍ତୋଦକଂ ତତଃ । ୭୩ ।
ଭ୍ରାତରଂ ନିଷ୍କ୍ରମସ୍ୱେତି ଚେଲ୍ୱଳଃ ସୋଽଭ୍ୟଭାଷତ ।
ସ ତଂ ତଥା ଭାଷମାଣଂ ଭ୍ରାତରଂ ବିପ୍ରଘାତନମ୍ । ୭୪ ।
ଅବ୍ରବୀତ୍ ପ୍ରହସନ୍ ଧୀମାନଗସ୍ତ୍ୟୋ ମୁନିସତ୍ତମଃ ।
କୁତୋ ନିଷ୍କ୍ରମିତୁଂ ଶକ୍ତିର୍ମୟା ଜୀର୍ଣସ୍ୟ ରକ୍ଷସଃ । ୭୫ ।
ଭ୍ରାତୁସ୍ତେ ମେଷରୂପସ୍ୟ ଗତସ୍ୟ ଯମସାଦନମ୍ ।
ଅଥ ତସ୍ୟ ବଚଃ ଶ୍ରୁତ୍ୱା ଭ୍ରାତୁର୍ନିଧନସଂଶ୍ରୟମ୍ । ୭୬ ।
ପ୍ରଧର୍ଷୟିତୁମାରେଭେ ମୁନିଂ କ୍ରୋଧାନ୍ନିଶାଚରଃ ।
ସୋଽଭିଦ୍ରବନ୍ ମୁନିଶ୍ରେଷ୍ଠଂ ମୁନିନା ଦୀପ୍ତତେଜସା । ୭୭ ।
ଚକ୍ଷୁଷାନଲକଳ୍ପେନ ନିର୍ଦଗ୍ଧୋ ନିଧନଂ ଗତଃ ।
ତସ୍ୟାୟମାଶ୍ରମୋ ଭ୍ରାତୁସ୍ତଟାକବନଶୋଭିତଃ । ୭୮ ।
ବିପ୍ରାନୁକମ୍ପୟା ଯେନ କର୍ମେଦଂ ଦୁଷ୍କରଂ କୃତମ୍ ।
ଏବଂ କଥୟମାନସ୍ୟ ତସ୍ୟ ସୌମିତ୍ରିଣା ସହ ।୭୯ ।

---

ଏହିପ୍ରକାରେ ପ୍ରତିଦିନ ସହସ୍ର ସହସ୍ର ବ୍ରାହ୍ମଣଙ୍କୁ ହତ୍ୟା କରି ବିନଷ୍ଟ କରୁଥିଲେ । ସେତେବେଳେ ଦେବତାମାନଙ୍କର ପ୍ରାର୍ଥନାନୁସାରେ ମହର୍ଷି ଅଗସ୍ତ୍ୟ ଏହି ଘଟଣାକୁ ନିଜେ ପ୍ରତ୍ୟକ୍ଷକରି, ଶ୍ରାଦ୍ଧରେ ସେହି ମହାବୀର ବାତାପିକୁ ଭକ୍ଷଣ କରିଦେଲେ । ଅନନ୍ତର ଇଲ୍ୱଳ "ଆପଣଙ୍କର ଭୋଜନ ସମ୍ପନ୍ନ ହୋଇଗଲା ତ ?" ଏହା କହି ତାଙ୍କୁ ହାତ-ଧୋଇବାକୁ ପାଣି ଦେଇ ଭାଇକୁ "ବାହାରି ଆସ" ବୋଲି ଡାକିଲା । ସେହି ଇଲ୍ୱଳ ବ୍ରାହ୍ମଣଘାତୀ ଭାଇକୁ ଏହିପରି ଡାକିବାବେଳେ ମୁନିଶ୍ରେଷ୍ଠ ଧୀମାନ୍ ଅଗସ୍ତ୍ୟ ହସି ହସି ତାକୁ କହିଲେ, "ସେ ରାକ୍ଷସକୁ ମୁଁ ଖାଇ ଜୀର୍ଣ୍ଣ କରି ଦେଇସାରିଲିଣି; ତା'ର ଆଉ ବାହାରି ଆସିବାକୁ ଶକ୍ତି କେଉଁଠି ଅଛି ? ତୋ'ର ମେଷରୂପୀ ଭାଇ ଯମାଳୟକୁ ଯାଇସାରିଲାଣି ।" ଅନନ୍ତର ସେହି ନିଶାଚର ତା'ର ଭାଇର ମୃତ୍ୟୁକଥା ଶୁଣି କ୍ରୋଧରେ ମୁନିଶ୍ରେଷ୍ଠଙ୍କୁ ଆକ୍ରମଣ କରିବାକୁ ତାଙ୍କ ଆଡ଼କୁ ଦୌଡ଼ିଆସିଲା ଏବଂ ସେହି ଦୀପ୍ତତେଜା ମୁନିଙ୍କର ଅଗ୍ନିସଦୃଶ ଚକ୍ଷୁରେ ଦଗ୍ଧ ହୋଇ ନିହତ ହେଲା । ଏହି ସରୋବର ଏବଂ ବନଶୋଭିତ ଆଶ୍ରମ ସେହି

ରାମସ୍ୟାସ୍ତଂ ଗତଃ ସୂର୍ଯଃ ସନ୍ଧ୍ୟାକାଲୋଽଭ୍ୟବର୍ତ୍ତତ ।
ଉପାସ୍ୟ ପଶ୍ଚିମାଂ ସନ୍ଧ୍ୟାଂ ସହ ଭ୍ରାତ୍ରା ଯଥାବିଧି । ୭୦ ।
ପ୍ରବିବେଶାଶ୍ରମପଦଂ ତମୃଷିଂ ଚାଭ୍ୟବାଦୟତ୍ ।
ସମ୍ୟକ୍ ପ୍ରତିଗୃହୀତଶ୍ଚ ମୁନିନା ତେନ ରାଘବଃ । ୭୧ ।
ନ୍ୟବସତ୍ତାଂ ନିଶାମେକାଂ ପ୍ରାଶ୍ୟ ମୂଲଫଲାନି ଚ ।
ତସ୍ୟାଂ ରାତ୍ର୍ୟାଂ ବ୍ୟତୀତାୟାଂ ବିମଲେ ସୂର୍ଯମଣ୍ଡଲେ । ୭୨ ।
ଭ୍ରାତରଂ ତମଗସ୍ତ୍ୟସ୍ୟ ହ୍ୟାମନ୍ତ୍ରୟତ ରାଘବଃ ।
ଅଭିବାଦୟେ ତ୍ୱାଂ ଭଗବନ୍ ସୁଖମଧ୍ୟୁଷିତୋ ନିଶାମ୍ । ୭୩ ।
ଆମନ୍ତ୍ରୟେ ତ୍ୱାଂ ଗଚ୍ଛାମି ଗୁରୁଂ ତେ ଦ୍ରଷ୍ଟୁମଗ୍ରଜମ୍ ।
ଗମ୍ୟତାମିତି ତେନୋକ୍ତୋ ଜଗାମ ରଘୁନନ୍ଦନଃ । ୭୪ ।
ଯଥୋଦ୍ଦିଷ୍ଟେନ ମାର୍ଗେଣ ବନଂ ତଚ୍ଚାବଲୋକୟନ୍ ।
ନୀବାରାନ୍ ପନସାଂସ୍ତାଲାଂସ୍ତିନିଶାନ୍ ବଞ୍ଜୁଲାନ୍ ଧବାନ୍ । ୭୫
ଚିରିବିଲ୍ୱାନ୍ ମଧୂକାଂଶ୍ଚ ବିଲ୍ୱାନପି ଚ ତିନ୍ଦୁକାନ୍ ।
ପୁଷ୍ପିତାନ୍ ପୁଷ୍ପିତାଗ୍ରାଭିର୍ଲତାଭିରନୁବେଷ୍ଟିତାନ୍ । ୭୬ ।

---

ଅଗସ୍ତ୍ୟ ମହର୍ଷିଙ୍କ ଭାଇଙ୍କର ଆଶ୍ରମ । ସେ ବ୍ରାହ୍ମଣମାନଙ୍କ ପ୍ରତି ଦୟା ବହି ଏହି ଅସାଧ୍ୟ ସାଧନ କରିଥିଲେ ।” ରାମ ସୁମିତ୍ରାନନ୍ଦନ ଲକ୍ଷ୍ମଣଙ୍କ ସହିତ ଏହିପରି କଥାବାର୍ତ୍ତା କରୁ କରୁ ସୂର୍ଯ୍ୟ ଅସ୍ତ ହୋଇଗଲେ ଏବଂ ସନ୍ଧ୍ୟା ସମୟ ଉପସ୍ଥିତ ହେଲା । ଅନନ୍ତର ରାମ ଭାଇଙ୍କ ସହିତ ଯଥାବିଧି ସନ୍ଧ୍ୟା ଉପାସନା ସାରି ଆଶ୍ରମମଧ୍ୟରେ ପ୍ରବେଶ କଲେ ଓ ଋଷିଙ୍କୁ ଅଭିବାଦନ କଲେ । ତହିଁ ପରରୁ ସେହି ମୁନି ରାମଙ୍କୁ ଭଲଭାବରେ ଅଭ୍ୟର୍ଥନାକରି ଆଶ୍ରମଭିତରକୁ ନେଇଗଲେ । ୭୦-୭୧ । ରାମ ସେହି ରାତିକି ଫଳମୂଳ ଭକ୍ଷଣକରି ସେହିଠାରେ ବାସକଲେ । ରାତି ଅତିକ୍ରାନ୍ତ ହୋଇ ସୂର୍ଯ୍ୟମଣ୍ଡଳ ନିର୍ମଳ ହୋଇଯିବାଉତ୍ତାରୁ ରାମ ଅଗସ୍ତ୍ୟଙ୍କ ଭାଇଙ୍କଠାରୁ ବିଦାୟ ମାଗି କହିଲେ । “ହେ ଭଗବନ୍ ! ମୁଁ ଆପଣଙ୍କୁ ଅଭିବାଦନ କରୁଅଛି । ଆମେମାନେ ରାତିରେ ଏଠାରେ ସୁଖରେ ବାସକଲୁଁ; ଏବେ ଆପଣଙ୍କଠାରୁ ବିଦାୟ ନେଉଛୁ । ମୁଁ ଆପଣଙ୍କ ଜ୍ୟେଷ୍ଠ ଭ୍ରାତା ଗୁରୁଙ୍କୁ ଦେଖିବା ପାଇଁ ଯିବି ।” ସେ “ଯାଅ” ବୋଲି କହିବାରୁ ରାମ ସେଠାରୁ ଯାତ୍ରା କଲେ । ୭୨-୭୪ । ସୁନିର୍ଦ୍ଦିଷ୍ଟ ବତାଇ ଦେଇଥିବା ବାଟରେ ସେ ସେହି ବନକୁ ଦେଖି ଦେଖି ଚାଲିଲେ । ରାମ ସେହି କାନ୍ତାର ମଧ୍ୟରେ ଶତ ଶତ ନୀବାର, ପଣସ, ଶାଳ, ଅଶୋକ, ତିନିଶ, ଚିରିବିଲ୍ୱ, ମଧୂକ,

ଦଦର୍ଶ ରାମଃ ଶତଶସ୍ତତ୍ର କାନ୍ତାରପାଦପାନ୍ ।
ହସ୍ତିହସ୍ତୈର୍ବିମୃଦିତାନ୍ ବାନରୈରୁପଶୋଭିତାନ୍ । ୭୭ ।
ମତ୍ତୈଃ ଶକୁନସଙ୍ଘୈଶ୍ଚ ଶତଶଃ ପ୍ରତିନାଦିତାନ୍ ।
ତତୋଽବ୍ରବୀତ୍ସମୀପସ୍ଥଂ ରାମୋ ରାଜୀବଲୋଚନଃ । ୭୮ ।
ପୃଷ୍ଠତୋଽନୁଗତଂ ବୀରଂ ଲକ୍ଷ୍ମଣଂ ଲକ୍ଷ୍ମୀବର୍ଦ୍ଧନମ୍ ।
ସ୍ନିଗ୍ଧପତ୍ରା ଯଥା ବୃକ୍ଷା ଯଥା ଶାନ୍ତମୃଗଦ୍ୱିଜାଃ । ୭୯ ।
ଆଶ୍ରମୋ ନାତିଦୂରସ୍ଥୋ ମହର୍ଷେର୍ଭାବିତାତ୍ମନଃ ।
ଅଗସ୍ତ୍ୟ* ଇତି ବିଖ୍ୟାତୋ ଲୋକେ ସ୍ୱେନୈବ କର୍ମଣା । ୮୦
ଆଶ୍ରମୋ ଦୃଶ୍ୟତେ ତସ୍ୟ ପରିଶ୍ରାନ୍ତଶ୍ରମାପହଃ ।
ପ୍ରାଜ୍ୟଧୂମାକୁଳବନଶ୍ଚୀରମାଳାପରିଷ୍କୃତଃ । ୮୧ ।

---

ବିଲ୍ୱ ଓ ତିନ୍ଦୁକ ପ୍ରଭୃତି ବୃକ୍ଷ ଦେଖିଲେ । ଏହି ବୃକ୍ଷସବୁକୁ ହାତୀମାନେ ଶୁଣ୍ଢରେ ମୋଡ଼ମାଡ଼ ହୋଇଥିଲେ । ଏଗୁଡ଼ିକ ବାନରମାନଙ୍କଦ୍ୱାରା ସୁଶୋଭିତ ହୋଇଥିଲା ଏବଂ ମଦୋନ୍ମତ୍ତ ପକ୍ଷୀସମୂହ ଶତ ଶତ ସଂଖ୍ୟାରେ ଏହି ବୃକ୍ଷମାନଙ୍କୁ ପ୍ରତିଧ୍ୱନିତ କରୁଥିଲେ । ଅନନ୍ତର ପଦ୍ମଲୋଚନ ରାମଚନ୍ଦ୍ର ନିକଟରେ ପଛରେ ତାଙ୍କର ଅନୁଗମନ କରୁଥିବା ଲକ୍ଷ୍ମୀବର୍ଦ୍ଧନକାରୀ ବୀର ଲକ୍ଷ୍ମଣଙ୍କୁ କହିଲେ, "ଏହି ବୃକ୍ଷ-ମାନଙ୍କର ପତ୍ରସବୁ ଯେପରି ମସୃଣ ଦେଖାଯାଉଛି ଏବଂ ପଶୁପକ୍ଷୀମାନେ ଯେପରି ଶାନ୍ତ ଦେଖାଯାଉଛନ୍ତି ସେଥିରୁ ଅନୁମାନ ହେଉଛି ବିଶୁଦ୍ଧଚେତା ଅଗସ୍ତ୍ୟ ମହର୍ଷିଙ୍କର ଆଶ୍ରମ ଆଉ ବେଶି ଦୂର ନାହିଁ । ସେ ନିଜ କାର୍ଯ୍ୟଦ୍ୱାରା 'ଅଗସ୍ତ୍ୟ' ନାମରେ ସଂସାରରେ ବିଖ୍ୟାତ ହୋଇଛନ୍ତି । ୭୫-୮୦ । ସେହି ମହର୍ଷିଙ୍କର ଏ ଆଶ୍ରମ ଦେଖାଯାଉଛି । ଏହା ଶ୍ରାନ୍ତକ୍ଲାନ୍ତ ବ୍ୟକ୍ତିମାନଙ୍କର ଶ୍ରମ ଅପନୋଦନ କରେ । ଏହି ଆଶ୍ରମ ବଲ୍କଲମାଳରେ ଅଳଂକୃତ ହୋଇଅଛି ଏବଂ ଏହାର ହୋମ-ସମ୍ଭୂତ

---

* ସେ ବିନ୍ଧ୍ୟ ନାମକ 'ଅଗ' ଅର୍ଥାତ୍ ପର୍ବତକୁ ସ୍ତମ୍ଭନ କରିଥିବାରୁ ତାଙ୍କର ନାମ ଅଗସ୍ତ୍ୟ ହୋଇଅଛି । ପୁରାଣରେ ବର୍ଣ୍ଣିତ ହୋଇଅଛି ଯେ ବିନ୍ଧ୍ୟ ପର୍ବତ ହିମାଳୟଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରି ନିଜର କଳେବର ଉତ୍ତରୋତ୍ତର ବୃଦ୍ଧି କରିବାକୁ ଲାଗିଲେ । ଏହା ଫଳରେ ସୂର୍ଯ୍ୟଙ୍କର ପଥରୋଧ ହେବାରୁ ଦେବତାମାନଙ୍କ ଅନୁରୋଧକ୍ରମେ ଅଗସ୍ତ୍ୟ ସେଠାକୁ ଯାଇ ବିନ୍ଧ୍ୟଙ୍କୁ କହିଲେ, "ମୁଁ ଦକ୍ଷିଣଦିଗରୁ ଫେରି ନ ଆସିବା ପର୍ଯ୍ୟନ୍ତ ତୁମେ ଆଉ ବଢ଼ ନାହିଁ ।"

ପ୍ରଶାନ୍ତମୃଗଯୂଥଶ୍ଚ ନାନାଶକୁନନାଦିତଃ ।
ନିଗୃହ୍ୟ ତରସା ମୃତ୍ୟୁଂ ଲୋକାନାଂ ହିତକାମ୍ୟୟା । ୮୨ ।
ଦକ୍ଷିଣା ଦିକ୍ କୃତା ଯେନ ଶରଣ୍ୟା ପୁଣ୍ୟକର୍ମଣା ।
ତସ୍ୟେଦମାଶ୍ରମପଦଂ ପ୍ରଭାବାଦ୍ ଯସ୍ୟ ରାକ୍ଷସୈଃ । ୮୩ ।
ଦିଗିୟଂ ଦକ୍ଷିଣା ତ୍ରାସାଦ୍ ଦୃଶ୍ୟତେ ନୋପଭୁଜ୍ୟତେ ।
ଯଦା ପ୍ରଭୃତି ଚାକ୍ରାନ୍ତା ଦିଗିୟଂ ପୁଣ୍ୟକର୍ମଣା । ୮୪ ।
ତଦାପ୍ରଭୃତି ନିର୍ବୈରାଃ ପ୍ରଶାନ୍ତାଃ ପିଶିତାଶନାଃ ।
ନାମ୍ନା ଚେୟଂ ଭଗବତୋ ଦକ୍ଷିଣା ଦିକ୍ ପ୍ରଦକ୍ଷିଣା । ୮୫ ।
ପ୍ରଥିତା ତ୍ରିଷୁ ଲୋକେଷୁ ଦୁର୍ଧର୍ଷା କ୍ରୂରକର୍ମଭିଃ ।
ଗତଂ ନିରୋଦ୍ଧୁଂ ନିରତୋ ଭାସ୍କରସ୍ୟାଚଲୋତ୍ତମଃ । ୮୬ ।
ନିଦେଶଂ ପାଳୟନ୍ ଯସ୍ୟ ବିନ୍ଧ୍ୟଃ ଶୈଳୋ ନ ବର୍ଧତେ ।
ଅୟଂ ଦୀର୍ଘାୟୁଷସ୍ତସ୍ୟ ଲୋକେ ବିଶ୍ରୁତକର୍ମଣଃ । ୮୭ ।
ଅଗସ୍ତ୍ୟସ୍ୟାଶ୍ରମଃ ଶ୍ରୀମାନ୍ ବିନୀତଜନସେବିତଃ ।
ଏଷ ଲୋକାର୍ଚ୍ଚିତଃ ସାଧୁର୍ହିତେ ନିତ୍ୟରତଃ ସତାମ୍ । ୮୮ ।

---

ଧୂମଦ୍ୱାରା ସମସ୍ତ ବନ ପରିପୂର୍ଣ୍ଣ ହୋଇଅଛି । ଏ ଆଶ୍ରମର ମୃଗଯୂଥ ଶାନ୍ତଭାବରେ ରହିଛନ୍ତି ଏବଂ ନାନାଜାତିର ପକ୍ଷୀଙ୍କଦ୍ୱାରା ଏହା ନିନାଦିତ ହେଉଅଛି । ଯେଉଁ ପୁଣ୍ୟକର୍ମା ଅଗସ୍ତ୍ୟ ମହର୍ଷି ଜଗତର ହିତକାମନା ଉଦ୍ଦେଶ୍ୟରେ ସତ୍ୱର ମୃତ୍ୟୁକୁ ଜୟ କରି ଦକ୍ଷିଣ ଦିଗକୁ ଆଶ୍ରୟ କରିଥିଲେ ତାଙ୍କର ଏହି ଆଶ୍ରମସ୍ଥାନ ଦେଖାଯାଉଛି । ସେହି ପୁଣ୍ୟକର୍ମା ମହର୍ଷି ଏହିଦିଗକୁ ଆଶ୍ରୟ କଲାଦିନଠାରୁ ରାକ୍ଷସମାନେ ତାଙ୍କ ପ୍ରଭାବରେ ସନ୍ତ୍ରସ୍ତ ହୋଇ ଏହି ଦିଗକୁ ଆଖିରେ ଦେଖୁଛନ୍ତି ସତ; ତାକୁ ଅଧିକାର କରିପାରୁ ନାହାନ୍ତି । ୮୧-୮୪ । ସେହି ଦିନଠାରୁ ମାଂସଭୋଜୀ ରାକ୍ଷସମାନେ ଶତ୍ରୁତା ପରିତ୍ୟାଗ କରି ଶାନ୍ତ ହୋଇ ରହିଛନ୍ତି । ସେହି ଭଗବାନ୍ ଅଗସ୍ତ୍ୟ ମହର୍ଷିଙ୍କ ନାମ ଅନୁସାରେ ଏହି ଦକ୍ଷିଣ ଦିଗ ପ୍ରଦକ୍ଷିଣ, ଅର୍ଥାତ୍ 'ସାଧୁମାନଙ୍କର ଆବାସଯୋଗ୍ୟ' ନାମଗ୍ରହଣ କରିଛି ଓ କ୍ରୂରକର୍ମା ରାକ୍ଷସମାନଙ୍କର ଦୁର୍ଜ୍ଜେୟ ହୋଇ ତ୍ରିଭୁବନରେ ବିଖ୍ୟାତ ହୋଇଅଛି । ପର୍ବତଶ୍ରେଷ୍ଠ ବିନ୍ଧ୍ୟ ସୂର୍ଯ୍ୟଙ୍କର ଗତିରୋଧ କରିବା ପାଇଁ ଉଦ୍ୟତ ହୋଇଥିଲା । ମାତ୍ର ସେ ଏହି ମହର୍ଷିଙ୍କର ନିର୍ଦ୍ଦେଶ ପାଳନ କରି ଆଉ ବଢ଼ୁନାହିଁ । ସେହି ଜଗଦ୍‌ବିଖ୍ୟାତ ଦୀର୍ଘାୟୁ ଅଗସ୍ତ୍ୟ ମହର୍ଷିଙ୍କର ଏହି ଶୋଭାମୟ ଆଶ୍ରମ ଦେଖାଯାଉଅଛି । ଏଠାରେ ବିନୀତ ଲୋକମାନେ ବାସକରି ରହିଛନ୍ତି । ଏହି ଲୋକପୂଜିତ ସାଧୁ ମହର୍ଷି ସର୍ବଦା ସଜ୍ଜନମାନଙ୍କ ହିତସାଧନରେ ରତ ରହିଛନ୍ତି । ୮୫-୮୮ ।

ଅସ୍ମାନଭିଗତାନେଷ ଶ୍ରେୟସା ଯୋଜୟିଷ୍ୟତି ।
ଆରାଧୟିଷ୍ୟାମ୍ୟତ୍ରାହମଗସ୍ତ୍ୟଂ ତଂ ମହାମୁନିମ୍ । ୮୯ ।
ଶେଷଂ ଚ ବନବାସସ୍ୟ ସୌମ୍ୟ ବତ୍ସ୍ୟାମ୍ୟହଂ ପ୍ରଭୋ ।
ଅତ୍ର ଦେବାଃ ସଗନ୍ଧର୍ବାଃ ସିଦ୍ଧାଶ୍ଚ ପରମର୍ଷୟଃ । ୯୦ ।
ଅଗସ୍ତ୍ୟଂ ନିୟତାହାରଂ ସତତଂ ପର୍ୟୁପାସତେ ।
ନାତ୍ର ଜୀବେନ୍ମୃଷାବାଦୀ କ୍ରୂରୋ ବା ଯଦି ବା ଶଠଃ । ୯୧ ।
ନୃଶଂସଃ କାମବୃତ୍ତୋ ବା ମୁନିରେଷ ତଥାବିଧଃ ।
ଅତ୍ର ଦେବାଶ୍ଚ ଯକ୍ଷାଶ୍ଚ ନାଗାଶ୍ଚ ପତଗୈଃ ସହ । ୯୨ ।
ବସନ୍ତି ନିୟତାହାରା ଧର୍ମମାରାଧୟିଷ୍ଣବଃ ।
ଅତ୍ର ସିଦ୍ଧା ମହାତ୍ମାନୋ ବିମାନୈଃ ସୂର୍ଯ୍ୟସଂନିଭୈଃ । ୯୩ ।
ତ୍ୟକ୍ତଦେହା ନବୈର୍ଦେହୈଃ ସ୍ୱର୍ଯାତାଃ ପରମର୍ଷୟଃ ।
ଯକ୍ଷତ୍ୱମମରତ୍ୱଂ ଚ ରାଜ୍ୟାନି ବିବିଧାନି ଚ । ୯୪ ।
ଅତ୍ର ଦେବା ପ୍ରଯଚ୍ଛନ୍ତି ଭୂତୈରାରାଧିତାଃ ଶୁଭୈଃ ।

---

ଆମେ ତାଙ୍କ ନିକଟକୁ ଗଲେ ସେ ଆମମାନଙ୍କର ମଙ୍ଗଳବିଧାନ କରିବେ । ମୁଁ ଏଠାରେ ମହାମନା ଅଗସ୍ତ୍ୟଙ୍କୁ ଆରାଧନା କରିବି । ୮୯ । ହେ ସୌମ୍ୟ, ବତ୍ସ, ଲକ୍ଷ୍ମଣ ! ବନବାସର ଶେଷଭାଗ ମୁଁ ଏଠାରେ ବାସକରିବି । ଏଠାରେ ଦେବତା, ଗନ୍ଧର୍ବ, ସିଦ୍ଧ ଓ ଋଷିମାନେ ସଂଯତାହାରୀ ଅଗସ୍ତ୍ୟ ମହର୍ଷିଙ୍କୁ ସର୍ବଦା ବିଶେଷଭାବରେ ଉପାସନା କରୁଅଛନ୍ତି । ଏ ମୁନିଙ୍କର ଏପରି ପ୍ରଭାବ ଅଛିଯେ କୌଣସି ଲୋକ ଏଠାରେ ମିଥ୍ୟାବାଦୀ, ନିଷ୍ଠୁର, ଶଠ, ନୃଶଂସ ବା କାମାସକ୍ତ ହେଲେ କଦାପି ବଞ୍ଚି ରହି ପାରିବ ନାହିଁ । ଏଠାରେ ଦେବତା, ଯକ୍ଷ, ନାଗ ଓ ପତଙ୍ଗମାନେ ଧର୍ମର ଆରାଧନା କରିବା ଇଚ୍ଛାରେ ସଂଯତାହାରୀ ହୋଇ ବାସକରୁଛନ୍ତି । ସିଦ୍ଧ ମହାତ୍ମା ପରମର୍ଷିମାନେ ଏଠାରେ ଦେହ ତ୍ୟାଗକରି ନୂତନ ଶରୀରଧାରଣପୂର୍ବକ ସୂର୍ଯ୍ୟ-ସଦୃଶ ତେଜସ୍ୱୀ ବିମାନରେ ବସି ସ୍ୱର୍ଗଲୋକକୁ ଗମନ କରିଅଛନ୍ତି । ଦେବତାମାନେ ଏଠାରେ ଶୁଭାଚାରୀ ପ୍ରାଣୀମାନଙ୍କଦ୍ୱାରା ଆରାଧିତ ହୋଇ ସେମାନଙ୍କୁ ଯକ୍ଷତ୍ୱ, ଅମରତ୍ୱ ଏବଂ

**ଆଗତାଃ ସ୍ମାଶ୍ରମପଦଂ ସୌମିତ୍ରେ ପ୍ରବିଶାଗ୍ରତଃ । ୯୫ ।**
**ନିବେଦୟେହ ମାଂ ପ୍ରାପ୍ତମୃଷୟେ ସୀତୟା ସହ । ୯୬ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ଅଗସ୍ତ୍ୟାଶ୍ରମୋ
ନାମ ଏକାଦଶଃ ସର୍ଗଃ

---

ଅବଧ ରାଜ୍ୟ ପ୍ରଦାନ କରିଥାନ୍ତି । ହେ ସୌମିତ୍ରେ ! ଆମେମାନେ ଆଶ୍ରମରେ ଆସି ପହଞ୍ଚିଗଲେଣି । ତୁମେ ଆଗରେ ପ୍ରବେଶ କର ଏବଂ ସୀତାଙ୍କ ସହିତ ମୁଁ ଆସିଥିବା କଥା ଋଷିଙ୍କୁ ଜଣାଅ” । ୯୦-୯୬ ।

# ଦ୍ୱାଦଶଃ ସର୍ଗଃ

## ଅଗସ୍ତ୍ୟଦର୍ଶନମ୍

ସ ପ୍ରବିଶ୍ୟାଶ୍ରମପଦଂ ଲକ୍ଷ୍ମଣୋ ରାଘବାନୁଜଃ ।
ଅଗସ୍ତ୍ୟଶିଷ୍ୟମାସାଦ୍ୟ ବାକ୍ୟମେତଦୁବାଚ ହ । ୧ ।
ରାଜା ଦଶରଥୋ ନାମ ଜ୍ୟେଷ୍ଠସ୍ତସ୍ୟ ସୁତୋ ବଲୀ ।
ରାମଃ ପ୍ରାପ୍ତୋ ମୁନିଂ ଦ୍ରଷ୍ଟୁଂ ଭାର୍ଯ୍ୟୟା ସହ ସୀତୟା । ୨ ।
ଲକ୍ଷ୍ମଣୋ ନାମ ତସ୍ୟାହଂ ଭ୍ରାତା ତ୍ୱବରଜୋ ହିତଃ ।
ଅନୁକୂଲଶ୍ଚ ଭକ୍ତଶ୍ଚ ଯଦ ତେ'ଶ୍ରୋତ୍ରମାଗତଃ । ୩ ।
ତେ ବୟଂ ବନମତ୍ୟୁଗ୍ରଂ ପ୍ରବିଷ୍ଟାଃ ପିତୃଶାସନାତ୍ ।
ଦ୍ରଷ୍ଟୁମିଚ୍ଛାମହେ ସର୍ବେ ଭଗବନ୍ତଂ ନିବେଦ୍ୟତାମ୍ । ୪ ।
ତସ୍ୟ ତଦ୍ବଚନଂ ଶ୍ରୁତ୍ୱା ଲକ୍ଷ୍ମଣସ୍ୟ ତପୋଧନଃ ।
ତଥେତ୍ୟୁକ୍ତ୍ୱାଗ୍ନିଶରଣଂ ପ୍ରବିବେଶ ନିବେଦିତୁମ୍ । ୫ ।
ସ ପ୍ରବିଶ୍ୟ ମୁନିଶ୍ରେଷ୍ଠଂ ତପସା ଦୁଷ୍ପ୍ରଧର୍ଷଣମ୍ ।
କୃତାଞ୍ଜଲିରୁବାଚେଦଂ ରାମାଗମନମଞ୍ଜସା । ୬ ।

---

## ୧୨ଶ ସର୍ଗ

(ଅଗସ୍ତ୍ୟଙ୍କ ଦର୍ଶନ)

ରାମଙ୍କର ଅନୁଜ ଲକ୍ଷ୍ମଣ ଆଶ୍ରମରେ ପ୍ରବେଶକରି ଅଗସ୍ତ୍ୟଙ୍କର ଶିଷ୍ୟଙ୍କ ନିକଟକୁ ଯାଇ କହିଲେ । ୧ । "ରାଜା ଦଶରଥଙ୍କର ଜ୍ୟେଷ୍ଠ ପୁତ୍ର ମହାବଳୀ ରାମଚନ୍ଦ୍ର ଭାର୍ଯ୍ୟା ସୀତାଙ୍କ ସହିତ ମୁନିଙ୍କୁ ଦର୍ଶନ କରିବା ପାଇଁ ଆସି ଉପସ୍ଥିତ ହୋଇଅଛନ୍ତି । ୨ । ମୁଁ ତାଙ୍କର ହିତକାମୀ, ଭକ୍ତ ଏବଂ ଅନୁକୂଳ କନିଷ୍ଠ ଭ୍ରାତା; ଏ କଥା ବୋଧହୁଏ ତୁମ କାନରେ ପଡ଼ିଥିବ । ୩ । ଆମେ ସମସ୍ତେ ପିତାଙ୍କ ଆଦେଶରେ ଘୋର ଅରଣ୍ୟରେ ପ୍ରବେଶ କରିଅଛୁଁ । ବର୍ତ୍ତମାନ ଆମେ ଭଗବାନ୍ ଅଗସ୍ତ୍ୟ ମୁନିଙ୍କ ଦର୍ଶନ ଇଚ୍ଛା କରୁଅଛୁଁ । ତୁମେ ଏ କଥା ତାଙ୍କୁ ଜଣାଅ । ୪ । ସେ ତପସ୍ୱୀ ଲକ୍ଷ୍ମଣଙ୍କଠାରୁ ଏହା ଶୁଣି "ହେଉ" ବୋଲି କହି ମୁନିଙ୍କୁ ନିବେଦନ କରିବାକୁ ଅଗ୍ନିଶାଳାରେ ପ୍ରବେଶକଲେ । ୫ । ସେ ସେଠାରେ ପ୍ରବେଶକରି ସତ୍ୱର କୃତାଞ୍ଜଳିପୁଟରେ, ତପୋବଳରେ ଦୁଷ୍ପ୍ରଧୃଷ୍ୟ, ମୁନିଶ୍ରେଷ୍ଠ ଅଗସ୍ତ୍ୟଙ୍କୁ ରାମଙ୍କ

ଯଥୋକ୍ତଂ ଲକ୍ଷ୍ମଣେନୈବ ଶିଷ୍ୟୋଽଗସ୍ତ୍ୟସ୍ୟ ସଂମତଃ ।
ପୁତ୍ରୌ ଦଶରଥସ୍ୟେମୌ ରାମୋ ଲକ୍ଷ୍ମଣ ଏବ ଚ । ୭ ।
ପ୍ରବିଷ୍ଟାବାଶ୍ରମପଦଂ ସୀତୟା ସହ ଭାର୍ଯ୍ୟୟା ।
ଦ୍ରଷ୍ଟୁଂ ଭବନ୍ତମାୟାତୌ ଶୁଶ୍ରୂଷାର୍ଥମରିନ୍ଦମୌ । ୮ ।
ଯଦତ୍ରାନନ୍ତରଂ ତତ୍ତ୍ୱମାଜ୍ଞାପୟିତୁମର୍ହସି ।
ତତଃ ଶିଷ୍ୟାଦୁପଶ୍ରୁତ୍ୟ ପ୍ରାପ୍ତଂ ରାମଂ ସଲକ୍ଷ୍ମଣମ୍ । ୯ ।
ବୈଦେହୀଂ ଚ ମହାଭାଗାମିଦଂ ବଚନମବ୍ରବୀତ୍ ।
ଦିଷ୍ଟ୍ୟା ରାମଶ୍ଚିରସ୍ୟାଦ୍ୟ ଦ୍ରଷ୍ଟୁଂ ମାଂ ସମୁପାଗତଃ । ୧୦ ।
ମନସା କାଙ୍କ୍ଷିତଂ ହ୍ୟସ୍ୟ ମୟାପ୍ୟାଗମନଂ ପ୍ରତି ।
ଗମ୍ୟତାଂ ସତ୍କୃତୋ ରାମଃ ସଭାର୍ଯ୍ୟଃ ସହଲକ୍ଷ୍ମଣଃ । ୧୧ ।
ପ୍ରବେଶ୍ୟତାଂ ସମୀପଂ ମେ କିଂ ଚାସୌ ନ ପ୍ରବେଶିତଃ ।
ଏବମୁକ୍ତସ୍ତୁ ମୁନିନା ଧର୍ମଜ୍ଞେନ ମହାତ୍ମନା । ୧୨ ।
ଅଭିବାଦ୍ୟାବ୍ରବୀଚ୍ଛିଷ୍ୟସ୍ତଥେତି ନିୟତାଞ୍ଜଳିଃ ।
ତତୋ ନିଷ୍କ୍ରମ୍ୟ ସଂଭ୍ରାନ୍ତଃ ଶିଷ୍ୟୋ ଲକ୍ଷ୍ମଣମବ୍ରବୀତ୍ । ୧୩ ।
କ୍ୱାସୌ ରାମୋ ମୁନିଂ ଦ୍ରଷ୍ଟୁମେତୁ ପ୍ରବିଶତୁ ସ୍ୱୟମ୍ ।
ତତୋ ଗତ୍ୱାଶ୍ରମଦ୍ୱାରଂ ଶିଷ୍ୟେଣ ସହଲକ୍ଷ୍ମଣଃ । ୧୪ ।

---

ଆଗମନ ସମ୍ବାଦ ଜଣାଇଲେ । ୭ । ଅଗସ୍ତ୍ୟଙ୍କର ଅଭିମତ ଶିଷ୍ୟ ଲକ୍ଷ୍ମଣଙ୍କ କଥା ଅନୁସାରେ ଋଷିଙ୍କୁ କହିଲେ ।"ଦଶରଥଙ୍କର ଦୁଇ ପୁତ୍ର ଶତ୍ରୁମର୍ଦ୍ଦନ ରାମ ଓ ଲକ୍ଷ୍ମଣ ଭାର୍ଯ୍ୟା ସୀତାଙ୍କ ସହିତ ଆପଣଙ୍କୁ ଦର୍ଶନ କରିବାକୁ ଓ ଆପଣଙ୍କର ସେବା କରିବା ନିମନ୍ତେ ଆଶ୍ରମରେ ପ୍ରବେଶ କରିଅଛନ୍ତି । ୭-୮ । ଏ ବିଷୟରେ ଯାହା କର୍ତ୍ତବ୍ୟ ତାହା ଆପଣ ଆଜ୍ଞା କରନ୍ତୁ ।" ମହାଭାଗ୍ୟବତୀ ସୀତା ଆସି ପହଞ୍ଚିଥିବା କଥା ଶିଷ୍ୟମୁଖରୁ ଶୁଣି ସେ କହିଲେ, "ସୌଭାଗ୍ୟର କଥା, ଯେ ବହୁଦିନ ପରେ ରାମ ମୋତେ ଦେଖିବାକୁ ଆସି ଉପସ୍ଥିତ ହୋଇଛନ୍ତି ।୯-୧୦। ଏହାଙ୍କ ଆସିବା ବିଷୟ ମୁଁ ମଧ୍ୟ ମନେ ମନେ ଇଚ୍ଛା କରୁଥିଲି । ଯାଅ ସୀତା ଓ ଲକ୍ଷ୍ମଣଙ୍କ ସହିତ ରାମଙ୍କୁ ସତ୍କାରକରି ମୋ ସମୀପରେ ଉପସ୍ଥିତ କରାଅ । ତାଙ୍କୁ ସଙ୍ଗେ ସଙ୍ଗେ ନେଇଆସିଲ ନାହିଁ କାହିଁକି ?" ଧର୍ମଜ୍ଞ ମହାତ୍ମା ଅଗସ୍ତ୍ୟ ମୁନି ଏହିପରି କହିବାରୁ ଶିଷ୍ୟ ତାଙ୍କୁ ନମସ୍କାରକରି କରଯୋଡ଼ି "ଯେ ଆଜ୍ଞା" ବୋଲି କହିଲେ ଏବଂ ସେଠାରୁ ବାହାରିଯାଇ ସସମ୍ମାନରେ ଲକ୍ଷ୍ମଣଙ୍କୁ କହିଲେ । ୧୧-୧୩ । "ରାମ କାହାନ୍ତି ? ମୁନିଙ୍କୁ ଦର୍ଶନ କରିବାନିମନ୍ତେ ସେ ସ୍ୱୟଂ ଆସନ୍ତୁ, ପ୍ରବେଶ

ଦର୍ଶୟାମାସ କାକୁତ୍ସ୍ଥଂ ସୀତାଂ ଚ ଜନକାତ୍ମଜାମ୍ ।
ତଂ ଶିଷ୍ୟଃ ପ୍ରଶ୍ରିତୋ ବାକ୍ୟମଗସ୍ତ୍ୟବଚନଂ ବ୍ରୁବନ୍ । ୧୫ ।
ପ୍ରାବେଶୟଦ୍ ଯଥାନ୍ୟାୟଂ ସତ୍କାରାର୍ହଂ ସୁସତ୍କୃତମ୍ ।
ପ୍ରବିବେଶ ତତୋ ରାମଃ ସୀତୟା ସହଲକ୍ଷ୍ମଣଃ । ୧୬ ।
ପ୍ରଶାନ୍ତହରିଣାକୀର୍ଣ୍ଣମାଶ୍ରମଂ ହ୍ୟବଲୋକୟନ୍ ।
ସ ତତ୍ର ବ୍ରହ୍ମଣଃ ସ୍ଥାନମଗ୍ନେଃ ସ୍ଥାନଂ ତଥୈବ ଚ ।୧୭ ।
ବିଷ୍ଣୋଃ ସ୍ଥାନଂ ମହେନ୍ଦ୍ରସ୍ୟ ସ୍ଥାନଂ ଚୈବ ବିବସ୍ୱତଃ ।
ସୋମସ୍ଥାନଂ ଭଗସ୍ଥାନଂ ସ୍ଥାନଂ କୌବେରମେବ ଚ । ୧୮ ।
ଧାତୁର୍ବିଧାତୁଃ ସ୍ଥାନେ ଚ ବାୟୋଃ ସ୍ଥାନଂ ତଥୈବ ଚ ।
ନାଗରାଜସ୍ୟ ଚ ସ୍ଥାନମନନ୍ତସ୍ୟ ମହାତ୍ମନଃ । ୧୯ ।
ସ୍ଥାନଂ ତଥୈବ ଗାୟତ୍ର୍ୟା ବସୂନାଂ ସ୍ଥାନମେବ ଚ ।
ସ୍ଥାନଂ ଚ ପାଶହସ୍ତସ୍ୟ ବରୁଣସ୍ୟ ମହାତ୍ମନଃ । ୨୦ ।
କାର୍ତ୍ତିକେୟସ୍ୟ ଚ ସ୍ଥାନଂ ଧର୍ମସ୍ଥାନଂ ଚ ପଶ୍ୟତି ।
ତତଃ ଶିଷ୍ୟୈଃ ପରିବୃତୋ ମୁନିରପ୍ୟଭିନିଷ୍ପତତ୍ । ୨୧ ।
ତଂ ଦଦର୍ଶାଗ୍ରତୋ ରାମୋ ମୁନୀନାଂ ଦୀପ୍ତତେଜସାମ୍ ।
ଅବ୍ରବୀଦ୍ ବଚନଂ ବୀରୋ ଲକ୍ଷ୍ମଣଂ ଲକ୍ଷ୍ମୀବର୍ଦ୍ଧନମ୍ । ୨୨।

---

କରନ୍ତୁ ।" ଅନନ୍ତର ଲକ୍ଷ୍ମଣ ଶିଷ୍ୟଙ୍କ ସହିତ ଆଶ୍ରମଦ୍ୱାରକୁ ଯାଇ ରାମ ଓ ଜନକନନ୍ଦିନୀ ସୀତାଙ୍କୁ ତାଙ୍କୁ ଦେଖାଇଦେଲେ । ଶିଷ୍ୟ ବିନୟସହକାରେ ଅଗସ୍ତ୍ୟ ଯାହା କହିଥିଲେ ତାହା ରାମଙ୍କୁ କହିଲେ ଏବଂ ଯଥାବିଧାନରେ ବିଶେଷ ସମ୍ମାନସହ ତାଙ୍କୁ ଆଶ୍ରମ ମଧ୍ୟରେ ପ୍ରବେଶ କରାଇଲେ । ଅନନ୍ତର ରାମ ସୀତା ଓ ଲକ୍ଷ୍ମଣଙ୍କ ସହିତ ଆଶ୍ରମମଧ୍ୟରେ ପ୍ରବେଶକଲେ । ୧୫-୧୬ । ରାମ ସେତେବେଳେ ଶାନ୍ତସ୍ୱଭାବ ହରିଣମାନଙ୍କ ଦ୍ୱାରା ଚାରିଆଡ଼େ ସମାକୀର୍ଣ୍ଣ ଆଶ୍ରମ ଏବଂ ବ୍ରହ୍ମା, ବିଷ୍ଣୁ, ଅଗ୍ନି, ଇନ୍ଦ୍ର, ସୂର୍ଯ୍ୟ, ଚନ୍ଦ୍ର, ଭଗ, କୁବେର, ଧାତା, ବିଧାତା, ବାୟୁ, ପାଶହସ୍ତ ମହାତ୍ମା- ବରୁଣ, ଗାୟତ୍ରୀ, ବସୁ, ନାଗରାଜ, ବାସୁକୀ, କାର୍ତ୍ତିକେୟ ଓ ଧର୍ମଙ୍କର ମନ୍ଦିରମାନ ଦେଖିଲେ । ଅନନ୍ତର ଅଗସ୍ତ୍ୟ ମୁନି ଶିଷ୍ୟମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ତାଙ୍କ ଆଡ଼କୁ ଦୌଡ଼ିଆସିଲେ । ୧୭-୨୧ । ବୀର ରାମ ଦୀପ୍ତତେଜା ମୁନିମାନଙ୍କ ଅଗ୍ରଭାଗରେ ଅଗସ୍ତ୍ୟଙ୍କୁ ଦର୍ଶନକଲେ ଏବଂ ଲକ୍ଷ୍ମୀବର୍ଦ୍ଧନ ଲକ୍ଷ୍ମଣଙ୍କୁ କହିଲେ । ୨୨ । "ହେ ଲକ୍ଷ୍ମଣ ! ଦେଖ ଭଗବାନ୍ ଅଗସ୍ତ୍ୟ ମହର୍ଷି

ଏଷ ଲକ୍ଷ୍ମଣ ନିଷ୍କ୍ରାମତ୍ୟଗସ୍ତ୍ୟୋ ଭଗବାନୃଷିଃ ।
ଔଦାର୍ଯ୍ୟେଣାବଗଚ୍ଛାମି ନିଧାନଂ ତପସାମିମମ୍ ।୨୩।
ଏବମୁକ୍ତ୍ୱା ମହାବାହୁରଗସ୍ତ୍ୟଂ ସୂର୍ଯ୍ୟବର୍ଚ୍ଚସମ୍ ।
ଜଗ୍ରାହ ପରମପ୍ରୀତସ୍ତସ୍ୟ ପାଦୌ ପରଂତପଃ । ୨୪ ।
ଅଭିବାଦ୍ୟ ତୁ ଧର୍ମାତ୍ମା ତସ୍ଥୌ ରାମଃ କୃତାଞ୍ଜଳିଃ ।
ସୀତୟା ସହ ବୈଦେହ୍ୟା ତଦା ରାମଃ ସଲକ୍ଷ୍ମଣଃ । ୨୫ ।
ପ୍ରତିଜଗ୍ରାହ କାକୁତ୍ସ୍ଥମର୍ଚ୍ଚୟିତ୍ୱାସନୋଦକୈଃ ।
କୁଶଳପ୍ରଶ୍ନମୁକ୍ତ୍ୱା ଚ ହ୍ୟାସ୍ୟତାମିତି ଚାବ୍ରବୀତ୍ । ୨୬ ।
ଅଗ୍ନିଂ ହୁତ୍ୱା ପ୍ରଦାୟାର୍ଘ୍ୟମତିଥୀନ୍ ପ୍ରତିପୂଜ୍ୟ ଚ ।
ବାନପ୍ରସ୍ଥେନ ଧର୍ମେଣ ସ ତେଷାଂ ଭୋଜନଂ ଦଦୌ । ୨୭ ।
ପ୍ରଥମଂ ଚୋପବିଶ୍ୟାଥ ଧର୍ମଜ୍ଞୋ ମୁନିପୁଂଗବଃ ।
ଉବାଚ ରାମମାସୀନଂ ପ୍ରାଞ୍ଜଳିଂ ଧର୍ମକୋବିଦମ୍ । ୨୮ ।
ଅଗ୍ନିଂ ହୁତ୍ୱା ପ୍ରଦାୟାର୍ଘ୍ୟମତିଥିଂ ପ୍ରତିପୂଜୟେତ୍ ।
ଅନ୍ୟଥା ଖଲୁ କାକୁତ୍ସ୍ଥ ତପସ୍ୱୀ ସମୁଦାଚରନ୍ ।୨୯।
ଦୁଃସାକ୍ଷୀବ ପରେ ଲୋକେ ସ୍ୱାନି ମାଂସାନି ଭକ୍ଷୟେତ୍ ।
ରାଜା ସର୍ବସ୍ୟ ଲୋକସ୍ୟ ଧର୍ମଚାରୀ ମହାରଥଃ । ୩୦ ।

---

ବାହାର ଆସୁଛନ୍ତି । ଏହାଙ୍କ ଉଦାର ଗମ୍ଭୀରମୂର୍ତ୍ତି ଦେଖି ତାଙ୍କୁ ସବୁ ତପସ୍ୟାର ଆଧାର ବୋଲି ଜାଣିପାରୁଛି ।୨୩।” ଏହା କହି ମହାବାହୁ ଅରିନ୍ଦମ ରାମ ପରମପ୍ରୀତ ହୋଇ ସୂର୍ଯ୍ୟସମ ତେଜସ୍ୱୀ ଅଗସ୍ତ୍ୟ ମହର୍ଷିଙ୍କର ଚରଣଦ୍ୱୟ ବନ୍ଦନାକଲେ । ୨୪ । ଧର୍ମାତ୍ମା ରାମ ତାଙ୍କୁ ଅଭିବାଦନକଲାଉତ୍ତାରୁ ସୀତା ଓ ଲକ୍ଷ୍ମଣଙ୍କ ସହିତ କୃତାଞ୍ଜଳି ହୋଇ ଠିଆହୋଇ ରହିଲେ । ୨୫ । ମହର୍ଷି ଅଗସ୍ତ୍ୟ କାକୁସ୍ଥ ରାମଙ୍କୁ ସମାଦର-ପୂର୍ବକ ନେଇଯାଇ ଆସନ ଓ ଉଦକଦ୍ୱାରା ଅର୍ଚ୍ଚନାକରି କୁଶଳପ୍ରଶ୍ନ ପଚାରିଲେ ଏବଂ "ବସ" ବୋଲି କହିଲେ । ୨୬ । ଅନନ୍ତର ସେ ଅଗ୍ନିରେ ଆହୁତି ଦେଇ ସେହି ଅତିଥିମାନଙ୍କୁ ଅର୍ଘ୍ୟଦାନ ଓ ପୂଜାକରି ବାନପ୍ରସ୍ଥ ମତରେ ସେମାନଙ୍କୁ ଭୋଜନ ଦେଲେ । ୨୭ । ଧର୍ମଜ୍ଞ ମହର୍ଷି ପ୍ରଥମେ ସ୍ୱୟଂ ଉପବେଶନକରି ପରେ କରଯୋଡ଼ି ବସିଥିବା ଧର୍ମଜ୍ଞ ରାମଙ୍କୁ କହିଲେ । ୨୮ । "ହେ କାକୁସ୍ଥ ! ଅଗ୍ନିରେ ଆହୁତି ପ୍ରଦାନ କରିସାରି ଅତିଥିଙ୍କୁ ପୂଜା କରିବା ଉଚିତ ଅଟେ । ତପସ୍ୱୀ ଯଦି ଅତିଥି ପ୍ରତି ଅନ୍ୟ ପ୍ରକାର ଆଚରଣ କରେ, ତେବେ ମିଥ୍ୟା ସାକ୍ଷ୍ୟଦେବା ବ୍ୟକ୍ତି ପରି ତାହାକୁ ପରଲୋକରେ ନିଜର ମାଂସ ଭକ୍ଷଣ କରିବାକୁ ହୁଏ । ତୁମେ ମହାରଥୀ

ପୂଜନୀୟଶ୍ଚ ମାନ୍ୟଶ୍ଚ ଭବାନ୍ ପ୍ରାପ୍ତଃ ପ୍ରିୟାତିଥିଃ ।
ଏବମୁକ୍ତ୍ୱା ଫଳୈର୍ମୂଳୈଃ ପୁଷ୍ପୈରନ୍ୟୈଶ୍ଚ ରାଘବମ୍ ।୩୧ ।
ପୂଜୟିତ୍ୱା ଯଥାକାମଂ ପୁନରେବ ତତୋଽବ୍ରବୀତ୍ ।
ଇଦଂ ଦିବ୍ୟଂ ମହଚ୍ଚାପଂ ହେମରତ୍ନବିଭୂଷିତମ୍ । ୩୨ ।
ବୈଷ୍ଣବଂ ପୁରୁଷବ୍ୟାଘ୍ର ନିର୍ମିତଂ ବିଶ୍ୱକର୍ମଣା ।
ଅମୋଘଃ ସୂର୍ଯ୍ୟସଂକାଶୋ ବ୍ରହ୍ମଦତ୍ତଃ ଶରୋତ୍ତମଃ । ୩୩ ।
ଦତ୍ତୌ ମମ ମହେନ୍ଦ୍ରେଣ ତୂଣୀ ଚାକ୍ଷୟସାୟକୌ ।
ସଂପୂର୍ଣୌ ନିଶିତୈର୍ବାଣୈର୍ଜ୍ୱଲଦ୍ଭିରିବ ପାବକୈଃ ।୩୪ ।
ମହାରଜତକୋଶୋଽୟମସିର୍ହେମବିଭୂଷିତଃ ।
ଅନେନ ଧନୁଷା ରାମ ହତ୍ୱା ସଂଖ୍ୟେ ମହାସୁରାନ୍ । ୩୫।
ଆଜହାର ଶ୍ରିୟଂ ଦୀପ୍ତାଂ ପୁରା ବିଷ୍ଣୁ ର୍ଦିବୌକସାମ୍ ।
ତଦ୍ଧନୁସ୍ତୌ ଚ ତୂଣୀରୌ ଶରଂ ଖଡ୍ଗଂ ଚ ମାନଦ ।୩୬ ।
ଜୟାୟ ପ୍ରତିଗୃହ୍ଣୀଷ୍ୱ ବଜ୍ରଂ ବଜ୍ରଧରୋ ଯଥା ।

---

ଏବଂ ସକଳଲୋକର ଧର୍ମାଚାରୀ ରାଜା । ତୁମେ ପ୍ରିୟ ଅତିଥିରୂପେ ଆସି ମୋ ଆଶ୍ରମରେ ଉପସ୍ଥିତ ହୋଇଅଛ; ସୁତରାଂ ତୁମେ ମୋର ପୂଜନୀୟ ଏବଂ ମାନ୍ୟ ।" ଏହା କହି ମୁନି ଫଳ ମୂଳ ପୁଷ୍ପ ଏବଂ ଅନ୍ୟାନ୍ୟ ଦ୍ରବ୍ୟ ଦ୍ୱାରା ଅଭୀଷ୍ଟ ଅନୁରୂପ ରାମଙ୍କର ପୂଜାକରି ପୁଣି ତାଙ୍କୁ କହିଲେ "ହେ ନରଶ୍ରେଷ୍ଠ ! ସ୍ୱର୍ଣ୍ଣ ଓ ରତ୍ନବିଭୂଷିତ ବିଶ୍ୱକର୍ମାଙ୍କ ଦ୍ୱାରା ନିର୍ମିତ ଏହି ଦିବ୍ୟ ବୈଷ୍ଣବ ମହାଧନୁ, ସୂର୍ଯ୍ୟସଦୃଶ ଦୀପ୍ତିମନ୍ତ ଅମୋଘ ଉତ୍କୃଷ୍ଟ ଏହି ବ୍ରହ୍ମଦତ୍ତ ଶର ଏବଂ ଜ୍ୱଳନ୍ତ ବହ୍ନି ସଦୃଶ ତୀକ୍ଷ୍ଣ ବାଣସବୁରେ ପରିପୂର୍ଣ୍ଣ ଏହି ଦୁଇଟି ତୂଣୀର ଇନ୍ଦ୍ର ମୋତେ ଦେଇଥିଲେ ।୨୮-୩୪। ଏହି ସ୍ୱର୍ଣ୍ଣମୟ କୋଷବଦ୍ଧ ଏବଂ ସ୍ୱର୍ଣ୍ଣବିଭୂଷିତ ଅସି ମଧ୍ୟ ମୋତେ ସେ ଦେଇଥିଲେ । ହେ ରାମ ! ପୂର୍ବେ ଭଗବାନ୍ ବିଷ୍ଣୁ ଏହି ଧନୁଦ୍ୱାରା ଯୁଦ୍ଧରେ ମହାସୁରମାନଙ୍କୁ ହତ୍ୟା କରି ଦେବତାମାନଙ୍କର ଦୀପ୍ତିମନ୍ତ ଶ୍ରୀ ଆହରଣ କରିଥିଲେ । ହେ ମାନଦ ! ବଜ୍ରଧର ଇନ୍ଦ୍ର ଯେପରି ବଜ୍ରଧାରଣ କରନ୍ତି ସେହିପରି ତୁମେ ଜୟଲାଭ ନିମନ୍ତେ ଏହି ଧନୁ, ଶର, ଖଡ୍ଗ ଏବଂ ତୂଣୀର ଦୁଇଟି

ଏବମୁକ୍ତ୍ୱା ମହାତେଜାଃ ସମସ୍ତଂ ତଦ୍ ବରାୟୁଧମ୍ ।୩୭।
ଦତ୍ତ୍ୱା ରାମାୟ ଭଗବାନଗସ୍ତ୍ୟଃ ପୁନରବ୍ରବୀତ୍ ।।୩୮ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାଂ ସଂହିତାୟାଂ ଅରଣ୍ୟକାଣ୍ଡେ ଅଗସ୍ତ୍ୟଦର୍ଶନମ୍ ନାମ ଦ୍ୱାଦଶଃ ସର୍ଗଃ

---

ଗ୍ରହଣ କର ।" ମହାତେଜା ଭଗବାନ୍ ଅଗସ୍ତ୍ୟ ମୁନି ଏହା କହି ସେ ସମସ୍ତ ଉତ୍କୃଷ୍ଟ ଅୟୁଧ ରାମଙ୍କୁ ପ୍ରଦାନ କରି ପୁଣି ତାଙ୍କୁ କହିଲେ । ୩୭-୩୮ ।

# ତ୍ରୟୋଦଶଃ ସର୍ଗଃ

## ପଞ୍ଚବଟୀଗମନମ୍

ରାମ ପ୍ରୀତୋଽସ୍ମି ଭଦ୍ରଂ ତେ ପରିତୁଷ୍ଟୋଽସ୍ମି ଲକ୍ଷ୍ମଣ ।
ଅଭିବାଦୟିତୁଂ ଯନ୍ମାଂ ସଂପ୍ରାପ୍ତୌ ସହ ସୀତୟା । ୧ ।
ଅଧ୍ୱଶ୍ରମେଣ ବାଂ ଖେଦୋ ବାଧତେ ପ୍ରଚୁରଶ୍ରମଃ ।
ବ୍ୟକ୍ତମୁତ୍କଣ୍ଠତେ ଚାପି ମୈଥିଲୀ ଜନକାତ୍ମଜା । ୨ ।
ଏଷା ହି ସୁକୁମାରୀ ଚ ଦୁଃଖୈଶ୍ଚ ନ ବିମାନିତା ।
ପ୍ରାଜ୍ୟଦୋଷଂ ବନଂ ପ୍ରାପ୍ତା ଭର୍ତୃସ୍ନେହପ୍ରଚୋଦିତା । ୩ ।
ଯଥୈଷା ରମତେ ରାମ ଇହ ସୀତା ତଥା କୁରୁ ।
ଦୁଷ୍କରଂ କୃତବତ୍ୟେଷା ବନେ ତ୍ୱାମନୁଗଚ୍ଛତୀ । ୪ ।
ଏଷା ହି ପ୍ରକୃତିଃ ସ୍ତ୍ରୀଣାମାସୃଷ୍ଟେ ରଘୁନନ୍ଦନ ।
ସମସ୍ଥମନୁରଜ୍ୟନ୍ତେ ବିଷମସ୍ଥଂ ତ୍ୟଜନ୍ତି ଚ । ୫ ।
ଶତହ୍ରଦାନାଂ ଲୋଲତ୍ୱଂ ଶସ୍ତ୍ରାଣାଂ ତୀକ୍ଷ୍ଣତାଂ ତଥା ।
ଗରୁଡାନିଲୟୋଃ ଶୈଘ୍ର୍ୟମନୁଗଚ୍ଛନ୍ତି ଯୋଷିତଃ । ୬ ।

---

## ୧୩ଶ ସର୍ଗ

### ( ରାମଙ୍କର ପଞ୍ଚବଟୀଗମନ )

"ହେ ରାମ, ହେ ଲକ୍ଷ୍ମଣ ! ତୁମ୍ଭର ମଙ୍ଗଳ ହେଉ । ତୁମେ ଦୁହେଁ ଯେ ସୀତାଙ୍କ ସହିତ ମୋତେ ଅଭିବାଦନ କରିବା ପାଇଁ ଏଠାକୁ ଆସିଅଛ, ଏଥିରେ ମୁଁ ବିଶେଷ ପ୍ରୀତ ଓ ପରିତୁଷ୍ଟ ହୋଇଅଛି । ୧ । ପଥଶ୍ରମହେତୁ ତୁମମାନଙ୍କର ଯେ ଅତିଶୟ କଷ୍ଟ ହୋଇଅଛି, ଏହା ସ୍ପଷ୍ଟ ଜଣାଯାଉଅଛି; ଜନକନନ୍ଦିନୀ ମୈଥିଳୀ ମଧ୍ୟ ବିଶେଷ ଉତ୍କଣ୍ଠିତା ହୋଇଅଛନ୍ତି । ୨ । ଏ ଅତିସୁକୁମାରୀ; କେବେହେଲେ ଦୁଃଖ ଭୋଗି ନାହାନ୍ତି । ସ୍ୱାମିସ୍ନେହରେ ପ୍ରଣୋଦିତ ହୋଇ ସେ ବହୁକଷ୍ଟପ୍ରଦ ବନକୁ ଆସିଅଛନ୍ତି ।୩। ହେ ରାମ ! ଏ ତୁମ୍ଭର ଅନୁଗମନ କରିବାଦ୍ୱାରା ଅତିଶୟ ଦୁଷ୍କର କାର୍ଯ୍ୟ କରିଅଛନ୍ତି, ସୁତରାଂ ତାଙ୍କର ମନ ଯେପରି ଏଠାରେ ପ୍ରଫୁଲ୍ଲିତ ହେବ, ତୁମେ ସେହିପରି କର । ୪ । ହେ ରଘୁନନ୍ଦନ ! ସୃଷ୍ଟିକାଳରୁ ନାରୀମାନଙ୍କର ପ୍ରକୃତି ଏହିପରି ଯେ ସେମାନେ ସମୃଦ୍ଧି ଉପଭୋଗ କରୁଥିବା ବ୍ୟକ୍ତିପ୍ରତି ଅନୁରକ୍ତ ହୁଅନ୍ତି ଏବଂ ବିପଦଗ୍ରସ୍ତ ଲୋକକୁ ପରିତ୍ୟାଗ କରନ୍ତି । ୫ । ରମଣୀମାନେ ବିଦ୍ୟୁତର ଚଞ୍ଚଳତା, ଶସ୍ତ୍ରର ତୀକ୍ଷ୍ଣତା ଏବଂ ଗରୁଡ଼ ଓ ବାୟୁର ଶୀଘ୍ରତାକୁ ଅନୁକରଣ

ଇୟଂ ତୁ ଭବତୋ ଭାର୍ଯା ଦୋଷୈରେତୈର୍ବିବର୍ଜିତା ।
ଶ୍ଳାଘ୍ୟା ଚ ବ୍ୟପଦେଶ୍ୟା ଚ ଯଥା ଦେବୀ ହ୍ୟରୁନ୍ଧତୀ । ୭ ।
ଅଲଂକୃତୋଽୟଂ ଦେଶଶ୍ଚ ଯତ୍ର ସୌମିତ୍ରିଣା ସହ ।
ବୈଦେହ୍ୟା ଚାନୟା ରାମ ବତ୍ସ୍ୟସି ତ୍ୱମରିନ୍ଦମ । ୮ ।
ଏବମୁକ୍ତଃ ସ ମୁନିନା ରାଘବଃ ସଂଯତାଞ୍ଜଳିଃ ।
ଉବାଚ ପ୍ରଶ୍ରିତଂ ବାକ୍ୟମୃଷିଂ ଦୀପ୍ତମିବାନଳମ୍ । ୯ ।
ଧନ୍ୟୋଽସ୍ମ୍ୟନୁଗୃହୀତୋଽସ୍ମି ଯସ୍ୟ ମେ ମୁନିପୁଂଗବଃ ।
ଗୁଣୈଃ ସଭ୍ରାତୃଭାର୍ଯସ୍ୟ ବରଦଃ ପରିତୁଷ୍ୟତି । ୧୦ ।
କିଂ ତୁ ବ୍ୟାଦିଶ ମେ ଦେଶଂ ସୋଦକଂ ବହୁକାନନମ୍ ।
ଯତ୍ରାଶ୍ରମପଦଂ କୃତ୍ୱା ବସେୟଂ ନିରତଃ ସୁଖମ୍ । ୧୧ ।
ତତୋଽବ୍ରବୀନ୍ମୁନିଶ୍ରେଷ୍ଠଃ ଶ୍ରୁତ୍ୱା ରାମସ୍ୟ ଭାଷିତମ୍ ।
ଧ୍ୟାତ୍ୱା ମୁହୂର୍ତଂ ଧର୍ମାତ୍ମା ଧୀରୋ ଧୀରତରଂ ବଚଃ । ୧୨ ।
ଇତୋ ଦ୍ୱିଯୋଜନେ ତାତ ବହୁମୂଳଫଳୋଦକଃ ।
ଦେଶୋ ବହୁମୃଗଃ ଶ୍ରୀମାନ୍ ପଞ୍ଚବଟ୍ୟଭିବିଶ୍ରୁତଃ । ୧୩ ।

---

କରିଥାନ୍ତି । ୬ । ମାତ୍ର ତୁମ୍ଭର ଏହି ଭାର୍ଯ୍ୟା ଏସବୁ ଦୋଷରୁ ସଂପୂର୍ଣ୍ଣମୁକ୍ତ ଅଟନ୍ତି । ଏ ଦେବୀ ଅରୁନ୍ଧତୀଙ୍କପରି ପ୍ରଶଂସନୀୟା ଏବଂ ଆଦର୍ଶସ୍ଥାନୀୟା ଅଟନ୍ତି । ୭ । ହେ ଶତ୍ରୁଦମନ ରାମ ! ତୁମେ ସୁମିତ୍ରାନନ୍ଦନ ଏବଂ ସୀତାଙ୍କ ସହିତ ଯେଉଁ ସ୍ଥାନରେ ବାସକରିବ, ସେ ସ୍ଥାନ ଅଳଂକୃତ ହେବ" । ୮ । ମୁନି ଏହିପରି କହିବା ଉତ୍ତାରୁ ରାମ କୃତାଞ୍ଜଳିପୂର୍ବକ ବିନୀତବାକ୍ୟରେ ଅଗ୍ନିତୁଲ୍ୟ ତେଜସ୍ୱୀ ମହର୍ଷିଙ୍କୁ କହିଲେ । ୯ । "ହେ ବରଦ, ମୁନିଶ୍ରେଷ୍ଠ ! ଆପଣ ମୋର ଭ୍ରାତା ଓ ଭାର୍ଯ୍ୟାଙ୍କ ସହିତ ମୋପ୍ରତି ପରିତୁଷ୍ଟ ହୋଇଅଛନ୍ତି, ଏଥିରେ ମୁଁ ଧନ୍ୟ ଓ ଅନୁଗୃହୀତ ହୋଇଅଛି । ୧୦ । କିନ୍ତୁ ଆପଣ ମୋତେ ଏପରି କୌଣସି ସ୍ଥାନ ନିର୍ଦ୍ଦେଶ କରିଦିଅନ୍ତୁ, ଯେଉଁଠାରେ ବହୁ ବନ ରହିଥିବ, ଯଥେଷ୍ଟ ଜଳଥିବ ଏବଂ ମୁଁ ସେଠାରେ ଆଶ୍ରମ ନିର୍ମାଣକରି ସ୍ୱଚ୍ଛନ୍ଦରେ ଓ ସୁଖରେ ବାସକରିପାରିବି" । ୧୧ । ରାମଙ୍କର ସେକଥା ଶୁଣି ଧର୍ମାତ୍ମା ଧୀର ମୁନିଶ୍ରେଷ୍ଠ ମୁହୂର୍ତ୍ତକାଳ ଧ୍ୟାନ କରି ଧୀରସ୍ୱରରେ କହିଲେ । ୧୨ । "ହେ ବତ୍ସ ! ଏହି ସ୍ଥାନରୁ ଦୁଇ ଯୋଜନ ଦୂରରେ ପଞ୍ଚବଟୀ ନାମରେ ବିଖ୍ୟାତ ଏକ ଅତିସୁନ୍ଦର ସ୍ଥାନ ଅଛି । ସେଠାରେ ଫଳ, ମୂଳ ଓ ଜଳ ଯଥେଷ୍ଟ ପରିମାଣରେ ରହିଛି ଏବଂ ବହୁସଂଖ୍ୟକ ମୃଗ ମଧ୍ୟ

ତତ୍ର ଗତ୍ୱାଶ୍ରମପଦଂ କୃତ୍ୱା ସୌମିତ୍ରିଣା ସହ ।
ରଂସ୍ୟସେ ତ୍ୱଂ ପିତୁର୍ବାକ୍ୟଂ ଯଥୋକ୍ତମନୁପାଳୟନ୍ । ୧୪ ।
କାଳୋଽୟଂ ଗତଭୂୟିଷ୍ଠୋ ଯଃ କାଳସ୍ତବ ରାଘବ ।
ସମୟୋ ଯୋ ନରେନ୍ଦ୍ରେଣ କୃତୋ ଦଶରଥେନ ତେ । ୧୫ ।
ତୀର୍ଣ୍ଣପ୍ରତିଜ୍ଞଃ କାକୁତ୍ସ୍ଥ ସୁଖଂ ରାଜ୍ୟେ ନିବତ୍ସ୍ୟସି ।
ଧନ୍ୟସ୍ତେ ଜନକୋ ରାମ ସ ରାଜା ରଘୁନନ୍ଦନ । ୧୬ ।
ଯସ୍ତ୍ୱୟା ଜ୍ୟେଷ୍ଠପୁତ୍ରେଣ ଯଯାତିରିବ ତାରିତଃ ।
ବିଦିତୋ ହ୍ୟେଷ ବୃତ୍ତାନ୍ତୋ ମମ ସର୍ବସ୍ତବାନଘ । ୧୭ ।
ତପସଶ୍ଚ ପ୍ରଭାବେଣ ସ୍ନେହାଦ୍ଦଶରଥସ୍ୟ ଚ ।
ହୃଦୟସ୍ଥଶ୍ଚ ତେ ଛନ୍ଦୋ ବିଜ୍ଞାତସ୍ତପସା ମୟା । ୧୮ ।
ଇହ ବାସଂ ପ୍ରତିଜ୍ଞାୟ ମୟା ସହ ତପୋବନେ ।
ଅତଶ୍ଚ ତ୍ୱାମହଂ ବ୍ରୂମି ଗଚ୍ଛ ପଞ୍ଚବଟୀମିତି । ୧୯ ।
ସ ହି ରମ୍ୟୋ ବନୋଦ୍ଦେଶୋ ମୈଥିଲୀ ତତ୍ର ରଂସ୍ୟତେ ।
ସ ଦେଶଃ ଶ୍ଲାଘନୀୟଶ୍ଚ ନାତିଦୂରେ ଚ ରାଘବ । ୨୦ ।

---

ଅଛନ୍ତି ।୧୩। ତୁମେ ଲକ୍ଷ୍ମଣଙ୍କ ସହିତ ସେଠାକୁ ଯାଇ ସେଠାରେ ଆଶ୍ରମ ନିର୍ମାଣକରି ପିତୃସତ୍ୟପାଳନପୂର୍ବକ ଆନନ୍ଦଲାଭ କରିପାରିବ । ୧୪ । ହେ ରାଘବ ! ରାଜା ଦଶରଥ ତୁମ୍ଭର ବନବାସ ପାଇଁ ଯେଉଁ ସମୟ ନିର୍ଦ୍ଦେଶ କରିଦେଇଅଛନ୍ତି, ସେଥିରୁ ଅଧିକାଂଶ ସମୟ ବିତିଗଲଣି ।୧୫। ହେ କାକୁତ୍ସ୍ଥ ! ତୁମେ ପ୍ରତିଜ୍ଞା ପରିପାଳନ କରିସାରି ସୁଖରେ ଯାଇ ରାଜ୍ୟରେ ବାସକରିବ । ତୁମପରି ଜ୍ୟେଷ୍ଠ ପୁତ୍ରଙ୍କ ଦ୍ୱାରା ଯେଉଁ ଦଶରଥ ରାଜା ନିଜ ପ୍ରତିଜ୍ଞାରୁ ଯଯାତିଙ୍କ ପରି ତାରିତ ହୋଇଅଛନ୍ତି; ସେ ବାସ୍ତବିକ ଧନ୍ୟ । ହେ ନିଷ୍ପାପ ! ମୁଁ ନିଜର ତପଃପ୍ରଭାବରେ ଏବଂ ଦଶରଥଙ୍କ ପ୍ରତି ସ୍ନେହହେତୁରୁ ଏ ସମସ୍ତ ବୃତ୍ତାନ୍ତ ସ୍ୱୟଂରୁ ଜାଣିଅଛି । ମୁଁ ତପୋବଳରେ ତୁମ ମନମଧ୍ୟରେ ଥିବା ଅଭିଳାଷକୁ ମଧ୍ୟ ଜାଣିପାରୁଛି ଯେ ତୁମେ ମୋ ନିକଟରେ ଏହି ତପୋବନରେ ବାସକରିବ ବୋଲି ପ୍ରତିଜ୍ଞା କରିଛ । ସୁତରାଂ ମୁଁ ତୁମକୁ କହୁଛି, ତୁମେ ପଞ୍ଚବଟୀକୁ ଯାଅ ।୧୬-୧୯। ହେ ରାଘବ ! ସେହି ବନପ୍ରଦେଶ ଅତିଶୟ ରମଣୀୟ ଏବଂ ମୈଥିଳୀ ସେଠାରେ ଆନନ୍ଦ ଲାଭକରିବେ । ସେ ସ୍ଥାନ ପ୍ରଶଂସନୀୟ ଏବଂ ଏଠାରୁ ଅଳ୍ପଦୂରରେ ଅବସ୍ଥିତ । ୨୦ । ସେ ସ୍ଥାନ ଗୋଦାବରୀ ନଦୀର ନିକଟବର୍ତ୍ତୀ । ସୀତା ସେଠାରେ

ଗୋଦାବର୍ଯ୍ୟାଃ ସମୀପେ ଚ ମୈଥିଲୀ ତତ୍ର ରଂସ୍ୟତେ ।
ପ୍ରାଜ୍ୟମୂଲଫଲଶ୍ଚୈବ ନାନାଦ୍ୱିଜଗଣାଯୁତଃ । ୨୧ ।
ବିବିକ୍ତଶ୍ଚ ମହାବାହୋ ପୁଣ୍ୟୋ ରମ୍ୟସ୍ତଥୈବ ଚ ।
ଭବାନପି ସଦାରଶ୍ଚ ଶକ୍ତଶ୍ଚ ପରିରକ୍ଷଣେ । ୨୨ ।
ଅପି ଚାତ୍ର ବସନ୍ ରାମ ତାପସାନ୍ ପାଲୟିଷ୍ୟସି ।
ଏତଦାଲକ୍ଷ୍ୟତେ ବୀର ମଧୂକାନାଂ ମହଦ୍ ବନମ୍ । ୨୩ ।
ଉତ୍ତରେଣାସ୍ୟ ଗନ୍ତବ୍ୟଂ ନ୍ୟଗ୍ରୋଧମଭିଗଚ୍ଛତା ।
ତତଃ ସ୍ଥଲମୁପାରୁହ୍ୟ ପର୍ବତସ୍ୟାବିଦୂରତଃ । ୨୪ ।
ଖ୍ୟାତଃ ପଞ୍ଚବଟୀତ୍ୟେବ ନିତ୍ୟପୁଷ୍ପିତକାନନଃ ।
ଅଗସ୍ତ୍ୟେନୈବମୁକ୍ତସ୍ତୁ ରାମଃ ସୌମିତ୍ରିଣା ସହ । ୨୫ ।
ସତ୍କୃତ୍ୟାମନ୍ତ୍ରୟାମାସ ତମୃଷିଂ ସତ୍ୟବାଦିନମ୍ ।
ତୌ ତୁ ତେନାଭ୍ୟନୁଜ୍ଞାତୌ କୃତପାଦାଭିବନ୍ଦନୌ । ୨୬ ।
ତଦାଶ୍ରମାତ୍ ପଞ୍ଚବଟୀଂ ଜଗ୍ମତୁଃ ସହ ସୀତୟା । ୨୭ ।

---

ପ୍ରୀତିଲାଭ କରିବେ । ସେ ସ୍ଥାନରେ ପ୍ରଚୁର ଫଳ ମୂଳ ରହିଛି ଓ ନାନାଜାତୀୟ ପକ୍ଷୀ ସେଠାରେ ଅଛନ୍ତି । ୨୧ । ହେ ମହାବାହୋ ! ସେ ସ୍ଥାନ ନିର୍ଜ୍ଜନ ପବିତ୍ର ଏବଂ ରମଣୀୟ ଅଟେ । ତୁମେ ସପତ୍ନୀକ ହୋଇ ରହିଛ ଏବଂ ତାହାକୁ ରକ୍ଷା କରିବାକୁ ସକ୍ଷମ ଅଟ । ୨୨ । ହେ ରାମ ! ତୁମେ ସେଠାରେ ବାସକରି ତପସ୍ୱୀମାନଙ୍କୁ ମଧ୍ୟ ପରିପାଳନ କରିପାରିବ । ହେ ବୀର ! ଏହି ଯେଉଁ ଅଶୋକ ବୃକ୍ଷର ମହାବନ ଦେଖାଯାଉଅଛି, ତୁମେ ତାହାର ଉତ୍ତର ଦିଗଦେଇ ଓ ବଟବୃକ୍ଷକୁ ଲକ୍ଷ୍ୟ କରି ଗମନ କରିବ । ଅନନ୍ତର ପର୍ବତର ଖଣ୍ଡେଦୂରରେ ଗୋଟିଏ ସମତଳ ସ୍ଥାନରେ ଚଢ଼ିଯିବ ।୨୩-୨୪। ସେହି ସ୍ଥାନ ପଞ୍ଚବଟୀ ନାମରେ ବିଖ୍ୟାତ । ସେଠାର ବନ ସର୍ବଦା ପୁଷ୍ପିତ ହୋଇଥାଏ ।" ଅଗସ୍ତ୍ୟ ଏହିପରି କହିବାରୁ ରାମ ଲକ୍ଷ୍ମଣଙ୍କ ସହିତ ସେହି ସତ୍ୟବାଦୀ ମୁନିଙ୍କୁ ସମ୍ବର୍ଦ୍ଧନାକରି ତାଙ୍କଠାରୁ ବିଦାୟ ମାଗିଲେ । ଋଷିଙ୍କଠାରୁ ଅନୁଜ୍ଞା ଲାଭ-କରି ସେ ଦୁହେଁ ତାଙ୍କର ପାଦବନ୍ଦନା କରି ସୀତାଙ୍କ ସହିତ ସେ ଆଶ୍ରମରୁ

ଗୃହୀତଚାପୌ ତୁ ନରାଧିପାତ୍ମଜୌ
ବିଷକ୍ତତୂଣୀ ସମରେଷ୍ୱକାତରୌ ।
ଯଥୋପଦିଷ୍ଟେନ ପଥା ମହର୍ଷିଣା
ପ୍ରଜଗ୍ମତୁଃ ପଞ୍ଚବଟୀଂ ସମାହିତୌ । ୨୮ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ପଞ୍ଚବଟୀଗମନମ୍
ନାମ ତ୍ରୟୋଦଶଃ ସର୍ଗଃ

— — — —

ପଞ୍ଚବଟୀକୁ ଗଲେ ! ୨୫-୨୭ । ସେହିପରେ ଅନନ୍ତର ସେ ଦୁଇ ନୃପକୁମାର ଧନୁ ଧର ଓ ତୂଣୀର ବାନ୍ଧ ମହର୍ଷି ଯେଉଁ ବାଟ ବତାଇଦେଲେ ସେହି ବାଟରେ ସାବଧାନତା ସହକାରେ ପଞ୍ଚବଟୀ ଅଭିମୁଖରେ ଯାତ୍ରାକଲେ । ୨୮ ।

— — — —

# ଚତୁର୍ଦ୍ଦଶଃ ସର୍ଗଃ

## ଜଟାୟୁଃସଂଗମଃ

ଅଥ ପଞ୍ଚବଟୀଂ ଗଚ୍ଛନ୍ନନ୍ତରା ରଘୁନନ୍ଦନଃ ।
ଆସସାଦ ମହାକାୟଂ ଗୃଧ୍ରଂ ଭୀମପରାକ୍ରମମ୍ । ୧ ।
ତଂ ଦୃଷ୍ଟ୍ୱା ତୌ ମହାଭାଗୌ ବଟସ୍ଥଂ ରାମଲକ୍ଷ୍ମଣୌ ।
ମେନାତେ ରାକ୍ଷସଂ ପକ୍ଷିଂ ବ୍ରୁବାଣୌ କୋ ଭବାନିତି । ୨ ।
ସ ତୌ ମଧୁରୟା ବାଚା ସୌମ୍ୟୟା ପ୍ରୀଣୟନ୍ନିବ ।
ଉବାଚ ବତ୍ସ ମାଂ ବିଦ୍ଧି ବୟସ୍ୟଂ ପିତୁରାତ୍ମନଃ । ୩ ।
ସ ତଂ ପିତୃସଖଂ ବୁଦ୍ଧ୍ୱା ପୂଜୟାମାସ ରାଘବଃ ।
ସ ତସ୍ୟ କୁଳମବ୍ୟଗ୍ରମଥ ପପ୍ରଚ୍ଛ ନାମ ଚ ।୪ ।
ରାମସ୍ୟ ବଚନଂ ଶ୍ରୁତ୍ୱା ସର୍ବଭୂତ ସମ ଭବମ୍ ।
ଆଚ ଚକ୍ଷେ ଦ୍ୱିଜସ୍ତସ୍ମୈ କୁଳମାତ୍ମାନମେବ ଚ । ୫ ।
ପୂର୍ବକାଲେ ମହାବାହୋ ଯେ ପ୍ରଜାପତୟୋଽଭବନ୍ ।
ତାନ୍ ମେ ନଗଦତଃ ସର୍ବାନାଦିତଃ ଶୃଣୁ ରାଘବ । ୬ ।

---

## ୧୪ ସର୍ଗ

### ( ଜଟାୟୁସହିତ ମିଳନ )

ଅନନ୍ତର ରାମ ପଞ୍ଚବଟୀକୁ ଯାଉ ଯାଉ ପଥମଧ୍ୟରେ ଏକ ପ୍ରବଳ ପରାକ୍ରାନ୍ତ ମହାକାୟ ଗୃଧ୍ରପାଖରେ ପହଞ୍ଚିଗଲେ । ୧ । ମହାଭାଗ ରାମ ଓ ଲକ୍ଷ୍ମଣ ବଟବୃକ୍ଷରେ ବସିଥିବା ଏହି ପକ୍ଷୀକୁ ଦେଖି ତାକୁ ଗୋଟିଏ ରାକ୍ଷସ ବୋଲି ମନରେ ବିଚାରି ତାଙ୍କୁ ପଚାରିଲେ, "ଆପଣ କିଏ ?" । ୨ । ସେହି ଗୃଧ୍ର ସେ ଦୁହିଁଙ୍କୁ ମଧୁର ଓ ପ୍ରିୟବାକ୍ୟରେ ପ୍ରୀତ କରି କହିଲେ, "ହେ ବତ୍ସ! ମୋତେ ତୁମ ନିଜ ପିତାଙ୍କର ବୟସ୍ୟ ବୋଲି ଜାଣ" । ୩ । ରାମ ପିତୃସଖା ବୋଲି ଜାଣି ତାଙ୍କୁ ପୂଜାକଲେ ଏବଂ ଶାନ୍ତଭାବରେ ତାଙ୍କର ବଂଶ ଓ ନାମ ପଚାରିଲେ । ୪ । ରାମଙ୍କ କଥା ଶୁଣି ଗୃଧ୍ର ସବୁ ପ୍ରାଣୀଙ୍କ ଉତ୍ପତ୍ତି ବର୍ଣ୍ଣନାକରି ତାଙ୍କୁ ନିଜ କୁଳ ଏବଂ ନିଜର ପରିଚୟ ଦେଲେ ।୫। ସେ କହିଲେ, ହେ ମହାବାହୋ ରାଘବ ! ପୂର୍ବକାଳରେ ଯେଉଁମାନେ ପ୍ରଜାପତି ହୋଇଥିଲେ ମୁଁ ମୂଳରୁ ଆରମ୍ଭ କରି

କର୍ଦ୍ଦମଃ ପ୍ରଥମସ୍ତେଷାଂ ବିକ୍ରୀତସ୍ତଦନନ୍ତରଃ ।
ଶେଷଶ୍ଚ ସଂଶ୍ରୟଶ୍ଚୈବ ବହୁପୁତ୍ରଃ ପ୍ରତାପବାନ୍ । ୭ ।
ସ୍ଥାଣୁର୍ମରୀଚିରତ୍ରିଶ୍ଚ କ୍ରତୁଶ୍ଚୈବ ମହାବଳଃ ।
ପୁଲସ୍ତ୍ୟଶ୍ଚାଙ୍ଗିରାଶ୍ଚୈବ ପ୍ରଚେତାଃ ପୁଲହସ୍ତଥା । ୮ ।
ଦକ୍ଷୋ ବିବସ୍ୱାନପରୋଽରିଷ୍ଟନେମିଶ୍ଚ ରାଘବ ।
କଶ୍ୟପଶ୍ଚ ମହାତେଜାସ୍ତେଷାମାସୀଚ୍ଚ ପଶ୍ଚିମଃ । ୯ ।
ପ୍ରଜାପତେସ୍ତୁ ଦକ୍ଷସ୍ୟ ବଭୂବୁରିତି ବିଶ୍ରୁତମ୍ ।
ଷଷ୍ଟିର୍ଦୁହିତରୋ ରାମ ଯଶସ୍ୱିନ୍ୟୋ ମହାଯଶଃ । ୧୦ ।
କଶ୍ୟପଃ ପ୍ରତିଜଗ୍ରାହ ତାସାମଷ୍ଟୌ ସୁମଧ୍ୟମାଃ ।
ଅଦିତିଂ ଚ ଦିତିଂ ଚୈବ ଦନୁମପ୍ୟଥ କାଳକାମ୍ । ୧୧ ।
ତାମ୍ରାଂ କ୍ରୋଧବଶାଂ ଚୈବ ମନୁଂ ଚାପ୍ୟନଲାମପି ।
ତାସ୍ତୁ କନ୍ୟାସ୍ତତଃ ପ୍ରୀତଃ କଶ୍ୟପଃ ପୁନରବ୍ରବୀତ୍ । ୧୨ ।
ପୁତ୍ରାଂସ୍ତ୍ରୈଲୋକ୍ୟଭର୍ତ୍ତୄନ୍ ବୈ ଜନୟିଷ୍ୟଥ ମତ୍ସମାନ୍ ।
ଅଦିତିସ୍ତନ୍ମନା ରାମ ଦିତିଶ୍ଚ ଦନୁରେବ ଚ । ୧୩ ।
କାଳିକା ଚ ମହାବାହୋ ଶେଷାସ୍ତ୍ୱମନସୋଽଭବନ୍ ।
ଅଦିତ୍ୟାଂ ଜଜ୍ଞିରେ ଦେବାସ୍ତ୍ରୟସ୍ତ୍ରିଂଶଦରିନ୍ଦମ । ୧୪ ।

---

ସେ ସମସ୍ତଙ୍କର ନାମ କହୁଅଛି ତୁମେ ଶୁଣ । ୬ । କର୍ଦ୍ଦମ ସେମାନଙ୍କ ଭିତରେ ସର୍ବପ୍ରଥମ । ତାଙ୍କପରେ ବିକ୍ରୀତ, ଶେଷ,ପ୍ରତାପଶାଳୀ ବହୁପୁତ୍ର, ସଂଶ୍ରୟ, ସ୍ଥାଣୁ, ମରୀଚ, ଅତ୍ରି, ମହାବଳୀ କ୍ରତୁ, ପୁଲସ୍ତ୍ୟ, ଅଙ୍ଗିରା, ପ୍ରଚେତା, ପୁଲହ, ଦକ୍ଷ, ବିବସ୍ୱାନ୍ ଏବଂ ଅରିଷ୍ଟନେମି ଜାତ ହୋଇଥିଲେ । ମହାତେଜା କଶ୍ୟପ ସେମାନଙ୍କ ମଧ୍ୟରେ ଶେଷ ପ୍ରଜାପତି ଥିଲେ । ୭-୯ । ହେ ମହାଯଶା ରାମ ! ଦକ୍ଷପ୍ରଜାପତିଙ୍କର ଷାଠିଏଟି ଯଶସ୍ୱିନୀ କନ୍ୟା ଜନ୍ମ ହୋଇଥିଲେ ବୋଲି ଜଣା ଅଛି । ୧୦ । କଶ୍ୟପ ସେମାନଙ୍କ ମଧ୍ୟରୁ ଅଦିତି, ଦିତି, ଦନୁ, କାଳକା, ତାମ୍ରା, କ୍ରୋଧବଶା, ମନୁ ଓ ଅନଳା ଏହି ଆଠଟି ସୁନ୍ଦରମଧ୍ୟମା କନ୍ୟାଙ୍କର ପାଣିଗ୍ରହଣ କରିଥିଲେ । କଶ୍ୟପ ସେହି କନ୍ୟାମାନଙ୍କ ପ୍ରତି ସନ୍ତୁଷ୍ଟ ହୋଇ ସେମାନଙ୍କୁ କହିଲେ । ୧୧-୧୨ । "ତୁମେମାନେ ମୋ ସଦୃଶ ତ୍ରୈଲୋକ୍ୟପାଳକ ପୁତ୍ରମାନଙ୍କୁ ଜନ୍ମ କରିବ" । ହେ ରାମ ! ଅଦିତି, ଦିତି, ଦନୁ ଓ କାଳକା ଏମାନେ ସେ ବିଷୟରେ ଅଭିଳାଷିଣୀ ହେଲେ; ମାତ୍ର ଅନ୍ୟମାନେ ସେଥିରେ ମନ ଦେଲେ ନାହିଁ । ହେ ପରନ୍ତପ, ରାମ ! ଆଦିତ୍ୟଗଣ, ବସୁଗଣ, ରୁଦ୍ରଗଣ ଏବଂ ଅଶ୍ୱିନୀକୁମାରଦ୍ୱୟ ଏହି

ଆଦିତ୍ୟା ବସବୋ ରୁଦ୍ରା ହ୍ୟଶ୍ୱିନୌ ଚ ପରଂତପ ।
ଦିତିସ୍ତ୍ୱଜନୟତ୍‌ ପୁତ୍ରାନ୍‌ ଦୈତ୍ୟାଂସ୍ତାତ ଯଶସ୍ୱିନଃ । ୧୫ ।
ତେଷାମିୟଂ ବସୁମତୀ ପୁରାସୀତ୍‌ସବନାର୍ଣବା ।
ଦନୁସ୍ତ୍ୱଜନୟତ୍ପୁତ୍ରମଶ୍ୱଗ୍ରୀବମରିଂଦମ । ୧୬ ।
ନରକଂ କାଳକଂ ଚୈବ କାଳକାପି ବ୍ୟଜାୟତ ।
କ୍ରୌଞ୍ଚୀଂ ଭାସୀଂ ତଥାଶେୟନୀଂ ଧୃତରାଷ୍ଟ୍ରୀଂ ତଥା ଶୁକୀମ୍‌ ।୧୭
ତାମ୍ରାପି ସୁଷୁବେ କନ୍ୟାଃ ପଞ୍ଚୈତା ଲୋକବିଶ୍ରୁତାଃ ।
ଉଲୂକାଞ୍ଜନୟତ୍‌ କ୍ରୌଞ୍ଚୀ ଭାସୀ ଭାସାନ୍‌ ବ୍ୟଜାୟତ । ୧୮ ।
ଶେୟନୀ ଶେୟନାଶ୍ଚ ଗୃଧ୍ରାଂଶ୍ଚ ବ୍ୟଜାୟତ ସୁତେଜସଃ ।
ଧୃତରାଷ୍ଟ୍ରୀ ତୁ ହଂସାଂଶ୍ଚ କଲହଂସାଂଶ୍ଚ ସର୍ବଶଃ । ୧୯ ।
ଚକ୍ରବାକାଂଶ୍ଚ ଭଦ୍ରଂ ତେ ବିଜଜ୍ଞେ ସାପି ଭାମିନୀ ।
ଶୁକୀ ନତାଂ ବିଜଜ୍ଞେ ତୁ ନତାୟା ବିନତା ସୁତା ।୨୦।
ଦଶ କ୍ରୋଧବଶା ରାମ ବିଜଜ୍ଞେ ହ୍ୟାତ୍ମସଂଭବାଃ ।
ମୃଗୀଂ ଚ ମୃଗମନ୍ଦାଂ ଚ ହରିଂ ଭଦ୍ରମଦାମପି । ୨୧ ।
ମାତଙ୍ଗୀମପି ଶାର୍ଦ୍ଦୂଲୀଂ ଶ୍ୱେତାଂ ଚ ସୁରଭିଂ ତଥା ।
ସର୍ବଲକ୍ଷଣସଂପନ୍ନାଂ ସୁରସାଂ କଦ୍ରୁକାମପି ।୨୨।

---

ତେତିଶ ଦେବତା ଅଦିତିଙ୍କ ଗର୍ଭରେ ଜାତହେଲେ । ହେବତ୍ସ ! ଦିତି ଯଶସ୍ୱୀ ଦୈତ୍ୟମାନଙ୍କୁ ପୁତ୍ରରୂପେ ପ୍ରସବକଲେ । ୧୩-୧୫ । ପୂର୍ବେ ବନ ଏବଂ ସମୁଦ୍ରସମେତ ଏହି ବସୁନ୍ଧରା ସେହିମାନଙ୍କର ଥିଲା । ହେ ଅରିନ୍ଦମ ! ଦନୁ ଅଶ୍ୱଗ୍ରୀବ ନାମକ ପୁତ୍ର ପ୍ରସବ କଲେ । ୧୬ । କାଳକା ନରକ ଓ କାଳକ ନାମରେ ଦୁଇଟି ପୁତ୍ର ଜନ୍ମକଲେ । କ୍ରୌଞ୍ଚୀ, ଭାସୀ, ଶେୟନୀ, ଧୃତରାଷ୍ଟ୍ରୀ ଓ ଶୁକୀ ଏହି ଲୋକବିଖ୍ୟାତ ପାଞ୍ଚ କନ୍ୟାଙ୍କୁ ତାମ୍ରା ପ୍ରସବକଲେ । କ୍ରୌଞ୍ଚୀ ଉଲୂକମାନଙ୍କୁ ଏବଂ ଭାସୀ ଭାସମାନଙ୍କୁ ଜନ୍ମ ଦେଲେ । ୧୭-୧୮ । ଶେୟନୀ ପରମତେଜସ୍ୱୀ ଶେୟନ ଏବଂ ଗୃଧ୍ରମାନଙ୍କୁ ଜାତକଲେ । ସୌଭାଗ୍ୟବତୀ ଧୃତରାଷ୍ଟ୍ରୀ ହଂସ, କଲହଂସ ଓ ଚକ୍ରବାକମାନଙ୍କୁ ଜାତକଲେ । ଶୁକୀ ନତାଙ୍କୁ ଜନ୍ମକଲେ । ନତାଙ୍କର କନ୍ୟାହେଲେ ବିନତା । ୧୯-୨୦ । ମୃଗୀ, ମୃଗମନ୍ଦା, ହରି, ଭଦ୍ରମଦା, ମାତଙ୍ଗୀ, ଶାର୍ଦ୍ଦୂଲୀ, ଶ୍ୱେତା, ସର୍ବଲକ୍ଷଣସମ୍ପନ୍ନା ସୁରଭି, ସୁରସା ଓ କଦ୍ରୁକା ଏହି ଦଶ କନ୍ୟାଙ୍କୁ କ୍ରୋଧବଶା ପ୍ରସବ କଲେ । ୨୧-୨୨ । ହେ ନରଶ୍ରେଷ୍ଠ ! ମୃଗମାନେ ସମସ୍ତେ ମୃଗୀଙ୍କର

ଅପତ୍ୟଂ ତୁ ମୃଗାଃ ସର୍ବେ ମୃଗ୍ୟା ନରବରୋତ୍ତମ ।
ଋକ୍ଷାଶ୍ଚ ମୃଗମନ୍ଦାୟାଃ ସୃମରାଶ୍ଚମରାସ୍ତଥା । ୨୩ ।
ହର୍ଯ୍ୟାଶ୍ଚ ହରୟୋଽପତ୍ୟଂ ବାନରାଶ୍ଚ ତରସ୍ୱିନଃ ।
ତତସ୍ତ୍ୱିରାବତୀଂ ନାମ ଜଜ୍ଞେ ଭଦ୍ରମଦା ସୁତାମ୍ । ୨୪ ।
ତସ୍ୟାସ୍ତ୍ୱୈରାବତଃ ପୁତ୍ରୋ ଲୋକନାଥୋ ମହାଗଜଃ ।
ମାତଙ୍ଗାସ୍ତ୍ୱଥ ମାତଙ୍ଗ୍ୟା ଅପତ୍ୟଂ ମନୁଜର୍ଷଭ । ୨୫ ।
ଗୋଲାଙ୍ଗୂଲାଂଶ୍ଚ ଶାର୍ଦ୍ଦୂଲୀ ବ୍ୟାଘ୍ରାଂଶ୍ଚାଜନୟତ୍ ସୁତାନ୍ ।
ଦିଶାଗଜାଂଶ୍ଚ କାକୁତ୍ସ୍ଥ ଶ୍ୱେତାପ୍ୟଜନୟତ୍ସୁତାନ୍ । ୨୬ ।
ତତୋ ଦୁହିତରୌ ରାମ ସୁରଭିର୍ଦ୍ଦେ ବ୍ୟଜାୟତ ।
ରୋହିଣୀଂ ନାମ ଭଦ୍ରଂ ତେ ଗନ୍ଧର୍ବୀଂ ଚ ଯଶସ୍ୱିନୀମ୍ । ୨୭ ।
ରୋହିଣ୍ୟଜନୟଦ୍ଗା ବୋ ଗନ୍ଧର୍ବୀ ବାଜିନଃ ସୁତାନ୍ ।
ସୁରସାଜନୟନ୍ନାଗାନ୍ ରାମ କଦ୍ରୂସ୍ତୁ ପନ୍ନଗାନ୍ । ୨୮ ।
ମନୁର୍ମନୁଷ୍ୟାଞ୍ଜନୟଦ୍ରାମ ପୁତ୍ରାନ୍ ଯଶସ୍ୱିନଃ ।
ବ୍ରାହ୍ମଣାନ୍ କ୍ଷତ୍ରିୟାନ୍ ବୈଶ୍ୟାଂଶ୍ଚୁଦ୍ରାଂଶ୍ଚ ମନୁଜର୍ଷଭ । ୨୯ ।
ସର୍ବାନ୍ ପୁଣ୍ୟଫଲାନ୍ ବୃକ୍ଷାନନଲାପି ବ୍ୟଜାୟତ ।
ବିନତା ଚ ଶୁକୀ ପୌତ୍ରୀ କଦ୍ରୂଶ୍ଚ ସୁରସା ସ୍ୱସା । ୩୦ ।

---

ସନ୍ତାନ । ସୃମର, ଚମର ଏବଂ ଭଲ୍ଲୁକମାନେ ମୃଗମନ୍ଦାଙ୍କର ପୁତ୍ର । ୨୩ । ବେଗଶାଳୀ ବାନର ଏବଂ ହନୁମାନଗଣ ହରିଙ୍କର ସନ୍ତାନ । ଅନନ୍ତର ଭଦ୍ରମଦା ଇରାବତୀ ନାମକ କନ୍ୟାଙ୍କୁ ପ୍ରସବକଲେ । ୨୪ । ଲୋକପାଳକ ଐରାବତ ନାମକ ମହାଗଜ ତାଙ୍କର ପୁତ୍ର । ହେ ନରଶ୍ରେଷ୍ଠ ! ମାତଙ୍ଗମାନେ ମାତଙ୍ଗୀଙ୍କର ସନ୍ତାନ ଅଟନ୍ତି । ୨୫ । ଶାର୍ଦ୍ଦୂଲୀ ଗୋଲାଙ୍ଗୁଳ ଏବଂ ବ୍ୟାଘ୍ରମାନଙ୍କୁ ପୁତ୍ରରୂପେ ଜନ୍ମକଲେ । ହେ କାକୁତ୍ସ୍ଥ ! ଶ୍ୱେତା ଦିଗ୍‌ଗଜମାନଙ୍କୁ ପୁତ୍ରରୂପେ ପ୍ରସବକଲେ ।୨୬। ହେ ରାମ ! ଅନନ୍ତର ଯଶସ୍ୱିନୀ ଗନ୍ଧର୍ବୀ ଓ ରୋହିଣୀ ନାମକ ଦୁଇଟି କନ୍ୟାଙ୍କୁ ସୁରଭି ଜନ୍ମକଲେ । । ୨୭ । ରୋହିଣୀ ଗାଭୀମାନଙ୍କୁ ଜନ୍ମକଲେ ଏବଂ ଗନ୍ଧର୍ବୀ ଅଶ୍ୱମାନଙ୍କୁ ଜନ୍ମକଲେ । ହେ ରାମ ! ସୁରସା ନାଗମାନଙ୍କୁ ଓ କଦ୍ରୂ ସର୍ପମାନଙ୍କୁ ପ୍ରସବକଲେ । ୨୮ । ହେ ନରଶ୍ରେଷ୍ଠ ରାମ ! ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏହି ଯଶସ୍ୱୀ ମନୁଷ୍ୟମାନଙ୍କୁ ମନୁପୁତ୍ରରୂପେ ଜାତକଲେ । ଅନଳା ପବିତ୍ର ଫଳବାନ୍ ବୃକ୍ଷସକଳ ଜନ୍ମକଲେ । ବିନତା ଶୁକୀଙ୍କର ପୌତ୍ରୀ ଏବଂ କଦ୍ରୂ ସୁରସାଙ୍କର ଭଗିନୀ । ୩୦ ।

କଦ୍ରୂର୍ନାଗଂ ସହସ୍ରାସ୍ୟଂ ବିଜଜ୍ଞେ ଧରଣୀଧରମ୍ ।
ଦ୍ୱୌ ପୁତ୍ରୌ ବିନତାୟାସ୍ତୁ ଗରୁଡୋଽରୁଣ ଏବ ଚ । ୩୧ ।
ତସ୍ମାଜ୍ଜାତୋଽହମରୁଣାତ୍ସଂପାତିସ୍ତୁ ମମାଗ୍ରଜଃ ।
ଜଟାୟୁରିତି ମାଂ ବିଦ୍ଧି ଶ୍ୟେନୀପୁତ୍ରମରିଂଦମ । ୩୨ ।
ସୋଽହଂ ବାସସହାୟସ୍ତେ ଭବିଷ୍ୟାମି ଯଦୀଚ୍ଛସି ।
ଇଦଂ ଦୁର୍ଗଂ ହି କାନ୍ତାରଂ ମୃଗରାକ୍ଷସସେବିତମ୍ । ୩୩ ।
ସୀତାଂ ଚ ତାତ ରକ୍ଷିଷ୍ୟେ ତ୍ୱୟି ଯାତେ ସଲକ୍ଷ୍ମଣେ । ୩୪ ।
ଜଟାୟୁଷଂ ତଂ ପ୍ରତିପୂଜ୍ୟ ରାଘବୋ
ମୁଦା ପରିଷ୍ୱଜ୍ୟ ଚ ସଂନତୋଽଭବତ୍ ।
ପିତୁର୍ହି ଶୁଶ୍ରାବ ସଖିତ୍ୱମାତ୍ମବା-
ଞ୍ଜଟାୟୁଷୋ ସଂକଥିତଂ ପୁନଃପୁନଃ । ୩୫ ।
ସ ତତ୍ର ସୀତାଂ ପରିଦାୟ ମୈଥିଲୀମ୍
ସହୈବ ତେନାତିବଲେନ ପକ୍ଷିଣା ।

---

କଦ୍ରୁ ପୃଥ୍ୱୀବହନକାରୀ ସହସ୍ରମୁଖବିଶିଷ୍ଟ ନାଗଙ୍କୁ ପ୍ରସବକଲେ । ଗରୁଡ଼ ଏବଂ ଅରୁଣ ବିନତାଙ୍କର ଦୁଇଟି ପୁତ୍ର । ୩୧ । ସେହି ଅରୁଣଙ୍କଠାରୁ ମୁଁ ଜନ୍ମହୋଇଛି ଏବଂ ସମ୍ପାତି ମୋର ବଡ଼ ଭାଇ ଅଟନ୍ତି । ହେ ଅରିନ୍ଦମ ! ମୋତେ ଶ୍ୟେନୀଙ୍କର ପୁତ୍ର ଜଟାୟୁ ବୋଲି ଜାଣ । ୩୨ । ତୁମେ ଯଦି ଇଚ୍ଛାକର ମୁଁ ତୁମ୍ଭର ବନବାସର ସହାୟ ହେବି । ଏହି ମୃଗ ଓ ରାକ୍ଷସସେବିତ କାନ୍ତାର ଦେଶ ଅତିଦୁର୍ଗମ ଅଟେ । ହେ ବତ୍ସ ! ତୁମେ ଲକ୍ଷ୍ମଣଙ୍କ ସହିତ ଅନ୍ୟ କେଉଁଆଡ଼େ ଯିବାବେଳେ ମୁଁ ସୀତାଙ୍କୁ ରକ୍ଷା କରିବି । ୩୩-୩୪ । ରାମ ଆନନ୍ଦସହକାରେ ଜଟାୟୁଙ୍କୁ ସମ୍ବର୍ଦ୍ଧନା ଏବଂ ଆଲିଙ୍ଗନକରି ମସ୍ତକ ଅବନତକଲେ ଏବଂ ପିତାଙ୍କ ସହିତ ଯେ ତାଙ୍କର ସୌହାର୍ଦ୍ଦ୍ୟ ଥିଲା, ତାହା ତାଙ୍କ ମୁହଁରୁ ପୁନଃପୁନଃ ଶୁଣିବାକୁ ଲାଗିଲେ । ୩୫ । ପରେ ସେହି ବଳବାନ୍ ବିହଙ୍ଗମ ଜଟାୟୁଙ୍କ ପାଖରେ

**ଜଗାମ ତାଂ ପଞ୍ଚବଟୀଂ ସଲକ୍ଷ୍ମଣୋ**
**ରିପୂନ୍ ଦିଧକ୍ଷୁଃଶଲଭାନିବାନଲଃ ।୩୭।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ ଅରଣ୍ୟକାଣ୍ଡେ ଜଟାୟୁଃସଂଗମୋ
ନାମ ଚତୁର୍ଦ୍ଦଶଃ ସର୍ଗଃ ।

---

ସେ ସୀତାଙ୍କୁ ସମର୍ପଣ କରି ତାଙ୍କ ସହିତ ଓ ଲକ୍ଷ୍ମଣଙ୍କ ସହିତ, ଅଗ୍ନି ପତଙ୍ଗମାନଙ୍କୁ ଦହନ କଲାପରି ଶତ୍ରୁମାନଙ୍କୁ ଦହନ କରିବା ଅଭିଳାଷରେ ପଞ୍ଚବଟୀକୁ ଗମନ କଲେ ।୩୭।

# ପଞ୍ଚଦଶଃ ସର୍ଗଃ

## ପଞ୍ଚବଟୀପର୍ଣ୍ଣଶାଳା

ତତଃ ପଞ୍ଚବଟୀଂ ଗତ୍ୱା ନାନାବ୍ୟାଳମୃଗାୟୁତାମ୍ ।
ଉବାଚ ଭ୍ରାତରଂ ରାମଃ ସୌମିତ୍ରିଂ ଦୀପ୍ତତେଜସମ୍ ।୧।
ଆଗତାଃ ସ୍ମ ଯଥୋଦ୍ଦିଷ୍ଟଂ ଯଂ ଦେଶଂ ମୁନିରବ୍ରବୀତ୍ ।
ଅୟଂ ପଞ୍ଚବଟୀଦେଶଃ ସୌମ୍ୟ ପୁଷ୍ପିତପାଦପଃ । ୨ ।
ସର୍ବତଶ୍ଚାର୍ଯତାଂ ଦୃଷ୍ଟିଃ କାନନେ ନିପୁଣୋ ହ୍ୟସି ।
ଆଶ୍ରମଃ କତରସ୍ମିନ୍ନୋ ଦେଶେ ଭବତି ସଂମତଃ । ୩ ।
ରମତେ ଯତ୍ର ବୈଦେହୀ ତ୍ୱମହଂ ଚୈବ ଲକ୍ଷ୍ମଣ ।
ତାଦୃଶୋ ଦୃଶ୍ୟତାଂ ଦେଶଃ ସଂନିକୃଷ୍ଟଜଳାଶୟଃ ।୪ ।
ବନରାମଣ୍ୟକଂ ଯତ୍ର ଜଳରାମଣ୍ୟକଂ ତଥା ।
ସଂନିକୃଷ୍ଟଂ ଚ ଯତ୍ର ସ୍ୟାତ୍ସମିତ୍ପୁଷ୍ପକୁଶୋଦକମ୍ । ୫ ।
ଏବମୁକ୍ତସ୍ତୁ ରାମେଣ ଲକ୍ଷ୍ମଣଃ ସଂଯତାଞ୍ଜଳିଃ ।
ସୀତାସମକ୍ଷଂ କାକୁତ୍ସ୍ଥମିଦଂ ବଚନମବ୍ରବୀତ୍ । ୬ ।

---

## ୧୫ଶ ସର୍ଗ

### ( ପଞ୍ଚବଟୀରେ ପର୍ଣ୍ଣଶାଳାନିର୍ମାଣ )

ଅନନ୍ତର ରାମ ବହୁ ହିଂସ୍ର ସର୍ପ ଏବଂ ପଶୁସମାକୁଳ ପଞ୍ଚବଟୀକୁ ଗମନ କରି ଦୀପ୍ତତେଜା ଭାଇ ଲକ୍ଷ୍ମଣଙ୍କୁ କହିଲେ । ୧ । " ହେ ସୌମ୍ୟ ! ଅଗସ୍ତ୍ୟ ମହର୍ଷି ଯେଉଁ ସ୍ଥାନର କଥା କହିଥିଲେ ଆମେମାନେ ସେହି ଅଭୀଷ୍ଟ ସ୍ଥାନରେ ଆସି ପହଞ୍ଚିଥାଇଁ । ଏହାହିଁ ପୁଷ୍ପିତବୃକ୍ଷପୂର୍ଣ୍ଣ ସେହି ପଞ୍ଚବଟୀଦେଶ । ୨ । ତୁମେ ଅରଣ୍ୟ ବିଷୟରେ ନିପୁଣ ଅଛ । ସୁତରାଂ ଏହି ଅରଣ୍ୟର ଚତୁର୍ଦ୍ଦିଗରେ ଦୃଷ୍ଟି ସଂଚାଳନକରି ଦେଖ କେଉଁ ସ୍ଥାନରେ ଆମେମାନେ ମନୋମତ ଆଶ୍ରମ କରିବା । ୩ । ହେ ଲକ୍ଷ୍ମଣ ! ଯେଉଁ ସ୍ଥାନରେ ସୀତା, ତୁମେ ଏବଂ ମୁଁ ଆନନ୍ଦରେ ରହିପାରିବା, ନିକଟରେ ଜଳାଶୟ ଥିବା ସେହିପରି ଗୋଟିଏ ସ୍ଥାନ ଦେଖ । ୪ । ଯେଉଁ ସ୍ଥାନର ଜଳ ଓ ବନ ରମଣୀୟ ଏବଂ ଯାହା ନିକଟରେ ସମିଧ ପୁଷ୍ପ କୁଶ ଏବଂ ଜଳ ମିଳି ପାରିବ ତୁମେ ସେହିପରି ଗୋଟିଏ ସ୍ଥାନ ସ୍ଥିରକର" ।୫। ରାମ ଏହିପରି କହିଲାଉତ୍ତାରୁ

ପରବାନାସ୍ମି କାକୁତ୍ସ୍ଥ ତ୍ୱୟି ବର୍ଷଶତଂ ସ୍ଥିତେ ।
ସ୍ୱୟଂ ତୁ ରୁଚିରେ ଦେଶେ କ୍ରିୟତାମିତି ମାଂ ବଦ । ୭ ।
ସୁପ୍ରୀତସ୍ତେନ ବାକ୍ୟେନ ଲକ୍ଷ୍ମଣସ୍ୟ ମହାତ୍ମନଃ ।
ବିମୃଶନ୍ ରୋଚୟାମାସ ଦେଶଂ ସର୍ବଗୁଣାନ୍ୱିତମ୍ । ୮ ।
ସ ତଂ ରୁଚିରମାକ୍ରମ୍ୟ ଦେଶମାଶ୍ରମକର୍ମଣି ।
ହସ୍ତେ ଗୃହୀତ୍ୱା ହସ୍ତେନ ରାମଃ ସୌମିତ୍ରିମବ୍ରବୀତ୍ । ୯ ।
ଅୟଂ ଦେଶଃ ସମଃ ଶ୍ରୀମାନ୍ ପୁଷ୍ପିତୈସ୍ତରୁଭିର୍ବୃତଃ ।
ଇହାଶ୍ରମପଦଂ ସୌମ୍ୟ ଯଥାବତ୍ କର୍ତୁମର୍ହସି ।୧୦ ।
ଇୟମାଦିତ୍ୟସଂକାଶୈଃ ପଦ୍ମୈଃ ସୁରଭିଗନ୍ଧିଭିଃ ।
ଅଦୂରେ ଦୃଶ୍ୟତେ ରମ୍ୟା ପଦ୍ମିନୀ ପଦ୍ମଶୋଭିତା । ୧୧ ।
ଯଥାଖ୍ୟାତମଗସ୍ତ୍ୟେନ ମୁନିନା ଭାବିତାତ୍ମନା ।
ଇୟଂ ଗୋଦାବରୀ ରମ୍ୟା ପୁଷ୍ପିତୈସ୍ତରୁଭିର୍ବୃତା । ୧୨ ।
ହଂସକାରଣ୍ଡବାକୀର୍ଣ୍ଣା ଚକ୍ରବାକୋପଶୋଭିତାଃ ।
ନାତିଦୂରେ ନ ଚାସନ୍ନେ ମୃଗଯୂଥନିପୀଡ଼ିତା । ୧୩ ।

---

ଲକ୍ଷ୍ମଣ କୃତାଞ୍ଜଳି ହୋଇ ସୀତାଙ୍କ ସମକ୍ଷରେ ତାଙ୍କୁ କହିଲେ ।୬ । "ହେ କାକୁତ୍ସ୍ଥ ! ତୁମେ ବିଦ୍ୟମାନ ଥିବାବେଳେ ମୁଁ ଶହେ ବର୍ଷଯାଏ ମଧ୍ୟ ପରାଧୀନ ଅଟେ । ସୁତରାଂ ତୁମେ ନିଜେ ରମଣୀୟ ସ୍ଥାନ ବାଛି ସେହିଠାରେ ଆଶ୍ରମ କରିବାକୁ ମୋତେ କହ" । ୭ । ମହାତ୍ମା ଲକ୍ଷ୍ମଣଙ୍କର ସେହି କଥାରେ ରାମ ବିଶେଷ ପ୍ରୀତ ହୋଇ ଭାବି ଚିନ୍ତି ସର୍ବଗୁଣାନ୍ୱିତ ଗୋଟିଏ ସ୍ଥାନ ପସନ୍ଦକଲେ । ୮ । ରାମ ଆଶ୍ରମ ସ୍ଥାପନନିମନ୍ତେ ସେହି ମନୋହର ସ୍ଥାନକୁ ଗଲେ ଓ ସ୍ୱହସ୍ତରେ ଲକ୍ଷ୍ମଣଙ୍କ ହସ୍ତଧରି କହିଲେ । ୯ । "ହେ ସୌମ୍ୟ ! ଏହିସ୍ଥାନ ସମତଳ, ସୁନ୍ଦର ଏବଂ ପୁଷ୍ପିତ ବୃକ୍ଷସମୂହରେ ପରିପୂର୍ଣ୍ଣ; ସୁତରାଂ ଏହି ସ୍ଥାନରେ ଯଥାବିଧାନରେ ଆଶ୍ରମ ନିର୍ମାଣକର । ୧୦ । ହେଇଟି ଅଳ୍ପ ଦୂରରେ ସୂର୍ଯ୍ୟସଦୃଶ ଉଜ୍ଜ୍ୱଳ ଓ ସୁନ୍ଦର ଗନ୍ଧବିଶିଷ୍ଟ ପଦ୍ମସମୂହଦ୍ୱାରା ଏହି ପୁଷ୍କରିଣୀ ଶୋଭାପାଉଅଛି । ୧୧ । ହେଇ ଦେଖ,ଶୁଦ୍ଧଚେତା ଅଗସ୍ତ୍ୟ ମହର୍ଷି ଯେପରି କହିଥିଲେ, ପୁଷ୍ପିତବୃକ୍ଷପରିବୃତ ରମଣୀୟ ଗୋଦାବରୀ ନଦୀ ସେହିପରି ଦେଖାଯାଉଛି । ୧୨ । ଏହା ହଂସ ଶ୍ରେଣୀ କାରଣ୍ଡବଶ୍ରେଣୀରେ ପରିପୂର୍ଣ୍ଣ ଏବଂ ଚକ୍ରବାକ ପକ୍ଷୀମାନଙ୍କଦ୍ୱାରା ଶୋଭିତ ହୋଇଅଛି । ମୃଗମାନେ ଦଳ ଦଳ ହୋଇ ଏହାର ଖୁବ ନିକଟରେ ନୁହେଁ, ଅଥଚ ଖୁବ ଦୂରରେ ନୁହେଁ, ବିଚରଣ କରୁଅଛନ୍ତି । ୧୩ ।

ମୟୂରନାଦିତା ରମ୍ୟାଃ ପ୍ରାଂଶବୋ ବହୁକନ୍ଦରାଃ ।
ଦୃଶ୍ୟନ୍ତେ ଗିରୟଃ ସୌମ୍ୟ ଫୁଲ୍ଲୈସ୍ତରୁଭିରାବୃତାଃ । ୧୪ ।
ସୌବର୍ଣ୍ଣେ ରାଜତୈ ସ୍ତାମ୍ରୈର୍ଦେଶେ ଦେଶେ ଚ ଧାତୁଭିଃ ।
ଗବାକ୍ଷିତା ଇବାଭାନ୍ତି ଗଜାଃ ପରମଭକ୍ତିଭିଃ । ୧୫ ।
ସାଲୈସ୍ତାଲୈସ୍ତମାଲୈଶ୍ଚ ଖର୍ଜ୍ଜୂରପନସାମ୍ରକୈଃ ।
ନୀବାରୈସ୍ତିନଶୈଶ୍ଚୈବ ପୁନ୍ନାଗୈଶ୍ଚୋପଶୋଭିତାଃ । ୧୬ ।
ଚୂତୈରଶୋକୈସ୍ତିଲକୈଶ୍ଚମ୍ପକୈଃ କେତକୈରପି ।
ପୁଷ୍ପଗୁଲ୍ମଲତୋପେତୈ ସ୍ତୈସ୍ତୈସ୍ତରୁଭିରାବୃତାଃ । ୧୭ ।
ଚନ୍ଦନୈଃ ସ୍ୟନ୍ଦନୈର୍ନୀପୈଃ ପନସୈର୍ଲକୁଚୈରପି ।
ଧବାଶ୍ୱକର୍ଣ୍ଣଖଦିରୈଃ ଶମୀକିଂଶୁକପାଟଲୈଃ । ୧୮ ।
ଇଦଂ ପୁଣ୍ୟମିଦଂ ମେଧ୍ୟମିଦଂ ବହୁମୃଗଦ୍ୱିଜମ୍ ।
ଇହ ବତ୍ସ୍ୟାମ ସୌମିତ୍ରେ ସାର୍ଦ୍ଧମେତେନ ପକ୍ଷିଣା । ୧୯ ।
ଏବମୁକ୍ତସ୍ତୁ ରାମେଣ ଲକ୍ଷ୍ମଣଃ ପରବୀରହା ।
ଅଚିରେଣାଶ୍ରମଂ ଭ୍ରାତୁଶ୍ଚକାର ସୁମହାବଲଃ । ୨୦ ।
ପର୍ଣ୍ଣଶାଳାଂ ସୁବିପୁଲାଂ ତତ୍ର ସଂଘାତମୃତ୍ତିକାମ୍ ।
ସୁସ୍ତମ୍ଭାଂ ମସ୍କରୈର୍ଦୀର୍ଘୈଃ କୃତବଂଶାଂ ସୁଶୋଭନାମ୍ । ୨୧ ।

---

ହେ ସୌମ୍ୟ ! ପ୍ରଫୁଲ୍ଲିତ ତରୁଗଣଶୋଭିତ, ମୟୂରନାଦିତ, ବହୁକନ୍ଦର ବିଶିଷ୍ଟ ରମଣୀୟ, ଅତ୍ୟୁନ୍ନତ ପର୍ବତସମୂହ ଦେଖାଯାଉଅଛନ୍ତି । ୧୪ । ଏହିସମସ୍ତ ପର୍ବତର ସ୍ଥାନେ ସ୍ଥାନେ ସୁବର୍ଣ୍ଣ, ରଜତ ଓ ତାମ୍ର ପ୍ରଭୃତି ଧାତୁ ରହିଥିବାରୁ ଉତ୍ତମରୂପେ ଅଲଙ୍କୃତ ହସ୍ତୀମାନଙ୍କପରି ଏମାନେ ଶୋଭାପାଉଅଛନ୍ତି । ୧୫ । ଏହି ପର୍ବତସମୂହ ଶାଳୀ, ତାଳ, ତମାଳ, ଖର୍ଜ୍ଜୂର, ପନସ, ନୀବାର, ତିନିଶ, ପୁନ୍ନାଗ, ଆମ୍ର, ତିଳକ, କେତକ, ଚମ୍ପକ, ସ୍ୟନ୍ଦନ, ଚନ୍ଦନ, ନୀପ, ଲକୁଚ, ଧବ, ଅଶ୍ୱକର୍ଣ୍ଣ, ଖଦିର, ଶମୀ, କିଂଶୁକ, ପାଟଳ ଏବଂ ଅନ୍ୟାନ୍ୟ ନାନାବିଧ ଗୁଳ୍ମାଦିରପରିପୂର୍ଣ୍ଣ ଲତା-ସମନ୍ୱିତ, ପୁଷ୍ପିତବୃକ୍ଷରାଜିଦ୍ୱାରା ଆବୃତ ତଥା ଅଲଙ୍କୃତ ହୋଇ ରହିଅଛି । ୧୬-୧୮ । ହେ ସୌମିତ୍ରେ ! ଏହିସ୍ଥାନ ଅତିଶୟ ପବିତ୍ର, ମନୋହର ଏବଂ ନାନାବିଧ ମୃଗପକ୍ଷୀରେ ପରିପୂର୍ଣ୍ଣ । ଏହି ଜଟାୟୁପକ୍ଷୀଙ୍କ ସହିତ ଆମେମାନେ ଏହିସ୍ଥାନରେ ବାସ କରିବା” । ୧୯ । ମହାବଳୀ ଶତ୍ରୁସୂଦନ ଲକ୍ଷ୍ମଣ ଏହିପରି ରାମଙ୍କ ଦ୍ୱାରା ଆଦିଷ୍ଟ ହୋଇ ଅଳ୍ପ ସମୟ ମଧ୍ୟରେ ଭାଇଙ୍କ ପାଇଁ ଆଶ୍ରମ ନିର୍ମାଣ କଲେ । ୨୦ । ଏହି ପର୍ଣ୍ଣଶାଳା ଶମୀବୃକ୍ଷର ଶାଖାରାଜିରେ ଆଚ୍ଛାଦିତ, ଦୃଢ଼ ବନ୍ଧନରେ ବଦ୍ଧ ଏବଂ କୁଶ, କାଶ ଓ

ଶମୀଶାଖାଭିରାସ୍ତୀର୍ଣାଂ ଦୃଢ଼ପାଶାବପାଶିତାମ୍ ।
କୁଶକାଶଶରୈଃ ପର୍ଣୈଃ ସୁପରିଚ୍ଛାଦିତାଂ ତଥା । ୨୨ ।
ସମୀକୃତତଲାଂ ରମ୍ୟାଂ ଚକାର ଲଘୁବିକ୍ରମଃ ।
ନିବାସଂ ରାଘବସ୍ୟାର୍ଥେ ପ୍ରେକ୍ଷଣୀୟମନୁତ୍ତମମ୍ । ୨୩।
ସ ଗତ୍ୱା ଲକ୍ଷ୍ମଣଃ ଶ୍ରୀମାନ୍ ନଦୀଂ ଗୋଦାବରୀଂ ତଦା ।
ସ୍ନାତ୍ୱା ପଦ୍ମାନି ଚାଦାୟ ସଫଲଃ ପୁନରାଗତଃ । ୨୪ ।
ତତଃ ପୁଷ୍ପବଲିଂ କୃତ୍ୱା ଶାନ୍ତିଂ ଚ ସ ଯଥାବିଧି ।
ଦର୍ଶୟାମାସ ରାମାୟ ତଦାଶ୍ରମପଦଂ କୃତମ୍ । ୨୫ ।
ସ ତଂ ଦୃଷ୍ଟ୍ୱା କୃତଂ ସୌମ୍ୟମାଶ୍ରମଂ ସହ ସୀତୟା ।
ରାଘବଃ ପର୍ଣଶାଲାୟାଂ ହର୍ଷମାହାରୟଦ୍ଭୃଶଂ । ୨୬ ।
ସୁସଂହୃଷ୍ଟଃ ପରିଷ୍ୱଜ୍ୟ ବାହୁଭ୍ୟାଂ ଲକ୍ଷ୍ମଣଂ ତଦା ।
ଅତିସ୍ନିଗ୍ଧଂ ଚ ଗାଢ଼ଂ ଚ ବଚନଂ ଚେଦମବ୍ରବୀତ୍ । ୨୭ ।
ପ୍ରୀତୋଽସ୍ମି ତେ ମହତ୍କର୍ମ ତ୍ୱୟା କୃତମିଦଂ ପ୍ରଭୋ ।
ପ୍ରଦେୟୋ ଯନ୍ନିମିତ୍ତଂ ତେ ପରିଷ୍ୱଙ୍ଗୋ ମୟା କୃତଃ । ୨୮ ।

---

ଶରପତ୍ର ଦ୍ୱାରା ଉତ୍ତମରୂପେ ଆଚ୍ଛାଦିତ ହେଲା । ଏହା ଅତିଶୟ ବିସ୍ତୃତ ଓ ଶୋଭା-ବିଶିଷ୍ଟ ହେଲା ଏବଂ ମୃତ୍ତିକାଦ୍ୱାରା ଏହାର ଭିତ୍ତି ନିର୍ମିତ ହୋଇଥିଲା ଓ ଏହାର ସ୍ତମ୍ଭଗୁଡ଼ିକ ମଧ୍ୟ ସୁନ୍ଦର ହୋଇଥିଲା । ଲମ୍ବ ଲମ୍ବ ବାଉଁଶ ଏଥିରେ ରୁଅ ରୂପେ ବ୍ୟବହୃତ ହୋଇଥିଲା । କ୍ଷିପ୍ରଗତି ଲକ୍ଷ୍ମଣ ରାମଙ୍କ ନିମନ୍ତେ ଏହି ପ୍ରକାର ସୁନ୍ଦର ଦର୍ଶନୀୟ ନିବାସ ଗୃହ ନିର୍ମାଣ କଲେ । ୨୧-୨୩ । ଅନନ୍ତର ଶ୍ରୀମାନ୍ ଲକ୍ଷ୍ମଣ ଗୋଦାବରୀ ନଦୀକୁ ଯାଇ ସେଠାରେ ସ୍ନାନ କରି ଅନେକ ପଦ୍ମ ଓ ବିବିଧ ଫଳ ଘେନି ପ୍ରତ୍ୟାବର୍ତ୍ତନ କଲେ । ୨୪ । ଅନନ୍ତର ସେ ପୁଷ୍ପଦ୍ୱାରା ଦେବତାମାନଙ୍କୁ ପୂଜାକରି ଏବଂ ଯଥା-ବିଧାନରେ ଶାନ୍ତିହୋମ କରିସାରି ରାମଙ୍କୁ ସେହି ସୁନିର୍ମିତ ଆଶ୍ରମ ଦେଖାଇଲେ । ୨୫ । ରାଘବ ସୀତାଙ୍କ ସହିତ ଲକ୍ଷ୍ମଣଙ୍କଦ୍ୱାରା ନିର୍ମିତ ସେହି ସୁନ୍ଦର ଆଶ୍ରମ ଦେଖି ଏବଂ ସେହି ପର୍ଣ୍ଣଶାଳାରେ ପ୍ରବେଶ କରି ଅତିଶୟ ଆନନ୍ଦିତ ହେଲେ ।୨୬। ସେ ଅତିଶୟ ପ୍ରୀତ ହୋଇ ବାହୁଦ୍ୱୟରେ ଲକ୍ଷ୍ମଣଙ୍କୁ ଅତିସ୍ନେହରେ ଗାଢ଼ ଆଲିଙ୍ଗନ କରି କହିଲେ ।୨୭। "ହେ ବତ୍ସ ! ତୁମେ ଏହି ମହତ୍ କାର୍ଯ୍ୟ ସମ୍ପନ୍ନ କରିଥିବାରୁ ମୁଁ ତୁମଠାରେ ପରମପ୍ରୀତ ହୋଇ ତହିଁର ପ୍ରତିଦାନସ୍ୱରୂପ ତୁମକୁ ଆଲିଙ୍ଗନ କରୁଅଛି । ୨୮ ।

ଗ୍ରାବଜ୍ଞେନ କୃତଜ୍ଞେନ ଧର୍ମଜ୍ଞେନ ଚ ଲକ୍ଷ୍ମଣ ।
ତ୍ୱୟା ପୁତ୍ରେଣ ଧର୍ମାତ୍ମା ନ ସଂବୃତ୍ତଃ ପିତା ମମ । ୨୯ ।
ଏବଂ ଲକ୍ଷ୍ମଣମୁକ୍ତ୍ୱା ତୁ ରାଘବୋ ଲକ୍ଷ୍ମୀବର୍ଧନମ୍ ।
ତସ୍ମିନ୍ ଦେଶେ ବହୁଫଲେ ନ୍ୟବସତ୍ସ୍ୱସୁଖଂ ବଶୀ । ୩୦ ।
କଂଚିତ୍ କାଲଂ ସ ଧର୍ମାତ୍ମା ସୀତୟା ଲକ୍ଷ୍ମଣେନ ଚ ।
ଅନ୍ୱାସ୍ୟମାନୋ ନ୍ୟବସତ୍ସ୍ୱର୍ଗଲୋକେ ଯଥାମରଃ । ୩୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ପଞ୍ଚବଟୀପର୍ଣ୍ଣଶାଳା
ନାମ ପଞ୍ଚଦଶଃ ସର୍ଗଃ

———

ହେ ଲକ୍ଷ୍ମଣ ତୁମପରି ଗ୍ରାବଜ୍ଞ, ଧର୍ମଜ୍ଞ ଓ କୃତଜ୍ଞ ପୁତ୍ର ଲାଭକରି ମୋର ଧର୍ମାତ୍ମା ପିତାଙ୍କର କଦାପି ମୃତ୍ୟୁ ହୋଇ ନ ପାରେ" । ୨୯। ସଂଯମୀ ରାମଚନ୍ଦ୍ର ଲକ୍ଷ୍ମୀବର୍ଦ୍ଧନକାରୀ ଲକ୍ଷ୍ମଣଙ୍କୁ ଏହିପରି କହି ବହୁ ଫଳପୂର୍ଣ୍ଣ ସେହିସ୍ଥାନରେ ଅତିସୁଖରେ ବାସକଲେ । ୩୦ । ଧର୍ମାତ୍ମା ରାମ ସୀତା ଓ ଲକ୍ଷ୍ମଣଙ୍କ ଦ୍ୱାରା ସେବିତ ହୋଇ ସ୍ୱର୍ଗଲୋକରେ ଦେବତା ବାସ କଲା ପରି ସେଠାରେ କିଛିକାଳ ବାସକଲେ । ୩୧ ।

———

# ଷୋଡ଼ଶଃ ସର୍ଗଃ

## ହେମନ୍ତବର୍ଣ୍ଣନମ୍

ବସତସ୍ତସ୍ୟ ତୁ ସୁଖଂ ରାଘବସ୍ୟ ମହାତ୍ମନଃ ।
ଶରଦ୍ବ୍ୟପାୟେ ହେମନ୍ତ ଋତୁରିଷ୍ଟଃ ପ୍ରବର୍ତ୍ତତେ । ୧ ।
ସ କଦାଚିତ୍ ପ୍ରଭାତାୟାଂ ଶର୍ବର୍ଯାଂ ରଘୁନନ୍ଦନଃ ।
ପ୍ରୟଯାବଭିଷେକାର୍ଥଂ ରମ୍ୟାଂ ଗୋଦାବରୀଂ ନଦୀମ୍ । ୨ ।
ପ୍ରହ୍ୱଃ କଲଶହସ୍ତସ୍ତଂ ସୀତୟା ସହ ବୀର୍ଯବାନ୍ ।
ପୃଷ୍ଠତୋଽନୁବ୍ରଜନ୍ ଭ୍ରାତା ସୌମିତ୍ରିରିଦମବ୍ରବୀତ୍ । ୩ ।
ଅୟଂ ସ କାଲଃ ସଂପ୍ରାପ୍ତଃ ପ୍ରିୟୋ ଯସ୍ତେ ପ୍ରିୟଂବଦ ।
ଅଲଂକୃତ ଇବାଭାତି ଯେନ ସଂବତ୍ସରଃ ଶୁଭଃ । ୪ ।
ନୀହାରପରୁଷୋ ଲୋକଃ ପୃଥିବୀ ଶସ୍ୟଶାଲିନୀ ।
ଜଲାନ୍ୟନୁପଭୋଗ୍ୟାନି ସୁଭଗୋ ହବ୍ୟବାହନଃ । ୫ ।
ନବାଗ୍ରୟଣପୂଜାଭିରଭ୍ୟର୍ଚ୍ୟ ପିତୃଦେବତାଃ ।
କୃତାଗ୍ରୟଣକାଃ କାଲେ ସନ୍ତୋ ବିଗତକଲ୍ମଷାଃ । ୬ ।

---

## ୧୬ଶ ସର୍ଗ

### ( ହେମନ୍ତଋତୁବର୍ଣ୍ଣନା )

ମହାତ୍ମା ରାମ ସେଠାରେ ସୁଖରେ ବାସକରୁଥିବା ସମୟରେ ଶରତ୍ ଋତୁ ଅତୀତ ହୋଇ ପ୍ରୀତିକର ହେମନ୍ତ ଋତୁ ଉପସ୍ଥିତ ହେଲା । ୧ । ଏକଦା ରାତ୍ର ପ୍ରଭାତହେବାରୁ ରଘୁନନ୍ଦନ ରାମ ସ୍ନାନନିମନ୍ତେ ରମଣୀୟ ଗୋଦାବରୀ ନଦୀକୁ ଗଲେ । ୨ । ବୀର୍ଯ୍ୟବାନ୍ ଭ୍ରାତା ସୌମିତ୍ରି ସୀତାଙ୍କ ସହିତ ହାତରେକଳଶ ଧରି ରାମଙ୍କ ପଛେ ପଛେ ଯାଉ ଯାଉ ତାଙ୍କୁ ବିନୀତଭାବରେ କହିଲେ । ୩ । "ହେ ପ୍ରିୟଂବଦ ! ଯେଉଁ ସମୟ ତୁମ୍ଭର ପ୍ରିୟ ଅଟେ, ସେହି ହେମନ୍ତକାଳ ବର୍ତ୍ତମାନ ଉପସ୍ଥିତ ହୋଇଅଛି । ଶୁଭ ସଂବତ୍ସର ଏହାଦ୍ୱାରା ଅଳଂକୃତ ହୋଇ ଶୋଭାପାଉଛି । ୪ । ଶିଶିରସମାଗମହେତୁ ଲୋକମାନେ କର୍କଶସ୍ୱଭାବ ଧାରଣ କରିଛନ୍ତି ଏବଂ ପୃଥିବୀ ଶସ୍ୟପୂର୍ଣ୍ଣା ହୋଇଅଛି । ବର୍ତ୍ତମାନ ଜଳ ସୁଖଭୋଗ୍ୟ ହେଉନାହିଁ କିନ୍ତୁ ଅଗ୍ନି ସୁଖସେବ୍ୟ ହୋଇଅଛି । ୫ । ଏହି ସମୟରେ ସାଧୁ ପୁରୁଷମାନେ ନବଶସ୍ୟଦ୍ୱାରା ଦେବ ଓ ପିତୃଗଣଙ୍କର ଅର୍ଚ୍ଚନାକରି ଏବଂ ନବଶସ୍ୟଯଜ୍ଞ ଯଥାସମୟରେ ସମ୍ପାଦନ କରି ପାପଶୂନ୍ୟ ହୋଇଅଛନ୍ତି । ୬ । ଏହି

ପ୍ରାଜ୍ୟକାମା ଜନପଦାଃ ସଂପନ୍ନତରଗୋରସାଃ ।
ବିଚରନ୍ତି ମହୀପାଲାଃ ଯାତ୍ରାସ୍ଥା ବିଜିଗୀଷବଃ । ୭ ।
ସେବମାନେ ଦୃଢ଼ଂ ସୂର୍ଯେ ଦିଶମନ୍ତକସେବିତାମ୍ ।
ବିହୀନତିଲକେବ ସ୍ତ୍ରୀ ନୋତ୍ତରା ଦିକ୍ ପ୍ରକାଶତେ । ୮ ।
ପ୍ରକୃତ୍ୟା ହିମକୋଷାଢ଼୍ୟା ଦୂରସୂର୍ଯଶ୍ଚ ସାମ୍ପ୍ରତମ୍ ।
ଯଥାର୍ଥନାମା ସୁବ୍ୟକ୍ତଂ ହିମବାନ୍ ହିମବାନ୍ ଗିରିଃ । ୯ ।
ଅତ୍ୟନ୍ତସୁଖସଂଚାରା ମଧ୍ୟାହ୍ନେ ସ୍ପର୍ଶତଃ ସୁଖାଃ ।
ଦିବସାଃ ସୁଭଗାଦିତ୍ୟାଶ୍ଛାୟାସଲିଲଦୁର୍ଭଗାଃ । ୧୦ ।
ମୃଦୁସୂର୍ଯାଃ ସନୀହାରାଃ ପଟୁଶୀତାଃ ସମାରୁତାଃ ।
ଶୂନ୍ୟାରଣ୍ୟା ହିମଧ୍ୱସ୍ତା ଦିବସା ଭାନ୍ତି ସାମ୍ପ୍ରତମ୍ । ୧୧ ।
ନିବୃତ୍ତାକାଶଶୟନାଃ ପୁଷ୍ୟନୀତା ହିମାରୁଣାଃ ।
ଶୀତା ବୃଦ୍ଧତରାୟାମାସ୍ତ୍ରିୟାମା ଯାନ୍ତି ସାମ୍ପ୍ରତମ୍ । ୧୨ ।

---

ସମୟରେ ଗ୍ରାମମାନଙ୍କରେ ପ୍ରଚୁରପରିମାଣରେ ଈପ୍ସିତ ଦ୍ରବ୍ୟମାନ ପୂର୍ଣ୍ଣ ରହିଛି ଏବଂ ଗୋରସ ଦ୍ରବ୍ୟମାନ ଅପେକ୍ଷାକୃତ ଅଧିକ ପରିମାଣରେ ମିଳୁଛି । ଏହିବେଳେ ଜୟଲିପ୍ସୁ ରାଜାମାନେ ବିଜୟଯାତ୍ରାରେ ବାହାରିଥାନ୍ତି । ୭ । ଯମଙ୍କ ଅଧିଷ୍ଠିତ ଦକ୍ଷିଣ ଦିଗକୁ ସୂର୍ଯ୍ୟ ଦୃଢ଼ଭାବରେ ଆଶ୍ରୟକରିଥିବାରୁ ଉତ୍ତର ଦିଗ ତିଳକହୀନା ନାରୀପରି ଆଉ ଶୋଭା ପାଉନାହିଁ ।୮। ହିମାଳୟ ସ୍ୱଭାବତଃ ହିମରୂପ ଧନରେ ସମୃଦ୍ଧିଶାଳୀ, ପୁଣି ସୂର୍ଯ୍ୟ ତାହାର ଦୂରବର୍ତ୍ତୀ ହୋଇଅଛନ୍ତି । ସୁତରାଂ ହିମାଳୟର 'ହିମବାନ୍'ନାମ ବର୍ତ୍ତମାନ ପ୍ରକୃତରେ ସୁସ୍ପଷ୍ଟ ହୋଇଛି ।୯। ଏ ସମୟରେ ଦିବସର ମଧ୍ୟାହ୍ନ ସମୟହିଁ ବିଚରଣନିମନ୍ତେ ସୁଖକର । ସୂର୍ଯ୍ୟକିରଣ ସ୍ପର୍ଶ ମଧ୍ୟ ସୁଖକର ଏବଂ ଛାୟା ଓ ଜଳ ଅତ୍ୟନ୍ତ ଅସେବ୍ୟହୋଇପଡ଼ିଛି । ବର୍ତ୍ତମାନ ସୂର୍ଯ୍ୟର ତେଜ କମିଯାଇଛି । ଶିଶିରପାତ ହେଉଥିବାରୁ ଏବଂ ପବନ ବହୁଥିବାରୁ ଶୀତ ବଢ଼ିଛି । ଅରଣ୍ୟସବୁ ଶୂନ୍ୟ ହୋଇଯାଇଛି ଏବଂ ଦିବସ ବର୍ତ୍ତମାନ ହିମଗ୍ରସ୍ତ ହୋଇ ପ୍ରକାଶିତ ହେଉଛି । । ୧୦ ।.୧୧ । ଏ ସମୟରେ ଲୋକେ ରାତିରେ ଅନାବୃତ ସ୍ଥାନରେ ଶୋଇବାରୁ ନିବୃତ୍ତ ହୋଇଛନ୍ତି । ପୁଷ୍ୟା ନକ୍ଷତ୍ରର ସଂଯୋଗହେତୁ ରାତ୍ରି ଶିଶିରପାତରେ ଧୂସରବର୍ଣ୍ଣ ଧାରଣ କରୁଛି ଏବଂ ଶୀତହେତୁ ପ୍ରହରମାନଙ୍କର ସମୟ ବୃଦ୍ଧି ହୋଇ ରାତ୍ରି ଅତିବାହିତ ହେଉଅଛି ।୧୨। ଚନ୍ଦ୍ରର ସୌଭାଗ୍ୟ ସୂର୍ଯ୍ୟଙ୍କ ପ୍ରତି ସଂକ୍ରମିତ

ରବିସଂକ୍ରାନ୍ତସୌଭାଗ୍ୟସ୍ତୁଷାରାବୃତମଣ୍ଡଳଃ ।
ନିଃଶ୍ୱାସାନ୍ଧ ଇବାଦର୍ଶଶ୍ଚନ୍ଦ୍ରମା ନ ପ୍ରକାଶତେ । ୧୩ ।
ଜ୍ୟୋତ୍ସ୍ନା ତୁଷାରମଳିନା ପୌର୍ଣମାସ୍ୟାଂ ନ ରାଜତେ ।
ସୀତେବ ଚାତପଶ୍ୟାମା ଲକ୍ଷ୍ୟତେ ନ ତୁ ଶୋଭତେ । ୧୪ ।
ପ୍ରକୃତ୍ୟା ଶୀତଳସ୍ପର୍ଶୋ ହିମବିଦ୍ଧଶ୍ଚ ସାମ୍ପ୍ରତମ୍ ।
ପ୍ରବାତି ପଶ୍ଚିମୋ ବାୟୁଃ କାଲେ ଦ୍ୱିଗୁଣଶୀତଳଃ । ୧୫ ।
ବାଷ୍ପଚ୍ଛନ୍ନାନ୍ୟରଣ୍ୟାନି ଯବଗୋଧୂମବନ୍ତି ଚ ।
ଶୋଭନ୍ତେଽଭ୍ୟୁଦିତେ ସୂର୍ଯ୍ୟେ ନଦଦ୍ଭିଃ କ୍ରୌଞ୍ଚସାରସୈଃ ।୧୬।
ଖର୍ଜୂରପୁଷ୍ପାକୃତିଭିଃ ଶିରୋଭିଃ ପୂର୍ଣତଣ୍ଡୁଲୈଃ ।
ଶୋଭନ୍ତେ କିଂଚଦାନମ୍ରାଃ ଶାଲୟଃ କନକପ୍ରଭାଃ । ୧୭ ।
ମୟୂଖୈରୁପସର୍ପଦ୍ଭିର୍ହିମନୀହାରସଂବୃତୈଃ ।
ଦୂରମଭ୍ୟୁଦିତଃ ସୂର୍ଯ୍ୟଃ ଶଶାଙ୍କ ଇବ ଲକ୍ଷ୍ୟତେ । ୧୮ ।
ଅଗ୍ରାହ୍ୟବୀର୍ଯ୍ୟଃ ପୂର୍ବାହ୍ଣେ ମଧ୍ୟାହ୍ନେ ସ୍ପର୍ଶତଃ ସୁଖଃ ।
ସଂରକ୍ତଃ କିଂଚଦାପାଣ୍ଡୁରାତପଃ ଶୋଭତେ କ୍ଷିତୌ । ୧୯ ।

---

ହୋଇଅଛି । ଚନ୍ଦ୍ରମଣ୍ଡଳ ତୁଷାରଦ୍ୱାରା ଆବୃତ ହେବାରୁ ନିଃଶ୍ୱାସର ବାଷ୍ପଦ୍ୱାରା ମଳିନ ହୋଇ ଯାଇଥିବା ଦର୍ପଣପରି ଚନ୍ଦ୍ର ଶୋଭା ପାଉନାହାନ୍ତି । ୧୩ । ପୂର୍ଣ୍ଣିମା ରାତିରେ ଚନ୍ଦ୍ରର ଜ୍ୟୋତ୍ସ୍ନା ତୁଷାରଦ୍ୱାରା ମଳିନ ହୋଇ ଶୋଭା ପାଉ ନାହିଁ । ସୂର୍ଯ୍ୟକିରଣହେତୁ ବିବର୍ଣ୍ଣ ହୋଇ ଯାଇଥିବା ସୀତାଦେବୀଙ୍କ ସଦୃଶ ତାହା କୌଣସି ମତେ ଦେଖାଯାଉଛି, କିନ୍ତୁ ଶୋଭା ପାଉ ନାହିଁ । ୧୪ । ସ୍ୱଭାବତଃ ଶୀତଳସ୍ପର୍ଶ ପଶ୍ଚିମବାୟୁ ବର୍ତ୍ତମାନ ହିମାଚ୍ଛନ୍ନ ହୋଇଯାଇଥିବାରୁ ଦୁଇଗୁଣ ଶୀତଳ ହୋଇ ପ୍ରବାହିତ ହେଉଅଛି ।୧୫। ଯବ ଏବଂ ଗୋଧୂମପୂର୍ଣ୍ଣ ଅରଣ୍ୟସମୂହ ବାଷ୍ପାଚ୍ଛନ୍ନ ହୋଇ ସୂର୍ଯ୍ୟ ଉଦିତ ହେଲାପରେ ଶବ୍ଦ କରୁଥିବା ସାରସ ଓ କ୍ରୌଞ୍ଚମାନଙ୍କଦ୍ୱାରା ସୁଶୋଭିତ ହେଉଅଛି । ୧୬ । ସୁବର୍ଣ୍ଣବର୍ଣ୍ଣ ଶସ୍ୟକେଣ୍ଡାସମୂହ ଖଜୁରି ଫୁଲପରି ତଣ୍ଡୁଳପୂର୍ଣ୍ଣ ମସ୍ତକଦ୍ୱାରା କିଞ୍ଚିତ୍ ଅବନତ ହୋଇ ଶୋଭାପାଉଅଛି । ୧୭ । ସୂର୍ଯ୍ୟର କିରଣ ହିମାଚ୍ଛନ୍ନ ହୋଇ ଇତସ୍ତତଃ ବିକ୍ଷିପ୍ତ ହେଉଅଛି; ସୁତରାଂ ସୂର୍ଯ୍ୟ ଉର୍ଦ୍ଧ୍ୱକୁ ଉଥିତ ହୋଇ ମଧ୍ୟ ଚନ୍ଦ୍ରପରି ଦେଖାଯାଉଅଛି । ୧୮ । ପୂର୍ବାହ୍ଣରେ ସୂର୍ଯ୍ୟର ତେଜ ପ୍ରାପ୍ୟ ନାହିଁ । ମଧ୍ୟାହ୍ନରେ ତାହା ସ୍ପର୍ଶ କରିବାକୁ ସୁଖକର ବୋଧ ହେଉଅଛି ; ସୁତରାଂ ସୂର୍ଯ୍ୟକିରଣ ଈଷତ୍ ପାଣ୍ଡୁର ହୋଇ ପୃଥିବୀରେ ଲାଗି ରହି ଶୋଭାପାଉଛି । ୧୯ । ବନସ୍ଥଳୀମାନଙ୍କରେ

ଅବଶ୍ୟାୟନିପାତେନ କିଞ୍ଚିତ୍‌ପ୍ରକ୍ଲିନ୍ନଶାଦ୍ୱଲା ।
ବନାନାଂ ଶୋଭତେ ଭୂମିର୍ନିବିଷ୍ଟତରୁଣାତପା । ୨୦ ।
ସ୍ପୃଶଂସ୍ତୁ ବିପୁଲଂ ଶୀତମୁଦକଂ ଦ୍ୱିରଦଃ ସୁଖମ୍ ।
ଅତ୍ୟନ୍ତତୃଷିତୋ ବନ୍ୟଃ ପ୍ରତିସଂହରତେ କରମ୍ । ୨୧ ।
ଏତେ ହି ସମୁପାସୀନା ବିହଗା ଜଳଚାରିଣଃ ।
ନାବଗାହନ୍ତି ସଲିଲମପ୍ରଗଲ୍‌ଭା ଇବାହବମ୍ । ୨୨ ।
ଅବଶ୍ୟାୟତମୋନଦ୍ଧା ନୀହାରତମସାବୃତାଃ ।
ପ୍ରସୁପ୍ତା ଇବ ଲକ୍ଷ୍ୟନ୍ତେ ବିପୁଷ୍ପା ବନରାଜୟଃ । ୨୩ ।
ବାଷ୍ପସଂଛନ୍ନସଲିଲା ରୁତବିଜ୍ଞେୟସାରସାଃ ।
ହିମାର୍ଦ୍ରବାଲୁକୈସ୍ତୀରୈଃ ସରିତୋ ଭାନ୍ତି ସାମ୍ପ୍ରତମ୍ । ୨୪ ।
ତୁଷାରପତନାଚ୍ଚୈବ ମୃଦୁତ୍ୱାଦ୍ଭାସ୍କରସ୍ୟ ଚ ।
ଶୈତ୍ୟାଦଗାଗ୍ରସ୍ଥମପି ପ୍ରାୟେଣ ରସବଜ୍ଜଲମ୍ । ୨୫ ।
ଜରାଜର୍ଜରିତୈଃ ପଦ୍ମୈଃ ଶୀର୍ଣକେସରକର୍ଣିକୈଃ ।
ନାଲଶେଷୈର୍ହିମଧ୍ୱସ୍ତୈର୍ନ ଭାନ୍ତି କମଳାକରାଃ । ୨୬ ।

---

ତୃଣାବୃତ ସ୍ଥାନମାନ ଶିଶିରପାତରେ ଈଷତ୍ ଆର୍ଦ୍ର ହୋଇଥିବାରୁ ତାହା ବାଳସୂର୍ଯ୍ୟ କିରଣରେ ସୁଶୋଭିତ ହେଉଛି । ୨୦ । ବନ୍ୟହସ୍ତୀ ନିତାନ୍ତ ତୃଷାର୍ତ୍ତ ହେଲେ ମଧ୍ୟ ଅତିଶୀତଳ ଜଳକୁ ସ୍ପର୍ଶ କରିବାମାତ୍ରେ ଶୁଣ୍ଢକୁ ସଂକୁଚିତ କରିନେଉଛି । ୨୧ । ସାହସହୀନ ବ୍ୟକ୍ତି ଯେପରି ଯୁଦ୍ଧରେ ପ୍ରବେଶ କରେନାହିଁ, ସେହିପରି ଏହି ଜଳଚର ପକ୍ଷୀମାନେ ଜଳ ନିକଟରେ ବସିଥିଲେ ମଧ୍ୟ ତାହା ଭିତରକୁ ପଶୁନାହାନ୍ତି । ୨୨ । ପୁଷ୍ପହୀନ ବନରାଜି ଶିଶିର ଏବଂ କୁଜ୍‌ଝଟିକାର ଅନ୍ଧକାରଦ୍ୱାରା ପରିବେଷ୍ଟିତ ହୋଇ ଗାଢ଼ନିଦ୍ରାରେ ଅଭିଭୂତ ହୋଇଥିବାପରି ଦେଖାଯାଉଛନ୍ତି । ୨୩ । ନଦୀର ଜଳରାଶି ବାଷ୍ପଦ୍ୱାରା ଆଚ୍ଛନ୍ନ ହୋଇଅଛି । ତହିଁରେ ଯେ ସାରସପଂକ୍ତି ଅଛନ୍ତି ତାହା କେବଳ ସେମାନଙ୍କ ସ୍ୱରରୁହିଁ ଜଣାଯାଉଅଛି । ନଦୀତଟର ବାଲୁକାରାଶି ଶିଶିରଦ୍ୱାରା ଆର୍ଦ୍ର ହୋଇ ତାରକାପରି ବର୍ତ୍ତମାନ ଶୋଭା ପାଉଅଛି । ୨୪ । ତୁଷାରପତନହେତୁରୁ, ସୂର୍ଯ୍ୟକିରଣ ମୃଦୁ ହୋଇଥିବାରୁ ଏବଂ ଶୈତ୍ୟହେତୁ ପର୍ବତର ଅଗ୍ରଭାଗସ୍ଥ ଜଳ ପ୍ରାୟ ବିଷତୁଲ୍ୟ ହୋଇଅଛି । ୨୫ । ବର୍ତ୍ତମାନ ଜରାହେତୁରୁ ପଦ୍ମର ପାଖୁଡ଼ା ସବୁ ଶୁଷ୍କ ହୋଇଅଛି ଏବଂ କେଶର ଓ କର୍ଣ୍ଣିକାସକଳ ବିଶୀର୍ଣ୍ଣ ହୋଇଅଛି । ହିମଦ୍ୱାରା ଧ୍ୱସ୍ତ ହୋଇ ପଦ୍ମର ନାଡ଼ମାତ୍ର ଅବଶିଷ୍ଟ ରହିଅଛି । ସୁତରାଂ ପଦ୍ମ ସରୋବରମାନ ଆଉ ଶୋଭା ପାଉନାହିଁ । ୨୬ । ଏପରି ସମୟରେ ନରଶ୍ରେଷ୍ଠ

ଅସ୍ମିଂସ୍ତୁ ପୁରୁଷବ୍ୟାଘ୍ରଃ କାଲେ ଦୁଃଖସମନ୍ୱିତଃ ।
ତପଶ୍ଚରତି ଧର୍ମାତ୍ମା ତ୍ୱଦ୍ଭକ୍ତ୍ୟା ଭରତଃ ପୁରେ । ୨୭ ।
ତ୍ୟକ୍ତ୍ୱା ରାଜ୍ୟଂ ଚ ମାନଂ ଚ ଭୋଗାଂଶ୍ଚ ବିବିଧାନ୍ ବହୂନ୍ ।
ତପସ୍ୱୀ ନିୟତାହାରଃ ଶେତେ ଶୀତେ ମହୀତଲେ । ୨୮ ।
ସୋଽପି ବେଳାମିମାଂ ନୂନମଭିଷେକାର୍ଥମୁଦ୍ୟତଃ ।
ବୃତଃ ପ୍ରକୃତିଭିର୍ନିତ୍ୟଂ ପ୍ରୟାତି ସରୟୂଂ ନଦୀମ୍ । ୨୯ ।
ଅତ୍ୟନ୍ତସୁଖସଂବୃଦ୍ଧଃ ସୁକୁମାରଃ ସୁଖୋଚିତଃ ।
କଥଂ ନ୍ୱପରରାତ୍ରେଷୁ ସରୟୂମବଗାହତେ । ୩୦ ।
ପଦ୍ମପତ୍ରେକ୍ଷଣୋ ବୀରଃ ଶ୍ୟାମୋ ନିରୁଦରୋ ମହାନ୍ ।
ଧର୍ମଜ୍ଞ ସତ୍ୟବାଦୀ ଚ ହ୍ରୀନିଷେଧୋ ଜିତେନ୍ଦ୍ରିୟଃ । ୩୧ ।
ପ୍ରିୟାଭିଭାଷୀ ମଧୁରୋ ଦୀର୍ଘବାହୁରରିନ୍ଦମଃ ।
ସଂତ୍ୟଜ୍ୟ ବିବିଧାନ୍ ଭୋଗାନାର୍ଯଂ ସର୍ବାତ୍ମନାଶ୍ରିତଃ । ୩୨ ।
ଜିତଃ ସ୍ୱର୍ଗସ୍ତବ ଭ୍ରାତ୍ରା ଭରତେନ ମହାତ୍ମନା ।
ବନସ୍ଥମପି ତାପସ୍ୟେ ଯସ୍ତ୍ୱାମନୁବିଧୀୟତେ । ୩୩ ।

---

ଧର୍ମାତ୍ମା ଭରତ ତୁମ୍ଭପ୍ରତି ଭକ୍ତିବଶତଃ ନଗରରେ ରହି ଓ ଦୁଃଖଭାର ବହନକରି ତପସ୍ୟା ଆଚରଣ କରୁଅଛନ୍ତି । ୨୭ । ସେ ରାଜ୍ୟ, ମାନ ଏବଂ ବିବିଧ ସୁଖସମ୍ଭୋଗ ପରିତ୍ୟାଗ କରି, ତପସ୍ୱୀ ଏବଂ ସଂଯତାହାରୀ ହୋଇ ଏହି ଶୀତସମୟରେ ଭୂତଳରେ ଶୟନ କରୁଅଛନ୍ତି । ୨୮ । ସେ ନିଶ୍ଚୟ ପ୍ରତିଦିନ ଏହି ସମୟରେ ସ୍ନାନ କରିବା ପାଇଁ ଉଦ୍ୟତ ହୋଇ, ପ୍ରଜାମାନଙ୍କଦ୍ୱାରା ପରିବେଷ୍ଟିତ ହୋଇ ସରଯୂନଦୀକୁ ଯାଉଥିବେ । ୨୯ । ସେ ସ୍ୱଭାବତଃ ସୁକୁମାର, ସୁଖାଭ୍ୟସ୍ତ ଏବଂ ଅତିଶୟ ସୁଖରେ ବଢ଼ିଅଛନ୍ତି । ସେ କିପରି ଏ ସମୟରେ ରାତ୍ରିର ଶେଷଭାଗରେ ସରଯୂନଦୀରେ ସ୍ନାନ କରୁଥିବେ ! । ୩୦ । ସେହି ପଦ୍ମପଲାଶଲୋଚନ, ଶ୍ୟାମବର୍ଣ୍ଣ, ମହତ୍ତ୍ୱସମ୍ପନ୍ନ, କ୍ଷୀଣକଟି, ଧର୍ମଜ୍ଞ, ସତ୍ୟବାଦୀ, ଲଜ୍ଜାଶୀଳ, ଜିତେନ୍ଦ୍ରିୟ, ପ୍ରିୟ ଓ ମଧୁରଭାଷୀ, ଦୀର୍ଘବାହୁ, ଶତ୍ରୁସୂଦନ ଭରତ ସମସ୍ତ ସୁଖଭୋଗ ବିସର୍ଜନକରି ସର୍ବାନ୍ତଃକରଣରେ ଆପଣଙ୍କୁ ଆଶ୍ରୟ କରିଅଛନ୍ତି ।୩୧-୩୨ । ତୁମ୍ଭର ଭ୍ରାତା ମହାତ୍ମା ଭରତ ତାପସଧର୍ମ ଅବଲମ୍ବନ କରି ବନବାସୀ ହୋଇଥିବା ତୁମକୁ ସେ ଅନୁକରଣ କରୁଛନ୍ତି, ଏହାଦ୍ୱାରା ସେ ନିଶ୍ଚୟ ସ୍ୱର୍ଗକୁ ଜୟ କରିସାରିଲେଣି ।୩୩। ମନୁଷ୍ୟମାନେ ପିତୃସ୍ୱଭାବ ଅନୁକରଣ କରନ୍ତି

ନ ପିତ୍ର୍ୟମନୁବର୍ତ୍ତନ୍ତେ ମାତୃକଂ ଦ୍ୱିପଦା ଇତି ।
ଖ୍ୟାତୋ ଲୋକପ୍ରବାଦୋଽୟଂ ଭରତେନାନ୍ୟଥା କୃତଃ । ୩୪ ।
ଭର୍ତ୍ତା ଦଶରଥୋ ଯସ୍ୟାଃ ସାଧୁଶ୍ଚ ଭରତଃ ସୁତଃ ।
କଥଂ ନୁ ସାମ୍ବା କୈକେୟୀ ତାଦୃଶୀ କ୍ରୂରଦର୍ଶିନୀ । ୩୫ ।
ଇତ୍ୟେବଂ ଲକ୍ଷ୍ମଣେ ବାକ୍ୟଂ ସ୍ନେହାଦ୍ ବ୍ରୁବତି ଧାର୍ମିକେ ।
ପରିବାଦଂ ଜନନ୍ୟାସ୍ତମସହନ୍ ରାଘବୋଽବ୍ରବୀତ୍ । ୩୬ ।
ନ ତେଽମ୍ବା ମଧ୍ୟମା ତାତ ଗର୍ହିତବ୍ୟା କଥଂଚନ ।
ତାମେବେକ୍ଷ୍ୱାକୁନାଥସ୍ୟ ଭରତସ୍ୟ କଥାଂ କୁରୁ । ୩୭ ।
ନିଶ୍ଚିତାପି ହି ମେ ବୁଦ୍ଧିର୍ବନବାସେ ଦୃଢ଼ବ୍ରତା ।
ଭରତସ୍ନେହସନ୍ତପ୍ତା ବାଲିଶୀକ୍ରିୟତେ ପୁନଃ । ୩୮ ।
ସଂସ୍ମରାମ୍ୟସ୍ୟ ବାକ୍ୟାନି ପ୍ରିୟାଣି ମଧୁରାଣି ଚ ।
ହୃଦ୍ୟାନ୍ୟମୃତକଳ୍ପାନି ମନଃପ୍ରହ୍ଲାଦନାନି ଚ । ୩୯ ।
କଦା ନ୍ୱହଂ ସମେଷ୍ୟାମି ଭରତେନ ମହାତ୍ମନା ।
ଶତ୍ରୁଘ୍ନେନ ଚ ବୀରେଣ ତ୍ୱୟା ଚ ରଘୁନନ୍ଦନ । ୪୦ ।
ଇତ୍ୟେବଂ ବିଳପଂସ୍ତତ୍ର ପ୍ରାପ୍ୟ ଗୋଦାବରୀଂ ନଦୀମ୍ ।
ଚକ୍ରେଽଭିଷେକଂ କାକୁତ୍ସ୍ଥଃ ସାନୁଜଃ ସହ ସୀତୟା । ୪୧ ।

---

ନାହିଁ; ମାତୃସ୍ୱଭାବ ଅନୁକରଣକରନ୍ତି" ଏହି ଯେ ଲୋକପ୍ରବାଦ ଜଗତରେ ପ୍ରସିଦ୍ଧ ଅଛି ଭରତ ତାହାକୁ ଅନ୍ୟଥା କରି ଦେଇଛନ୍ତି । ୩୪ । ରାଜା ଦଶରଥ ଯାହାଙ୍କର ସ୍ୱାମୀ, ସାଧୁ ଭରତ ଯାହାଙ୍କର ପୁତ୍ର, ସେହି ମାତା କୈକେୟୀ କପରି ଏତାଦୃଶ କ୍ରୂର-ବୁଦ୍ଧି ହେଲେ" । ୩୫ । ଧାର୍ମିକ ଲକ୍ଷ୍ମଣ ସ୍ନେହହେତୁରୁ ଏହିପ୍ରକାର କଥା କହିବାରୁ ଜନନୀ କୈକେୟୀଙ୍କର ସେହି ନିନ୍ଦାବାଦ ସହି ନ ପାରି ରାମ କହିଲେ । ୩୬ । "ହେ ବତ୍ସ ! ତୁମେ କୌଣସିପ୍ରକାରେ ମଧ୍ୟମା ଜନନୀ କୈକେୟୀଙ୍କୁ ନିନ୍ଦା କରିବା ଉଚିତ ନୁହେ । ତୁମେ କେବଳ ଇକ୍ଷ୍ୱାକୁନାଥ ଭରତଙ୍କ କଥା କହ । ୩୭ । ମୋର ବୁଦ୍ଧି ବନବାସ ନିମନ୍ତେ ନିଶ୍ଚିତ ଏବଂ ଦୃଢ଼ବ୍ରତ ହୋଇଥିଲେ ସୁଦ୍ଧା ତାହା ଭରତଙ୍କ ସ୍ନେହରେ ଅଭିଭୂତ ହୋଇ ମୁହ୍ୟମାନ ହୋଇପଡ଼ୁଅଛି । ୩୮ । ମୁଁ ଏବେ ତାଙ୍କର ପ୍ରିୟ, ମଧୁର, ଅମୃତତୁଲ୍ୟ ହୃଦୟହାରୀ ଓ ମନର ଆହ୍ଲାଦପ୍ରଦ କଥାମାନ ସ୍ମରଣ କରୁଅଛି । ୩୯ । ହେ ରଘୁନନ୍ଦନ ! ମୁଁ କେବେ ସେ ମହାତ୍ମା ଭରତ, ବୀର ଶତ୍ରୁଘ୍ନ ଏବଂ ତୁମ ସହିତ ପୁଣି ଯାଇ ମିଳିତ ହେବି !" । ୪୦ । କାକୁତ୍ସ୍ଥ ରାମଚନ୍ଦ୍ର ଏହିପ୍ରକାର ବିଳାପ କରି କରି କନିଷ୍ଠ ଭ୍ରାତା ଓ ସୀତାଙ୍କ ସହିତ

ତର୍ପୟିତ୍ୱାଥ ସଲିଲୈସ୍ତେ ପିତୄନ୍ ଦୈବତାନି ଚ ।
ସ୍ତୁବନ୍ତି ସ୍ମୋଦିତଂ ସୂର୍ଯ୍ୟଂ ଦେବତାଶ୍ଚ ସମାହିତାଃ । ୪୨ ।
କୃତାଭିଷେକଃ ସ ରରାଜ ରାମଃ
ସୀତାଦ୍ୱିତୀୟଃ ସହ ଲକ୍ଷ୍ମଣେନ ।
କୃତାଭିଷେକୋ ଗିରିରାଜପୁତ୍ର୍ୟା-
ରୁଦ୍ରଃ ସନନ୍ଦୀ ଭଗବାନିବେଶଃ । ୪୩ ।

**ଇତ୍ୟାର୍ଷେ** ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ହେମନ୍ତବର୍ଣ୍ଣନମ୍ ନାମ
ଷୋଡ଼ଶଃ ସର୍ଗଃ

---

ଗୋଦାବରୀ ନଦୀରେ ପହଞ୍ଚି ସେଠାରେ ସ୍ନାନକଲେ । ୪୧ । ଅନନ୍ତର ସେମାନେ ସମସ୍ତେ ଗୋଦାବରୀ ଜଳରେ ପିତୃ ଓ ଦେବତାମାନଙ୍କର ତର୍ପଣକରି ନିବିଷ୍ଟମନରେ ଉଦିତ ସୂର୍ଯ୍ୟ ଓ ଅନ୍ୟ ଦେବତାମାନଙ୍କୁ ସ୍ତବକଲେ । ୪୨ । ଭଗବାନ୍ ରୁଦ୍ର ମହାଦେବ ଗିରିରାଜଦୁହିତା ପାର୍ବତୀ ଓ ନନ୍ଦୀଙ୍କ ସହିତ ସ୍ନାନାନ୍ତେ ଯେପରି ଶୋଭା-ପାଆନ୍ତି, ସୀତା ଓ ଲକ୍ଷ୍ମଣଙ୍କ ସହିତ ସ୍ନାନ ସମାପନକରି ରାମ ମଧ୍ୟ ସେହିପରି ଶୋଭାପାଇଲେ । ୪୩ ।

---

# ସପ୍ତଦଶଃ ସର୍ଗଃ

## ଶୂର୍ପଣଖାଭାବାବିଷ୍କରଣମ୍

କୃତାଭିଷେକୋ ରାମସ୍ତୁ ସୀତା ସୌମିତ୍ରିରେବ ଚ ।
ତସ୍ମାଦ୍ଗୋଦାବରୀତୀରାତ୍ତତୋ ଜଗ୍ମୁଃ ସ୍ୱମାଶ୍ରମମ୍ । ୧ ।
ଆଶ୍ରମଂ ତମୁପାଗମ୍ୟ ରାଘବଃ ସହଲକ୍ଷ୍ମଣଃ ।
କୃତ୍ୱା ପୌର୍ବାହ୍ଣିକଂ କର୍ମ ପର୍ଣଶାଲାମୁପାଗମତ୍ । ୨ ।
ଉବାସ ସୁଖିତସ୍ତତ୍ର ପୂଜ୍ୟମାନୋ ମହର୍ଷିଭିଃ ।
ଲକ୍ଷ୍ମଣେନ ସହ ଭ୍ରାତ୍ରା ଚକାର ବିବିଧାଃ କଥାଃ । ୩ ।
ସ ରାମଃ ପର୍ଣଶାଲାୟାମାସୀନଃ ସହ ସୀତୟା ।
ବିରରାଜ ମହାବାହୁଶ୍ଚିତ୍ରୟା ଚନ୍ଦ୍ରମା ଇବ । ୪ ।
ତଥାସୀନସ୍ୟ ରାମସ୍ୟ କଥାସଂସକ୍ତଚେତସଃ ।
ତଂ ଦେଶଂ ରାକ୍ଷସୀ କାଚିଦାଜଗାମ ଯଦୃଚ୍ଛୟା । ୫ ।
ସା ତୁ ଶୂର୍ପଣଖା ନାମ ଦଶଗ୍ରୀବସ୍ୟ ରକ୍ଷସଃ ।
ଭଗିନୀ ରାମମାସାଦ୍ୟ ଦଦର୍ଶ ତ୍ରିଦଶୋପମମ୍ । ୬ ।

---

## ୧୭ଶ ସର୍ଗ

(ଶୂର୍ପଣଖାର ପ୍ରେମଭାବପ୍ରକାଶ)

ରାମ, ସୀତା ଏବଂ ଲକ୍ଷ୍ମଣ ସ୍ନାନ କରସାରି ସେହି ଗୋଦାବରୀତୀରରୁ ନିଜ ଆଶ୍ରମକୁ ଗଲେ । ୧ । ରାମ ଆଶ୍ରମକୁ ଆସି ଲକ୍ଷ୍ମଣଙ୍କ ସହିତ ପୂର୍ବାହ୍ଣ ଉପାସନାଦି କାର୍ଯ୍ୟ ସମାପନାନ୍ତେ ପର୍ଣ୍ଣଶାଳାରେ ପ୍ରବେଶକଲେ । ୨ । ସେ ମହର୍ଷିମାନଙ୍କ ଦ୍ୱାରା ପୂଜିତ ହୋଇ ସେହିଠାରେ ସୁଖରେ ବସିଲେ ଏବଂ ଭ୍ରାତା ଲକ୍ଷ୍ମଣଙ୍କ ସହିତ ନାନାପ୍ରକାର କଥାବାର୍ତ୍ତା କଲେ । ୩ । ସେହି ପର୍ଣ୍ଣକୁଟୀରମଧ୍ୟରେ ରାମ ସୀତାଙ୍କ ସହିତ ବସିଥିବାବେଳେ ଚିତ୍ରା ନକ୍ଷତ୍ର ସହିତ ଚନ୍ଦ୍ରଙ୍କର ସଂଯୋଗ ଯେପରି ଶୋଭାପାଏ ସେହିପରି ଶୋଭାପାଇଲେ । ୪ । ରାମ ଏହିପରିଭାବରେ ବସି କଥା-ବାର୍ତ୍ତାରେ ନିବିଷ୍ଟ ରହିଥିବାବେଳେ ଗୋଟିଏ ରାକ୍ଷସୀ ଯଦୃଚ୍ଛାକ୍ରମେ ସେ ସ୍ଥାନରେ ଆସି ପହଞ୍ଚିଲା । ୫ । ସେ ଦଶଗ୍ରୀବ ରାକ୍ଷସର ଭଗ୍ନୀ ଓ ତାହାର ନାମ ଶୂର୍ପଣଖା । ସେ ଦେବୋପମ ରାମଙ୍କ ନିକଟରେ ପହଞ୍ଚି ତାଙ୍କୁ ଦେଖିଲା । ୬ । ସେ ଦେଖିଲା, ତାଙ୍କର ଉରୁଦେଶ

ସିଂହୋରସ୍କଂ ମହାବାହୁଂ ପଦ୍ମପତ୍ରନିଭେକ୍ଷଣମ୍ ।
ଆଜାନୁବାହୁଂ ଦୀପ୍ତାସ୍ୟମତୀବ ପ୍ରିୟଦର୍ଶନମ୍ । ୭ ।
ଗଜବିକ୍ରାନ୍ତଗମନଂ ଜଟାମଣ୍ଡଳଧାରଣମ୍ ।
ସୁକୁମାରଂ ମହାସତ୍ତ୍ୱଂ ପାର୍ଥିବବ୍ୟଞ୍ଜନାନ୍ୱିତମ୍ । ୮ ।
ରାମମିନ୍ଦୀବରଶ୍ୟାମଂ କନ୍ଦର୍ପସଦୃଶପ୍ରଭମ୍ ।
ବଭୂବେନ୍ଦ୍ରୋପମଂ ଦୃଷ୍ଟ୍ୱା ରାକ୍ଷସୀ କାମମୋହିତା । ୯ ।
ସୁମୁଖଂ ଦୁର୍ମୁଖୀ ରାମଂ ବୃତ୍ତମଧ୍ୟଂ ମହୋଦରୀ ।
ବିଶାଳାକ୍ଷଂ ବିରୂପାକ୍ଷୀ ସୁକେଶଂ ତାମ୍ରମୂର୍ଦ୍ଧଜା । ୧୦ ।
ପ୍ରୀତିରୂପଂ ବିରୂପା ସା ସୁସ୍ୱରଂ ଭୈରବସ୍ୱରା ।
ତରୁଣଂ ଦାରୁଣା ବୃଦ୍ଧା ଦକ୍ଷିଣଂ ବାମଭାଷିଣୀ । ୧୧ ।
ନ୍ୟାୟବୃତ୍ତଂ ସୁଦୁର୍ବୃତ୍ତା ପ୍ରିୟମପ୍ରିୟଦର୍ଶନା ।
ଶରୀରଜସମାବିଷ୍ଟା ରାକ୍ଷସୀ ବାକ୍ୟମବ୍ରବୀତ୍ । ୧୨ ।
ଜଟୀ ତାପସରୂପେଣ ସଭାର୍ଯ୍ୟଃ ଶରଚାପଧୃକ୍ ।
ଆଗତସ୍ତ୍ୱମିମଂ ଦେଶଂ କଥଂ ରାକ୍ଷସସେବିତମ୍ । ୧୩ ।

---

ସିଂହର ଉରୁସଦୃଶ, ବାହୁ ଅତିବିଶାଳ ଓ ଜାନୁପର୍ଯ୍ୟନ୍ତ ଲମ୍ବମାନ, ଚକ୍ଷୁ ପଦ୍ମର ପାଖୁଡ଼ାପରି, ମୁଖ ଅତିଶୟ ପ୍ରଦୀପ୍ତ ଓ ସେ ଦେଖିବାକୁ ଅତିରମଣୀୟ । ତାଙ୍କର ଗତି ହସ୍ତୀର ଗତିତୁଲ୍ୟ, ସେ ମସ୍ତକରେ ଜଟାମଣ୍ଡଳ ଧାରଣ କରିଛନ୍ତି, ତାଙ୍କର ଶରୀର ଅତିସୁକୁମାର । ସେ ମହାବଳଶାଳୀ ଏବଂ ତାଙ୍କଠାରେ ରାଜଚିହ୍ନମାନ ରହିଅଛି । ୭-୮ । ନୀଳୋତ୍ପଳସଦୃଶ ଶ୍ୟାମଳବର୍ଣ୍ଣ, କନ୍ଦର୍ପସଦୃଶ ପ୍ରଭାବିଶିଷ୍ଟ, ଇନ୍ଦ୍ରଙ୍କପରି ଶୋଭମାନ ରାମଙ୍କୁ ଦେଖି ସେ ରାକ୍ଷସୀ କାମରେ ଅଭିଭୂତ ହୋଇ-ପଡ଼ିଲା । ୯ । ରାମଙ୍କର ମୁଖ ଅତିସୁନ୍ଦର, ରାକ୍ଷସୀର ମୁଖ ଅତିବିକୃତ; ରାମଙ୍କର କଟିଦେଶ ଗୋଲାକାର, ରାକ୍ଷସୀର ଉଦର ଅତିବିଶାଳ ରାମଙ୍କର ଚକ୍ଷୁ ବିଶାଳ, ରାକ୍ଷସୀର ଚକ୍ଷୁ ଅତିକୁତ୍ସିତ; ରାମ ସୁକେଶ, ରାକ୍ଷସୀର କେଶ ତାମ୍ରବର୍ଣ୍ଣ; ରାମଙ୍କର ରୂପ ପ୍ରୀତିପ୍ରଦ, ରାକ୍ଷସୀର ରୂପ ଅତିକଦର୍ଯ୍ୟ; ରାମଙ୍କର ସ୍ୱର ମିଷ୍ଟ, ରାକ୍ଷସୀର ସ୍ୱର ଅତିଭୀଷଣ; ରାମ ତରୁଣ, ରାକ୍ଷସୀ ବୃଦ୍ଧା; ରାମ ମଧୁରଭାଷୀ ଓ ରାକ୍ଷସୀ କର୍କଶଭାଷିଣୀ ; ରାମ ନ୍ୟାୟଚରିତ, ରାକ୍ଷସୀ ଦୁଷ୍ଟଚରିତା; ରାମ ଦେଖିବାକୁ ପ୍ରୀତିପ୍ରଦ, ରାକ୍ଷସୀ ଅପ୍ରିୟଦର୍ଶନା । ସେହି ରାକ୍ଷସୀ କାମାଭିଭୂତା ହୋଇ ରାମଙ୍କୁ କହିଲା । ୧୦-୧୨ । "ତୁମେ ଜଟା ଧାରଣ କରି, ତପସ୍ୱୀ ବେଶରେ, ଧନୁଶର ଧାରଣ କରି ଭାର୍ଯ୍ୟାଙ୍କ ସହିତ କାହିଁକି ଏହି ରାକ୍ଷସସେବିତ ସ୍ଥାନକୁ ଆସିଅଛ । ୧୩ । ତୁମ୍ଭର ଏଠାକୁ

କିମାଗମନକୃତ୍ୟଂ ତେ ତତ୍ତ୍ୱମାଖ୍ୟାତୁମର୍ହସି ।
ଏବମୁକ୍ତସ୍ତୁ ରାକ୍ଷସ୍ୟା ଶୂର୍ପଣଖ୍ୟା ପରଂତପଃ । ୧୪ ।
ଋଜୁବୁଦ୍ଧିତୟା ସର୍ବମାଖ୍ୟାତୁମୁପଚକ୍ରମେ ।
ଅନୃତଂ ନ ହି ରାମସ୍ୟ କଦାଚଦପି ସଂମତମ୍ । ୧୫ ।
ବିଶେଷେଣାଶ୍ରମସ୍ଥସ୍ୟ ସମୀପେ ସ୍ତ୍ରୀଜନସ୍ୟ ଚ ।
ଆସୀଦ୍ଦଶରଥୋ ନାମ ରାଜା ତ୍ରିଦଶବିକ୍ରମଃ । ୧୬ ।
ତସ୍ୟାହମଗ୍ରଜଃ ପୁତ୍ରୋ ରାମୋ ନାମ ଜନୈଃ ଶ୍ରୁତଃ ।
ଭ୍ରାତାୟଂ ଲକ୍ଷ୍ମଣୋ ନାମ ଯବୀୟାନ୍ ମାମନୁବ୍ରତଃ । ୧୭ ।
ଇୟଂ ଭାର୍ଯା ଚ ବୈଦେହୀ ମମ ସୀତେତି ବିଶ୍ରୁତା ।
ନିୟୋଗାତ୍ତୁ ନରେନ୍ଦ୍ରସ୍ୟ ପିତୁର୍ମାତୁଶ୍ଚ ଯନ୍ତ୍ରିତଃ । ୧୮ ।
ଧର୍ମାର୍ଥଂ ଧର୍ମକାଙ୍‌କ୍ଷୀ ଚ ବନଂ ବସ୍ତୁମିହାଗତଃ ।
ତ୍ୱାଂ ତୁ ବେଦିତୁମିଚ୍ଛାମି କଥ୍ୟତାଂ କାସି କସ୍ୟ ବା । ୧୯ ।
ନ ହି ତାବନ୍ମନୋଜ୍ଞାଙ୍ଗୀ ରାକ୍ଷସୀ ପ୍ରତିଭାସି ମେ ।
ଇହ ବା କିଂ ନିମିତ୍ତଂ ତ୍ୱମାଗତା ବ୍ରୂହି ତତ୍ତ୍ୱତଃ । ୨୦ ।

---

ଆସିବାର ପ୍ରୟୋଜନ କଅଣ ତାହା ମୋତେ ଯଥାର୍ଥରୂପରେ କହ ।” ରାକ୍ଷସୀ ଶୂର୍ପଣଖା ଏହିପରି କହିବାଠାରୁ ଶତ୍ରୁସୂଦନ ରାମଚନ୍ଦ୍ର ସରଳବୁଦ୍ଧିରେ ସବୁ କଥା ବର୍ଣ୍ଣନା କରିବାକୁ ଆରମ୍ଭକଲେ । କାରଣ ରାମ ମିଥ୍ୟା କଥା କହିବାକୁ ବିଶେଷତଃ ଆଶ୍ରମରେ ବସି ସ୍ତ୍ରୀଲୋକମାନଙ୍କ ସମକ୍ଷରେ ମିଥ୍ୟା କଥା କହିବାକୁ କଦାପି ଇଚ୍ଛା କଲେ ନାହିଁ । ସେ କହିଲେ, “ଦେବତାଙ୍କ ସଦୃଶ ବଳବିକ୍ରମଶାଳୀ ଦଶରଥ ନାମରେ ଜଣେ ରାଜା ଥିଲେ । ମୁଁ ତାଙ୍କର ଜ୍ୟେଷ୍ଠ ପୁତ୍ର ଏବଂ ରାମ ନାମରେ ଲୋକରେ ପରିଚିତ । ମୋର ଏହି କନିଷ୍ଠ ଭ୍ରାତାଙ୍କର ନାମ ଲକ୍ଷ୍ମଣ ଏବଂ ଏ ମୋର ଅନୁଗତ ଅଟନ୍ତି । ୧୪-୧୭ । ଏହି ବିଦେହନନ୍ଦନୀ ମୋର ଭାର୍ଯ୍ୟା ଓ ସୀତା ନାମରେ ବିଖ୍ୟାତ । ରାଜା ତଥା ପିତା ଓ ମାତାଙ୍କ ନିର୍ଦ୍ଦେଶାନୁସାରେ ମୁଁ ଧର୍ମଲାଭ ଆଶାରେ ଏବଂ ଧର୍ମପାଳନ କରିବାନିମନ୍ତେ ବନରେ ବାସ କରିବା ପାଇଁ ଏଠାକୁ ଆସିଅଛୁ । ଏବେ ତୁମକୁ ଜାଣିବାକୁ ମୋର ଇଚ୍ଛା ହେଉଅଛି । ତୁମେ କିଏ ଓ କାହାର ପତ୍ନୀ ମୋତେ କହ । ୧୮-୧୯ । ତୁମ ରୂପ ଏପରି ସୁନ୍ଦର ହୋଇଛି ଯେ ତୁମେ ରାକ୍ଷସୀ ବୋଲି ମୋତେ ବୋଧ ହେଉ ନାହିଁ । ତୁମେ କାହିଁକି ବା ଏଠାକୁ ଆସିଛ ଯଥାର୍ଥଭାବରେ ମୋତେ କହ” । ୨୦ । ସେହି କାମପୀଡ଼ିତା

ସାବ୍ରବୀଦ୍ବଚନଂ ଶ୍ରୁତ୍ୱା ରାକ୍ଷସୀ ମଦନାର୍ଦ୍ଦିତା ।
ଶ୍ରୂୟତାଂ ରାମ ବକ୍ଷ୍ୟାମି ତତ୍ତ୍ୱାର୍ଥଂ ବଚନଂ ମମ । ୨୧ ।
ଅହଂ ଶୂର୍ପଣଖା ନାମ ରାକ୍ଷସୀ କାମରୂପିଣୀ ।
ଅରଣ୍ୟଂ ବିଚରାମୀଦମେକା ସର୍ବଭୟଙ୍କରା । ୨୨ ।
ରାବଣୋ ନାମ ମେ ଭ୍ରାତା ବଲୀୟାନ୍ ରାକ୍ଷସେଶ୍ୱରଃ ।
ବୀରୋ ବିଶ୍ରବସଃ ପୁତ୍ରୋ ଯଦି ତେ ଶ୍ରୋତ୍ରମାଗତଃ । ୨୩ ।
ପ୍ରବୃଦ୍ଧନିଦ୍ରଶ୍ଚ ସଦା କୁମ୍ଭକର୍ଣ୍ଣୋ ମହାବଲଃ ।
ବିଭୀଷଣସ୍ତୁ ଧର୍ମାତ୍ମା ନ ତୁ ରାକ୍ଷସଚେଷ୍ଟିତଃ । ୨୪ ।
ପ୍ରଖ୍ୟାତବୀର୍ଯ୍ୟୌ ଚ ରଣେ ଭ୍ରାତରୌ ଖରଦୂଷଣୌ ।
ତାନହଂ ସମତିକ୍ରାନ୍ତା ରାମ ତ୍ୱାପୂର୍ବଦର୍ଶନାତ୍ । ୨୫ ।
ସମୁପେତାସ୍ମି ଭାବେନ ଭର୍ତ୍ତାରଂ ପୁରୁଷୋତ୍ତମମ୍ ।
ଅହଂ ପ୍ରଭାବସମ୍ପନ୍ନା ସ୍ୱଚ୍ଛନ୍ଦବଲଗାମିନୀ । ୨୬ ।
ଚିରାୟ ଭବ ମେ ଭର୍ତ୍ତା ସୀତୟା କିଂ କରିଷ୍ୟସି ।
ବିକୃତା ଚ ବିରୂପା ଚ ନ ଚେୟଂ ସଦୃଶୀ ତବ । ୨୭ ।
ଅହମେବାନୁରୂପା ତେ ଭାର୍ଯ୍ୟାରୂପେଣ ପଶ୍ୟ ମାମ୍ ।
ଇମାଂ ବିରୂପାମସତୀଂ କରାଳାଂ ନିର୍ଣତୋଦରୀମ୍ । ୨୮ ।

---

ରାକ୍ଷସୀ ଏହି କଥା ଶୁଣି କହିଲା, "ହେ ରାମ ! ମୁଁ କହୁଛି ତୁମେ ମୋର ଯଥାର୍ଥ ପରିଚୟ ଶୁଣ । ୨୧ । ମୁଁ ଶୂର୍ପଣଖା ନାମକ କାମରୂପିଣୀ ରାକ୍ଷସୀ । ସମସ୍ତଙ୍କ ମନରେ ଭୟ ଉତ୍ପାଦନ କରି ଏକାକିନୀ ଏହି ବନରେ ବିଚରଣ କରୁଅଛି । ୨୨ । ମୋର ଭ୍ରାତାଙ୍କ ନାମ ରାବଣ । ସେହି ବୀର ରାକ୍ଷସରାଜ ବିଶ୍ରବା ଋଷିଙ୍କର ପୁତ୍ର ବୋଧହୁଏ ଏକଥା ତୁମ କାନରେ ପଡ଼ିଥିବ । ୨୩ । ମୋର ଅନ୍ୟ ଗୋଟିଏ ଭାଇ ମହାବଳୀ କୁମ୍ଭକର୍ଣ୍ଣ ସର୍ବଦା ନିଦ୍ରାପରାୟଣ ଏବଂ ଅପର ଭାଇ ଧର୍ମାତ୍ମା ବିଭୀଷଣଙ୍କର ରାକ୍ଷସସ୍ୱଭାବ ଦେଖାଯାଏ ନାହିଁ ।୨୪। ମୋର ଆଉ ଦୁଇଭାଇ ଖର ଓ ଦୂଷଣ ଯୁଦ୍ଧରେ ଖ୍ୟାତିଲାଭ କରିଅଛନ୍ତି । ହେ ରାମ! ତୁମକୁ ପ୍ରଥମେ ଦେଖିଲାଦିନଠାରୁ ମୁଁ ସେମାନଙ୍କୁ ଏଡ଼ିଦେଇ ତୁମପରି ପୁରୁଷଶ୍ରେଷ୍ଠଙ୍କୁ ସ୍ୱାମୀରୂପେ ପାଇବାପାଇଁ ତୁମ ସମୀପକୁ ଆସିଅଛି । ମୁଁ ପରାକ୍ରମସମ୍ପନ୍ନା ଏବଂ ନିଜ ଇଚ୍ଛାରେ ଓ ବଳରେ ସର୍ବତ୍ର ଯାଇପାରେ । ୨୫-୨୬ । ତୁମେ ଚିରକାଳ ପାଇଁ ମୋର ସ୍ୱାମୀ ହୁଅ । ତୁମେ ସୀତାକୁ ନେଇ କଅଣ କରିବ ? ସେ ବିକୃତା ବିରୂପା ଏବଂ ତୁମ୍ଭର ଯୋଗ୍ୟା ନୁହେଁ ।୨୭। ମୁହିଁ ତୁମ୍ଭର ସର୍ବଥା ଉପଯୁକ୍ତା; ତୁମେ ମୋତେ ଭାର୍ଯ୍ୟାରୂପରେ ଦେଖ ।

ଅନେନ ତେ ସହ ଭ୍ରାତ୍ରା ଭକ୍ଷୟିଷ୍ୟାମି ମାନୁଷୀମ୍ ।
ତତଃ ପର୍ବତଶୃଙ୍ଗାଣି ବନାନି ବିବିଧାନି ଚ । ୨୯ ।
ପଶ୍ୟନ୍ ସହ ମୟା କାନ୍ତ ଦଣ୍ଡକାନ୍ ବିଚରିଷ୍ୟସି ।
ଇତ୍ୟେବମୁକ୍ତଃ କାକୁତ୍‌ସ୍ଥଃ ପ୍ରହସ୍ୟ ମଦିରେକ୍ଷଣାମ୍ । ୩୦ ।
ଇଦଂ ବଚନମାରେଭେ ବକ୍ତୁଂ ବାକ୍ୟବିଶାରଦଃ । ୩୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ଶୂର୍ପଣଖାଭିବାବିଷ୍କରଣମ୍
ନାମ ସପ୍ତଦଶଃ ସର୍ଗଃ

---

ମୁଁ ତୁମ ଭାଇ ସହିତ ଏହି ମାନୁଷୀ, ବିରୂପା, ଅସତୀ, କରାଳଦର୍ଶନା, ନତୋଦରୀ ସୀତାକୁ ଭକ୍ଷଣ କରିପକାଇବି । ତାପରେ ହେ କାନ୍ତ ! ତୁମେ ମୋ ସହିତ ନାନାବିଧ ବନ ଓ ପର୍ବତଶୃଙ୍ଗମାନ ଦେଖି ଦେଖି ଦଣ୍ଡକାରଣ୍ୟରେ ବିଚରଣ କରିବ । ” ସେ ଏହିପରି କହିବାରୁ କାକୁତ୍ସ୍ଥନନ୍ଦନ ବାକ୍ୟବିଶାରଦ ଶ୍ରୀରାମ ଅତିଶୟ ହାସ୍ୟ କରି ପ୍ରେମୋନ୍ମତ୍ତଲୋଚନା ଶୂର୍ପଣଖାକୁ କହିବାକୁ ଲାଗିଲେ ।୨୮-୩୧ ।

# ଅଷ୍ଟାଦଶଃ ସର୍ଗଃ

## ଶୂର୍ପଣଖାବିରୂପଣମ୍

ତତଃ ଶୂର୍ପଣଖାଂ ରାମଃ କାମପାଶାବପାଶିତାମ୍ ।
ସ୍ୱଚ୍ଛୟା ଶ୍ଲକ୍ଷ୍ଣୟା ବାଚା ସ୍ମିତପୂର୍ବମଥାବ୍ରବୀତ୍ । ୧ ।
କୃତଦାରୋଽସ୍ମି ଭବତି ଭାର୍ଯ୍ୟେୟଂ ଦୟିତା ମମ ।
ତ୍ୱଦ୍ୱିଧାନାଂ ତୁ ନାରୀଣାଂ ସୁଦୁଃଖା ସସପତ୍ନତା । ୨ ।
ଅନୁଜସ୍ତ୍ୱେଷ ମେ ଭ୍ରାତା ଶୀଲବାନ୍ ପ୍ରିୟଦର୍ଶନଃ ।
ଶ୍ରୀମାନକୃତଦାରଶ୍ଚ ଲକ୍ଷ୍ମଣୋ ନାମ ବୀର୍ଯ୍ୟବାନ୍ । ୩ ।
ଅପୂର୍ବୀ ଭାର୍ଯ୍ୟୟା ଚାର୍ଥୀ ତରୁଣଃ ପ୍ରିୟଦର୍ଶନଃ ।
ଅନୁରୂପଶ୍ଚ ତେ ଭର୍ତ୍ତା ରୂପସ୍ୟାସ୍ୟ ଭବିଷ୍ୟତି । ୪ ।
ଏନଂ ଭଜ ବିଶାଳାକ୍ଷି ଭର୍ତ୍ତାରଂ ଭ୍ରାତରଂ ମମ ।
ଅସପତ୍ନା ବରାରୋହେ ମେରୁମର୍କପ୍ରଭା ଯଥା । ୫ ।
ଇତି ରାମେଣ ସା ପ୍ରୋକ୍ତା ରାକ୍ଷସୀ କାମମୋହିତା ।
ବିସୃଜ୍ୟ ରାମଂ ସହସା ତତୋ ଲକ୍ଷ୍ମଣମବ୍ରବୀତ୍ । ୬ ।

---

## ୧୮ଶ ସର୍ଗ

( ଶୂର୍ପଣଖାର ନାସାକର୍ଣ୍ଣଚ୍ଛେଦନ )

ଅନନ୍ତର ରାମ ପ୍ରଥମେ ଟିକିଏ ହସି ସୁମଧୁର ଏବଂ ସ୍ପଷ୍ଟ ବାକ୍ୟରେ କାମାଭିଭୂତା ଶୂର୍ପଣଖାକୁ କହିଲେ । ୧ । "ହେ କଲ୍ୟାଣି ! ମୁଁ ବିବାହ କରିସାରିଛି । ଏ ମୋର ପ୍ରିୟବଶ ଭାର୍ଯ୍ୟା । ତୁମପରି ରମଣୀମାନଙ୍କର ସପତ୍ନୀ ବିଦ୍ୟମାନ ଥିବା ବିଶେଷ ଦୁଃଖକର । ୨ । କିନ୍ତୁ ମୋର ଏହି କନିଷ୍ଠ ଭ୍ରାତା ଲକ୍ଷ୍ମଣ ସଚ୍ଚରିତ୍ର, ଶ୍ରୀମାନ୍ ବୀର୍ଯ୍ୟବାନ୍ ଓ ପ୍ରିୟଦର୍ଶନ ଅଟେ । ସେ ପୂର୍ବରୁ ବିବାହ କରି ନାହିଁ; ସୁତରାଂ ଭାର୍ଯ୍ୟାଭିଳାଷୀ । ସେ ତରୁଣ ଏବଂ ଦେଖିବାକୁ ସୁନ୍ଦର । ସେ ତୁମ୍ଭର ଏ ରୂପର ଉପଯୁକ୍ତ ସ୍ୱାମୀ ହେବ । ୩ - ୪ । ହେ ବିଶାଳାକ୍ଷି ! ସୂର୍ଯ୍ୟପ୍ରଭା ଯେପରି ମେରୁ ପର୍ବତକୁ ଆଶ୍ରୟ କରେ ସେହିପରି ତୁମେ ସପତ୍ନୀବିହୀନା ହୋଇ ମୋର ଏହି ଭ୍ରାତାକୁ ସ୍ୱାମୀରୂପେ ସେବାକର" । ୫ । କାମମୋହିତା ରାକ୍ଷସୀ ରାମଙ୍କଠାରୁ ଏ କଥା ଶୁଣି ତାଙ୍କୁ ପରିତ୍ୟାଗ କରି ସହସା ଲକ୍ଷ୍ମଣଙ୍କ ନିକଟକୁ ଯାଇ ତାଙ୍କୁ

ଅସ୍ୟ ରୂପସ୍ୟ ତେ ଯୁକ୍ତା ଭାର୍ଯ୍ୟାହଂ ବରବର୍ଣ୍ଣିନୀ ।
ମୟା ସହ ସୁଖଂ ସର୍ବାନ୍ ଦଣ୍ଡକାନ୍ ବିଚରିଷ୍ୟସି ।୭।
ଏବମୁକ୍ତସ୍ତୁ ସୌମିତ୍ରୀ ରାକ୍ଷସ୍ୟା ବାକ୍ୟକୋବିଦଃ ।
ତତଃ ଶୂର୍ପଣଖୀଂ ସ୍ମିତ୍ୱା ଲକ୍ଷ୍ମଣୋ ଯୁକ୍ତମବ୍ରବୀତ୍ ।୮।
କଥଂ ଦାସସ୍ୟ ମେ ଦାସୀ ଭାର୍ଯ୍ୟା ଭବିତୁମିଚ୍ଛସି ।
ସୋଽହମାର୍ଯ୍ୟେଣ ପରବାନ୍ ଭ୍ରାତ୍ରା କମଲବର୍ଣ୍ଣିନି ।୯।
ସମୃଦ୍ଧାର୍ଥସ୍ୟ ସିଦ୍ଧାର୍ଥା ମୁଦିତା ବରବର୍ଣ୍ଣିନୀ ।
ଆର୍ଯ୍ୟସ୍ୟ ତ୍ୱଂ ବିଶାଳାକ୍ଷି ଭାର୍ଯ୍ୟା ଭବ ଯବୀୟସୀ ।୧୦।
ଏନାଂ ବିରୂପାମସତୀଂ କରାଳାଂ ନିର୍ଣତୋଦରୀମ୍ ।
ଭାର୍ଯ୍ୟାଂ ବୃଦ୍ଧାଂ ପରିତ୍ୟଜ୍ୟ ତ୍ୱାମେବୈଷ ଭଜିଷ୍ୟତି ।୧୧।
କୋ ହି ରୂପମିଦଂ ଶ୍ରେଷ୍ଠଂ ସଂତ୍ୟଜ୍ୟ ବରବର୍ଣ୍ଣିନି ।
ମାନୁଷୀଷୁ ବରାରୋହେ କୁର୍ଯ୍ୟାଦ୍ଭାବଂ ବିଚକ୍ଷଣଃ ।୧୨।
ଇତି ସା ଲକ୍ଷ୍ମଣେନୋକ୍ତା କରାଳା ନିର୍ଣତୋଦରୀ ।
ମନ୍ୟତେ ତଦ୍ୱଚସ୍ତଥ୍ୟଂ ପରିହାସାବିଚକ୍ଷଣା ।୧୩।
ସା ରାମଂ ପର୍ଣ୍ଣଶାଳାୟାମୁପବିଷ୍ଟଂ ପରଂତପମ୍ ।
ସୀତୟା ସହ ଦୁର୍ଧର୍ଷମବ୍ରବୀତ୍କାମମୋହିତା ।୧୪।

---

କହିଲା ।୬। "ମୁଁ ବରବର୍ଣ୍ଣିନୀ ଅଟେ, ସୁତରାଂ ତୁମର ଏ ରୂପର ଉପଯୁକ୍ତ ଭାର୍ଯ୍ୟା ହେବ । ତୁମେ ମୋ ସହିତ ସୁଖରେ ସମୁଦାୟ ଦଣ୍ଡକାରଣ୍ୟରେ ବିଚରଣ କରିବ" ।୭। ରାକ୍ଷସୀ ଏହିପରି କହିବାରୁ ବାକ୍ୟବିଶାରଦ ସୁମିତ୍ରାନନ୍ଦନ ଲକ୍ଷ୍ମଣ ମୃଦୁ ହାସ୍ୟ କରି ତାକୁ ଯୁକ୍ତିଯୁକ୍ତ କଥା କହିଲେ ।୮। "ହେ ପଦ୍ମବର୍ଣ୍ଣିନି ! ମୁଁ ଦାସ; ସୁତରାଂ ତୁମେ ମୋର ଭାର୍ଯ୍ୟା ହୋଇ କାହିଁକି ଦାସୀ ହେବାକୁ ଇଚ୍ଛା କରୁଛ । ମୁଁ ମୋ ଭାଇଙ୍କର ଅଧୀନ ଅଟେ ।୯। ହେ ବିଶାଳାକ୍ଷି ! ତୁମେ ସିଦ୍ଧକାମା ହୋଇ ଆନନ୍ଦରେ ଏହି ସମୃଦ୍ଧିଶାଳୀ ଆର୍ଯ୍ୟଙ୍କର କନିଷ୍ଠା ଭାର୍ଯ୍ୟା ହୁଅ ।୧୦। ତାହାହେଲେ ସେ ଏହି ବିରୂପା, ଅସତୀ, ନତୋଦରୀ, ବୃଦ୍ଧା ଭାର୍ଯ୍ୟାକୁ ପରିତ୍ୟାଗ କରି ତୁମକୁହିଁ ଭଜିବେ ।୧୧। ହେ ବରବର୍ଣ୍ଣିନି, ବରାରୋହେ ! କେଉଁ ବିଚକ୍ଷଣ ଲୋକ ତୁମ୍ଭର ଏ ଉତ୍କୃଷ୍ଟ ରୂପକୁ ଅନାଦର କରି ଗୋଟିଏ ମାନବୀଠାରେ ଆସକ୍ତ ହୋଇପାରେ !" ।୧୨। ଲକ୍ଷ୍ମଣ ଏହିପରି କହିବାରୁ ଲମ୍ବୋଦରୀ କରାଳବଦନା ଶୂର୍ପଣଖା ସେ ପରିହାସ ବୁଝି ନ ପାରି ସେହି କଥାକୁ ତଥ୍ୟ ବୋଲି ମଣିଲା ।୧୩। ଅନନ୍ତର ସେ କାମରେ ହତଜ୍ଞାନ ହୋଇ ପର୍ଣ୍ଣଶାଳା ମଧ୍ୟରେ ସୀତାଙ୍କ

ଏନାଂ ବିରୂପାମସତୀଂ କରାଳାଂ ନିର୍ଣତୋଦରୀମ୍ ।
ବୃଦ୍ଧାଂ ଭାର୍ଯ୍ୟାମବଷ୍ଟଭ୍ୟ ମାଂ ନ ତ୍ୱଂ ବହୁମନ୍ୟସେ । ୧୫ ।
ଅଦ୍ୟେମାଂ ଭକ୍ଷୟିଷ୍ୟାମି ପଶ୍ୟତସ୍ତବ ମାନୁଷୀମ୍ ।
ତ୍ୱୟା ସହ ଚରିଷ୍ୟାମି ନିଃସପତ୍ନା ଯଥାସୁଖମ୍ । ୧୬ ।
ଇତ୍ୟୁକ୍ତ୍ୱା ମୃଗଶାବାକ୍ଷୀମଲାତସଦୃଶେକ୍ଷଣା ।
ଅଭ୍ୟଧାବତ୍ସୁସଂକ୍ରୁଦ୍ଧା ମହୋଲ୍‌କା ରୋହିଣୀମିବ । ୧୭ ।
ତାଂ ମୃତ୍ୟୁପାଶପ୍ରତିମାମାପତନ୍ତୀଂ ମହାବଳଃ ।
ନିଗୃହ୍ୟ ରାମଃ କୁପିତସ୍ତତୋ ଲକ୍ଷ୍ମଣମବ୍ରବୀତ୍ । ୧୮ ।
କ୍ରୂରୈରନାର୍ୟୈଃ ସୌମିତ୍ରେ ପରିହାସଃ କଥଂଚନ ।
ନ କାର୍ଯଃ ପଶ୍ୟ ବୈଦେହୀଂ କଥଂଚିତ୍ ସୌମ୍ୟ ଜୀବତୀମ୍ ।୧୯
ଇମାଂ ବିରୂପାମସତୀମତିମତ୍ତାଂ ମହୋଦରୀମ୍ ।
ରାକ୍ଷସୀଂ ପୁରୁଷବ୍ୟାଘ୍ର ବିରୂପୟିତୁମର୍ହସି । ୨୦ ।
ଇତ୍ୟୁକ୍ତୋ ଲକ୍ଷ୍ମଣସ୍ତସ୍ୟାଃ କ୍ରୁଦ୍ଧୋ ରାମସ୍ୟ ପଶ୍ୟତଃ ।
ଉଦ୍ଧୃତ୍ୟ ଖଡ୍‌ଗଂ ଚିଚ୍ଛେଦ କର୍ଣନାସଂ ମହାବଳଃ । ୨୧ ।

---

ସହିତ ବସିଥିବା ଅରିନ୍ଦମ ଦୁର୍ଜେୟ ରାମଙ୍କୁ କହିଲା ।୧୪ । "ତୁମେ ଏହି ବୃଦ୍ଧା ବିରୂପା ଲମ୍ବୋଦରୀ ଅସତୀ ଏବଂ କରାଳଦର୍ଶନା ଭାର୍ଯ୍ୟା ପ୍ରତି ଆସକ୍ତ ହୋଇ ମୋତେ ସମ୍ମାନ କରୁ ନାହଁ । ୧୫ । ଆଜ ତୁମେ ଚାହିଁଥିବ, ତୁମ୍ଭର ଆଗରେ ମୁଁ ଏ ମାନବୀକୁ ଖାଇଦେବି ଏବଂ ସପତ୍ନୀଶୂନ୍ୟା ହୋଇ ସୁଖରେ ତୁମ ସହିତ ବିଚରଣ କରିବି"।୧୬। ଏହା କହି କୁମ୍ଭାରଚକ୍ରସଦୃଶ ଚକ୍ଷୁବିଶିଷ୍ଟା ରାକ୍ଷସୀ, ମହାଉଲ୍କା ରୋହିଣୀ ନକ୍ଷତ୍ର ଆଡ଼କୁ ପ୍ରଧାବିତ ହେଲାପରି, ସେହି ବାଳମୃଗ ଲୋଚନା ସୀତାଙ୍କ ଆଡ଼କୁ ପ୍ରଧାବିତ ହେଲା । ୧୭ । ସେହି ଯମପାଶସଦୃଶୀ ରାକ୍ଷସୀକୁ ସୀତାଙ୍କ ଆଡ଼କୁ ପ୍ରଧାବିତ ହେଉଥିବାର ଦେଖି ମହାବଳୀ ରାମ ତାକୁ ଅଟକାଇ ଦେଇ କ୍ରୋଧରେ ଲକ୍ଷ୍ମଣଙ୍କୁ କହିଲେ ।୧୮। "ହେ ସୌମିତ୍ରେ ! କ୍ରୂରସ୍ୱଭାବ ଅନାର୍ଯ୍ୟମାନଙ୍କ ସହିତ ପରିହାସ କରିବା କଦାପି ଉଚିତ ନୁହେଁ । ଦେଖ,ସୀତା ବର୍ତ୍ତମାନ କୌଣସି ପ୍ରକାରେ ବଞ୍ଚିଗଲେ । ୧୯ । ହେ ନରଶ୍ରେଷ୍ଠ ! ବର୍ତ୍ତମାନ ତୁମେ ଏହି କାମୋନ୍ମତ୍ତା ମହୋଦରୀ ବିରୂପା ଅସତୀ ରାକ୍ଷସୀକୁ ବିରୂପ କରିଦେବା ଉଚିତ ।" ୨୦ । ରାମ ଏହିପରି କହିବାରୁ ମହାବଳୀ ଲକ୍ଷ୍ମଣ କ୍ରୁଦ୍ଧ ହୋଇ ରାମଙ୍କ ସମକ୍ଷରେହିଁ ଖଡ୍‌ଗ ଉତ୍ତୋଳନପୂର୍ବକ ତାହାର ନାସା ଓ କର୍ଣ୍ଣ ଛେଦନ କରିଦେଲେ । ୨୧। ନାକ କାନ

ନିକୃତ୍ତକର୍ଣନାସା ତୁ ବିସ୍ୱରଂ ସା ବିନଦ୍ୟ ଚ ।
ଯଥାଗତଂ ପ୍ରଦୁଦ୍ରାବ ଘୋରା ଶୂର୍ପଣଖା ବନମ୍ । ୨୨ ।
ସା ବିରୂପା ମହାଘୋରା ରାକ୍ଷସୀ ଶୋଣିତୋକ୍ଷିତା ।
ନନାଦ ବିବିଧାନ୍ନାଦାନ୍ ଯଥା ପ୍ରାବୃଷି ତୋୟଦଃ । ୨୩।
ସା ବିକ୍ଷରନ୍ତୀ ରୁଧିରଂ ବହୁଧା ଘୋରଦର୍ଶନା ।
ପ୍ରଗୃହ୍ୟ ବାହୂ ଗର୍ଜନ୍ତୀ ପ୍ରବିବେଶ ମହାବନମ୍ । ୨୪ ।

ତତସ୍ତୁ ସା ରାକ୍ଷସସଂଘସଂବୃତଂମ୍
ଖରଂ ଜନସ୍ଥାନଗତଂ ବିରୂପିତା ।
ଉପେତ୍ୟ ତଂ ଭ୍ରାତରମୁଗ୍ରଦର୍ଶନମ୍
ପପାତ ଭୂମୌ ଗଗନାଦ୍ ଯଥାଶନିଃ । ୨୫ ।
ତତଃ ସଭାର୍ଯଂ ଭୟମୋହମୂର୍ଚ୍ଛିତା
ସଲକ୍ଷ୍ମଣଂ ରାଘବମାଗତଂ ବନମ୍ ।
ବିରୂପଣଂ ଚାତ୍ମନି ଶୋଣିତୋକ୍ଷିତା
ଶଶଂସ ସର୍ବଂ ଭଗିନୀ ଖରସ୍ୟ ସା । ୨୬ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ଶୂର୍ପଣଖାବିରୂପଣମ୍
ନାମ ଅଷ୍ଟାଦଶଃ ସର୍ଗଃ ।

---

କଟା ହୋଇଯିବାରୁ ସେହି ଘୋରସ୍ୱଭାବା ଶୂର୍ପଣଖା ବିକଟସ୍ୱରରେ ଚିତ୍କାର କରି କରି ଯେଉଁ ଆଡ଼ୁ ଆସିଥିଲା ସେହି ବନଭିତରକୁ ଦୌଡ଼ିପଳାଇଲା । ୨୨ । ସେହି ଖିଷଣାକୃତି ବିରୂପା ରାକ୍ଷସୀ ରକ୍ତାକ୍ତଶରୀର ହୋଇ ବର୍ଷାଋତୁରେ ମେଘ ଗର୍ଜନ କଲାପରି ବିବିଧ ନାଦରେ ଗର୍ଜନ କରିବାକୁ ଲାଗିଲା । ୨୩ । ସେହି ଭୀମଦର୍ଶନା ରାକ୍ଷସୀ ବାହୁ ଉତ୍ତୋଳନ କରି ରୁଧିରକ୍ଷରଣ ଓ ଗର୍ଜନପୂର୍ବକ ମହାବନରେ ପ୍ରବେଶକଲା । ୨୪ । ସେ ବିରୂପିତା ହୋଇ ରାକ୍ଷସଗଣ-ପରିବେଷ୍ଟିତ ଜନସ୍ଥାନବାସୀ ତାହାର ଭ୍ରାତା ଖର ନିକଟକୁ ଯାଇ ଆକାଶରୁ ବଜ୍ର-ପଡ଼ିଲା ପରି ଭୂମିରେ ପଡ଼ିଗଲା । ୨୫ । ଖରର ସେହି ଭଗିନୀ ରକ୍ତାକ୍ତାଙ୍ଗୀ ଏବଂ ଭୟ ଓ ମୋହରେ ସଂଜ୍ଞାହୀନା ହୋଇ ତାହା ସମକ୍ଷରେ ଭ୍ରାତା ଓ ଭାର୍ଯ୍ୟାଙ୍କ ସହିତ ରାମଙ୍କର ବନ ଆଗମନ ଏବଂ ସେମାନଙ୍କ ଦ୍ୱାରା ନିଜର ନାସା କର୍ଣ୍ଣଚ୍ଛେଦନ ଆଦି ସମସ୍ତ ବୃତ୍ତାନ୍ତ ବର୍ଣ୍ଣନା କଲା । ୨୬ ।

---

# ଏକୋନବିଂଶଃ ସର୍ଗଃ

## ଖରକ୍ରୋଧଃ

ତାଂ ତଥା ପତିତାଂ ଦୃଷ୍ଟ୍ୱା ବିରୂପାଂ ଶୋଣିତୋକ୍ଷିତାମ୍ ।
ଭଗିନୀଂ କ୍ରୋଧସଂତପ୍ତଃ ଖରଃ ପପ୍ରଚ୍ଛ ରାକ୍ଷସୀମ୍ । ୧ ।
ଉତ୍ତିଷ୍ଠ ତାବଦାଖ୍ୟାହି ପ୍ରମୋହଂ ଜହି ସଂଭ୍ରମମ୍ ।
ବ୍ୟକ୍ତମାଖ୍ୟାହି କେନ ତ୍ୱମେବଂରୂପା ବିରୂପିତା । ୨ ।
କଃ କୃଷ୍ଣସର୍ପମାସୀନମାଶୀବିଷମନାଗସମ୍ ।
ତୁଦତ୍ୟଭିସମାପନ୍ନମଙ୍ଗୁଲ୍ୟଗ୍ରେଣ ଲୀଲୟା । ୩ ।
କଃ କାଲପାଶମାସଜ୍ୟ କଣ୍ଠେ ମୋହାନ୍ନ ବୁଧ୍ୟତେ ।
ଯସ୍ତ୍ୱାମଦ୍ୟ ସମାସାଦ୍ୟ ପୀତବାନ୍ ବିଷମୁତ୍ତମମ୍ । ୪ ।
ବଲବିକ୍ରମସଂପନ୍ନା କାମଗା କାମରୂପିଣୀ ।
ଇମାମବସ୍ଥାଂ ନୀତା ତ୍ୱଂ କେନାନ୍ତକସମାଗତା । ୫ ।
ଦେବଗନ୍ଧର୍ବଭୂତାନାମୃଷୀଣାଂ ଚ ମହାତ୍ମନାମ୍ ।
କୋଽୟମେବଂ ବିରୂପାଂ ତ୍ୱାଂ ମହାବୀର୍ଯଶ୍ଚକାର ହ । ୬ ।

---

## ୧୯ଶ ସର୍ଗ

### ( ଖରର କ୍ରୋଧ )

ଖର ତାର ସେହି ଭଉଣୀ ଶୂର୍ପଣଖା ରାକ୍ଷସୀକୁ ରକ୍ତାକ୍ତକଳେବର ହୋଇ ସେହିପରି ପଡ଼ିଥିବାର ଦେଖି ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ପଚାରିଲା । ୧ । ସେ କହିଲା, "ତୁ ଉଠ, ଉଦ୍‌ବେଗ ଏବଂ ମୂର୍ଚ୍ଛା ଦୂରକର, ସ୍ପଷ୍ଟ କରି କହ, କିଏ ତୋତେ ଏପରି ବିରୂପ କଲା । ୨ । କିଏ ସମ୍ମୁଖସ୍ଥ କୁଣ୍ଡଳୀବଦ୍ଧ ନିରପରାଧ ତୀବ୍ରବିଷଧର କୃଷ୍ଣସର୍ପକୁ ଲୀଳାକ୍ରମେ ଅଙ୍ଗୁଳିର ଅଗ୍ରଭାଗଦ୍ୱାରା ଆହତ କରିଅଛି । ୩ । ଆଜି ଯେଉଁ ଲୋକ ତୋତେ ଏପରି ହତଶ୍ରୀ କରି ଉତ୍କଟ ବିଷପାନ କରିଅଛି ଏବଂ ଗଳାରେ କାଳପାଶ ବାନ୍ଧି ମୋହବଶରୁ ତାହା ବୁଝିପାରୁ ନାହିଁ, ସେ ଲୋକ କିଏ ? । ୪ । ବଳବିକ୍ରମସମ୍ପନ୍ନା, ସ୍ୱେଚ୍ଛାଗାମିନୀ, କାମରୂପିଣୀ ଯମସମା ତୁ କାହାଦ୍ୱାରା ଏପରି ଅବସ୍ଥା ଲାଭ କରିଅଛୁ । ୫ । ଦେବ, ଗନ୍ଧର୍ବ, ଭୂତ, ପ୍ରାଣୀ ଓ ମହାତ୍ମା ଋଷିମାନଙ୍କ ମଧ୍ୟରେ କିଏ ଏପରି ବୀର୍ଯ୍ୟବାନ୍ ଯେ ତୋତେ ଏପରି ବିରୂପ କରିଅଛି । ୬ ।

ନ ତ୍ୱ ପଶ୍ୟାମ୍ୟହଂ ଲୋକେ ଯଃ କୁର୍ଯ୍ୟାନ୍ମମ ବିପ୍ରିୟମ୍ ।
ଅନ୍ତରେଣ ସହସ୍ରାକ୍ଷଂ ମହେନ୍ଦ୍ରଂ ପାକଶାସନମ୍ । ୭ ।
ଅଦ୍ୟାହଂ ମାର୍ଗଣୈଃ ପ୍ରାଣାନାଦାସ୍ୟେ ଜୀବିତାନ୍ତକୈଃ ।
ସଲିଲେ କ୍ଷୀରମାସକ୍ତଂ ନିଷ୍ପିବନ୍ନିବ ସାରସଃ । ୮ ।
ନିହତସ୍ୟ ମୟା ସଂଖ୍ୟେ ଶରସଂକୃତ୍ତମର୍ମଣଃ ।
ସଫେନଂ ରୁଧିରଂ ରକ୍ତଂ ମେଦିନୀ କସ୍ୟ ପାସ୍ୟତି । ୯ ।
କସ୍ୟ ପତ୍ରରଥାଃ କାୟାନ୍ମାଂସମୁତ୍କୃତ୍ୟ ସଂଗତାଃ ।
ପ୍ରହୃଷ୍ଟା ଭକ୍ଷୟିଷ୍ୟନ୍ତି ନିହତସ୍ୟ ମୟା ରଣେ । ୧୦ ।
ତଂ ନ ଦେବା ନ ଗନ୍ଧର୍ବା ନ ପିଶାଚା ନ ରାକ୍ଷସାଃ ।
ମୟାପକୃଷ୍ଟଂ କୃପଣଂ ଶକ୍ତାସ୍ତ୍ରାତୁମିହାହବେ । ୧୧ ।
ଉପଲଭ୍ୟ ଶନୈଃ ସଂଜ୍ଞାଂ ତଂ ମେ ଶଂସିତୁମର୍ହସି ।
ଯେନ ତ୍ୱଂ ଦୁର୍ବିନୀତେନ ବନେ ବିକ୍ରମ୍ୟ ନିର୍ଜିତା । ୧୨ ।
ଇତି ଭ୍ରାତୁର୍ବଚଃ ଶ୍ରୁତ୍ୱା କ୍ରୁଦ୍ଧସ୍ୟ ଚ ବିଶେଷତଃ ।
ତତଃ ଶୂର୍ପଣଖା ବାକ୍ୟଂ ସବାଷ୍ପମିଦମବ୍ରବୀତ୍ । ୧୩ ।
ତରୁଣୌ ରୂପସଂପନ୍ନୌ ସୁକୁମାରୌ ମହାବଲୌ ।
ପୁଣ୍ଡରୀକବିଶାଲାକ୍ଷୌ ଚୀରକୃଷ୍ଣାଜିନାମ୍ବରୌ । ୧୪ ।

---

ସହସ୍ରାକ୍ଷ ଇନ୍ଦ୍ରଙ୍କ ଛଡ଼ା ବ୍ରହ୍ମାଣ୍ଡମଧ୍ୟରେ ମୋର ଅପ୍ରିୟ କାର୍ଯ୍ୟ କରିବ, ଏପରି ଲୋକ ମୁଁ କାହାକୁ ଦେଖୁ ନାହିଁ । ୭ । ରାଜହଂସ ଯେପରି ଜଳ ସହିତ ମିଶ୍ରିତ ଦୁଧକୁ ପାନକରେ, ଅଜ ମୁଁ ସେହିପରି ପ୍ରାଣାନ୍ତକାରୀ ଶରରାଜିଦ୍ୱାରା ତାହାର ପ୍ରାଣ ନେବି ।୮। ଯୁଦ୍ଧରେ ମୋଦ୍ୱାରା ଶରରେ ଛିନ୍ନହୃଦୟ ହୋଇ ସେ ନିହତ ହେବ । କେଉଁ ବ୍ୟକ୍ତିର ଫେନଯୁକ୍ତ ରୁଧିର ପୃଥିବୀ ପାନ କରିବ ?। ୯ । ଯୁଦ୍ଧରେ ମୋଦ୍ୱାରା ନିହତ କେଉଁ ବ୍ୟକ୍ତିର ଦେହରୁ ମାଂସ ଛିଣ୍ଡାଇ ପକ୍ଷୀମାନେ ଆନନ୍ଦରେ ଭୋଜନ କରିବେ ?। ୧୦ । ମୁଁ ଯୁଦ୍ଧରେ ଯାହାକୁ ଆକ୍ରମଣ କରିବି ସେ ହତଭାଗାକୁ କି ଦେବତା କି ଗନ୍ଧର୍ବ କି ପିଶାଚ କି ରାକ୍ଷସ କେହି ରକ୍ଷା କରିବାକୁ ସମର୍ଥ ହେବେ ନାହିଁ । ୧୧ । ଏବେ ତୁ ଆସ୍ତେ ସଂଜ୍ଞାଲାଭ କରି ମୋତେ କହ, କେଉଁ ଦୁର୍ବିନୀତ ବ୍ୟକ୍ତି ବନରେ ବିକ୍ରମ ପ୍ରକାଶ କରି ତୋତେ ଏପରି କଷ୍ଟ ଦେଇଅଛି ?"। ୧୨ । ଅତଏବ କ୍ରୁଦ୍ଧ ହୋଇଥିବା ଭାଇର ଏହି କଥା ଶୁଣି ଶୂର୍ପଣଖା କାନ୍ଦି କାନ୍ଦି କହିଲା । ୧୩ । "ଦଶରଥରାଜାଙ୍କର ପୁତ୍ର ରାମ ଲକ୍ଷ୍ମଣ ନାମରେ ଦୁଇଟି ଭାଇ ଅଛନ୍ତି ।

ଫଲମୂଲାଶନୌ ଦାନ୍ତୌ ତାପସୌ ଧର୍ମଚାରିଣୌ ।
ପୁତ୍ରୌ ଦଶରଥସ୍ୟାସ୍ତାଂ ଭ୍ରାତରୌ ରାମଲକ୍ଷ୍ମଣୌ । ୧୫ ।
ଗନ୍ଧର୍ବରାଜପ୍ରତିମୌ ପାର୍ଥିବବ୍ୟଞ୍ଜନାନ୍ୱିତୌ ।
ଦେବୌ ବା ମାନୁଷୌ ବା ତୌ ନ ତର୍କୟିତୁମୁତ୍ସହେ । ୧୬ ।
ତରୁଣୀ ରୂପସଂପନ୍ନା ସର୍ବାଭରଣଭୂଷିତା ।
ଦୃଷ୍ଟା ତତ୍ର ମୟା ନାରୀ ତୟୋର୍ମଧ୍ୟେ ସୁମଧ୍ୟମା । ୧୭ ।
ତାଭ୍ୟାମୁଭାଭ୍ୟାଂ ସଂଭୂୟ ପ୍ରମଦାମଧିକୃତ୍ୟ ତାମ୍ ।
ଇମାମବସ୍ଥାଂ ନୀତାହଂ ଯଥାନାଥାସତୀ ତଥା । ୧୮ ।
ତସ୍ୟାଶ୍ଚାନୃଜୁବୃତ୍ତାୟାସ୍ତୟୋଶ୍ଚ ହତୟୋରହମ୍ ।
ସଫେନଂ ପାତୁମିଚ୍ଛାମି ରୁଧିରଂ ରଣମୂର୍ଧନି । ୧୯ ।
ଏଷ ମେ ପ୍ରଥମଃ କାମଃ କୃତସ୍ତାତ ତ୍ୱୟା ଭବେତ୍ ।
ତସ୍ୟାସ୍ତୟୋଶ୍ଚ ରୁଧିରଂ ପିବେୟମହମାହବେ । ୨୦ ।
ଇତି ତସ୍ୟାଂ ବ୍ରୁବାଣାୟାଂ ଚତୁର୍ଦଶ ମହାବଲାନ୍ ।
ବ୍ୟାଦିଦେଶ ଖରଃ କ୍ରୁଦ୍ଧୋ ରାକ୍ଷସାନନ୍ତକୋପମାନ୍ । ୨୧ ।

---

ସେ ଦୁହେଁ ଯୁବକ, ରୂପବାନ, ସୁକୁମାର ଏବଂ ମହାବଳସମ୍ପନ୍ନ । ତାଙ୍କର ଚକ୍ଷୁ ପଦ୍ମପାଖୁଡ଼ାପରି । ସେମାନେ ବଲ୍‌କଳ ଏବଂ କୃଷ୍ଣ ଜିନ ପରିଧାନ କରିଛନ୍ତି । ସେମାନେ ଫଳମୂଳ ଭକ୍ଷଣ କରନ୍ତି । ସେମାନେ ସଂଯମୀ, ତପସ୍ୱୀ ଏବଂ ଧର୍ମାଚାରୀ ।୧୪-୧୫ । ସେ ଦୁହେଁ ଗନ୍ଧର୍ବରାଜସଦୃଶ ଦେଖାଯାଉଛନ୍ତି ଏବଂ ସେମାନଙ୍କଠାରେ ରାଜଚିହ୍ନମାନ ବିଦ୍ୟମାନ ରହିଛି । ସେ ଦୁହେଁ ଦେବତା କି ମନୁଷ୍ୟ ମୁଁ ସ୍ଥିର କରିପାରୁ ନାହିଁ । ।୧୬ । ସେ ଦୁହିଁଙ୍କ ସହିତ ମୁଁ ଗୋଟିଏ ରୂପବତୀ ସର୍ବାଳଙ୍କାରଭୂଷିତା ସୁମଧ୍ୟମା ତରୁଣୀ ରମଣୀ ଦେଖିଅଛି । ୧୭ । ସେହି ଦୁହେଁ ମିଶି ସେହି ନାରୀ ଲାଗି ଅନାଥା ଏବଂ କୁଳଟା ପରି ମୋତେ ଏତେ ଅବସ୍ଥା କରିଅଛନ୍ତି । ସେହି କୁଟିଳସ୍ୱଭାବା ନାରୀ ଏବଂ ସେ ଦୁଇଜଣଙ୍କର ଫେନଯୁକ୍ତ ରୁଧିର ମୁଁ ରଣସ୍ଥଳରେ ପାନ କରିବାକୁ ଇଚ୍ଛା କରେ ।୧୯। ଏହା ମୋର ପ୍ରଥମ ଅଭିଳାଷ ଓ ଏହା ତୁମଦ୍ୱାରା ପୂରଣ କରାହେଉ । ମୁଁ ଯୁଦ୍ଧରେ ସେହି ନାରୀ ଓ ସେ ଦୁହିଁଙ୍କର ରକ୍ତପାନ କରିବ" । ୨୦ । ସେ ଏପରି କହିବାଉତ୍ତାରୁ ଖର କ୍ରୁଦ୍ଧ ହୋଇ ଯମସଦୃଶ ମହାବଳୀ ଚଉଦଜଣ ରାକ୍ଷସଙ୍କୁ ଆଦେଶ କଲା । ୨୧ । ସେ କହିଲା, "ଦୁଇଜଣ ବଲ୍‌କଳ ଓ

ମାନୁଷୌ ଶସ୍ତ୍ରସଂପନ୍ନୌ ଚୀରକୃଷ୍ଣାଜିନାମ୍ବରୌ ।
ପ୍ରବିଷ୍ଟୌ ଦଣ୍ଡକାରଣ୍ୟଂ ଘୋରଂ ପ୍ରମଦୟା ସହ । ୨୨ ।
ତୌ ହତ୍ୱା ତାଂ ଚ ଦୁର୍ବୃତ୍ତାମୁପାବର୍ତ୍ତିତୁମର୍ହଥ ।
ଇୟଂ ଚ ରୁଧିରଂ ତେଷାଂ ଭଗିନୀ ମମ ପାସ୍ୟତି । ୨୩ ।
ମନୋରଥୋଽୟମିଷ୍ଟୋଽସ୍ୟା ଭଗିନ୍ୟା ମମ ରାକ୍ଷସାଃ ।
ଶୀଘ୍ରଂ ସଂପାଦ୍ୟତାଂ ଗତ୍ୱା ତୌ ପ୍ରମଥ୍ୟ ସ୍ୱତେଜସା । ୨୪ ।
ଯୁଷ୍ମାଭିର୍ନିହତୌ ଦୃଷ୍ଟ୍ୱା ତାବୁଭୌ ଭ୍ରାତରୌ ରଣେ ।
ଇୟଂ ପ୍ରହୃଷ୍ଟା ମୁଦିତା ରୁଧିରଂ ଯୁଧି ପାସ୍ୟତି । ୨୫ ।
ଇତି ପ୍ରତିସମାଦିଷ୍ଟା ରାକ୍ଷସାସ୍ତେ ଚତୁର୍ଦ୍ଦଶ ।
ତତ୍ର ଜଗ୍ମୁସ୍ତୟା ସାର୍ଦ୍ଧଂ ଘନା ବାତେରିତା ଯଥା । ୨୬ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ଖରଚୋଦନୋ ନାମ
ଏକୋନବିଂଶଃ ସର୍ଗଃ

---

କୃଷ୍ଣମୃଗଚର୍ମ ପିନ୍ଧିଥିବା ଶସ୍ତ୍ରଧାରୀ ମନୁଷ୍ୟ ଗୋଟିଏ ମହିଳାସହିତ ଏହି ଘୋର ଦଣ୍ଡକାରଣ୍ୟରେ ପ୍ରବେଶ କରିଅଛନ୍ତି । ୨୨ । ତୁମେମାନେ ସେ ଦୁହିଁଙ୍କୁ ଏବଂ ସେ ଦୁରାଚାରିଣୀ ନାରୀକୁ ହତ୍ୟା କରି ଫେରିବ ଏବଂ ମୋର ଏହି ଭଉଣୀ ସେମାନଙ୍କର ରକ୍ତପାନ କରିବ ।୨୩। ହେ ରାକ୍ଷସଗଣ ! ତୁମେମାନେ ଶୀଘ୍ର ଯାଇ ନିଜବଳରେ ଏଦୁଇ ଜଣଙ୍କୁ ନିହତ କରି ମୋ ଭଗିନୀର ଏହି ମନୋରଥ ପୂରଣକର ।୨୪। ଏ ଦୁଇ ଭାଇ ଯୁଦ୍ଧରେ ତୁମମାନଙ୍କଦ୍ୱାରା ନିହତ ହେବାର ଦେଖି ମୋର ଭଗିନୀ ଅତିଶୟ ଆନନ୍ଦିତ ହୋଇ ସେଠାରେ ସେମାନଙ୍କର ରକ୍ତପାନ କରିବ" ।୨୫। ଏହି ପ୍ରକାର ଆଜ୍ଞା ପାଇ ସେହି ଚତୁର୍ଦ୍ଦଶ ରାକ୍ଷସ ବାୟୁସଞ୍ଚାଳିତ ମେଘପରି ଶୂର୍ପଣଖା ସହିତ ସେ ସ୍ଥାନକୁ ଯାତ୍ରାକଲେ । ୨୬ ।

---

# ବିଂଶଃ ସର୍ଗଃ

## ଚତୁର୍ଦ୍ଦଶରକ୍ଷୋବଧଃ

ତତଃ ଶୂର୍ପଣଖା ଘୋରା ରାଘବାଶ୍ରମମାଗତା ।
ରାକ୍ଷସାନାଚଚକ୍ଷେ ତୌ ଭ୍ରାତରୌ ସହ ସୀତୟା । ୧ ।
ତେ ରାମଂ ପର୍ଣଶାଲାୟାମୁପବିଷ୍ଟଂ ମହାବଳମ୍ ।
ଦଦୃଶୁଃ ସୀତୟା ସାର୍ଦ୍ଧଂ ବୈଦେହ୍ୟା ଲକ୍ଷ୍ମଣେନ ଚ । ୨ ।
ତାନ୍ ଦୃଷ୍ଟ୍ୱା ରାଘବଃ ଶ୍ରୀମାନାଗତାଂସ୍ତାଂ ଚ ରାକ୍ଷସୀମ୍ ।
ଅବ୍ରବୀଦ୍ଭ୍ରାତରଂ ରାମୋ ଲକ୍ଷ୍ମଣଂ ଦୀପ୍ତତେଜସମ୍ । ୩ ।
ମୁହୂର୍ତ୍ତଂ ଭବ ସୌମିତ୍ରେ ସୀତାୟାଃ ପ୍ରତ୍ୟନନ୍ତରଃ ।
ଇମାନସ୍ୟା ବଧିଷ୍ୟାମି ପଦବୀମାଗତାନିହ । ୪ ।
ବାକ୍ୟମେତତ୍ତତଃ ଶ୍ରୁତ୍ୱା ରାମସ୍ୟ ବିଦିତାତ୍ମନଃ ।
ତଥେତି ଲକ୍ଷ୍ମଣୋ ବାକ୍ୟଂ ରାମସ୍ୟ ପ୍ରତ୍ୟପୂଜୟତ୍ । ୫ ।
ରାଘବୋଽପି ମହଚ୍ଚାପଂ ଚାମୀକରବିଭୂଷିତମ୍ ।
ଚକାର ସଜ୍ୟଂ ଧର୍ମାତ୍ମା ତାନି ରକ୍ଷାଂସି ଚାବ୍ରବୀତ୍ । ୬ ।
ପୁତ୍ରୌ ଦଶରଥସ୍ୟାବାଂ ଭ୍ରାତରୌ ରାମଲକ୍ଷ୍ମଣୌ ।
ପ୍ରବିଷ୍ଟୌ ସୀତୟା ସାର୍ଦ୍ଧଂ ଦୁଶ୍ଚରଂ ଦଣ୍ଡକାବନମ୍ । ୭ ।

---

## ୨୦ଶ ସର୍ଗ

### ( ଚତୁର୍ଦ୍ଦଶ ରାକ୍ଷସଙ୍କର ବଧ)

ଅନନ୍ତର ଖର୍ବୀକୃତ ଶୂର୍ପଣଖା ରାମଙ୍କ ଆଶ୍ରମକୁ ଆସି ସୀତାଙ୍କ ସହିତସେ ଦୁଇ ଭାଇଙ୍କୁ ଚହ୍ନାଇଦେଲା ।୧। ସେମାନେ ମହାବଳୀ ରାମ ଓ ଲକ୍ଷ୍ମଣ ଦୁଇଭାଇଙ୍କୁ ବିଦେହ-ନନ୍ଦିନୀ ସୀତାଙ୍କ ସହିତ ପତ୍ରକୁଡ଼ିଆ ମଧ୍ୟରେ ବସିଥିବାର ଦେଖିଲେ ।୨। ରଘୁନନ୍ଦନ ଶ୍ରୀମାନ୍ ରାମ ସେହି ରାକ୍ଷସୀକୁ ରାକ୍ଷସ ମାନଙ୍କ ସହିତ ପୁଣି ଆସିବାର ଦେଖି ତେଜସ୍ୱୀଭ୍ରାତା ଲକ୍ଷ୍ମଣଙ୍କୁ କହିଲେ ।୩। "ହେ ସୌମିତ୍ରେ ! ତୁମେ ମୁହୂର୍ତ୍ତକ ପାଇଁ ସୀତାଙ୍କ ପାଖେ ପାଖେ ରହ । ମୁଁ ଏ ରାକ୍ଷସୀର ପିଛୁଧରି ଆସିଥିବା ଏହି ରାକ୍ଷସମାନଙ୍କୁ ସଂହାର କରି ଦେବି" ।୪। ଅନନ୍ତର ଲକ୍ଷ୍ମଣ ଆତ୍ମବିତ୍ ରାମଙ୍କ ବାକ୍ୟଶ୍ରବଣକରି 'ତଥାସ୍ତୁ'ବୋଲି କହି ତାଙ୍କ କଥା ଶିରୋଧାର୍ଯ୍ୟ କଲେ ।୫। ଧର୍ମାତ୍ମା ରାମ ସ୍ୱର୍ଣ୍ଣବିଭୂଷିତ ଧନୁରେ ଜ୍ୟାରୋପଣ କରି ସେହି ରାକ୍ଷସମାନଙ୍କୁ କହିଲେ ।୬। "ଆମେ ରାମ ଲକ୍ଷ୍ମଣ ଦୁଇ ଭାଇ ଦଶରଥଙ୍କର ପୁତ୍ର ଟୁଁ । ଆମେମାନେ ସୀତାଙ୍କ ସହିତ ଏହି ଦୁର୍ଗମ ଦଣ୍ଡକାରଣ୍ୟରେ ପ୍ରବେଶକରିଅଛୁଁ ।୭।

ଫଲମୂଲାଶନୌ ଦାନ୍ତୌ ତାପସୌ ଧର୍ମଚାରିଣୌ ।
ବସନ୍ତୌ ଦଣ୍ଡକାରଣ୍ୟେ କିମର୍ଥମୁପହିଂସଥ । ୮ ।
ଯୁଷ୍ମାନ୍ ପାପାତ୍ମକାନ୍ ହନ୍ତୁଂ ବିପ୍ରକାରାନ୍ ମହାହବେ ।
ଋଷୀଣାଂ ତୁ ନିୟୋଗେନ ପ୍ରାପ୍ତୋଽହଂ ସଶରାୟୁଧଃ । ୯ ।
ତିଷ୍ଠତୈବାତ୍ର ସଂତୁଷ୍ଟା ନୋପାବର୍ତ୍ତିତୁମର୍ହଥ ।
ଯଦି ପ୍ରାଣୈରିହାର୍ଥୋ ବା ନିବର୍ତ୍ତଧ୍ୱଂ ନିଶାଚରାଃ । ୧୦ ।
ତସ୍ୟ ତଦ୍‌ବଚନଂ ଶ୍ରୁତ୍ୱା ରାକ୍ଷସାସ୍ତେ ଚତୁର୍ଦ୍ଦଶ ।
ଊଚୁର୍ବାଚଂ ସୁସଂକ୍ରୁଦ୍ଧା ବ୍ରହ୍ମଘ୍ନାଃ ଶୂଲପାଣୟଃ । ୧୧ ।
କ୍ରୋଧମୁତ୍ପାଦ୍ୟ ନୋ ଭର୍ତ୍ତୁଃ ଖରସ୍ୟ ସୁମହାତ୍ମନଃ ।
ତ୍ୱମେବ ହାସ୍ୟସେ ପ୍ରାଣାନଦ୍ୟାସ୍ମାଭିର୍ହତୋ ଯୁଧି । ୧୨ ।
କା ହି ତେ ଶକ୍ତିରେକସ୍ୟ ବହୂନାଂ ରଣମୂର୍ଦ୍ଧନି ।
ଅସ୍ମାକମଗ୍ରତଃ ସ୍ଥାତୁଂ କିଂ ପୁନର୍ୟୋଦ୍ଧୁମାହବେ । ୧୩ ।
ଏହି ବାହୁପ୍ରଯୁକ୍ତୈର୍ନଃ ପରିଘୈଃ ଶୂଲପଟ୍ଟିଶୈଃ ।
ପ୍ରାଣାଂସ୍ତ୍ୟକ୍ଷ୍ୟସି ବୀର୍ଯ୍ୟଂ ଚ ଧନୁଶ୍ଚ କରପୀଡ଼ିତମ୍ । ୧୪ ।

---

ଆମେମାନେ ଫଳମୂଳାହାରୀ, ଜିତେନ୍ଦ୍ରିୟ, ଧର୍ମାଚାରୀ ତପସ୍ୱୀ ହୋଇ ଦଣ୍ଡକାରଣ୍ୟରେ ବାସକରୁଅଛୁଁ । ତୁମେମାନେ କାହିଁକି ଆମପ୍ରତି ହିଂସା ଆଚରଣ କରୁଛ ?।୮। ଏମନ୍ତ ବନରେ ଋଷିମାନଙ୍କ ଆଦେଶରେ ତୁମ ଭଳି ଦୁରାଚାରୀ ପାପାତ୍ମାମାନଙ୍କୁ ମହାଯୁଦ୍ଧରେ ହତ୍ୟାକରିବା ପାଇଁ ମୁଁ ଧନୁଶର ଧରି ଆସିଅଛି ।୯। ହେ ନିଶାଚରଗଣ ? ତୁମେମାନେ ସନ୍ତୁଷ୍ଟହୋଇ ସେହିଠାରେହିଁ ରହ, ଆଉ ମୋଆଡ଼କୁ ଅଗ୍ରସର ହୁଅନାହିଁ । ଯଦି ନିଜ ନିଜ ପ୍ରାଣରେ ପ୍ରୟୋଜନ ଥାଏ ତେବେ ଏ ହିଂସାକାର୍ଯ୍ୟରୁ କ୍ଷାନ୍ତ ହୁଅ" ।୧୦। ତାଙ୍କର ସେକଥା ଶୁଣି ସେହି ବ୍ରହ୍ମଘାତି ଶୂଳଧାରୀ ଚଉଦଜଣ ରାକ୍ଷସ କହିଲେ ।୧୧। "ତୁ ଆମମାନଙ୍କ ପ୍ରଭୁ ମହାତ୍ମା ଖରଙ୍କର କ୍ରୋଧ ଜାତକରାଇଅଛୁ, ସୁତରାଂ ଆଜି ଆମମାନଙ୍କଦ୍ୱାରା ଯୁଦ୍ଧରେ ନିହତ ହୋଇ ତୁ ନିଶ୍ଚୟ ପ୍ରାଣହରାଇବୁ ।୧୨। ତୁ ଏକାକୀ ଏବଂ ଆମେମାନେ ବହୁସଂଖ୍ୟାରେ, ଅତଏବ ରଣସ୍ଥଳରେ ଯୁଦ୍ଧ କରିବା ଦୂରେଥାଉ, ଆମମାନଙ୍କ ଆଗରେ ତୁ ଠିଆ ମଧ୍ୟ ହୋଇପାରିବୁ ନାହିଁ । ୧୩ । ତୁ ଆ, ଆମ୍ଭମାନଙ୍କର ଏହି ସମସ୍ତ ବାହୁପ୍ରେରିତ ପରିଘ ଶୂଳ ଓ ପଟ୍ଟିଶଦ୍ୱାରା ତୋତେ ପ୍ରାଣ, ବୀର୍ଯ୍ୟ ଏବଂ ହସ୍ତଧୃତ ଧନୁ ତ୍ୟାଗ କରିବାକୁ ହେବ" ।୧୪।

ଇତ୍ୟେବମୁକ୍ତ୍ୱା ସଂକ୍ରୁଦ୍ଧା ରାକ୍ଷସାସ୍ତେ ଚତୁର୍ଦଶ ।
ଉଦ୍ୟତାୟୁଧନିସ୍ତ୍ରିଂଶା ରାମମେବାଭିଦୁଦ୍ରୁବୁଃ । ୧୫ ।
ଚିକ୍ଷିପୁସ୍ତାନି ଶୂଲାନି ରାଘବଂ ପ୍ରତି ଦୁର୍ଜୟମ୍ ।
ତାନି ଶୂଲାନି କାକୁତ୍ସ୍ଥଃ ସମସ୍ତାନି ଚତୁର୍ଦଶ । ୧୬ ।
ତାବଦ୍ଭିରେବ ଚିଚ୍ଛେଦ ଶରୈଃ କାଞ୍ଚନଭୂଷଣୈଃ ।
ତତଃ ପଶ୍ଚାନ୍ମହାତେଜା ନାରାଚାନ୍ ସୂର୍ଯସଂନିଭାନ୍ । ୧୭ ।
ଜଗ୍ରାହ ପରମକ୍ରୁଦ୍ଧଶ୍ଚତୁର୍ଦଶ ଶିଲାଶିତାନ୍ ।
ଗୃହୀତ୍ୱା ଧନୁରାୟମ୍ୟ ଲକ୍ଷ୍ୟାନୁଦ୍ଦିଶ୍ୟ ରାକ୍ଷସାନ୍ ।୧୮।
ମୁମୋଚ ରାଘବୋ ବାଣାନ୍ ବଜ୍ରାନିବ ଶତକ୍ରତୁଃ ।
ତେ ଭିତ୍ତ୍ୱା ରକ୍ଷସାଂ ବେଗାଦ୍‌ବକ୍ଷାଂସି ରୁଧିରାପ୍ଲୁତାଃ । ୧୯ ।
ବିନିଷ୍ପେତୁସ୍ତଦା ଭୂମୌ ବଲ୍ମୀକାଦିବ ପନ୍ନଗାଃ ।
ତେ ଭିନ୍ନହୃଦୟା ଭୂମୌ ଛିନ୍ନମୂଳା ଇବ ଦ୍ରୁମାଃ । ୨୦ ।
ନିପେତୁଃ ଶୋଣିତାର୍ଦ୍ରାଙ୍ଗା ବିକୃତା ବିଗତାସବଃ ।
ତାନ୍ ଦୃଷ୍ଟ୍ୱା ପତିତାନ୍ ଭୂମୌ ରାକ୍ଷସୀ କ୍ରୋଧମୂର୍ଚ୍ଛିତା । ୨୧ ।
ପରିତ୍ରସ୍ତା ପୁନସ୍ତତ୍ର ବ୍ୟସୃଜଦ୍ଭୈରବସ୍ୱନାନ୍ ।
ସା ନଦନ୍ତୀ ମହାନାଦଂ ଜବାଚ୍ଛୂର୍ପଣଖା ପୁନଃ । ୨୨ ।

---

ସେହି ଚତୁର୍ଦ୍ଦଶ ରାକ୍ଷସ ଏହିପରି କହି ଅତିଶୟ କ୍ରୁଦ୍ଧ ହୋଇ ଆୟୁଧ ଏବଂ ଖଡ୍‌ଗ ଉତ୍ତୋଳନପୂର୍ବକ ରାମଙ୍କ ଆଡ଼କୁ ପ୍ରଧାବିତ ହେଲେ । ୧୫ । ସେମାନେ ଦୁର୍ଜ୍ଜୟ ରାମଙ୍କ ପ୍ରତି ସେହି ସମସ୍ତ ଶୂଳ ନିକ୍ଷେପ କଲେ । କାକୁତ୍ସ୍ଥ ରାମ ସେହି ଚତୁର୍ଦ୍ଦଶ ଶୂଳକୁ ସେତିକି ସଂଖ୍ୟକ ସ୍ୱର୍ଣ୍ଣଭୂଷିତ ଶରଦ୍ୱାରା କାଟି ପକାଇଲେ । ତଦନନ୍ତର ମହାତେଜା ରାମ କ୍ରୁଦ୍ଧହୋଇ ପଥରରେ ଘଷା ହୋଇଥିବା ସୂର୍ଯ୍ୟସଦୃଶ ଦୀପ୍ତିମାନ୍ ଚଉଦଟି ଶର ଗ୍ରହଣକଲେ । ଇନ୍ଦ୍ର ବଜ୍ର ନିକ୍ଷେପକଲା ପରି, ରାଘବ ଧନୁଉତ୍ତୋଳନପୂର୍ବକ ସେହି ରାକ୍ଷସମାନଙ୍କୁ ଲକ୍ଷ୍ୟ କରି ଶରମୋଚନ କଲେ । ସେହି ଶରରାଜି ଅତି ବେଗରେ ରାକ୍ଷସମାନଙ୍କର ବକ୍ଷଭେଦକରି ରକ୍ତାକ୍ତ ହୋଇ ଉଇହୁଙ୍କାଭିତରୁ ସାପ ବାହାରିଲା ପରି ଭୂମିରେ ଆସି ପଡ଼ିଲେ । ସେହି ରାକ୍ଷସମାନେ ଏହି ସକଳ ବାଣଦ୍ୱାରା ବିଦ୍ଧହୋଇ ରକ୍ତାକ୍ତ, ବିକୃତ ଓ ବିଗତପ୍ରାଣ ହୋଇ ଛିନ୍ନମୂଳ ବୃକ୍ଷପରି ଭୂପୃଷ୍ଠରେ ପତିତ ହେଲେ । ସେମାନଙ୍କୁ ଭୂତଳରେ ପତିତ ହେବାର ଦେଖି ରାକ୍ଷସୀ ପରିତ୍ରସ୍ତ ଏବଂ କ୍ରୋଧରେ ଅଧୀର ହୋଇ ସେଠାରେ ଘୋର ଚିତ୍କାର କରିବାକୁ ଲାଗିଲା । ଶୂର୍ପଣଖା

ଉପଗମ୍ୟ ଖରଂ ସା ତୁ କିଞ୍ଚିତ୍‌ସଂଶୁଷ୍କଶୋଣିତା ।
ପପାତ ପୁନରେବାର୍ତ୍ତା ସନିର୍ଯାସେବ ସଲ୍ଲକୀ ॥ ୨୩ ॥
ଭ୍ରାତୁଃ ସମୀପେ ଶୋକାର୍ତ୍ତା ସସର୍ଜ ନିନଦଂ ମୁହୁଃ ।
ସସ୍ୱରଂ ମୁମୁଚେ ବାଷ୍ପଂ ବିଷଣ୍ଣବଦନା ତଦା ॥ ୨୪ ॥
ନିପାତିତାନ୍ ଦୃଶ୍ୟ ରଣେ ତୁ ରାକ୍ଷସାନ୍
ପ୍ରଧାବିତା ଶୂର୍ପଣଖା ପୁନସ୍ତତଃ ।
ବଧଂ ଚ ତେଷାଂ ନିଖିଲେନ ରକ୍ଷସାମ୍
ଶଶଂସ ସର୍ବଂ ଭଗିନୀ ଖରସ୍ୟ ସା ॥ ୨୫ ॥

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ଚତୁର୍ଦ୍ଦଶରକ୍ଷୋବଧୋ ନାମ
ବିଂଶଃ ସର୍ଗଃ

---

ଘୋର ନାଦ କରି ପୁଣି ଅତିବେଗରେ ଖର ନିକଟରେ ଯାଇ; ଅତିକାତରଭାବରେ ରସପୂର୍ଣ୍ଣ ଲତାପରି ପଡ଼ିଗଲା । ସେତେବେଳକୁ ତାର ଶରୀରର ରକ୍ତ କେତେକ ପରିମାଣରେ ଶୁଖିଯାଇଥିଲା ।୧୬-୨୩ । ରାକ୍ଷସୀ ସେତେବେଳେ ଶୋକରେ କାତର ହୋଇ ଭ୍ରାତା ନିକଟରେ ବାରମ୍ବାର ଘୋର ଚିତ୍କାର କଲା ଏବଂ ବିଷଣ୍ଣ-ମୁଖରେ କାନ୍ଦିବାକୁ ଲାଗିଲା । ୨୪। ଖରର ଭଗିନୀ ଶୂର୍ପଣଖା ରାକ୍ଷସମାନଙ୍କୁ ଯୁଦ୍ଧରେ ନିପତିତ ହେବାର ଦେଖି ଅତିବେଗରେ ଦଉଡ଼ିଯାଇ ରାକ୍ଷସମାନେ ସମସ୍ତେ ନିହତ ହୋଇଥିବାର ତାକୁ ଜଣାଇଲା । ୨୫ ।

# ଏକବିଂଶଃ ସର୍ଗଃ

## ଖରସନ୍ଧୁକ୍ଷଣମ୍

ସ ପୁନଃ ପତିତାଂ ଦୃଷ୍ଟ୍ୱା କ୍ରୋଧାଚ୍ଛୂର୍ପଣଖାଂ ଖରଃ ।
ଉବାଚ ବ୍ୟକ୍ତୟା ବାଚା ତାମନର୍ଥାର୍ଥମାଗତାମ୍ । ୧ ।
ମୟା ତ୍ୱିଦାନୀଂ ଶୂରାସ୍ତେ ରାକ୍ଷସା ରୁଧିରାଶନାଃ ।
ତ୍ୱତ୍ପ୍ରିୟାର୍ଥଂ ବିନିର୍ଦ୍ଦିଷ୍ଟାଃ କିମର୍ଥଂ ରୁଦ୍ୟତେ ପୁନଃ । ୨ ।
ଭକ୍ତାଶ୍ଚୈବାନୁରକ୍ତାଶ୍ଚ ହିତାଶ୍ଚ ମମ ନିତ୍ୟଶଃ ।
ଘ୍ନନ୍ତୋଽପି ନ ନିହନ୍ତବ୍ୟା ନ ନ କୁର୍ୟୁର୍ବଚୋ ମମ । ୩ ।
କିମେତଚ୍ଛ୍ରୋତୁମିଚ୍ଛାମି କାରଣଂ ଯତ୍କୃତେ ପୁନଃ ।
ହା ନାଥେତି ବିନର୍ଦ୍ଦନ୍ତୀ ସର୍ପବଲ୍ଲୁଠସି କ୍ଷିତୌ । ୪ ।
ଅନାଥବଦ୍ ବିଲପସି ନାଥେ ତୁ ମୟି ସଂସ୍ଥିତେ ।
ଉତ୍ତିଷ୍ଠୋତ୍ତିଷ୍ଠ ମା ଭୈଷୀର୍ବୈକ୍ଳବ୍ୟଂ ତ୍ୟଜ୍ୟତାମିହ । ୫ ।
ଇତ୍ୟେବମୁକ୍ତା ଦୁର୍ଧର୍ଷା ଖରେଣ ପରିସାନ୍ତ୍ୱିତା ।
ବିମୃଜ୍ୟ ନୟନେ ସାସ୍ରେ ଖରଂ ଭ୍ରାତରମବ୍ରବୀତ୍ । ୬ ।

---

## ୨୧ଶ ସର୍ଗ

### ( ଖରକୁ ଶୂର୍ପଣଖାର ଉତ୍ତେଜନା )

ଅନର୍ଥ ଉଦ୍ଦେଶ୍ୟରେ ଆସିଥିବା ଶୂର୍ପଣଖାକୁ ପୁନର୍ବାର ଭୂତଳରେ ପତିତ ହେବାର ଦେଖି ଖର କ୍ରୋଧରେ ସ୍ପଷ୍ଟସ୍ୱରରେ କହିଲା । "ମୁଁ ତ ଏହିକ୍ଷଣି ତୋର ପ୍ରିୟସମ୍ପାଦନ ନିମନ୍ତେ ରକ୍ତପିପାସୁ ବୀର ରାକ୍ଷସମାନଙ୍କୁ ଆଦେଶ ଦେଇଅଛି; ତେବେ ତୁ ପୁଣି କାହିଁକି ରୋଦନ କରୁଛୁ ? । ୨। ସେହି ରାକ୍ଷସମାନେ ମୋର ଭକ୍ତ ଅନୁରକ୍ତ ଓ ସର୍ବଦା ହିତକାରୀ । ସେମାନଙ୍କୁ କିଏ ମାଇଲେ ମଧ୍ୟ ସେମାନେ କଦାପି ମରିବେ ନାହିଁ । ସେମାନେ ଯେ ମୋ କଥା ନ କରିବେ ଏପରି ନୁହେଁ । ୩ । ଅତଏବ କାହିଁକି ତୁ ପୁଣି 'ହା ନାଥ' ବୋଲି ଚିତ୍କାର କରି ସର୍ପବତ୍ ଭୂମିରେ ଲୁଣ୍ଠିତ ହେଉଛୁ । ଏହାର କାରଣ ମୁଁ ଶୁଣିବାକୁ ଇଚ୍ଛାକରେ । ୪ । ମୁଁ ତୋର ରକ୍ଷକ ଥାଉଁ ଥାଉଁ ତୁ କାହିଁକି ଅନାଥପରି ବିଳାପ କରୁଛୁ । ଉଠ, ଉଠ, ଭୟ କର ନାହିଁ, ଶୋକ ପରିତ୍ୟାଗ କର" ।୫। ଖର ଏହିପ୍ରକାର କହି ବିଶେଷ ସାନ୍ତ୍ୱନା ଦେବାରୁ ଶୂର୍ପଣଖା ଆଖି ଦୁଇଟିରୁ ଲୁହ ପୋଛିଦେଇ ଭାଇ ଖରକୁ କହିଲା । ୬ ।

ଅସ୍ମୀଦାନୀମହଂ ପ୍ରାପ୍ତା ହୃତଶ୍ରବଣନାସିକା ।
ଶୋଣିତୌଘପରିକ୍ଲିନ୍ନା ତ୍ୱୟା ଚ ପରିସାନ୍ତ୍ୱିତା । ୭ ।
ପ୍ରେଷିତାଶ୍ଚ ତ୍ୱୟା ବୀର ରାକ୍ଷସାସ୍ତେ ଚତୁର୍ଦ୍ଦଶ ।
ନିହନ୍ତୁଂ ରାଘବଂ କ୍ରୋଧାନ୍ମତ୍‌ପ୍ରିୟାର୍ଥଂ ସଲକ୍ଷ୍ମଣମ୍ । ୮ ।
ତେ ତୁ ରାମେଣ ସାମର୍ଷାଃ ଶୂଳପଟ୍ଟିଶପାଣୟଃ ।
ସମରେ ନିହତାଃ ସର୍ବେ ସାୟକୈର୍ମର୍ମଭେଦିଭିଃ । ୯ ।
ତାନ୍ ଦୃଷ୍ଟ୍ୱା ପତିତାନ୍ ଭୂମୌ କ୍ଷଣେନୈବ ମହାବଳାନ୍ ।
ରାମସ୍ୟ ଚ ମହତ୍କର୍ମ ମହାଂସ୍ତ୍ରାସୋଽଭବନ୍ମମ । ୧୦ ।
ଅହମସ୍ମି ସମୁଦ୍‌ବିଗ୍ନା ବିଷଣ୍ଣା ଚ ନିଶାଚର ।
ଶରଣଂ ତ୍ୱାଂ ପୁନଃ ପ୍ରାପ୍ତା ସର୍ବତୋଭୟଦର୍ଶିନୀ । ୧୧ ।
ବିଷାଦନକ୍ରାଧ୍ୟୁଷିତେ ପରିତ୍ରାସୋର୍ମିମାଳିନି ।
କିଂ ମାଂ ନ ତ୍ରାୟସେ ମଗ୍ନାଂ ବିପୁଳେ ଶୋକସାଗରେ । ୧୨ ।
ଏତେ ଚ ନିହତା ଭୂମୌ ରାମେଣ ନିଶିତୈଃ ଶରୈଃ ।
ଯେଽପି ମେ ପଦବୀଂ ପ୍ରାପ୍ତା ରାକ୍ଷସାଃ ପିଶିତାଶନାଃ । ୧୩ ।

---

*ମୋ ନାସା କର୍ଣ୍ଣ ଯାଇଛି ଏବଂ ମୁଁ ରକ୍ତରେ ବୁଡ଼ୁବୁଡ଼ୁ ହୋଇଛି । ଏହିପରି ଅବସ୍ଥାରେ ମୁଁ ଏଠାକୁ ଆସିଲି ଏବଂ ତୁମେ ବିଶେଷ ସାନ୍ତ୍ୱନା ଦେଲ ହିଁ । ୭ । ହେ ବୀର ! ତୁମେ ମୋର ପ୍ରିୟସାଧନ ନିମନ୍ତେ କ୍ରୋଧରେ ଲକ୍ଷ୍ମଣ ସହିତ ରାମକୁ ମାରିବାପାଇଁ ଚଉଦଟି ରାକ୍ଷସ ପଠାଇଥିଲ । ୮ । କିନ୍ତୁ ରାମ ମର୍ମଭେଦୀ ବାଣସମୂହଦ୍ୱାରା ଶୂଳ-ପଟ୍ଟିଶଧାରୀ କ୍ରୋଧପରାୟଣ ସେହି ରାକ୍ଷସମାନଙ୍କୁ ଯୁଦ୍ଧରେ ସଂହାର କରିଅଛି । । ୯ । ସେହି ମହାବଳୀ ରାକ୍ଷସମାନଙ୍କୁ ମୁହୂର୍ତ୍ତକ ମଧ୍ୟରେ ଭୂମିରେ ପତିତ ହେବାର ଦେଖି ଓ ରାମର ଏହି ଦୁଃସାଧ୍ୟ କାର୍ଯ୍ୟ ଦେଖି ମୋର ଅତ୍ୟନ୍ତ ଭୟ ଜାତ ହେଲା । । ୧୦ । ହେ ନିଶାଚର ! ମୁଁ ଅତ୍ୟୋଦ୍‌ବିଗ୍ନା ଉତ୍କଣ୍ଠିତା ଓ ବିଷଣ୍ଣା ହୋଇଅଛି ଏବଂ ମୋତେ ସବୁଆଡ଼େ ଭୟ ଦେଖାଯାଉଅଛି; ସୁତରାଂ ପୁଣି ଶରଣାର୍ଥେ ତୁମ ପାଖରେ ଆସି ଉପସ୍ଥିତ ହୋଇଅଛି।୧୧। ବିଷାଦରୂପ କୁମ୍ଭୀର ଏବଂ ମହାଭୟରୂପ ତରଙ୍ଗମାଳା-ପରିପୂର୍ଣ୍ଣ ସୁଗଭୀର ଶୋକସାଗରରେ ମୁଁ ନିମଗ୍ନ ହୋଇଅଛି । ତୁମେ ମୋତେ କାହିଁକି ଉଦ୍ଧାର କରୁ ନାହଁ । ୧୨। ଏଇ ଯେଉଁ ମାଂସାଶୀ ରାକ୍ଷସମାନେ ମୋ ପକ୍ଷର ହୋଇ ଯାଇଥିଲେ ସେମାନେ ରାମର ତୀକ୍ଷ୍ଣ ଶରରେ ନିହତ ହୋଇ ଭୂମିରେ

ମର୍ଷି ତେ ଯଦ୍ୟନୁକ୍ରୋଶୋ ଯଦି ରକ୍ଷଃସୁ ତେଷୁ ଚ ।
ରାମେଣ ଯଦି ତେ ଶକ୍ତିସ୍ତେଜୋ ବାସ୍ତି ନିଶାଚର । ୧୪ ।
ଦଣ୍ଡକାରଣ୍ୟନିଲୟଂ ଜହି ରାକ୍ଷସକଣ୍ଟକମ୍ ।
ଯଦି ରାମଂ ମମାମିତ୍ରଂ ନ ତ୍ୱମଦ୍ୟ ବଧିଷ୍ୟସି । ୧୫ ।
ତବ ଚୈବାଗ୍ରତଃ ପ୍ରାଣାଂସ୍ତ୍ୟକ୍ଷ୍ୟାମି ନିରପତ୍ରପା ।
ବୁଦ୍ଧ୍ୟାହମନୁପଶ୍ୟାମି ନ ତ୍ୱଂ ରାମସ୍ୟ ସଂଯୁଗେ । ୧୬ ।
ସ୍ଥାତୁଂ ପ୍ରତିମୁଖେ ଶକ୍ତଃ ସବଲୋଽପି ମହାରଣେ ।
ଶୂରମାନୀ ନ ଶୂରସ୍ତ୍ୱଂ ମିଥ୍ୟାରୋପିତବିକ୍ରମଃ । ୧୭ ।
ମାନୁଷୌ ଯୌ ନ ଶକ୍ନୋଷି ହନ୍ତୁଂ ତୌ ରାମଲକ୍ଷ୍ମଣୌ ।
ରାମେଣ ଯଦି ତେ ଶକ୍ତିସ୍ତେଜୋ ବାସ୍ତି ନିଶାଚର । ୧୮ ।
ଦଣ୍ଡକାରଣ୍ୟନିଲୟଂ ଜହି ତଂ କୁଳପାଂସନ ।
ନିଃସତ୍ତ୍ୱସ୍ୟାଳ୍ପବୀର୍ଯସ୍ୟ ବାସସ୍ତେ କୀଦୃଶସ୍ତ୍ୱିହ । ୧୯ ।
ଅପଯାହି ଜନସ୍ଥାନାତ୍ତ୍ୱରିତଃ ସହବାନ୍ଧବଃ ।
ରାମତେଜୋଽଭିଭୂତୋ ହି ତ୍ୱଂ କ୍ଷିପ୍ରଂ ବିନଶିଷ୍ୟସି । ୨୦ ।
ସ ହି ତେଜଃସମାଯୁକ୍ତୋ ରାମୋ ଦଶରଥାତ୍ମଜଃ ।
ଭ୍ରାତା ଚାସ୍ୟ ମହାବୀର୍ଯୋ ଯେନ ଚାସ୍ମି ବିରୂପିତା । ୨୧ ।

---

ପଦ୍ୟଛନ୍ଦ । ୧୩ । ହେ ନିଶାଚର ! ଯଦି ମୋ ପ୍ରତି ଓ ଏ ରାକ୍ଷସମାନଙ୍କ ପ୍ରତି ତୁମ୍ଭର ସହାନୁଭୂତି ଥାଏ ଏବଂ ରାମ ସହିତ ଯୁଦ୍ଧ କରିବା ପାଇଁ ତୁମ୍ଭର ଯଦି ତେଜ ଓ ଶକ୍ତି ଥାଏ ତେବେ ଦଣ୍ଡକାରଣ୍ୟବାସୀ ଏହି ରାକ୍ଷସଶତ୍ରୁ ରାମକୁ ବଧ କର । ତୁମେ ଯଦି ମୋର ସେହି ଶତ୍ରୁ ରାମକୁ ଆଜ ହତ୍ୟା ନ କରିବ ତେବେ ମୁଁ ନିଲଜ୍ଜା ହୋଇ ତୁମ ସମ୍ମୁଖରେ ପ୍ରାଣତ୍ୟାଗ କରିବି । ମୁଁ ଭାବିଚିନ୍ତି ଦେଖୁଛି ତୁମେ ସମସ୍ତ ସୈନ୍ୟ ସହିତ ମଧ୍ୟ ମହାଯୁଦ୍ଧରେ ରାମସମ୍ମୁଖରେ ଦଣ୍ଡାୟମାନ ହେବାକୁ ସମର୍ଥ ନୁହଁ । ତୁମେ ବୀର ବୋଲି ଅଭିମାନ କର ଏବଂ ମିଛରେ ବଳ ଦେଖାଇଥାଅ; ମାତ୍ର ପ୍ରକୃତରେ ବୀର ନୁହଁ । ତୁମେ ତ ରାମ ଲକ୍ଷ୍ମଣ ଦୁଇଟି ମନୁଷ୍ୟଙ୍କୁ ମାରି ପାରୁନାହଁ ! ହେ କୁଳକଳଙ୍କ ନିଶାଚର ! ତୁମ୍ଭର ଯଦି ରାମ ସହିତ ଲଢ଼ିବାକୁ ତେଜ ଓ ଶକ୍ତି ଥାଏ ତେବେ ସେହି ଦଣ୍ଡକାରଣ୍ୟବାସୀ ରାମକୁ ବଧକର । ତୁମେ ଯଦି ଏପରି ହୀନବୀର୍ଯ୍ୟ ଓ ଦୁର୍ବଳ, ତେବେ ତୁମେ କପରି ଏଠାରେ ବାସ କରି ରହି ପାରିବ ? ୧୪-୧୯ । ତୁମେ ବନ୍ଧୁବାନ୍ଧବଙ୍କ ସହିତ ଏ ଜନସ୍ଥାନରୁ ଅତିଶୀଘ୍ର ପଳାଇଯାଅ । ତାହା ନ ହେଲେ ରାମଙ୍କ ବଳରେ ଅଭିଭୂତ ହୋଇ ତୁମେ ଅତିଶୀଘ୍ର ବିନଷ୍ଟ ହେବ । । ୨୦ । ଦଶରଥନନ୍ଦନ ରାମ ଅତିଶୟ ତେଜସମ୍ପନ୍ନ ଏବଂ ତାଙ୍କ ଯେଉଁ ଭାଇ

ଏବଂ ବିଲପ୍ୟ ବହୁଶୋ ରାକ୍ଷସୀ ପ୍ରଦରୋଦରୀ ।
କରାଭ୍ୟାମୁଦରଂ ହତ୍ୱା ରୁରୋଦ ଭୃଶଦୁଃଖିତା । ୨୨ ।

ଇତ୍ୟାର୍ଷେ ଶ୍ରୀମଦ୍‌ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ଖରସନ୍ଧୁକ୍ଷଣମ୍ ନାମ
ଏକବିଂଶଃ ସର୍ଗଃ

---

ମୋତେ ବିରୂପ କରିଅଛି ସେ ମଧ୍ୟ ମହାବଳଶାଳୀ" । ୨୧ । ଗିରିଗୁହାସଦୃଶ ଉଦର-ବିଶିଷ୍ଟା ସେହି ଶୂର୍ପଣଖା ରାକ୍ଷସୀ ଏହିପରି ନାନାବିଧ ବିଳାପକରି ଓ ଅତିଶୟ ଦୁଃଖିତ ହୋଇ ପେଟରେ ଦୁଇହାତ ବାଡ଼େଇ କାନ୍ଦିବାକୁ ଲାଗିଲା । ୨୨

---

# ଦ୍ୱାବିଂଶଃ ସର୍ଗଃ

## ଖରସଂନାହଃ

ଏବମାଧର୍ଷିତ୍ରଃ ଶୂରଃ ଶୂର୍ପଣଖ୍ୟା ଖରସ୍ତଦା ।
ଉବାଚ ରକ୍ଷସାଂ ମଧ୍ୟେ ଖରଃ ଖରତରଂ ବଚଃ । ୧ ।
ତ୍ୱଦବମାନପ୍ରଭବଃ କ୍ରୋଧୋଽୟମତୁଲୋମମ ।
ନ ଶକ୍ୟତେ ଧାରୟିତୁଂ ଲବଣାମ୍ଭ ଇବୋତ୍ଥିତମ୍ । ୨ ।
ନ ରାମଂ ଗଣୟେ ବୀର୍ଯ୍ୟାନ୍ମାନୁଷଂ କ୍ଷୀଣଜୀବିତମ୍ ।
ଆତ୍ମଦୁଶ୍ଚରିତୈଃ ପ୍ରାଣାନ୍ ହତୋ ଯୋଽଦ୍ୟ ବିମୋକ୍ଷ୍ୟତେ ।୩।
ବାଷ୍ପଃ ସଂହ୍ରିୟତାମେଷ ସମ୍ଭ୍ରମଶ୍ଚ ବିମୁଚ୍ୟତାମ୍ ।
ଅହଂ ରାମଂ ସହ ଭ୍ରାତ୍ରା ନୟାମି ଯମସାଦନମ୍ । ୪ ।
ପରଶ୍ୱଧହତସ୍ୟାଦ୍ୟ ମନ୍ଦପ୍ରାଣସ୍ୟ ସଂଯୁଗେ ।
ରାମସ୍ୟ ରୁଧିରଂ ରକ୍ତମୁଷ୍ଣଂ ପାସ୍ୟସି ରାକ୍ଷସି । ୫ ।
ସା ପ୍ରହୃଷ୍ଟା ବଚଃ ଶ୍ରୁତ୍ୱା ଖରସ୍ୟ ବଦନାଚ୍ୟୁତମ୍ ।
ପ୍ରଶଶଂସ ପୁନର୍ମୌର୍ଖ୍ୟାଦ୍ଭ୍ରାତରଂ ରକ୍ଷସାଂ ବରମ୍ । ୬ ।
ତୟା ପରୁଷିତଃ ପୂର୍ବଂ ପୁନରେବ ପ୍ରଶଂସିତଃ ।
ଅବ୍ରବୀଦ୍ଦୂଷଣଂ ନାମ ଖରଃ ସେନାପତିଂ ତଦା । ୭ ।

---

## ୨୨ଶ ସର୍ଗ
### ( ଖରର ଯୁଦ୍ଧଯାତ୍ରା )

ସାର ଖର ଶୂର୍ପଣଖାଦ୍ୱାରା ଏହିପରିଭାବରେ ତିରସ୍କୃତ ହୋଇ ରାକ୍ଷସମାନଙ୍କ ମଧ୍ୟରେ କଠୋର ବାକ୍ୟରେ କହିଲା । ୧ । "ତୋର ଅପମାନରେ ମୋର ଯେ କ୍ରୋଧ ହୋଇଅଛି, ତାହାର ତୁଳନା ନାହିଁ । ବିକ୍ଷୋଭିତ ଲବଣ ସମୁଦ୍ରପରି ମୁଁ ତାହାକୁ ସମ୍ଭାଳି ପାରୁ ନାହିଁ ।୨। କ୍ଷୀଣଜୀବୀ ମନୁଷ୍ୟ ରାମକୁ ମୁଁ ନିଜର ବୀର୍ଯ୍ୟବଳଦୃଷ୍ଟିରୁ ଆଦୌ ଖାତିର କରୁ ନାହିଁ । ସେ ଆଜ ନିଜର ଦୁଷ୍କାର୍ଯ୍ୟହେତୁରୁ ନିହତ ହୋଇ ପ୍ରାଣତ୍ୟାଗ କରିବ ।୩। ତୁ ଲୋତକ ସମ୍ବରଣକର, ଉଦ୍ବେଗ ପରିତ୍ୟାଗ କର । ମୁଁ ଭାଇ ସହିତ ରାମକୁ ଯମପୁରକୁ ନେଇଯିବି । । ହେ ରାକ୍ଷସି ! ଆଜ ଯୁଦ୍ଧରେ ମୋର ପରଶୁଦ୍ୱାରା ନିହତ ସେହି କ୍ଷୁଦ୍ରପ୍ରାଣ ରାମର ଲୋହିତ ଉଷ୍ଣରକ୍ତ ତୁ ପାନକରିବୁ" ।୫ । ଖରମୁଖରୁ ନିର୍ଗତ ଏହି ବଚନ ଶ୍ରବଣ କରି ଶୂର୍ପଣଖା ଅତିଶୟ ଆନନ୍ଦିତ ହୋଇ ମୂର୍ଖତାହେତୁରୁ ତା'ର ଭାଇ ରାକ୍ଷସଶ୍ରେଷ୍ଠ ଖରର ପ୍ରଶଂସା କରିବାକୁ ଲାଗିଲା ।୬। ଖର ଶୂର୍ପଣଖାଦ୍ୱାରା ପ୍ରଥମେ ତିରସ୍କୃତ ଏବଂ ପରେ ପ୍ରଶଂସିତ ହୋଇ ଦୂଷଣ ନାମକ

ଚତୁର୍ଦ୍ଦଶସହସ୍ରାଣି ମମ ଚିତ୍ତାନୁବର୍ତ୍ତିନାମ୍ ।
ରକ୍ଷସାଂ ଭୀମବେଗାନାଂ ସମରେଷ୍ୱନିବର୍ତ୍ତିନାମ୍ । ୮ ।
ନୀଲଜୀମୂତବର୍ଣ୍ଣାନାଂ ଘୋରାଣାଂ କ୍ରୂରକର୍ମ୍ମଣାମ୍ ।
ଲୋକହିଂସାବିହାରାଣାଂ ବଳିନାମୁଗ୍ରତେଜସାମ୍ । ୯ ।
ତେଷାଂ ଶାର୍ଦ୍ଦୂଳଦର୍ପାଣାଂ ମହାସ୍ୟାନାଂ ମହୌଜସାମ୍ ।
ସର୍ବୋଦ୍ୟୋଗମୁଦୀର୍ଣ୍ଣାନାଂ ରକ୍ଷସାଂ ସୌମ୍ୟ କାରୟ । ୧୦ ।
ଉପସ୍ଥାପୟ ମେ କ୍ଷିପ୍ରଂ ରଥଂ ସୌମ୍ୟ ଧନୂଂଷି ଚ ।
ଶରାଂଶ୍ଚିତ୍ରାଂଶ୍ଚ ଖଡ୍‌ଗଶ୍ଚ ଶକ୍ତୀଶ୍ଚ ବିବିଧାଃ ଶିତାଃ । ୧୧।
ଅଗ୍ରେ ନିର୍ଯ୍ୟାତୁମିଚ୍ଛାମି ପୌଲସ୍ତ୍ୟାନାଂ ମହାତ୍ମନାମ୍ ।
ବଧାର୍ଥଂ ଦୁର୍ବ୍ବିନୀତସ୍ୟ ରାମସ୍ୟ ରଣକୋବିଦଃ । ୧୨ ।
ଇତି ତସ୍ୟ ବ୍ରୁବାଣସ୍ୟ ସୂର୍ଯ୍ୟବର୍ଣ୍ଣଂ ମହାରଥମ୍ ।
ସଦଶ୍ୱୈଃ ଶବଳୈର୍ଯୁକ୍ତମାଚଚକ୍ଷେଽଥ ଦୂଷଣଃ । ୧୩।
ତଂ ମେରୁଶିଖରାକାରଂ ତପ୍ତକାଞ୍ଚନଭୂଷଣମ୍ ।
ହେମଚକ୍ରମସଂବାଧଂ ବୈଦୂର୍ଯ୍ୟମୟକୂବରମ୍ । ୧୪ ।

---

ସେନାପତିଙ୍କୁ କହିଲା । ୭ । "ହେ ସୌମ୍ୟ ! ଯେଉଁମାନେ ସବୁବେଳେ ମୋର ମନମୁତାବକ କାର୍ଯ୍ୟ ଅନୁଷ୍ଠାନ କରନ୍ତି, ଯେଉଁମାନେ ଯୁଦ୍ଧରେ କେବେ ପଛଘୁଞ୍ଚା ଦିଅନ୍ତି ନାହିଁ, ଯେଉଁମାନେ ପ୍ରାଣିହିଂସାଦ୍ୱାରା ସର୍ବଦା କ୍ରୀଡ଼ା କରୁଥାଆନ୍ତି, ଯାହାଙ୍କର ବେଗ ଅତିଭୟଙ୍କର ଏବଂ ଯେଉଁମାନଙ୍କର ବର୍ଣ୍ଣ ନୀଳମେଘ ପରି, ସେହିପରି ଚତୁର୍ଦ୍ଦଶ ସହସ୍ର ଶାର୍ଦ୍ଦୂଳସଦୃଶ ଦର୍ପସମ୍ପନ୍ନ ମହାତେଜା ବିଶାଳମୁଖ ଏବଂ ସକଳ ପ୍ରକାର ଉଦ୍‌ଯୋଗସମ୍ପନ୍ନ ରାକ୍ଷସଙ୍କୁ ପ୍ରସ୍ତୁତ କରାଅ । ୮-୧୦ । ହେ ସୌମ୍ୟ ! ଅତିଶୀଘ୍ର ମୋର ରଥ, ଧନୁ,ବିଚିତ୍ର ଶର,ଖଡ୍‌ଗ ଏବଂ ବିବିଧ ତୀକ୍ଷ୍ଣ ଶକ୍ତିମାନ ଏଠାକୁ ଅଣାଅ । ୧୧ । ଯୁଦ୍ଧନିପୁଣ ମୁଁ ଦୁର୍ବ୍ବିନୀତ ରାମର ବଧ ନିମନ୍ତେ ମହାତ୍ମା ପୌଲସ୍ତ୍ୟ-ପୁତ୍ର ରାକ୍ଷସମାନଙ୍କର ପୁରୋଗାମୀ ହୋଇ ଯାତ୍ରା କରିବାକୁ ଇଚ୍ଛାକରୁଛି ।" ୧୨ । ଖର ଏହି କଥା କହୁ କହୁ ଦୂଷଣ ବିଚିତ୍ରବର୍ଣ୍ଣ ଉତ୍କୃଷ୍ଟ ଅଶ୍ୱଯୁକ୍ତ ଓ ସୂର୍ଯ୍ୟସମାନ ବର୍ଣ୍ଣବିଶିଷ୍ଟ ଏକ ମହାରଥ ଆଣି ତାହା ସମକ୍ଷରେ ନିବେଦନ କଲା । ୧୩ । ଏହି ରଥର ଆକାର ମେରୁପର୍ବତର ଶୃଙ୍ଗପରି, ଭୂଷଣସକଳ ତପ୍ତକାଞ୍ଚନମୟ, ଚକ୍ର ସକଳ ସ୍ୱର୍ଣ୍ଣମୟ ଏବଂ ଏହାର ରଥଦଣ୍ଡ ବୈଦୂର୍ଯ୍ୟ ମଣିରେ ଭୂଷିତ । ମତ୍ସ୍ୟ, ପୁଷ୍ପ,

ମତ୍ସ୍ୟୈଃ ପୁଷ୍ପୈର୍ଦ୍ରୁମୈଃ ଶୈଳୈଶ୍ଚନ୍ଦ୍ରସୂର୍ଯ୍ୟୈଶ୍ଚ କାଞ୍ଚନୈଃ ।
ମଙ୍ଗଳୈଃ ପକ୍ଷିସଙ୍ଘୈଶ୍ଚ ତାରାଭିରଭିସଂବୃତମ୍ । ୧୫ ।
ଧ୍ୱଜନିସ୍ତ୍ରିଂଶସଂପନ୍ନଂ କିଙ୍କିଣୀକବରାଜିତମ୍ ।
ସଦଶ୍ୱଯୁକ୍ତଂ ସୋଽମର୍ଷାଦାରୁରୋହ ଖରୋ ରଥମ୍ । ୧୬ ।
ନିଶାମ୍ୟ ତୁ ରଥସ୍ଥଂ ତଂ ରାକ୍ଷସା ଭୀମବିକ୍ରମାଃ ।
ତସ୍ଥୁଃ ସଂପରିବାର୍ଯ୍ୟୈନଂ ଦୂଷଣଂ ଚ ମହାବଲମ୍ । ୧୭ ।
ଖରସ୍ତୁ ତାନ୍ ମହେଷ୍ୱାସାନ୍ ଘୋରବର୍ମାୟୁଧଧ୍ୱଜାନ୍ ।
ନିର୍ଯାତେତ୍ୟବ୍ରବୀଦ୍ଧୃଷ୍ଟୋ ରଥସ୍ଥଃ ସର୍ବରାକ୍ଷସାନ୍ । ୧୮ ।
ତତସ୍ତଦ୍ରାକ୍ଷସଂ ସୈନ୍ୟଂ ଘୋରଚର୍ମାୟୁଧଧ୍ୱଜମ୍ ।
ନିର୍ଜଗାମ ଜନସ୍ଥାନାନ୍ମହାନାଦଂ ମହାଜବମ୍ । ୧୯ ।
ମୁଦ୍‌ଗରୈଃ ପଟ୍ଟିଶୈଃ ଶୂଳୈଃ ସୁତୀକ୍ଷ୍ଣୈଶ୍ଚ ପରଶ୍ୱଧୈଃ ।
ଖଡ୍‌ଗୈଶ୍ଚକ୍ରୈଶ୍ଚ ହସ୍ତସ୍ଥୈର୍ଭ୍ରାଜମାନୈଶ୍ଚ ତୋମରୈଃ ।୨୦।
ଶକ୍ତିଭିଃ ପରିଘୈର୍ଘୋରୈରତିମାତ୍ରୈଶ୍ଚ କାର୍ମୁକୈଃ ।
ଗଦାସିମୁଷଲୈର୍ବଜ୍ରୈର୍ଗୃହୀତୈର୍ଭୀମଦର୍ଶନୈଃ । ୨୧।
ରାକ୍ଷସାନାଂ ସୁଘୋରାଣାଂ ସହସ୍ରାଣି ଚତୁର୍ଦଶ ।
ନିର୍ଯାତାନି ଜନସ୍ଥାନାତ୍ ଖରଚିତ୍ତାନୁବର୍ତ୍ତିନାମ୍ । ୨୨ ।

---

ଦ୍ରୁମ, ଶୈଳ, ଚନ୍ଦ୍ର, ସୂର୍ଯ୍ୟ, ପକ୍ଷିପଂକ୍ତି ଓ ତାରାଗଣ ସୁନାରେ ତିଆରି ହୋଇ ଏଥିରେ ମଙ୍ଗଳଚିହ୍ନସ୍ୱରୂପ ଖଞ୍ଜାଯାଇଛି । ଏଥିରେ ଧ୍ୱଜା ଓ ଖଡ୍‌ଗମାନ ଖଞ୍ଜା ହୋଇଛି ଏବଂ ଘଣ୍ଟିମାନ ବନ୍ଧାଯାଇଛି । ଉତ୍କୃଷ୍ଟ ଘୋଡ଼ାମାନେ ଏଥିରେ ଯୋଚ୍ଚ ହୋଇଛନ୍ତି । ଖର କ୍ରୋଧରେ ତମ ତମ ହୋଇ ଯାଇ ଏହି ପ୍ରକାର ରଥରେ ଆରୋହଣ କଲା । ୧୪-୧୬ । ସେ ରଥରେ ବସିବାର ଦେଖି ଭୀମପରାକ୍ରମୀ ରାକ୍ଷସମାନେ ତାକୁ ଓ ମହାବଳୀ ଦୂଷଣକୁ ଘେରିଆଡ଼େ ଘେରି ଠିଆହେଲେ । ୧୭ । ଖର ମଧ୍ୟ ରଥରେ ବସି ଅତିଧୃଷ୍ଟଭାବରେ ମହାଧନୁର୍ଦ୍ଧାରୀ ବର୍ମ୍ମ ଅସ୍ତ୍ର ଏବଂ ଧ୍ୱଜସମ୍ପନ୍ନ ଘୋରାକୃତି ସେହି ରାକ୍ଷସମାନଙ୍କୁ "ଚାଲ" ବୋଲି ଆଦେଶ ଦେଲା । ୧୮ । ଅନନ୍ତର ସେହି ଭୀଷଣ ବର୍ମ ଆୟୁଧ ଓ ଧ୍ୱଜଯୁକ୍ତ ରାକ୍ଷସସେନା ମହାନାଦ କରି ଅତିବେଗରେ ଜନସ୍ଥାନରୁ ନିର୍ଗତ ହେଲେ । ୧୯ । ଏହାପରେ ଖରର ଆଜ୍ଞାନୁବର୍ତ୍ତୀ ଘୋରାକୃତି ଚଉଦ ହଜାର ରାକ୍ଷସ ମୁଦ୍‌ଗର, ପଟ୍ଟିଶ, ସୁତୀକ୍ଷ୍ଣ ଶୂଳ, ପରଶ୍ୱଧ, ଖଡ଼୍‌ଗ, ଚକ୍ର, ସୁଶୋଭିତ ବାଣ, ତୋମର, ଶକ୍ତି, ପରିଘ, ଅତିଭୟଙ୍କର କାର୍ମୁକ, ଗଦା, ଅସି, ମୂଷଳ ଓ ଭୟଙ୍କର ବଜ୍ର ଇତ୍ୟାଦି ଅସ୍ତ୍ରଶସ୍ତ୍ର ଧରି ଜନସ୍ଥାନରୁ

ତାଂସ୍ତୁ ବିଦ୍ରବତୋ ଦୃଷ୍ଟ୍ୱା ରାକ୍ଷସାନ୍ ଭୀମବିକ୍ରମାନ୍ ।
ଖରସ୍ୟାପି ରଥଃ କିଞ୍ଚିଜ୍ଜଗାମ ତଦନନ୍ତରମ୍ । ୨୩ ।
ତତସ୍ତାନ୍ ଶବଲାନଶ୍ୱାଂସ୍ତପ୍ତକାଞ୍ଚନଭୂଷିତାନ୍ ।
ଖରସ୍ୟ ମତମାଜ୍ଞାୟ ସାରଥିଃ ସମଚୋଦୟତ୍ । ୨୪ ।
ସ ଚୋଦିତୋ ରଥଃ ଶୀଘ୍ରଂ ଖରସ୍ୟ ରିପୁଘାତିନଃ
ଶବ୍ଦେନାପୂରୟାମାସ ଦିଶଶ୍ଚ ପ୍ରଦିଶସ୍ତଥା । ୨୫ ।
ପ୍ରବୃଦ୍ଧମନ୍ୟୁସ୍ତୁ ଖରଃ ଖରସ୍ୱନୋ
ରିପୋର୍ବଧାର୍ଥଂ ତ୍ୱରିତୋ ଯଥାନ୍ତକଃ ।
ଅଚୂଚୁଦତ୍ସାରଥିମୁନ୍ନଦନ୍ ଘନମ୍
ମହାବଲୋ ମେଘ ଇବାଶ୍ମବର୍ଷବାନ୍ । ୨୬ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ଖରସଂନାଦୋ ନାମ
ଦ୍ୱାବିଂଶଃ ସର୍ଗଃ

---

ନିର୍ଗତ ହେଲେ । ୨୦ ୨୨ । ସେହି ଭୀମପରାକ୍ରମୀ ରାକ୍ଷସମାନଙ୍କୁ ଧାବମାନ ହେବାର ଦେଖି ଖରର ରଥ ତା'ର ଟିକିଏ ପଛରେ ଯାଆନ୍ତିକଲା । ୨୩ । ଅନନ୍ତର ସାରଥି ଖରର ଅଭିମତ ଜାଣି ବିଚିତ୍ରବର୍ଣ୍ଣ ସ୍ୱର୍ଣ୍ଣଭୂଷିତ ଅଶ୍ୱମାନଙ୍କୁ ଚାଳନାକଲା । ୨୪ । ସେତେବେଳେ ରିପୁଘାତୀ ଖରର ରଥ ସଞ୍ଚାଳିତ ହୋଇ ସ୍ୱୀୟ ଶବ୍ଦରେ ତତ୍‌କ୍ଷଣାତ୍ ଦିଗ୍‌ବିଦିଗ୍ ପୂର୍ଣ୍ଣ କରିଦେଲା । ୨୫ । ଅନନ୍ତର କ୍ରୋଧାନ୍ଧ ପ୍ରଖରସ୍ୱର ଯମପ୍ରତିମ ସେହି ଖର ରିପୁବଧ ନିମନ୍ତେ ତ୍ୱରମାଣ ହୋଇ କରକାବର୍ଷୀ ମହାମେଘ-ସଦୃଶ ଧ୍ୱନି କରି ସାରଥିକୁ ପ୍ରଚୋଦିତ କଲା । ୨୬ ।

# ତ୍ରୟୋବିଂଶଃ ସର୍ଗଃ

## ଉତ୍ପାତଦର୍ଶନମ୍

ତସ୍ମିନ୍ ଯାତେ ଜନସ୍ଥାନାଦଶିବଂ ଶୋଣିତୋଦକମ୍ ।
ଅଭ୍ୟବର୍ଷନ୍ମହାମେଘସ୍ତୁମୁଲୋ ଗର୍ଦ୍ଦଭାରୁଣଃ । ୧ ।
ନିପେତୁ ସ୍ତୁରଗାସ୍ତସ୍ୟ ରଥଯୁକ୍ତା ମହାଜବାଃ ।
ସମେ ପୁଷ୍ପଚିତେ ଦେଶେ ରାଜମାର୍ଗେ ଯଦୃଚ୍ଛୟା । ୨ ।
ଶ୍ୟାମଂ ରୁଧିରପର୍ଯ୍ୟନ୍ତଂ ବଭୂବ ପରିବେଷଣମ୍ ।
ଅଲାତଚକ୍ରପ୍ରତିମଂ ପରିଗୃହ୍ୟ ଦିବାକରମ୍ । ୩ ।
ତତୋ ଧ୍ୱଜମୁପାଗମ୍ୟ ହେମଦଣ୍ଡଂ ସମୁଚ୍ଛ୍ରିତମ୍ ।
ସମାକ୍ରମ୍ୟ ମହାକାୟସ୍ତସ୍ଥୌ ଗୃଧ୍ରଃ ସୁଦାରୁଣଃ । ୪ ।
ଜନସ୍ଥାନସମୀପେ ତୁ ସମାଗମ୍ୟ ଖରସ୍ୱନାଃ
ବିସ୍ୱରାନ୍ ବିବିଧାଂଶ୍ଚକ୍ରୁର୍ମାଂସାଦା ମୃଗପକ୍ଷିଣଃ । ୫ ।
ବ୍ୟାଜହ୍ରୁଶ୍ଚ ପ୍ରଦୀପ୍ତାୟାଂ ଦିଶି ବୈ ଭୈରବସ୍ୱନମ୍ ।
ଅଶିବଂ ଯାତୁଧାନାନାଂ ଶିବା ଘୋରା ମହାସ୍ୱନାଃ । ୬ ।

---

## ୨୩ଶ ସର୍ଗ

### ( ଉତ୍ପାତଦର୍ଶନ )

ଖର ଜନସ୍ଥାନରୁ ଯାତ୍ରା କରିବା ପରେ ଗର୍ଦ୍ଦଭସଦୃଶ ଧୂସରବର୍ଣ୍ଣ ବିଶାଳ ମେଘଖଣ୍ଡ ଉଥିତ ହୋଇ ଭୁମୂଳ ନାଦ କରି ରକ୍ତମିଶ୍ରିତ ଜଳବୃଷ୍ଟି କରିବାକୁ ଲାଗିଲା । ୧ । ତାଙ୍କ ରଥରେ ଯେଉଁ ଦ୍ରୁତଗାମୀ ଅଶ୍ୱମାନେ ଯୋଚ୍ଚ ହୋଇଥିଲେ ସେମାନେ ରାଜମାର୍ଗରେ ଯାଉଥିବାବେଳେ ହଠାତ୍ ପୁଷ୍ପଯୁକ୍ତ ସମତଳ ଭୂମିରେ ପଡ଼ିଗଲେ । ୨ । ସୂର୍ଯ୍ୟ ଶ୍ୟାମଳବର୍ଣ୍ଣ ଅଲାତଚକ୍ରସଦୃଶ ବର୍ତ୍ତୁଳାକାର ମଣ୍ଡଳଦ୍ୱାରା ପରିବେଷ୍ଟିତ ହେଲେ ଏବଂ ଏହାର ପ୍ରାନ୍ତଦେଶ ରକ୍ତବର୍ଣ୍ଣ ଦେଖାଗଲା । ୩ । ଅନନ୍ତର ବିଶାଳକାୟ ଭୟଙ୍କର ଗୃଧ୍ର ଅତି ଉନ୍ନତ ସ୍ୱର୍ଣ୍ଣମୟ ରଥଧ୍ୱଜ ନିକଟକୁ ଆସି ତାହାକୁ ଆବୋରି ରହିଲା । ୪ । ବିକଟଶବ୍ଦକାରୀ ମାଂସଭୋଜୀ ପଶୁ ଓ ପକ୍ଷୀମାନେ ଜନସ୍ଥାନ ନିକଟରେ ଏକତ୍ର ହୋଇ ନାନାପ୍ରକାର ବିକଟ ଚିତ୍କାର କରିବାକୁ ଲାଗିଲେ ।୫। ମହାଭୟଙ୍କର ଶବ୍ଦକାରୀ ଶୃଗାଳମାନେ ସୂର୍ଯ୍ୟତେଜୋଦୀପ୍ତ ପୂର୍ବ ଦିଗରେ ରାକ୍ଷସମାନଙ୍କର ଅମଙ୍ଗଳସୂଚକ ଭୟଙ୍କର ଶବ୍ଦ କରିବାକୁ ଲାଗିଲେ ।୬।

ପ୍ରଭିନ୍ନଗିରିସଂକାଶାସ୍ତୋୟଶୋଣିତଧାରିଣଃ ।
ଆକାଶଂ ତଦନାକାଶଂ ଚକ୍ରୁର୍ଭୀମା ବଲାହକାଃ ।୭।
ବଭୂବ ତିମିରଂ ଘୋରମୁଦ୍ଧତଂ ରୋମହର୍ଷଣମ୍ ।
ଦିଶୋ ବା ବିଦିଶୋ ବାପି ନ ଚ ବ୍ୟକ୍ତଂ ଚକାଶିରେ ।୮।
କ୍ଷତଜାର୍ଦ୍ରସବର୍ଣାଭା ସନ୍ଧ୍ୟାକାଲଂ ବିନା ବଭୌ ।
ଖରସ୍ୟାଭିମୁଖା ନେଦୁସ୍ତଦା ଘୋରମୃଗାଃ ଖଗାଃ ।୯।
କଙ୍କଗୋମାୟୁଗୃଧ୍ରାଶ୍ଚ ଚୁକ୍ରୁଶୁର୍ଭୟଶଂସିନଃ ।
ନିତ୍ୟାଶିବକରା ଯୁଦ୍ଧେ ଶିବା ଘୋରନିଦର୍ଶନାଃ ।୧୦।
ନେଦୁର୍ବଲସ୍ୟାଭିମୁଖଂ ଜ୍ୱାଲୋଦ୍ଗାରିଭିରାନନୈଃ ।
କବନ୍ଧ ପରିଘାଭାସୋ ଦୃଶ୍ୟତେ ଭାସ୍କରାନ୍ତିକେ ।୧୧।
ଜଗ୍ରାହ ସୂର୍ଯ୍ୟଂ ସ୍ୱର୍ଭାନୁରପର୍ବଣି ମହାଗ୍ରହଃ ।
ପ୍ରବାତି ମାରୁତଃ ଶୀଘ୍ରଂ ନିଷ୍ପ୍ରଭୋଽଭୂଦ୍ଦିବାକରଃ ।୧୨।
ଉତ୍ପେତୁଶ୍ଚ ବିନା ରାତ୍ରିଂ ତାରାଃ ଖଦ୍ୟୋତସପ୍ରଭାଃ ।
ସଂଲୀନମୀନବିହଗା ନଳିନ୍ୟଃ ଶୁଷ୍କପଙ୍କଜାଃ ।୧୩।

---

ଭଗ୍ନ ଗିରିଖଣ୍ଡସଦୃଶ ଭୀଷଣ ମେଘରାଶି ରକ୍ତରୂପ ଜଳ ବହନ କରି ସମଗ୍ର ଆକାଶକୁ ସମ୍ପୂର୍ଣ୍ଣରୂପେ ଅଚ୍ଛନ୍ନ କରି ପକାଇଲେ ।୭। ଲୋମହର୍ଷଣକାରୀ ଅନ୍ଧକାର ଏପରି ନିବିଡ଼ଭାବରେ ଅଚ୍ଛନ୍ନ ହୋଇଗଲା ଯେ ଦିଗ ବା ବିଦିଗ ସ୍ପଷ୍ଟଭାବରେ ଦେଖାଗଲା ନାହିଁ ।୮। ସନ୍ଧ୍ୟା ରକ୍ତାକ୍ତମୂର୍ତ୍ତିଧାରଣ କରି ଅକାଳରେ ପ୍ରକାଶିତ ହେଲା । ଭୟଙ୍କର ପଶୁ ଓ ପକ୍ଷୀମାନେ ଖର ଅଭିମୁଖରେ ମୁହଁ କରି ଚିତ୍କାର କରିବାକୁ ଲାଗିଲେ ।୯। ସତତ ଅମଙ୍ଗଳସୂଚକ କଙ୍କ, ଶୃଗାଳ ଏବଂ ଗୃଧ୍ରମାନେ ବିକଟରୂପ ଦେଖାଇ ମୁଖରୁ ଅଗ୍ନିସ୍ଫୁରଣପୂର୍ବକ ସୈନ୍ୟଙ୍କ ଆଡ଼କୁ ରହିଁ ସେମାନଙ୍କର ଭୟୋତ୍ପାଦନକାରୀ ବିକଟଚିତ୍କାର କରିବାକୁ ଲାଗିଲେ । ସୂର୍ଯ୍ୟଙ୍କ ନିକଟରେ ପରିଘାକାର କବନ୍ଧ ଦେଖାଗଲା ।୧୦-୧୧। ସେତେବେଳେ ଅମାବାସ୍ୟା ତିଥି ନ ହୋଇଥିଲେ ମଧ୍ୟ ମହାଗ୍ରହ ରାହୁ ସୂର୍ଯ୍ୟଙ୍କୁ ଗ୍ରାସକଲା, ଅତିବେଗରେ ବାୟୁ ବହିଲା ଏବଂ ସୂର୍ଯ୍ୟ ପ୍ରଭାହୀନ ହୋଇଗଲେ ।୧୨। ରାତି ନ ହୋଇଥିଲେ ମଧ୍ୟ ତାରାଗଣ ଖଦ୍ୟୋତସଦୃଶ କ୍ଷୀଣପ୍ରଭାବିଶିଷ୍ଟ ହୋଇ ଉଦିତ ହେଲେ । ସରୋବରମାନଙ୍କରେ ଥିବା ପଦ୍ମଫୁଲସମୂହ ଶୁଷ୍କ ହୋଇଗଲା । ମତ୍ସ୍ୟ ଓ ପକ୍ଷୀଗଣ ଏକାବେଳକେ ଅନ୍ତର୍ଦ୍ଧାନ ହୋଇଗଲେ ।୧୩। ସେ ସମୟରେ ବୃକ୍ଷମାନେ ଫଳପୁଷ୍ପବିହୀନ

ତସ୍ମିନ୍ କ୍ଷଣେ ବଭୂବୁଶ୍ଚ ବିନା ପୁଷ୍ପଫଲୈର୍ଦ୍ରୁମାଃ ।
ଉଦ୍ଧୂତଶ୍ଚ ବିନା ବାତଂ ରେଣୁର୍ଜଲଧରାରୁଣଃ ।୧୪।
ବୀଚୀକୂଚୀତି ବାଶ୍ୟନ୍ତ୍ୟୋ ବଭୂବୁସ୍ତତ୍ର ଶାରିକାଃ ।
ଉଲ୍କାଶ୍ଚାପି ସନିର୍ଘାତା ନିପେତୁର୍ଘୋରଦର୍ଶନାଃ ।୧୫।
ପ୍ରଚଚାଲ ମହୀ ସର୍ବା ସଶୈଳବନକାନନା ।
ଖରସ୍ୟ ଚ ରଥସ୍ଥସ୍ୟ ନର୍ଦମାନସ୍ୟ ଧୀମତଃ ।୧୬।
ପ୍ରାକମ୍ପତ ଭୁଜଃ ସବ୍ୟଃ ସ୍ୱରଶ୍ଚାସ୍ୟାବସଜ୍ଜତ ।
ସାସ୍ରା ସଂପଦ୍ୟତେ ଦୃଷ୍ଟିଃ ପଶ୍ୟମାନସ୍ୟ ସର୍ବତଃ ।୧୭।
ଲଲାଟେ ଚ ରୁଜା ଜାତା ନ ଚ ମୋହାନ୍ନ୍ୟବର୍ତ୍ତତ ।
ତାନ୍ ସମୀକ୍ଷ୍ୟ ମହୋତ୍ପାତାନୁତ୍ଥିତାନ୍ ରୋମହର୍ଷଣାନ୍ ।୧୮।
ଅବ୍ରବୀଦ୍ରାକ୍ଷସାନ୍ ସର୍ବାନ୍ ପ୍ରହସନ୍ ସ ଖରସ୍ତଦା ।
ମହୋତ୍ପାତାନମାନ୍ ସର୍ବାନୁତ୍ଥିତାନ୍ ଘୋରଦର୍ଶନାନ୍ ।୧୯।
ନ ଚିନ୍ତୟାମ୍ୟହଂ ବୀର୍ଯାଦ୍ ବଲବାନ୍ ଦୁର୍ବଲାନିବ ।
ତାରା ଅପି ଶରୈସ୍ତୀକ୍ଷ୍ଣୈଃ ପାତୟାମି ନଭସ୍ତଲାତ୍ ।୨୦।
ମୃତ୍ୟୁଂ ମରଣଧର୍ମେଣ ସଂକ୍ରୁଦ୍ଧୋ ଯୋଜୟାମ୍ୟହମ୍ ।
ରାଘବଂ ତଂ ବଲୋତ୍ସିକ୍ତଂ ଭ୍ରାତରଂ ଚାସ୍ୟ ଲକ୍ଷ୍ମଣମ୍ ।୨୧।

---

ହୋଇଗଲେ ଏବଂ ବିନା ପବନରେ ମେଘସଦୃଶ ଧୂସରବର୍ଣ୍ଣ ଧୂଳିରାଶି ଉତ୍ଥିତ ହେଲା ।୧୪। ଶାରୀମାନେ ଶିକ୍ଷିତ ସ୍ୱର ଛାଡ଼ି ଚିକ୍‌ଚିକ୍ କରି ସ୍ୱର କରିବାକୁ ଲାଗିଲେ । ଘୋରଦର୍ଶନ ଉଲ୍‌କାସମୂହ ବଜ୍ରସଦୃଶ ଶବ୍ଦକରି ଭୂମିରେ ପତିତ ହେଲେ ।୧୫। ପର୍ବତ ଓ ଅରଣ୍ୟ ସହିତ ସମଗ୍ର ପୃଥିବୀ ପ୍ରକମ୍ପିତ ହେଲା । ଧୀମାନ୍ ଖର ରଥରେ ବସି ଗର୍ଜନ କଲାବେଳେ ତାର ବାମବାହୁ କମ୍ପିତ ହେଲା ଏବଂ ସ୍ୱର ଅବସନ୍ନ ହୋଇ ଆସିଲା । ସେ ଚତୁର୍ଦ୍ଦିଗକୁ ଦୃଷ୍ଟିଦେଲାବେଳକୁ ତାର ଆଖି ଲୋତକରେ ପୂର୍ଣ୍ଣ ହୋଇଗଲା ।୧୬-୧୭। ତାର ମସ୍ତକରେ ପୀଡ଼ା ଜାତହେଲା; ତଥାପି ସେ ମୋହବଶରୁ ଏ ଯୁଦ୍ଧଯାତ୍ରାରୁ ନିବୃତ୍ତ ହେଲା ନାହିଁ । ଏହି ସମସ୍ତ ରୋମହର୍ଷଣକାରୀ ମହୋତ୍ପାତ ସମୁତ୍ଥିତ ହେବାର ଦେଖି ଖର ସେତେବେଳେ ଖୁବ୍ ହସିହସି ସବୁ ରାକ୍ଷସଙ୍କୁ କହିଲା । "ବଳବାନ୍ ଲୋକ ଦୁର୍ବଳ ଲୋକକୁ ଖାତିର ନ କଲାପରି ମୁଁ ଏହିସବୁ ଉପସ୍ଥିତ ଭୟଙ୍କର ମହୋତ୍ପାତକୁ ଆଦୌ ଖାତିର କରୁ ନାହିଁ । ମୁଁ ତୀକ୍ଷ୍ଣ ଶରଦ୍ୱାରା ଆକାଶରୁ ତାରାମାନଙ୍କୁ ମଧ୍ୟ ଖସାଇ ପକାଇବି ।୧୮-୨୦। ମୁଁ ଅତିଶୟ କ୍ରୁଦ୍ଧ ହେଲେ ମୃତ୍ୟୁଦେବତାର ମଧ୍ୟ ମୃତ୍ୟୁବିଧାନ କରିବି ।

ଅହତ୍ୱା ସାୟକୈସ୍ତୀକ୍ଷ୍ଣୈର୍ନୋପାବର୍ତ୍ତିତୁମୁତ୍ସହେ ।
ସକାମା ଭଗିନୀ ମେଽସ୍ତୁ ପୀତ୍ୱା ତୁ ରୁଧିରଂ ତୟୋଃ । ୨୨ ।
ସନ୍ନିବୃତ୍ତସ୍ତୁ ରାମସ୍ୟ ଲକ୍ଷ୍ମଣସ୍ୟ ବିପର୍ଯ୍ୟୟଃ ।
ନ କ୍ୱଚିତ୍ ପ୍ରାପ୍ତପୂର୍ବୋ ମେ ସଂଯୁଗେଷୁ ପରାଜୟଃ । ୨୩।
ଯୁଷ୍ମାକମେତତ୍ ପ୍ରତ୍ୟକ୍ଷଂ ନାନୃତଂ କଥୟାମ୍ୟହମ୍ ।
ଦେବରାଜମପି କ୍ରୁଦ୍ଧୋ ମତ୍ତୈରାବତଯାୟିନମ୍ । ୨୪ ।
ବଜ୍ରହସ୍ତଂ ରଣେ ହନ୍ୟାଂ କିଂ ପୁନସ୍ତୌ କୁମାନୁଷୌ ।
ସା ତସ୍ୟ ଗର୍ଜିତଂ ଶ୍ରୁତ୍ୱା ରାକ୍ଷସସ୍ୟ ମହାଚମୂଃ । ୨୫ ।
ପ୍ରହର୍ଷମତୁଲଂ ଲେଭେ ମୃତ୍ୟୁପାଶାବପାଶିତା ।
ସମୀୟୁଶ୍ଚ ମହାତ୍ମାନୋ ଯୁଦ୍ଧଦର୍ଶନକାଙ୍‌କ୍ଷିଣଃ । ୨୬ ।
ଋଷୟୋ ଦେବଗନ୍ଧର୍ବାଃ ସିଦ୍ଧାଶ୍ଚ ସହଚାରଣୈଃ ।
ସମେତ୍ୟ ଚୋଚୁଃ ସହିତାସ୍ତେଽନ୍ୟୋନ୍ୟଂ ପୁଣ୍ୟକର୍ମଣଃ । ୨୭ ।
ସ୍ୱସ୍ତି ଗୋବ୍ରାହ୍ମଣେଭ୍ୟୋଽସ୍ତୁ ଲୋକାନାଂ ଯେଽଭିସଂଗତାଃ ।
ଜୟତାଂ ରାଘବଃ ସଂଖ୍ୟେ ପୌଲସ୍ତ୍ୟାନ୍ ରଜନୀଚରାନ୍ । ୨୮

---

ସେହି ବଳଦୃପ୍ତ ରାମ ଓ ତାର ଭାଇ ଲକ୍ଷ୍ମଣଙ୍କୁ ତୀକ୍ଷ୍ଣ ଶରଦ୍ୱାରା ବଧ ନ କରି ମୁଁ କଦାପି ଫେରିବି ନାହିଁ । ଯାହାଲାଗି ରାମ ଓ ଲକ୍ଷ୍ମଣର ଏ ବୁଦ୍ଧି ବିପର୍ଯ୍ୟୟ ଘଟିଛି ମୋର ସେହି ଭଗିନୀ ସେ ଦୁହିଁଙ୍କ ରକ୍ତପାନ କରି ସଫଳ ମନୋରଥା ହେଉ । ଏହା-ପୂର୍ବରୁ ମୁଁ କେବେହେଲେ ଯୁଦ୍ଧରେ ପରାଜୟ ଲାଭ କରି ନାହିଁ । ୨୨-୨୩ । ଏକଥା ତୁମେମାନେ ନିଜେ ପ୍ରତ୍ୟକ୍ଷ କରିଛ; ମୁଁ ମିଛ କହୁନାହିଁ । ମୁଁ କ୍ରୁଦ୍ଧ ହେଲେ ମତ୍ତଐରାବତବାହନ ବଜ୍ରଧାରୀ ଦେବରାଜ ଇନ୍ଦ୍ରଙ୍କୁ ମଧ୍ୟ ଯୁଦ୍ଧରେ ହତ୍ୟା କରିଦେବି; ଏ ଦୁଇଟି ନରାଧମଙ୍କ କଥା ବା କଅଣ ?" ସେହି ମହାସୈନ୍ୟବାହିନୀ ମୃତ୍ୟୁପାଶରେ ଆବଦ୍ଧ ହୋଇ ଓ ଖର ରାକ୍ଷସର ଗର୍ଜନ ଶୁଣି ଅତିଶୟ ଆନନ୍ଦ ଲାଭକଲେ । ସେତେବେଳେ ଯୁଦ୍ଧ ଦେଖିବା ଅଭିଳାଷରେ ପୁଣ୍ୟାତ୍ମା ମହାତ୍ମା ଋଷିଗଣ, ଦେବଗଣ, ଗନ୍ଧର୍ବଗଣ ଓ ସିଦ୍ଧ ଚାରଣଗଣ ସେଠାରେ ଆସି ସମାଗତ ହେଲେ । ସେମାନେ ସମାଗତ ହୋଇ ପରସ୍ପର କୁହାକୁହି ହେଲେ । ୨୪-୨୭ । "ଗୋ ବ୍ରାହ୍ମଣ ଏବଂ ଲୋକସମ୍ମତ ସମସ୍ତ ପ୍ରାଣୀଙ୍କର ମଙ୍ଗଳ ହେଉ । ଚକ୍ରହସ୍ତ ବିଷ୍ଣୁ ଯେପରି ଯୁଦ୍ଧରେ ସମସ୍ତ ଶ୍ରେଷ୍ଠ ଅସୁରଙ୍କୁ ଜୟ କରିଥିଲେ, ସେହିପରି

ଚନ୍ଦ୍ରହସ୍ତେ ଯଥା ଯୁଦ୍ଧେ ସବାନସୁରପୁଂଗବାନ୍ ।
ଏତଚ୍ଚାନ୍ୟଚ୍ଚ ବହୁଶୋ ବ୍ରୁବାଣାଃ ପରମର୍ଷୟଃ । ୨୯ ।
ଜାତକୌତୂହଲାସ୍ତତ୍ର ବିମାନସ୍ଥାଶ୍ଚ ଦେବତାଃ ।
ଦଦୃଶୁର୍ବାହିନୀଂ ତେଷାଂ ରାକ୍ଷସାନାଂ ଗତାୟୁଷାମ୍ । ୩୦ ।
ରଥେନ ତୁ ଖରୋ ବେଗାଦୁଗ୍ରସୈନ୍ୟୋ ବିନିଃସୃତଃ ।
ତଂ ଦୃଷ୍ଟ୍ୱା ରାକ୍ଷସଂ ଭୂୟୋ ରାକ୍ଷସାଶ୍ଚ ବିନିଃସୃତାଃ । ୩୧ ।
ଶ୍ୟେନଗାମୀ ପୃଥୁଗ୍ରୀବୋ ଯଜ୍ଞଶତ୍ରୁର୍ବିହଙ୍ଗମଃ ।
ଦୁର୍ଜୟଃ କରବୀରାକ୍ଷଃ ପରୁଷଃ କାଳକାର୍ମୁକଃ । ୩୨ ।
ମେଘମାଳୀ ମହାମାଳୀ ସର୍ପାସ୍ୟୋ ରୁଧିରାଶନଃ ।
ଦ୍ୱାଦଶୈତେ ମହାବୀର୍ଯ୍ୟାଃ ପ୍ରତସ୍ଥୁରଭିତଃ ଖରମ୍ । ୩୩ ।
ମହାକପାଳଃ ସ୍ଥୂଲାକ୍ଷଃ ପ୍ରମାଥୀ ତ୍ରିଶିରାସ୍ତଥା ।
ଚତ୍ୱାର ଏତେ ସେନାନ୍ୟୋ ଦୂଷଣଂ ପୃଷ୍ଠତୋ ଯଯୁଃ । ୩୪ ।
ସା ଭୀମବେଗା ସମରାଭିକାମା
ମହାବଳା ରାକ୍ଷସବୀରସେନା ।

---

ରାମ ଏହି ପୁଲସ୍ତ୍ୟବଂଶୀୟ ରାକ୍ଷସମାନଙ୍କୁ ଯୁଦ୍ଧରେ ଜୟ କରନ୍ତୁ ।" ସେହି ମହର୍ଷିମାନେ ଏହି କଥା ଓ ଆଉ ଅନ୍ୟାନ୍ୟ କଥା କୁହାକୁହି ହେଲେ । ୨୮-୨୯ । ଦେବତାମାନେ ମଧ୍ୟ କୌତୂହଳବଶତଃ ସେଠାରେ ବିମାନମାନଙ୍କରେ ବସି ସେହି ଆସନ୍ନମୃତ୍ୟୁ ରାକ୍ଷସମାନଙ୍କର ସୈନ୍ୟପଂକ୍ତି ଦେଖିବାକୁ ଲଗିଲେ । ୩୦ । ଏହି ସମୟରେ ଉଗ୍ର ସୈନ୍ୟବାହିନୀବିଶିଷ୍ଟ ଖର ରଥରେ ବସି ବାହାର ହେଲା । ତାଙ୍କୁ ଦେଖି ଅନ୍ୟ ରାକ୍ଷସମାନେ ମଧ୍ୟ ବାହାରି ଆସିଲେ । ୩୧ । ଶ୍ୟେନଗାମୀ, ପୃଥୁଗ୍ରୀବ, ଯଜ୍ଞଶତ୍ରୁ, ବିହଙ୍ଗମ, ଦୁର୍ଜୟ, କରବୀରାକ୍ଷ, ପରୁଷ, କାଳକାର୍ମୁକ, ମେଘମାଳୀ, ମହାମାଳୀ, ସର୍ପାସ୍ୟ ଓ ରୁଧିରାଶନ ଏହି ବାରଜଣ ମହାବୀର ଖରର ଚତୁର୍ଦ୍ଦିଗ ବେଷ୍ଟନକରି ଚାଲିଲେ । ୩୨-୩୩ । ମହାକପାଳ, ସ୍ଥୂଲାକ୍ଷ, ପ୍ରମାଥୀ ଓ ତ୍ରିଶିରା ଏହି ଚାରିଜଣ ସେନାପତି ଦୂଷଣର ପଛେ ପଛେ ଚାଲିଲେ । ୩୪ । ଗ୍ରହରାଜ ଯେପରି ଚନ୍ଦ୍ର ଓ ସୂର୍ଯ୍ୟଙ୍କର ନିକଟବର୍ତ୍ତୀ ହୁଅନ୍ତି, ସେହିପରି ମହାବେଗଶାଳୀ ଏବଂ

ତୌ ରାଜପୁତ୍ରୌ ସହସାଭ୍ୟୁପେତା
ମାଲା ଗ୍ରହାଣାମିବ ଚନ୍ଦ୍ରସୂର୍ଯ୍ୟୌ । ୩୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ଉତ୍ପାତଦର୍ଶନମ୍
ନାମ ତ୍ରୟୋବିଂଶଃ ସର୍ଗଃ ।

---

ମହାବଳଶାଳୀ ସେହି ରାକ୍ଷସସୈନ୍ୟ ଯୁଦ୍ଧାଭିଳାଷୀ ହୋଇ ସହସା ରାଜପୁତ୍ର ରାମ ଓ ଲକ୍ଷ୍ମଣଙ୍କ ନିକଟରେ ଉପସ୍ଥିତ ହେଲେ । ୩୫ ।

# ଚତୁର୍ବିଂଶଃ ସର୍ଗଃ

## ରାମଖରବଲସଂକ୍ଷିକର୍ଷଃ

ଆଶ୍ରମଂ ପ୍ରତିଯାତେ ତୁ ଖରେ ଖରପରାକ୍ରମେ ।
ତାନେବୌତ୍ପାତିକାନ୍ ରାମଃ ସହ ଭ୍ରାତ୍ରା ଦଦର୍ଶ ହ । ୧ ।
ତାନୁତ୍ପାତାନ୍ ମହାଘୋରାନୁତ୍ଥିତାନ୍ ରୋମହର୍ଷଣାନ୍ ।
ପ୍ରଜାନାମହିତାନ୍ ଦୃଷ୍ଟ୍ୱା ରାମୋ ଲକ୍ଷ୍ମଣମବ୍ରବୀତ୍ । ୨ ।
ଇମାନ୍ ପଶ୍ୟ ମହାବାହୋ ସର୍ବଭୂତାପହାରିଣଃ ।
ସମୁତ୍ଥିତାନ୍ ମହୋତ୍ପାତାନ୍ ସଂହର୍ତୁଂ ସର୍ବରାକ୍ଷସାନ୍ । ୩ ।
ଅମୀ ରୁଧିରଧାରାସ୍ତୁ ବିସୃଜନ୍ତଃ ଖରସ୍ୱନାଃ ।
ବ୍ୟୋମ୍ନି ମେଘା ବିବର୍ତନ୍ତେ ପରୁଷା ଗର୍ଦଭାରୁଣାଃ । ୪ ।
ସଧୂମାଶ୍ଚ ଶରାଃ ସର୍ବେ ମମ ଯୁଦ୍ଧାଭିନନ୍ଦିନଃ ।
ରୁକ୍ମପୃଷ୍ଠାନି ଚାପାନି ବିବେଷ୍ଟନ୍ତେ ଚ ଲକ୍ଷ୍ମଣ । ୫ ।
ଯାଦୃଶା ଇହ କୂଜନ୍ତି ପକ୍ଷିଣୋ ବନଚାରିଣଃ ।
ଅଗ୍ରତୋ ନୋ ଭୟଂ ପ୍ରାପ୍ତଂ ସଂଶୟୋ ଜୀବିତସ୍ୟ ଚ । ୬ ।

---

## ୨୪ଶ ସର୍ଗ

(ରାମ ଓ ଖରଙ୍କର ଶକ୍ତିପରୀକ୍ଷା)

ଉଗ୍ରପରାକ୍ରମ ଖର ରାମଙ୍କ ଆଶ୍ରମ ଅଭିମୁଖରେ ଯାତ୍ରା କରିବା ଉତ୍ତାରୁ ରାମ ଭ୍ରାତାଙ୍କ ସହିତ ଉପରୋକ୍ତ ଉତ୍ପାତସମୂହ ଦର୍ଶନ କଲେ । ୧ । ପ୍ରଜାମାନଙ୍କର ଅମଙ୍ଗଳକାରୀ ଏହି ମହାଘୋର ଲୋମହର୍ଷଣକାରୀ ଉତ୍ପାତ ସକଳ ସମୁତ୍ଥିତ ହେବାର ଦେଖି ରାମ, ଲକ୍ଷ୍ମଣଙ୍କୁ କହିଲେ ।୨। "ହେ ମହାବାହୋ ! ସବୁ ପ୍ରାଣୀଙ୍କ ପ୍ରାଣାନ୍ତକାରୀ ଏହି ମହୋତ୍ପାତମାନ ସମସ୍ତ ରାକ୍ଷସଙ୍କର ସଂହାରାର୍ଥେ ସମୁତ୍ଥିତ ହେଉଅଛି ଦେଖ । ୩ । ଗର୍ଦ୍ଦଭସଦୃଶ ଧୂସରବର୍ଣ୍ଣ ଧାରଣ କରି ଉତ୍କଟ ମେଘରାଶି ଆକାଶରେ ଇତସ୍ତତଃ ଧାବମାନ ହୋଇ ତୀବ୍ର ଗର୍ଜ୍ଜନ ସହିତ ରୁଧିରଧାରା ବର୍ଷଣ କରୁଅଛି । ୪ । ହେ ଲକ୍ଷ୍ମଣ ! ଯୁଦ୍ଧ ଅଭିନନ୍ଦନକାରୀ ମୋର ଶରସମୂହ ଧୂମୋଦ୍‌ଗୀରଣପୂର୍ବକ ସ୍ୱର୍ଣ୍ଣଖଚିତ ଧନୁମାନଙ୍କରେ ଗୁଡ଼ାଇ ହୋଇ ଯାଉଛନ୍ତି । ୫ । ବନଚାରୀ ପକ୍ଷୀମାନେ ବର୍ତ୍ତମାନ ଯେପରିଭାବରେ ଶବ୍ଦ କରୁଛନ୍ତି ସେଥିରୁ ବୋଧ-ହେଉଛି ଯେ ଆମମାନଙ୍କ ସମକ୍ଷରେ ଭୟ ଓ ପ୍ରାଣସଂଶୟ ଉପସ୍ଥିତ ହୋଇଅଛି ।୬।

ସଂପ୍ରହାରସ୍ତୁ ସୁମହାନ୍ ଭବିଷ୍ୟତି ନ ସଂଶୟଃ ।
ଅୟମାଖ୍ୟାତି ମେ ବାହୁଃ ସ୍ଫୁରମାଣୋ ମୁହୁର୍ମୁହୁଃ । ୭ ।
ସଂନିକର୍ଷେ ତୁ ନଃ ଶୂର ଜୟଂ ଶତ୍ରୋଃ ପରାଜୟମ୍ ।
ସପ୍ରଭଂ ଚ ପ୍ରସନ୍ନଂ ଚ ତବ ବକ୍ତ୍ରଂ ହି ଲକ୍ଷ୍ୟତେ । ୮ ।
ଉଦ୍ୟତାନାଂ ହି ଯୁଦ୍ଧାର୍ଥଂ ଯେଷାଂ ଭବତି ଲକ୍ଷ୍ମଣ ।
ନିଷ୍ପ୍ରଭଂ ବଦନଂ ତେଷାଂ ଭବତ୍ୟାୟୁଃପରିକ୍ଷୟଃ । ୯ ।
ରକ୍ଷସାଂ ନର୍ଦତାଂ ଘୋରଃ ଶ୍ରୂୟତେ ଚ ମହାଧ୍ୱନିଃ ।
ଆହତାନାଂ ଚ ଭେରୀଣାଂ ରାକ୍ଷସୈଃ କ୍ରୂରକର୍ମଭିଃ । ୧୦ ।
ଅନାଗତବିଧାନଂ ତୁ କର୍ତ୍ତବ୍ୟଂ ଶୁଭମିଚ୍ଛତା ।
ଆପଦଂ ଶଙ୍କମାନେନ ପୁରୁଷେଣ ବିପଶ୍ଚିତା । ୧୧ ।
ତସ୍ମାଦ୍ ଗୃହୀତ୍ୱା ବୈଦେହୀଂ ଶରପାଣିର୍ଧନୁର୍ଧରଃ ।
ଗୁହାମାଶ୍ରୟ ଶୈଳସ୍ୟ ଦୁର୍ଗାଂ ପାଦପସଂକୁଲାଂ । ୧୨ ।
ପ୍ରତିକୂଳିତୁମିଚ୍ଛାମି ନ ହି ବାକ୍ୟମିଦଂ ତ୍ୱୟା ।
ଶାପିତୋ ମମ ପାଦାଭ୍ୟାଂ ଗମ୍ୟତାଂ ବତ୍ସ ମା ଚିରମ୍ । ୧୩ ।

---

ମୋର ଏହି ବାହୁ ବାରମ୍ବାର ସ୍ଫୁରିତ ହେବାଦ୍ୱାରା ସୂଚନା ଦେଉଅଛି ଯେ ଏକ ଅତିଘୋର ମହାଯୁଦ୍ଧ ହେବ; ଏଥିରେ ସନ୍ଦେହ ନାହିଁ । ୭ । ହେ ବୀର ! ଯୁଦ୍ଧରେ ଆମମାନଙ୍କର ଜୟ ଓ ଶତ୍ରୁର ପରାଜୟ ସୁନିଶ୍ଚିତ । ତୁମ୍ଭର ମୁଖମଣ୍ଡଳ ସୁପ୍ରସନ୍ନ ଓ ଦୀପ୍ତିମାନ୍ ଦେଖାଯାଉଅଛି । ୮ । ହେ ଲକ୍ଷ୍ମଣ ! ଯୁଦ୍ଧ ନିମନ୍ତେ ସମୁଦ୍ୟତ ହୋଇଥିବା ଯେଉଁ ଲୋକମାନଙ୍କର ମୁଖ ପ୍ରଭାହୀନ ହୁଏ ସେମାନଙ୍କର ଆୟୁ କ୍ଷୟ ହୋଇଛି ବୋଲି ଜଣାଯାଏ । ୯ । ରାକ୍ଷସମାନଙ୍କର ଘୋର, ଗମ୍ଭୀର ଗର୍ଜ୍ଜନଧ୍ୱନି ଶୁଣାଯାଉଅଛି ଓ ସେହି କ୍ରୂରକର୍ମା ରାକ୍ଷସମାନେ ବଜାଉଥିବା ଭେରୀର ଶବ୍ଦ ମଧ୍ୟ ଶୁଣାଯାଉଅଛି । ୧୦ । ମଙ୍ଗଳ ଇଚ୍ଛା କରୁଥିବା ବିଚକ୍ଷଣ ବ୍ୟକ୍ତିର ଆପଦ ଆଶଙ୍କା ଥିଲେ ଆଗରୁ ସେହି ଘୋର ଅନିଷ୍ଟର ପ୍ରତିବିଧାନ କରିବା ଉଚିତ । ୧୧ । ସୁତରାଂ ତୁମେ ଧନୁଶର ଧରି ସୀତାଙ୍କୁ ନେଇ ପାଦପସଙ୍କୁଳ ଦୁର୍ଗମ ଗିରିଗୁହାକୁ ଆଶ୍ରୟ କର । ୧୨ । ତୁମେ ମୋର ଏ କଥାର ପ୍ରତିକୂଳାଚରଣ କରିବ, ମୁଁ ଏହା ଇଚ୍ଛା କରେ ନାହିଁ । ହେ ବତ୍ସ ! ତୁମକୁ ମୋର ଚରଣର ଶପଥ ଦେଉଛି । ତୁମେ ଶୀଘ୍ର ଯାଅ, ବିଳମ୍ବ କର ନାହିଁ । ୧୩। ତୁମେ ବୀର ଏବଂ ବଳବାନ୍, ଏ ସମସ୍ତଙ୍କୁ ତୁମେ ଯେ

ତ୍ୱଂ ହି ଶୂରଶ୍ଚ ବଲବାନ୍ ହନ୍ୟା ହ୍ୟେତାନ୍ନ ସଂଶୟଃ ।
ସ୍ୱୟଂ ତୁ ହନ୍ତୁମିଚ୍ଛାମି ସର୍ବାନେବ ନିଶାଚରାନ୍ । ୧୪ ।
ଏବମୁକ୍ତସ୍ତୁ ରାମେଣ ଲକ୍ଷ୍ମଣଃ ସହ ସୀତୟା ।
ଶରାନାଦାୟ ଚାପଂ ଚ ଗୁହାଂ ଦୁର୍ଗାଂ ସମାଶ୍ରୟତ୍ । ୧୫ ।
ତସ୍ମିନ୍ ପ୍ରବିଷ୍ଟେ ତୁ ଗୁହାଂ ଲକ୍ଷ୍ମଣେ ସହ ସୀତୟା ।
ହନ୍ତ ନିର୍ଯୁକ୍ତମିତ୍ୟୁକ୍ତ୍ୱା ରାମଃ କବଚମାବିଶତ୍ । ୧୬ ।
ସ ତେନାଗ୍ନିନିକାଶେନ କବଚେନ ବିଭୂଷିତଃ ।
ବଭୂବ ରାମସ୍ତିମିରେ ବିଧୂମୋଽଗ୍ନିରିବୋତ୍ଥିତଃ । ୧୭ ।
ସ ଚାପମୁଦ୍ୟମ୍ୟ ମହଚ୍ଛରାନାଦାୟ ବୀର୍ଯ୍ୟବାନ୍ ।
ବଭୂବାବସ୍ଥିତସ୍ତତ୍ର ଜ୍ୟାସ୍ୱନୈଃ ପୂରୟନ୍ ଦିଶଃ । ୧୮ ।
ତତୋ ଦେବାଃ ସଗନ୍ଧର୍ବାଃ ସିଦ୍ଧାଶ୍ଚ ସହ ଚାରଣୈଃ ।
ସମେୟୁଶ୍ଚ ମହାତ୍ମାନୋ ଯୁଦ୍ଧଦର୍ଶନକାଙ୍କ୍ଷିଣଃ । ୧୯ ।
ଋଷୟଶ୍ଚ ମହାତ୍ମାନୋ ଲୋକେ ବ୍ରହ୍ମର୍ଷିସତ୍ତମାଃ ।
ସମେତ୍ୟ ଚୋଚୁଃ ସହିତା ଅନ୍ୟୋନ୍ୟଂ ପୁଣ୍ୟକର୍ମଣଃ । ୨୦ ।
ସ୍ୱସ୍ତି ଗୋବ୍ରାହ୍ମଣେଭ୍ୟୋଽସ୍ତୁ ଲୋକାନାଂ ଯେଽଭିସଂଗତାଃ ।
ଜୟତାଂ ରାଘବୋ ଯୁଦ୍ଧେ ପୌଲସ୍ତ୍ୟାନ୍ ରଜନୀଚରାନ୍ ।୨୧।

---

ବଧ କରିପାରିବ, ଏଥିରେ ସନ୍ଦେହ ନାହିଁ; ମାତ୍ର ମୁଁ ନିଜେ ଏ ରାକ୍ଷସମାନଙ୍କୁ ବଧ କରିବାକୁ ଇଚ୍ଛା କରୁଅଛି” । ୧୪ । ରାମ ଏହିପରି କହିବାରୁ ଲକ୍ଷ୍ମଣ ସୀତାଙ୍କ ସହିତ ଧନୁ ଓ ଶର ନେଇ ଦୁର୍ଗମ ଗୁହାମଧ୍ୟରେ ଆଶ୍ରୟ ନେଲେ । ୧୫ । ଲକ୍ଷ୍ମଣ ଗୁହାମଧ୍ୟରେ ପ୍ରବେଶ କଲାଉତ୍ତାରୁ ରାମ “ଓହୋ, ନିଶ୍ଚିନ୍ତ ହେଲି” କହି କବଚ ପରିଧାନ କଲେ । ୧୬ । ରାମ ସେହି ଅଗ୍ନିତୁଲ୍ୟ କବଚରେ ବିଭୂଷିତ ହୋଇ ଅନ୍ଧକାର ମଧ୍ୟରେ ଧୂମଶୂନ୍ୟ ପ୍ରଦୀପ୍ତ ଅଗ୍ନିପରି ଦେଖାଗଲେ । ୧୭ । ବୀର୍ଯ୍ୟବାନ୍ ରାମ ଧନୁ ଉତ୍ତୋଳନ କରି ଓ ମହାଶରମାନ ଧାରଣ କରି ଜ୍ୟାଶବ୍ଦରେ ଦିଗ୍ଦିଗନ୍ତ ପ୍ରତିଧ୍ୱନିତ କରି ସେଠାରେ ଠିଆହୋଇ ରହିଲେ । ୧୮ । ଅନନ୍ତର ଦେବତା ଗନ୍ଧର୍ବ, ସିଦ୍ଧ,ଚାରଣ ପ୍ରଭୃତି ମହାତ୍ମାଗଣ ଯୁଦ୍ଧ ଦେଖିବା ଅଭିଳାଷରେ ସେଠାରେ ଆସି ସମବେତ ହେଲେ ।୧୯। ଜଗତରେ ଯେଉଁମାନେ ବ୍ରହ୍ମର୍ଷିଶ୍ରେଷ୍ଠ ବୋଲି ବିଖ୍ୟାତ ସେହିସବୁ ପୁଣ୍ୟକର୍ମା ମହର୍ଷିମାନେ ମଧ୍ୟ ସେଠାରେ ସମବେତ ହୋଇ ପରସ୍ପର ଏକସ୍ୱରରେ କହିଲେ ।୨୦। “ଗୋ, ବ୍ରାହ୍ମଣ ଓ ଅନ୍ୟାନ୍ୟ ଲୋକସମ୍ମତ ସମସ୍ତ ପ୍ରାଣୀଙ୍କର ମଙ୍ଗଳ ହେଉ। ଚକ୍ରଧାରୀ ବିଷ୍ଣୁ ଯେପରି ଯୁଦ୍ଧରେ ଶ୍ରେଷ୍ଠ

ଚକ୍ରହସ୍ତୋ ଯଥା ଯୁଦ୍ଧେ ସର୍ବାନସୁରପୁଙ୍ଗବାନ୍ ।
ଏବମୁକ୍ତ୍ୱା ପୁନଃ ପ୍ରୋଚୁରାଲୋକ୍ୟ ଚ ପରସ୍ପରମ୍ । ୨୨ ।
ଚତୁର୍ଦ୍ଦଶ ସହସ୍ରାଣି ରକ୍ଷସାଂ ଭୀମକର୍ମଣାମ୍ ।
ଏକଶ୍ଚ ରାମୋ ଧର୍ମାତ୍ମା କଥଂ ଯୁଦ୍ଧଂ ଭବିଷ୍ୟତି । ୨୩ ।
ଇତି ରାଜର୍ଷୟଃ ସିଦ୍ଧାଃ ସଗଣାଶ୍ଚ ଦ୍ୱିଜର୍ଷଭାଃ ।
ଜାତକୌତୂହଲାସ୍ତସ୍ଥୁର୍ବିମାନସ୍ଥାଶ୍ଚ ଦେବତାଃ । ୨୪ ।
ଆବିଷ୍ଟଂ ତେଜସା ରାମଂ ସଂଗ୍ରାମଶିରସି ସ୍ଥିତମ୍ ।
ଦୃଷ୍ଟ୍ୱା ସର୍ବାଣି ଭୂତାନି ଭୟାଦ୍‌ବିବ୍ୟଥିରେ ତଦା । ୨୫ ।
ରୂପମପ୍ରତିମଂ ତସ୍ୟ ରାମସ୍ୟାକ୍ଲିଷ୍ଟକର୍ମଣଃ ।
ବଭୂବ ରୂପଂ କ୍ରୁଦ୍ଧସ୍ୟ ରୁଦ୍ରସ୍ୟେବ ପିନାକିନଃ । ୨୬ ।
ଇତି ସଂଭାଷ୍ୟମାଣେ ତୁ ଦେବଗନ୍ଧର୍ବଚାରଣୈଃ ।
ତତୋ ଗମ୍ଭୀରନିର୍ହ୍ରାଦଂ ଘୋରବର୍ମାୟୁଧଧ୍ୱଜମ୍ । ୨୭ ।
ଅନୀକଂ ଯାତୁଧାନାନାଂ ସମନ୍ତାତ୍ ପ୍ରତ୍ୟଦୃଶ୍ୟତ ।
ସିଂହନାଦଂ ବିସୃଜତାମନ୍ୟୋନ୍ୟମଭିଗର୍ଜତାମ୍ । ୨୮ ।

---

ରାକ୍ଷସମାନଙ୍କୁ ଜୟ କରିଥିଲେ ସେହିପରି ରାଘବ ଏ ଯୁଦ୍ଧରେ ପୁଲସ୍ତ୍ୟବଂଶୀୟ ରାକ୍ଷସମାନଙ୍କୁ ଜୟ କରନ୍ତୁ ।" ଏହା କହି ସେମାନେ ପରସ୍ପରଆଡକୁ ଚାହିଁ ପୁଣି କହିଲେ । ୨୧-୨୨ । "ଏକ ପକ୍ଷରେ ଚଉଦ ହଜାର ଭୀମକର୍ମା ରାକ୍ଷସ ଏବଂ ଅନ୍ୟ ପକ୍ଷରେ ଏକମାତ୍ର ଧର୍ମାତ୍ମା ରାମ ! ଏଥିରେ ଯୁଦ୍ଧ କିପରି ହେବ କହିହେଉ ନାହିଁ" । ୨୩ । ରାଜର୍ଷିଗଣ, ସିଦ୍ଧଗଣ ଓ ପ୍ରଧାନ ପ୍ରଧାନ ବ୍ରାହ୍ମଣଗଣ ଏହିପରି କୁହାକୁହି ହୋଇ କୌତୂହଳବଶତଃ ସେଠାରେ ରହିଲେ ଏବଂ ଦେବତାମାନେ ମଧ୍ୟ ବିମାନରେ ବସି ରହିଲେ । ୨୪ । ରାମ ସ୍ୱୀୟ ତେଜରେ ସମାଚ୍ଛନ୍ନ ହୋଇ ଯୁଦ୍ଧର ଅଗ୍ରଭାଗରେ ଦଣ୍ଡାୟମାନ ହୋଇଥିବାର ଦେଖି ସେତେବେଳେ ସବୁ ପ୍ରାଣୀ ଭୟରେ ବ୍ୟଥିତ ହୋଇ ଉଠିଲେ । ୨୫ । ପିନାକପାଣି ରୁଦ୍ରଦେବ କ୍ରୁଦ୍ଧ ହେଲେ ତାଙ୍କର ରୂପ ଯେପରି ଦେଖାଯାଏ, ଅକ୍ଲିଷ୍ଟକର୍ମା ରାମଙ୍କର ରୂପ ମଧ୍ୟ ସେହିପରି ଅତୁଳନୀୟ ଦେଖାଗଲା । ୨୬ । ଦେବତା, ଗନ୍ଧର୍ବ ଓ ଚାରଣମାନେ ପରସ୍ପର ଏହିପରି କଥାବାର୍ତ୍ତା କରୁଥିବାବେଳେ ରାକ୍ଷସସୈନ୍ୟ ଭୟଙ୍କର ବର୍ମ ଆୟୁଧ ଓ ଧ୍ୱଜ ଧାରଣ କରି ପରସ୍ପର ସିଂହଗର୍ଜନପୂର୍ବକ ଚାରିଆଡୁ ଆସି ଦେଖାଗଲେ । ୨୭-୨୮ । ସେମାନଙ୍କର ଧନୁଷ୍ଟଙ୍କାର ଏବଂ ମୁହୁର୍ମୁହୁ ଜୃମ୍ଭାତ୍ୟାଗ,

ଚାପାନାଂ ବିସ୍ଫାରୟତାଂ ଜୃମ୍ଭତାଂ ଚାପ୍ୟଭୀକ୍ଷ୍ଣଶଃ ।
ବିପ୍ରଘୁଷ୍ଟସ୍ୱନାନାଂ ଚ ଦୁନ୍ଦୁଭୀଂଶ୍ଚାପି ନିଘ୍ନତାମ୍ । ୨୯ ।
ତେଷାଂ ସୁତୁମୁଲଃ ଶବ୍ଦଃ ପୂରୟାମାସ ତଦ୍ୱନମ୍ ।
ତେନ ଶବ୍ଦେନ ବିତ୍ରସ୍ତାଃ ଶ୍ୱାପଦା ବନଚାରିଣଃ । ୩୦ ।
ଦୁଦ୍ରୁବୁର୍ଯତ୍ର ନିଃଶବ୍ଦଂ ପୃଷ୍ଠତୋ ନ ବ୍ୟଲୋକୟନ୍ ।
ତତ୍ତ୍ୱନୀକଂ ମହାବେଗଂ ରାମଂ ସମୁପସର୍ପତ । ୩୧ ।
ଧୃତ ନାନାପ୍ରହରଣଂ ଗମ୍ଭୀରଂ ସାଗରୋପମ୍ ।
ରାମୋଽପି ଚାରୟଂଶ୍ଚକ୍ଷୁଃ ସର୍ବତୋ ରଣପଣ୍ଡିତଃ । ୩୨ ।
ଦଦର୍ଶ ଖରସୈନ୍ୟଂ ତଦ୍ ଯୁଦ୍ଧାଭିମୁଖମୁତ୍ଥିତମ୍ ।
ବିତତ୍ୟ ଚ ଧନୁର୍ଭୀମଂ ତୂଣ୍ୟାଶ୍ଚୋଦ୍ଧୃତ୍ୟ ସାୟକାନ୍ । ୩୩ ।
କ୍ରୋଧମାହାରୟତ୍ତୀବ୍ରଂ ବଧାର୍ଥଂ ସର୍ବରକ୍ଷସାମ୍ ।
ଦୁଷ୍ପ୍ରେକ୍ଷ୍ୟଃ ସୋଽଭବତ୍ କ୍ରୁଦ୍ଧୋ ଯୁଗାନ୍ତାଗ୍ନିରିବ ଜ୍ୱଲନ୍ ।୩୪।
ତଂ ଦୃଷ୍ଟ୍ୱା ତେଜସାବିଷ୍ଟଂ ପ୍ରାଦ୍ରବନ୍ ବନଦେବତାଃ ।
ତସ୍ୟ କ୍ରୁଦ୍ଧସ୍ୟ ରୂପଂ ତୁ ରାମସ୍ୟ ଦଦୃଶେ ତଦା । ୩୫ ।
ଦକ୍ଷସ୍ୟେବ କ୍ରତୁଂ ହନ୍ତୁମୁଦ୍ୟତସ୍ୟ ପିନାକିନଃ । ୩୬ ।

---

ଉଚ୍ଚୈସ୍ୱରରେ ଚିତ୍କାର ଏବଂ ସେମାନେ ଦୁନ୍ଦୁଭିମାନଙ୍କରେ ଆଘାତ କରିବାଦ୍ୱାରା ଯେଉଁ ଶବ୍ଦ ସମୁତ୍ଥିତ ହେଲା ସେଥିରେ ସେ ବନ ପରିପୂର୍ଣ୍ଣ ହୋଇଗଲା । ବନଚାରୀ ଶ୍ୱାପଦମାନେ ସେହି ଶବ୍ଦରେ ତ୍ରସ୍ତ ହୋଇ ପଛଆଡ଼କୁ ନ ଚାହିଁ ନିଶବ୍ଦ ସ୍ଥାନକୁ ପଳାୟନ କଲେ । ସେହି ସୈନ୍ୟବାହିନୀ ନାନାପ୍ରକାର ଅସ୍ତ୍ର ଧାରଣ କରି ସମୁଦ୍ରପରି ଗମ୍ଭୀର ଗର୍ଜନ କରି ମହାବେଗରେ ରାମଙ୍କ ଆଡ଼କୁ ଅଗ୍ରସର ହେଲେ । ଯୁଦ୍ଧ-ବିଶାରଦ ରାମ ଚତୁର୍ଦ୍ଦିଗକୁ ଦୃଷ୍ଟି ନିକ୍ଷେପ କରି ଯୁଦ୍ଧ ନିମନ୍ତେ ଉପସ୍ଥିତ ହୋଇଥିବା ଖରର ସୈନ୍ୟମାନଙ୍କୁ ଦେଖିଲେ । ସେ ଭୀଷଣ ଧନୁ ବିସ୍ତାରିତ କରି ଓ ତୂଣୀରରୁ ଶରରାଜି ଉତ୍ତୋଳନ କରି ସେ ସମସ୍ତ ରାକ୍ଷସଙ୍କ ବଧ ନିମନ୍ତେ ଉତ୍କଟ କ୍ରୋଧଧାରଣ କଲେ । ସେ କ୍ରୁଦ୍ଧହୋଇ ପ୍ରଜ୍ୱଳିତ ପ୍ରଳୟାଗ୍ନି ସଦୃଶ ଦୁର୍ନିରୀକ୍ଷ ହୋଇ ଉଠିଲେ । ୨୯-୩୪ । ତେଜସମାବିଷ୍ଟ ରାମଙ୍କୁ ଦେଖି ବନଦେବତାମାନେ ପଳାୟନ କଲେ । ସେତେବେଳେ କ୍ରୁଦ୍ଧ ରାମଙ୍କର ରୂପ ଦକ୍ଷଙ୍କର ଯଜ୍ଞ ବିନଷ୍ଟ କରିବା ପାଇଁ ଉଦ୍ୟତ ପିନାକଧାରୀ ଶିବଙ୍କ ପରି ଦେଖାଗଲା । ୩୫-୩୬ । ନୀଳବର୍ଣ୍ଣ ମେଘସମୂହ

ତୈଶ୍ଚାପୈରସିଭିଃ ଶୂଳୈ-
ର୍ଦ୍ଧ୍ୱଜୈଶ୍ଚ ବର୍ମଭିଶ୍ଚାଗ୍ନି ସମାନବର୍ଣ୍ଣୈଃ ।
ବଭୂବ ସୈନ୍ୟଂ ପିଶିତାଶନାନାମ୍
ସୂର୍ଯ୍ୟୋଦୟେ ନୀଲମିବାଭ୍ରବୃନ୍ଦମ୍ । ୩୭ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ଖରସୈନ୍ୟ ବଲସଂହନନକର୍ଷୋ
ନାମ ଚତୁର୍ବିଂଶଃ ସର୍ଗଃ

---

ସୂର୍ଯ୍ୟୋଦୟ ସମୟରେ ଯେପରି ଶୋଭାପାଏ, ରାକ୍ଷସସୈନ୍ୟ ସେତେବେଳେ ଅଗ୍ନିବର୍ଣ୍ଣ କବଚ, ଅଳଙ୍କାର ଧ୍ୱଜ ଓ ଧନୁସମନ୍ୱିତ ହୋଇ ସେହିପରି ଶୋଭା ଧାରଣ କଲା । ୩୭ ।

# ପଞ୍ଚବିଂଶଃ ସର୍ଗଃ

## ଖରସୈନ୍ୟାବମର୍ଦ୍ଦଃ

ଅବଷ୍ଟବ୍ଧଧନୁଂ ରାମଂ କ୍ରୁଦ୍ଧଂ ଚ ରିପୁଘାତିନମ୍ ।
ଦଦର୍ଶାଶ୍ରମମାଗମ୍ୟ ଖରଃ ସହ ପୁରଃସରୈଃ । ୧ ।
ତଂ ଦୃଷ୍ଟ୍ୱା ସଶରଂ ଚାପମୁଦ୍ୟମ୍ୟ ଖରନିଃସ୍ୱନମ୍ ।
ରାମସ୍ୟାଭିମୁଖଂ ସୂତଂ ଚୋଦ୍ୟତାମିତ୍ୟଚୋଦୟତ୍ । ୨ ।
ସ ଖରସ୍ୟାଜ୍ଞୟା ସୂତସ୍ତୁରଗାନ୍ ସମଚୋଦୟତ୍ ।
ଯତ୍ର ରାମୋ ମହାବାହୁରେକୋ ଧୂନ୍ୱନ୍ ସ୍ଥିତୋ ଧନୁଃ । ୩ ।
ତଂ ତୁ ନିଷ୍ପତିତଂ ଦୃଷ୍ଟ୍ୱା ସର୍ବେ ତେ ରଜନୀଚରାଃ ।
ନର୍ଦମାନା ମହାନାଦଂ ସଚିବାଃ ପର୍ଯ୍ୟବାରୟନ୍ । ୪ ।
ସ ତେଷାଂ ଯାତୁଧାନାନାଂ ମଧ୍ୟେ ରଥଗତଃ ଖରଃ ।
ବଭୂବ ମଧ୍ୟେ ତାରାଣାଂ ଲୋହିତାଙ୍ଗ ଇବୋଦିତଃ । ୫ ।
ତତଃ ଶରସହସ୍ରେଣ ରାମମପ୍ରତିମୌଜସମ୍ ।
ଅର୍ଦୟିତ୍ୱା ମହାନାଦଂ ନନାଦ ସମରେ ଖରଃ । ୬ ।

---

## ୨୫ଶ ସର୍ଗ

( ଖର ସୈନ୍ୟମାନଙ୍କର ନିପାତ )

ଖର ଅଗ୍ରଗାମୀ ସୈନ୍ୟମାନଙ୍କ ସହିତ ଆଶ୍ରମ ନିକଟକୁ ଆସି ଦେଖିଲା ଯେ ରାମ କ୍ରୋଧାନ୍ୱିତ ହୋଇ ଧନୁର୍ଦ୍ଧାରଣ କରି ରହିଛନ୍ତି । ତାହା ଦେଖି ସେ ଶରବ୍ରସ୍ୱରବିଶିଷ୍ଟ ଜ୍ୟାଯୁକ୍ତ ଧନୁ ଉତ୍ତୋଳନ କରି ରାମଙ୍କ ଆଡ଼କୁ ରଥ ଚଳାଅ ବୋଲି ସାରଥିକୁ ଆଦେଶ ଦେଲା । ୨ । ସାରଥି ଖରର ଆଦେଶରେ ଯେଉଁ ସ୍ଥାନରେ ମହାବାହୁ ରାମ ଏକାକୀ ଧନୁକୁ ହଲାଇ ଠିଆ ହୋଇଥିଲେ ସେହି ଆଡ଼କୁ ଘୋଡ଼ାମାନଙ୍କୁ ଚଳାଇଲା । ୩ । ଖର ଏହିପରି ପ୍ରଧାବିତ ହେଉଥିବାର ଦେଖି ତାହାର ଅମାତ୍ୟ ରାକ୍ଷସମାନେ ଘୋର ଗର୍ଜନ କରି ତାହାକୁ ଚତୁର୍ଦ୍ଦିଗରେ ବେଢ଼ି ରହିଲେ । ୪ । ରଥାରୂଢ଼ ଖର ସେହି ରାକ୍ଷସମାନଙ୍କ ମଧ୍ୟରେ, ତାରାଗଣ ମଧ୍ୟରେ ମଙ୍ଗଳଗ୍ରହ ଉଦିତ ହେଲେ ଯେପରି ଦେଖାଯାଏ,ସେହିପରି ଦେଖାଗଲା ।୫। ଅନନ୍ତର ଖରରାକ୍ଷସ ଅତୁଳ-ତେଜସ୍ୱୀ ରାମଙ୍କୁ ସହସ୍ର ବାଣଦ୍ୱାରା ନିପୀଡ଼ିତ କରି ଯୁଦ୍ଧରେ ଘୋର ଗର୍ଜନ କରିବାକୁ

ତତସ୍ତଂ ଭୀମଧନ୍ୱାନଂ କ୍ରୁଦ୍ଧାଃ ସର୍ବେ ନିଶାଚରାଃ ।
ରାମଂ ନାନାବିଧୈଃ ଶସ୍ତ୍ରୈରଭ୍ୟବର୍ଷନ୍ତ ଦୁର୍ଜ୍ଜୟମ୍ । ୭ ।
ମୁଦ୍ଗରୈଃ ପଟ୍ଟିଶୈଃ ଶୂଲୈଃ ପ୍ରାସୈଃ ଖଡ୍ଗୈଃ ପରଶ୍ୱଧୈଃ ।
ରାକ୍ଷସାଃ ସମରେ ରାମଂ ନିଜଘ୍ନୂ ରୋଷତତ୍ପରାଃ । ୮ ।
ତେ ବଳାହକସଂକାଶା ମହାନାଦା ମହୌଜସଃ ।
ଅଭ୍ୟଧାବନ୍ତ କାକୁତ୍ସ୍ଥଂ ରଥୈର୍ବାଜିଭିରେବ ଚ । ୯ ।
ଗଜୈଃ ପର୍ବତକୂଟାଭୈ ରାମଂ ଯୁଦ୍ଧେ ଜିଘାଂସବଃ ।
ତେ ରାମେ ଶରବର୍ଷାଣି ବ୍ୟସୃଜନ୍ ରକ୍ଷସାଂ ଗଣାଃ । ୧୦ ।
ଶୈଳେନ୍ଦ୍ରମିବ ଧାରାଭିର୍ବର୍ଷମାଣା ବଳାହକାଃ ।
ସ ତୈଃ ପରିବୃତୋ ଘୋରୈ ରାଘବୋ ରକ୍ଷସାଂ ଗଣୈଃ । ୧୧ ।
ତିଥିଷ୍ୱିବ ମହାଦେବୋ ବୃତଃ ପାରିଷଦାଂ ଗଣୈଃ ।
ତାନି ମୁକ୍ତାନି ଶସ୍ତ୍ରାଣି ଯାତୁଧାନୈଃ ସ ରାଘବଃ । ୧୨ ।
ପ୍ରତିଜଗ୍ରାହ ବିଶିଖୈର୍ନଦ୍ୟୋଘାନିବ ସାଗରଃ ।
ସ ତୈଃ ପ୍ରହରଣୈର୍ଘୋରୈର୍ଭିନ୍ନଗାତ୍ରୋ ନ ବିବ୍ୟଥେ । ୧୩ ।

---

ଲାଗିଲା । ୬ । ଅନନ୍ତର ରାକ୍ଷସମାନେ କ୍ରୁଦ୍ଧ ହୋଇ ସେହି ଦୁର୍ଜ୍ଜୟ ମହାଭୀଷଣ ଧନୁର୍ଦ୍ଧାରୀ ରାମଙ୍କ ପ୍ରତି ନାନାବିଧ ଶସ୍ତ୍ର ବୃଷ୍ଟି କରିବାକୁ ଲାଗିଲେ । ୭ । ରାକ୍ଷସମାନେ କ୍ରୋଧାନ୍ୱିତ ହୋଇ ଯୁଦ୍ଧରେ ମୁଦ୍‌ଗର, ପଟ୍ଟିଶ, ଶୂଳ, ପ୍ରାସ, ଖଡ୍‌ଗ ଓ ପରଶୁଦ୍ୱାରା ରାମଙ୍କୁ ପ୍ରହାର କରିବାକୁ ଲାଗିଲେ । ୮ । ମେଘସଦୃଶ ମହାଗର୍ଜନକାରୀ ମହାତେଜସ୍ୱୀ ସେହି ରାକ୍ଷସମାନେ ରଥ, ଅଶ୍ୱ ଏବଂ ପର୍ବତଶୃଙ୍ଗସଦୃଶ ହସ୍ତୀମାନଙ୍କରେ ବସି ଯୁଦ୍ଧରେ ରାମଙ୍କୁ ହତ୍ୟା କରିବା ଅଭିପ୍ରାୟରେ ତାଙ୍କ ଆଡ଼କୁ ଧାଇଁଲେ । ମେଘମାନେ ପର୍ବତରାଜ ଉପରେ ଯେପରି ବୃଷ୍ଟିଧାରା ବର୍ଷଣ କରନ୍ତି, ସେହିପରି ସେହି ରାକ୍ଷସମାନେ ରାମଙ୍କ ପ୍ରତି ଶରବୃଷ୍ଟି କରିବାକୁ ଲାଗିଲେ । ଅମାବାସ୍ୟାଦି ତିଥିରେ ମହାଦେବ ନିଜର ପାରିଷଦଗଣଙ୍କଦ୍ୱାରା ପରିବୃତ ହୋଇ ଯେପରି ଦେଖାଯାନ୍ତି ରାମ ସେହି ଭୟଙ୍କର ରାକ୍ଷସଙ୍କଦ୍ୱାରା ପରିବେଷ୍ଟିତ ହୋଇ ସେହିପରି ଦେଖାଗଲେ । ସମୁଦ୍ର ଯେପରି ନଦୀର ସ୍ରୋତକୁ ପରିଗ୍ରହ କରେ, ରାକ୍ଷସମାନଙ୍କ ଦ୍ୱାରା ନିକ୍ଷିପ୍ତ ଶସ୍ତ୍ରମାନଙ୍କୁ ରାଘବ ସେହିପରି ଶରମାନଙ୍କଦ୍ୱାରା ଗ୍ରହଣ କଲେ । ସେହି ଭୀଷଣ ପ୍ରହରଣମାନଙ୍କଦ୍ୱାରା ତାଙ୍କର ଶରୀର ବିଦ୍ଧ ହେଉଥିଲେ ମଧ୍ୟ, ସୁବିଶାଳ ପର୍ବତ ବଜ୍ରଦ୍ୱାରା ବିଦ୍ଧହୋଇ ଅଚଳ ରହିଲାପରି ରାମ ଲେଶମାତ୍ର ବ୍ୟଥିତ ହେଲେନାହିଁ । ୯-୧୩ ।

ରାମଃ ପ୍ରଦୀପ୍ତୈର୍ବହୁଭିର୍ବର୍କୈରିବ ମହାଚଳଃ ।
ସ ବଭୌଃ କ୍ଷତଜାଦିଗ୍ଧଃ ସର୍ବଗାତ୍ରେଷୁ ରାଘବଃ । ୧୪ ।
ବଭୂବ ରାମଃ ସନ୍ଧ୍ୟାଭ୍ରୈର୍ଦିବାକର ଇବାବୃତଃ ।
ବିଷେଦୁର୍ଦେବଗନ୍ଧର୍ବାଃ ସିଦ୍ଧାଶ୍ଚ ପରମର୍ଷୟଃ । ୧୫ ।
ଏକଂ ସହସ୍ରୈର୍ବହୁଭିସ୍ତଦା ଦୃଷ୍ଟ୍ୱା ସମାବୃତମ୍ ।
ତତୋ ରାମଃ ସୁସଂକ୍ରୁଦ୍ଧୋ ମଣ୍ଡଳୀକୃତକାର୍ମୁକଃ । ୧୬ ।
ସସର୍ଜ ନିଶିତାନ୍ ବାଣାନ୍ ଶତଶୋଽଥ ସହସ୍ରଶଃ ।
ଦୁରାବାରାନ୍ ଦୁର୍ବିଷହାନ୍ କାଳଦଣ୍ଡୋପମାନ୍ ରଣେ । ୧୭ ।
ମୁମୋଚ ଲୀଳୟା ରାମଃ କଙ୍କପତ୍ରାନଜିହ୍ମଗାନ୍ ।
ତେ ଶରାଃ ଶତ୍ରୁସୈନ୍ୟେଷୁ ମୁକ୍ତା ରାମେଣ ଲୀଳୟା । ୧୮ ।
ଆଦଦୂ ରକ୍ଷସାଂ ପ୍ରାଣାନ୍ ପାଶାଃ କାଲକୃତା ଇବ ।
ଭିତ୍ତ୍ୱା ରାକ୍ଷସଦେହାଂସ୍ତାଂସ୍ତେ ଶରା ରୁଧିରାପ୍ଲୁତାଃ । ୧୯ ।
ଅନ୍ତରୀକ୍ଷଗତା ରେଜୁର୍ଦୀପ୍ତାଗ୍ନିସମ ତେଜସଃ ।
ଅସଂଖ୍ୟେୟାସ୍ତୁ ରାମସ୍ୟ ସାୟକାଶ୍ଚାପମଣ୍ଡଳାତ୍ । ୨୦ ।
ବିନିଷ୍ପେତୁରତୀବୋଗ୍ରା ରକ୍ଷଃପ୍ରାଣାପହାରିଣଃ ।
ଧନୂଂଷି ଚ ଧ୍ୱଜାଗ୍ରାଣି ବର୍ମାଣି ଚ ଶିରାଂସି ଚ । ୨୧ ।

---

ନାହିଁ । ରାମ ସମଗ୍ର ଶରୀରରେ ଅସ୍ତ୍ରବିଦ୍ଧ ଏବଂ ରକ୍ତଲିପ୍ତ ହୋଇ ସୂର୍ଯ୍ୟ ସନ୍ଧ୍ୟାକାଳୀନ ମେଘଦ୍ୱାରା ଆବୃତ ହେଲାପରି ଶୋଭା ପାଇଲେ । ଦେବ, ଗନ୍ଧର୍ବ, ସିଦ୍ଧ ଓ ମହର୍ଷିମାନେ ସମସ୍ତେ, ସେତେବେଳେ ଏକମାତ୍ର ରାମଙ୍କୁ ବହୁ ସହସ୍ର ରାକ୍ଷସମାନଙ୍କଦ୍ୱାରା ପରିବେଷ୍ଟିତ ହେବାର ଦେଖି ବିଷଣ୍ଣ ହୋଇଉଠିଲେ । ଅନନ୍ତର ରାମ ଅତିଶୟ କ୍ରୋଧରେ ଧନୁକୁ ମଣ୍ଡଳାକାର କରି ସେ ଯୁଦ୍ଧରେ ଶତ ଶତ ସହସ୍ର ସହସ୍ର କାଳଦଣ୍ଡସଦୃଶ ଦୁର୍ନିବାର ଏବଂ ଦୁର୍ବିଷହ ତୀକ୍ଷ୍ଣ ଶର ନିକ୍ଷେପ କରିବାକୁ ଲାଗିଲେ । ୯-୧୭ । ରାମ ଅବଲୀଳାକ୍ରମେ ଋଜୁଗାମୀ କଙ୍କପତ୍ର ଶରମାନ ନିକ୍ଷେପ କରିବାକୁ ଲାଗିଲେ । ରାମଙ୍କ ନିକ୍ଷିପ୍ତ ଏହି ଶରରାଜି ଶତ୍ରୁ ସୈନ୍ୟ-ମଧ୍ୟରେ କାଳପାଶସଦୃଶ ରାକ୍ଷସମାନଙ୍କର ପ୍ରାଣସଂହାର କଲା । ସେହି ଶରସମୂହ ରାକ୍ଷସମାନଙ୍କ ଶରୀର ଭେଦକରି ରୁଧିରଲିପ୍ତ ହୋଇ ଆକାଶକୁ ଉଠି ପ୍ରଜ୍ୱଳିତ ଅଗ୍ନିସଦୃଶ ଶୋଭା ଧାରଣ କଲା । ସେତେବେଳେ ରାମଙ୍କ ଧନୁର୍ମଣ୍ଡଳରୁ ଅସଂଖ୍ୟ ରାକ୍ଷସପ୍ରାଣହାରୀ ତୀବ୍ର ଶର ନିର୍ଗତ ହେବାକୁ ଲାଗିଲା । ରାମ ଯୁଦ୍ଧରେ

ବାହୂନ୍ ସହସ୍ତାଭରଣାନୂରୂନ୍ କରିକରୋପମାନ୍ ।
ଚିଚ୍ଛେଦ ରାମଃ ସମରେ ଶତଶୋଽଥ ସହସ୍ରଶଃ । ୨୨ ।
ହୟାନ୍ କାଞ୍ଚନସଂନାହାନ୍ ରଥଯୁକ୍ତାନ୍ ସସାରଥୀନ୍ ।
ଗଜାଂଶ୍ଚ ସଗଜାରୋହାନ୍ ସହୟାନ୍ ସାଦିନସ୍ତଥା । ୨୩ ।
ଚିଚ୍ଛିଦୁର୍ବିଭିଦୁଶ୍ଚାପି ରାମଶ୍ଚାପଗୁଣାଚ୍ୟୁତାଃ ।
ପଦାତୀନ୍ ସମରେ ହତ୍ୱା ହ୍ୟନୟଦ୍ୟମସାଦନମ୍ । ୨୪ ।
ତତୋ ନାଳୀକନାରାଚୈସ୍ତୀକ୍ଷ୍ଣାଗ୍ରୈଶ୍ଚ ବିକର୍ଣିଭିଃ ।
ଭୀମମାର୍ତ୍ତସ୍ୱରଂ ଚକ୍ରୁର୍ଭିଦ୍ୟମାନା ନିଶାଚରାଃ । ୨୫ ।
ତତ୍ସୈନ୍ୟଂ ନିଶିତୈର୍ବାଣୈରର୍ଦିତଂ ମର୍ମଭେଦିଭିଃ ।
ରାମେଣ ନ ସୁଖଂ ଲେଭେ ଶୁଷ୍କଂ ବନମିବାଗ୍ନିନା । ୨୬ ।
କେଚିଦ୍ଭୀମବଲାଃ ଶୂରାଃ ଶୂଲାନ୍ ଖଡ୍‌ଗାନ୍ ପରଶ୍ୱଧାନ୍ ।
ରାମସ୍ୟାଭିମୁଖଂ ଗତ୍ୱା ଚିକ୍ଷିପୁଃ ପରମାୟୁଧାନ୍ । ୨୭ ।
ତାନି ବାଣୈର୍ମହାବାହୁଃ ଶସ୍ତ୍ରାଣ୍ୟାବାର୍ଯ୍ୟ ରାଘବଃ ।
ଜହାର ସମରେ ପ୍ରାଣାଂଶ୍ଚିଚ୍ଛେଦ ଚ ଶିରୋଧରାନ୍ । ୨୮ ।

---

ରାକ୍ଷସମାନଙ୍କର ଶତ ଶତ ସହସ୍ର ସହସ୍ର ଧନୁ, ଧ୍ୱଜାଗ୍ର, ବର୍ମ, ମସ୍ତକ, ହସ୍ତାଭରଣ-ଯୁକ୍ତ ବାହୁ ଏବଂ ହସ୍ତି ଶୁଣ୍ଢସଦୃଶ ଉରୁଗୁଡ଼ିକ ଛେଦନ କରି ପକାଇଲେ । ୧୮-୨୨ । ରାମ ଧନୁର୍ମୁକ୍ତ ଶରରାଜିଦ୍ୱାରା ସାରଥି ସହିତ ସ୍ୱର୍ଣ୍ଣାଭରଣଯୁକ୍ତ ରଥଯୋଜିତ ଅଶ୍ୱ ଓ ଗଜାରୋହୀ ସହିତ ଗଜ ଏବଂ ଅଶ୍ୱାରୋହୀ ସହିତ ଅଶ୍ୱମାନଙ୍କୁ ଛିନ୍ନ ଭିନ୍ନ କରି ଓ ପଦାତିମାନଙ୍କୁ ହତ୍ୟା କରି ଯମାଳୟକୁ ପ୍ରେରଣ କଲେ । ୨୩-୨୪ । ଅନନ୍ତର ରାକ୍ଷସମାନେ ତୀକ୍ଷ୍ଣାଗ୍ର, ନାଳୀକ, ନାରାଚ ଓ ବିକର୍ଣ୍ଣିସମୂହଦ୍ୱାରା ବିଦ୍ଧ ହୋଇ ଘୋର ଆର୍ତ୍ତସ୍ୱର କରିବାକୁ ଲାଗିଲେ । ୨୫ । ଶୁଷ୍କ ବନ ଅଗ୍ନିସଂଯୋଗରେ ଦଗ୍ଧ ହେଲାପରି ରାକ୍ଷସସୈନ୍ୟ ରାମଙ୍କର ମର୍ମଭେଦୀ ତୀକ୍ଷ୍ଣ ଶରସମୂହଦ୍ୱାରା ନିପୀଡ଼ିତ ହୋଇ ଅତିଶୟ ଦୁଃଖାର୍ତ୍ତ ହୋଇପଡ଼ିଲେ । ୨୬ । କୌଣସି କୌଣସି ଭୀମପରାକ୍ରମୀ ବୀର ରାକ୍ଷସ ରାମଙ୍କ ସମ୍ମୁଖକୁ ଯାଇ ତାଙ୍କପ୍ରତି ଶୂଳ, ଖଡ୍‌ଗ ଓ ପରଶ୍ୱଧ ପ୍ରଭୃତି ଉତ୍କୃଷ୍ଟ ଅସ୍ତ୍ରମାନ ନିକ୍ଷେପ କଲେ । ୨୭ । ମହାବାହୁ ରାଘବ ଯୁଦ୍ଧରେ ଶରଦ୍ୱାରା ସେହି ଶସ୍ତ୍ରମାନଙ୍କୁ ନିବାରଣ କରି ଏବଂ ସେହି ରାକ୍ଷସମାନଙ୍କର ବେକ କାଟିପକାଇ ସେମାନଙ୍କର ପ୍ରାଣସଂହାର କଲେ । ୨୮ । ଗରୁଡ଼ଙ୍କର ପକ୍ଷଜାତ ପବନରେ

ତେ ଛିନ୍ନଶିରସଃ ପେତୁଶ୍ଛିନ୍ନବର୍ମଶରାସନାଃ ।
ସୁପର୍ଣବାତବିକ୍ଷିପ୍ତା ଜଗତ୍ୟାଂ ପାଦପା ଯଥା । ୨୯ ।
ଅବଶିଷ୍ଟାଶ୍ଚ ଯେ ତତ୍ର ବିଷଣ୍ଣାଶ୍ଚ ନିଶାଚରାଃ ।
ଖରମେବାଭ୍ୟଧାବନ୍ତ ଶରଣାର୍ଥଂ ଶରାର୍ଦ୍ଦିତାଃ । ୩୦ ।
ତାନ୍ ସର୍ବାନ୍ ପୁନରାଦାୟ ସମାଶ୍ୱାସ୍ୟ ଚ ଦୂଷଣଃ ।
ଅଭ୍ୟଧାବତ କାକୁତ୍ସ୍ଥଂ କ୍ରୁଦ୍ଧୋ ରୁଦ୍ରମିବାନ୍ତକଃ । ୩୧ ।
ନିବୃତ୍ତାସ୍ତୁ ପୁନଃ ସର୍ବେ ଦୂଷଣାଶ୍ରୟନିର୍ଭୟାଃ ।
ରାମମେବାଭ୍ୟଧାବନ୍ତ ସାଲତାଲଶିଳାୟୁଧାଃ । ୩୨ ।
ଶୂଳମୁଦ୍ଗରହସ୍ତାଶ୍ଚ ଚାପହସ୍ତା ମହାବଳାଃ ।
ସୃଜନ୍ତଃ ଶରବର୍ଷାଣି ଶସ୍ତ୍ରବର୍ଷାଣି ସଂଯୁଗେ । ୩୩ ।
ଦ୍ରୁମବର୍ଷାଣି ମୁଞ୍ଚନ୍ତଃ ଶିଳାବର୍ଷାଣି ରାକ୍ଷସାଃ ।
ତଦ୍ବଭୂବାଦ୍ଭୁତଂ ଯୁଦ୍ଧଂ ତୁମୁଳଂ ରୋମହର୍ଷଣମ୍ । ୩୪ ।
ରାମସ୍ୟ ଚ ମହାଘୋରଂ ପୁନସ୍ତେଷାଂ ଚ ରକ୍ଷସାମ୍ ।
ତେ ସମନ୍ତାଦଭିକ୍ରୁଦ୍ଧା ରାଘବଂ ପୁନରଭ୍ୟୟୁଃ । ୩୫ ।
ତୈଶ୍ଚ ସର୍ବା ଦିଶୋ ଦୃଷ୍ଟ୍ୱା ପ୍ରଦିଶଶ୍ଚ ସମାବୃତାଃ ।
ରାକ୍ଷସୈରୁଦ୍ୟତପ୍ରାସୈଃ ଶରବର୍ଷାଭିବର୍ଷିଭିଃ । ୩୬ ।

---

ବୃକ୍ଷସକଳ ଭୂତଳରେ ପତିତ ହେଲପରି ରାକ୍ଷସମାନଙ୍କର କବଚ ଓ ଧନୁ ଛିଣ୍ଡି ଯିବାରୁ ଏବଂ ମସ୍ତକ ଛିନ୍ନ ହୋଇଯିବାରୁ ସେମାନେ ଭୂଇଁରେ ଲୋଟିବାକୁ ଲାଗିଲେ ।୨୯। ସେଠାରେ ଆଉ ଯେଉଁ ରାକ୍ଷସମାନେ ଅବଶିଷ୍ଟ ରହିଲେ ସେମାନେ ଶରପୀଡ଼ିତ ଏବଂ ବିଷଣ୍ଣ ହୋଇ ଆଶ୍ରୟ ନିମନ୍ତେ ଖର ଆଡ଼କୁ ଦୌଡ଼ିଲେ ।୩୦। ଅନନ୍ତର ଦୂଷଣ ଅତିଶୟ କ୍ରୁଦ୍ଧ ହୋଇ ସେମାନଙ୍କୁ ପୁଣି ଏକତ୍ର କରି ଏବଂ ଆଶ୍ୱାସନା ଦେଇ, କୃତାନ୍ତ ରୁଦ୍ରଙ୍କ ଆଡ଼କୁ ଦୌଡ଼ିଲା ପରି ରାମଙ୍କ ଆଡ଼କୁ ଦୌଡ଼ିଲା ।୩୧। ସେମାନେ ସମସ୍ତେ ଦୂଷଣର ଆଶ୍ରୟଲାଭ କରି ନିର୍ଭୟ ହୋଇ ପଳାୟନରୁ ବିରତ ହେଲେ ଏବଂ ଶାଳ,ତାଳ,ଶିଳା, ପ୍ରାସ, ମୁଦ୍‌ଗର, ଶୂଳ ଓ ଧନୁ ପ୍ରଭୃତି ଆୟୁଧ ହାତରେ ଧରି ରାମଙ୍କ ଅଭିମୁଖରେ ଧାବମାନ ହେଲେ । ସେହି ମହାବଳୀ ରାକ୍ଷସମାନେ ଯୁଦ୍ଧରେ ଶରବୃଷ୍ଟି ଓ ଶସ୍ତ୍ରବୃଷ୍ଟି ସର୍ଜନା କଲେ ଏବଂ ଦ୍ରୁମବୃଷ୍ଟି ଓ ଶିଳାବୃଷ୍ଟି କରିବାକୁ ଲାଗିଲେ । ଏହିପରିଭାବରେ ରାମ ଏବଂ ସେହି ରାକ୍ଷସମାନଙ୍କ ମଧ୍ୟରେ ଅତି ତୁମୂଳ ରୋମହର୍ଷକାରୀ ମହାଘୋର ଅଦ୍ଭୁତ ଯୁଦ୍ଧ ଆରମ୍ଭ ହେଲା । ରାକ୍ଷସମାନେ ଅତିଶୟ କ୍ରୁଦ୍ଧ ହୋଇ ଚାରିଆଡ଼ୁ ପୁଣି ରାମଙ୍କୁ ଆକ୍ରମଣ କଲେ ।୩୨-୩୫। ପ୍ରାସ ଉତ୍ତୋଳନକାରୀ ଏବଂ ଶରବୃଷ୍ଟିକାରୀ ରାକ୍ଷସମାନଙ୍କଦ୍ୱାରା ସମଗ୍ର ଦିଗ୍‌ବିଦିଗ୍ ଆଚ୍ଛାଦିତ ହେବାର ଦେଖି ମହାବଳୀ

ସ କୃତ୍ୱା ଭୈରବଂ ନାଦମସ୍ତ୍ରଂ ପରମଭାସ୍ୱରମ୍ ।
ସଂଯୋଜୟତ ଗାନ୍ଧର୍ବଂ ରାକ୍ଷସେଷୁ ମହାବଳଃ । ୩୭ ।
ତତଃ ଶରସହସ୍ରାଣି ନିର୍ଯୟୁଶ୍ଚାପମଣ୍ଡଳାତ୍ ।
ସର୍ବା ଦଶ ଦିଶୋ ବାଣୈରାବାର୍ଯନ୍ତ ସମାଗତୈଃ । ୩୮ ।
ନାଦଦାନଂ ଶରାନ୍ ଘୋରାନ୍ନ ମୁଞ୍ଚନ୍ତଂ ଶିଲୀମୁଖାନ୍ ।
ବିକର୍ଷମାଣଂ ପଶ୍ୟନ୍ତି ରାକ୍ଷସାସ୍ତେ ଶରାର୍ଦ୍ଦିତାଃ । ୩୯ ।
ଶରାନ୍ଧକାରମାକାଶମାବୃଣୋତ୍ସଦିବାକରମ୍ ।
ବଭୂବାବସ୍ଥିତୋ ରାମଃ ପ୍ରବମନ୍ନିବ ତାନ୍ ଶରାନ୍ । ୪୦ ।
ଯୁଗପତ୍ ପତମାନୈଶ୍ଚ ଯୁଗପଚ୍ଚ ହତୈର୍ଭୃଶମ୍ ।
ଯୁଗପତ୍ ପତିତୈଶ୍ଚୈବ ବିକୀର୍ଣା ବସୁଧାଭବତ୍ । ୪୧ ।
ନିହତାଃ ପତିତାଃ କ୍ଷୀଣାଶ୍ଛିନ୍ନା ଭିନ୍ନା ବିଦାରିତାଃ ।
ତତ୍ର ତତ୍ର ସ୍ମ ଦୃଶ୍ୟନ୍ତେ ରାକ୍ଷସାସ୍ତେ ସହସ୍ରଶଃ । ୪୨ ।
ସୋଷ୍ଣୀଷୈରୁତ୍ତମାଙ୍ଗୈଶ୍ଚ ସାଙ୍ଗଦୈର୍ବାହୁଭିସ୍ତଥା ।
ଊରୁଭିର୍ଜାନୁଭିଶ୍ଛିନ୍ନୈର୍ନାନାରୂପବିଭୂଷଣୈଃ । ୪୩ ।

---

ରାମ ଘୋର ଗର୍ଜନ କରି ଅତିଦୀପ୍ତିଶାଳୀ ଗାନ୍ଧର୍ବ ଅସ୍ତ୍ର ରାକ୍ଷସମାନଙ୍କ ପ୍ରତି ପ୍ରୟୋଗ କଲେ ।୩୬-୩୭। ଅନନ୍ତର ତାଙ୍କର ଧନୁମଣ୍ଡଳରୁ ସହସ୍ର ସହସ୍ର ଶର ନିର୍ଗତ ହେଲା ଏବଂ ସେହି ଶରରାଜିଦ୍ୱାରା ଦଶଦିଗ ଆଚ୍ଛାଦିତ ହୋଇଗଲା । ୩୮ । ରାକ୍ଷସମାନେ ଏହି ସମୟରେ ଏପରି ଶରପୀଡ଼ିତ ହୋଇ ଗଲେ ଯେ ରାମ ଯେଉଁ ଭୟଙ୍କର ତୀକ୍ଷ୍ଣ ଶରସକଳ ଗ୍ରହଣ କରୁଥିଲେ ଏବଂ ମୋଚନ କରୁଥିଲେ ଏବଂ ଯେପରି ଧନୁ ଆକର୍ଷଣ କରୁଥିଲେ ତାହା ଆଦୌ ଦେଖିପାରିଲେ ନାହିଁ ।୩୯। ତାଙ୍କ ଶରରେ ଅନ୍ଧକାର ଆବିର୍ଭୂତ ହୋଇ ସୂର୍ଯ୍ୟଙ୍କ ସହିତ ଆକାଶମଣ୍ଡଳକୁ ଆଚ୍ଛନ୍ନ କରି ପକାଇଲା । ରାମ ସେ ସମସ୍ତ ଶର ଉଦ୍‌ଗାର କରୁଥିଲା ପରି ଠିଆହୋଇ ରହିଲେ ।୪୦। ଏପରି ଶରବୃଷ୍ଟି ଦ୍ୱାରା ବହୁ ରାକ୍ଷସ ଏକସମୟରେ ଯୁଗପତ୍ ହତ, ପତିତ ବା ପତନୋନ୍ମୁଖ ହେଲେ ଓ ସେମାନଙ୍କ ଦ୍ୱାରା ଭୂତଳ ଆଚ୍ଛାଦିତ ହୋଇଗଲା ।୪୧। ସେଠାରେ ସର୍ବତ୍ର ସହସ୍ରସହସ୍ର ରାକ୍ଷସ ପତିତ, ଛିନ୍ନଭିନ୍ନ, ବିଦାରିତ ଓ ମୃତ ହୋଇଥିବାର ଦେଖାଗଲେ ।୪୨। ଉଷ୍ଣୀଷ ସହିତ ମସ୍ତକ, ଅଙ୍ଗଦ ସହିତ ବାହୁ, ନାନାଅଳଙ୍କାରସମନ୍ୱିତ ହସ୍ତ ଓ ଉରୁ ଏବଂ ପ୍ରଧାନ ପ୍ରଧାନହସ୍ତୀ, ଅଶ୍ୱ, ରଥ, ଚାମର, ବ୍ୟଜନ, ଛତ୍ର, ଧ୍ୱଜ, ଶୂଳ, ପଟ୍ଟିଶ ପ୍ରଭୃତି ବହୁସଂଖ୍ୟାରେ

ହତୈଶ୍ଚ ଦ୍ୱିପମୁଖ୍ୟୈଶ୍ଚ ରଥୈର୍ଭିନ୍ନୈରନେକଶଃ ।
ଚ୍ଛମରୈର୍ବ୍ୟଜନୈଶ୍ଛତ୍ରୈର୍ଧ୍ୱଜୈର୍ନାନାବିଧୈରପି । ୪୪ ।
ରାମସ୍ୟ ବାଣାଭିହତୈର୍ବିଚିତ୍ରୈଃ ଶୂଳପଟ୍ଟିଶୈଃ ।
ବିଚ୍ଛିନ୍ନୈଃ ସମରେ ଭୂମିର୍ବିକୀର୍ଣ୍ଣାଭୂଦ୍ ଭୟଙ୍କରା । ୪୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ ଅରଣ୍ୟକାଣ୍ଡେ ଖରସୈନ୍ୟାବମର୍ଦୋ
ନାମ ପଞ୍ଚବିଂଶଃ ସର୍ଗଃ ।

———

ରାମଙ୍କ ବାଣଦ୍ୱାରା ଛିନ୍ନ ହୋଇ ଭୂତଳରେ ପତିତ ହେଲା ଏବଂ ସେହି ରଣଭୂମି ଏହି ସମସ୍ତଦ୍ୱାରା ସମାଚ୍ଛନ୍ନ ହୋଇ ଅତିଭୟଙ୍କର ଦେଖାଗଲା । ୪୩-୪୫ ।

———

# ଷଡ଼୍‌ବିଂଶଃ ସର୍ଗଃ

## ଦୂଷଣାଦିବଧଃ

ଦୂଷଣସ୍ତୁ ସ୍ୱକଂ ସୈନ୍ୟଂ ହନ୍ୟମାନଂ ନିରୀକ୍ଷ୍ୟ ସଃ ।
ସଂଦିଦେଶ ମହାବାହୁର୍ଭୀମବେଗାନ୍ ଦୁରାସଦାନ୍ । ୧ ।
ରାକ୍ଷସାନ୍ ପଞ୍ଚସାହସ୍ରାନ୍ ସମରେଷ୍ୱନିବର୍ତ୍ତିନଃ ।
ତେ ଶୂଲୈଃ ପଟ୍ଟିଶୈଃ ଖଡ୍ଗୈଃ ଶିଳାବର୍ଷୈର୍ଦ୍ରୁମୈରପି । ୨ ।
ଶରବର୍ଷୈରବିଚ୍ଛିନ୍ନଂ ବବୃଷୁସ୍ତଂ ସମନ୍ତତଃ ।
ତଦ୍ଦ୍ରୁମାଣାଂ ଶିଳାନାଂ ଚ ବର୍ଷଂ ପ୍ରାଣହରଂ ମହତ୍ । ୩ ।
ପ୍ରତିଜଗ୍ରାହ ଧର୍ମାତ୍ମା ରାଘବସ୍ତୀକ୍ଷ୍ଣସାୟକୈଃ ।
ପ୍ରତିଗୃହ୍ୟ ଚ ତଦ୍‌ବର୍ଷଂ ନିମୀଲିତ ଇବର୍ଷଭଃ । ୪ ।
ରାମଃ କ୍ରୋଧଂ ପରଂ ଭେଜେ ବଧାର୍ଥଂ ସର୍ବରକ୍ଷସାମ୍ ।
ତତଃ କ୍ରୋଧସମାବିଷ୍ଟଃ ପ୍ରଦୀପ୍ତ ଇବ ପାବକଃ । ୫ ।
ଶରୈରବାକିରତ୍ସୈନ୍ୟଂ ସର୍ବତଃ ସହଦୂଷଣମ୍ ।
ତତଃ ସେନାପତିଃ କ୍ରୁଦ୍ଧୋ ଦୂଷଣଃ ଶତ୍ରୁଦୂଷଣଃ । ୬ ।

---

## ୨୬ଶ ସର୍ଗ

### ( ଦୂଷଣାଦିଙ୍କର ବଧ )

ମହାବାହୁ ଦୂଷଣ ସ୍ୱୀୟ ସୈନ୍ୟମାନଙ୍କୁ ନିହତ ହେଉଥିବାର ଦେଖି ଭୀଷଣ ବେଗଶାଳୀ ଦୁର୍ଦ୍ଧର୍ଷ ଓ ଯୁଦ୍ଧରେ ପଛଘୁଞ୍ଚା ନ ଦେଉଥିବା ପାଞ୍ଚ ସହସ୍ର ରାକ୍ଷସଙ୍କୁ ଯୁଦ୍ଧ କରିବାକୁ ଆଦେଶ ଦେଲା । ସେମାନେ ଚାରିଆଡ଼ୁ ରାମଙ୍କ ଉପରେ ଅନବରତ ଶୂଳ, ପଟ୍ଟିଶ, ଖଡ୍‌ଗ, ପ୍ରସ୍ତର ଏବଂ ଶରବର୍ଷଣ କରିବାକୁ ଲାଗିଲେ । ଧର୍ମାତ୍ମା ରାମ ତୀକ୍ଷ୍ଣ ଶରରାଜିଦ୍ୱାରା ସେହି ପ୍ରାଣହାରୀ ବିଶାଳବୃକ୍ଷ ଓ ଶିଳାବୃଷ୍ଟି ସମ୍ବରଣ କଲେ । ବୃଷଭ ଯେପରି ଚକ୍ଷୁ ନିମୀଳିତ କରି ବୃଷ୍ଟିଧାରା ସହ୍ୟ କରେ, ସେହିପରି ରାମ ତାହା ସହ୍ୟ କରି ସମସ୍ତ ରାକ୍ଷସଙ୍କର ବିନାଶ ନିମନ୍ତେ ଅତିଶୟ କ୍ରୁଦ୍ଧ ହୋଇ ଉଠିଲେ । ଅନନ୍ତର ରାମ କ୍ରୋଧାବିଷ୍ଟ ଏବଂ ଅଗ୍ନିସଦୃଶ ଜାଜ୍ୱଲ୍ୟମାନ ହୋଇ ଦୂଷଣକୁ ଓ ତାହାର ସୈନ୍ୟମାନଙ୍କୁ ଶରସମୂହଦ୍ୱାରା ସର୍ବତୋଭାବରେ ଆଚ୍ଛନ୍ନ କରିପକାଇଲେ । ଅନନ୍ତର ଶତ୍ରୁହନ୍ତା ସେନାପତି ଦୂଷଣ କ୍ରୁଦ୍ଧ ହୋଇ

ଶରୈରଶନିକଳ୍ପୈସ୍ତଂ ରାଘବଂ ସମବାକିରତ୍ ।
ତତୋ ରାମଃ ସୁସଂକ୍ରୁଦ୍ଧଃ କ୍ଷୁରେଣାସ୍ୟ ମହଦ୍ଧନୁଃ । ୭ ।
ଚଚ୍ଛେଦ ସମରେ ବୀରଶ୍ଚତୁର୍ଭିଶ୍ଚତୁରୋ ହୟାନ୍ ।
ହତ୍ୱା ଚାଶ୍ୱାନ୍ ଶରୈସ୍ତୀକ୍ଷ୍ଣୈରର୍ଦ୍ଧଚନ୍ଦ୍ରେଣ ସାରଥେଃ । ୮ ।
ଶରୋ ଜହାର ତଦ୍ରକ୍ଷସ୍ତ୍ରିଭିର୍ବିବ୍ୟାଧ ବକ୍ଷସି ।
ସ ଛିନ୍ନଧନ୍ୱା ବିରଥୋ ହତାଶ୍ୱୋ ହତସାରଥିଃ । ୯ ।
ଜଗ୍ରାହ ଗିରିଶୃଙ୍ଗାଭଂ ପରିଘଂ ରୋମହର୍ଷଣମ୍ ।
ବେଷ୍ଟିତଂ କାଞ୍ଚନୈଃ ପଟ୍ଟୈର୍ଦେବସୈନ୍ୟପ୍ରମର୍ଦ୍ଦନମ୍ । ୧୦ ।
ଆୟସୈଃ ଶଙ୍କୁଭିସ୍ତୀକ୍ଷ୍ଣୈଃ କୀର୍ଣ୍ଣଂ ପରବସୋକ୍ଷିତମ୍ ।
ବଜ୍ରାଶନିସମସ୍ପର୍ଶଂ ପରଗୋପୁରଦାରଣମ୍ । ୧୧ ।
ତ୍ରାସନଂ ସର୍ବଭୂତାନାଂ କାଞ୍ଚନାଙ୍ଗଦଭୂଷଣମ୍ ।
ତଂ ମହୋରଗସଂକାଶଂ ପ୍ରଗୃହ୍ୟ ପରିଘଂ ରଣେ । ୧୨ ।
ଦୂଷଣୋଽଭ୍ୟଦ୍ରବଦ୍ରାମଂ କ୍ରୂରକର୍ମା ନିଶାଚରଃ ।
ତସ୍ୟାଭିପତମାନସ୍ୟ ଦୂଷଣସ୍ୟ ସ ରାଘବଃ । ୧୩ ।

---

ବଜ୍ରସମ ଶରସମୂହଦ୍ୱାରା ରାମଙ୍କୁ ଆଚ୍ଛାଦିତ କରିପକାଇଲା । ଅନନ୍ତର ବୀର ରାମ ଅତ୍ୟନ୍ତ କ୍ରୁଦ୍ଧ ହୋଇ ଯୁଦ୍ଧରେ କ୍ଷୁର-ଶରଦ୍ୱାରା ତାହାର ପ୍ରକାଣ୍ଡ ଧନୁକୁ କାଟି ପକାଇଲେ ଚାରିଗୋଟି ଶରରେ ତାହାର ରଥଟିଯାକ ଘୋଡ଼ାଙ୍କୁ ହତ୍ୟାକରି ଅର୍ଦ୍ଧଚନ୍ଦ୍ର ଶରଦ୍ୱାରା ସାରଥିର ମସ୍ତକ ମଧ୍ୟଚ୍ଛେଦନ କଲେ ଏବଂ ତିନୋଟି ଶରଦ୍ୱାରା ସେ ଦୂଷଣ ରାକ୍ଷସର ବକ୍ଷ ବିଦ୍ଧ କଲେ । ଦୂଷଣ ଛିନ୍ନଧନୁ, ବିରଥ, ହତସାରଥି ଓ ହତାଶ୍ୱ ହୋଇ ରୋମହର୍ଷଣକାରୀ ଗିରିଶୃଙ୍ଗସଦୃଶ ଏକ ପରିଘ ଧାରଣ କଲା । ଏହି ଦେବସୈନ୍ୟ ବିମର୍ଦ୍ଦନକାରୀ ପରିଘ ସ୍ୱର୍ଣ୍ଣମୟ ପଟ୍ଟବସ୍ତ୍ରରେ ବେଷ୍ଟିତ ହୋଇଥିଲା ଏବଂ ଲୌହନିର୍ମିତ ସୁତୀକ୍ଷ୍ଣ ଶଙ୍କୁସମୂହଦ୍ୱାରା ସମାକୀର୍ଣ୍ଣ ହୋଇଥିଲା । ଏଥିରେ ଶତ୍ରୁର ବସାବୋଳା ହୋଇ ଥିଲା । ଏହାର ସ୍ପର୍ଶ ବଜ୍ରସଦୃଶ ଏବଂ ଏହା ଶତ୍ରୁର ପୁରଦ୍ୱାରକୁ ବିଦୀର୍ଣ୍ଣ କରିଦେଇପାରେ । ୧-୧୧ । କ୍ରୂରକର୍ମା ରାକ୍ଷସ ଦୂଷଣ - ସର୍ବପ୍ରାଣୀଙ୍କର ଭୟ ଉତ୍ପାଦକ ସ୍ୱର୍ଣ୍ଣକଙ୍କଣଭୂଷିତ ବୃହତ ସର୍ପସଦୃଶ ଏହି ପରିଘ ଗ୍ରହଣ କରି ଯୁଦ୍ଧରେ ରାମଙ୍କ ଅଭିମୁଖରେ ଧାବିତ ହେଲା । ରାମ ସେହି ଧାବମାନ ଦୂଷଣର ହସ୍ତାଭରଣଭୂଷିତ ଭୁଜ ଦୁଇଟିକୁ ଦୁଇଟି ଶରରେ କାଟି ପକାଇଲେ । ସେହି ବିଶାଳ ପରିଘ ତାହାର ହସ୍ତରୁ ବିଚ୍ଛିନ୍ନ ହୋଇ ଇନ୍ଦ୍ରଧ୍ୱଜସଦୃଶ ଯୁଦ୍ଧଭୂମିରେ

ଦ୍ୱାଭ୍ୟାଂ ଶରାଭ୍ୟାଂ ଚିଚ୍ଛେଦ ସହସ୍ତାଭରଣୌ ଭୁଜୌ ।
ଭ୍ରଷ୍ଟସ୍ତସ୍ୟ ମହାକାୟଃ ପପାତ ରଣମୂର୍ଧନି । ୧୪ ।
ପରିଘଶ୍ଛିନ୍ନହସ୍ତସ୍ୟ ଶକ୍ରଧ୍ୱଜ ଇବାଗ୍ରତଃ ।
ସ କରାଭ୍ୟାଂ ବିକୀର୍ଣାଭ୍ୟାଂ ପପାତ ଭୁବି ଦୂଷଣଃ । ୧୫ ।
ବିଷାଣାଭ୍ୟାଂ ବିଶୀର୍ଣାଭ୍ୟାଂ ମନସ୍ୱୀବ ମହାଗଜଃ ।
ତଂ ଦୃଷ୍ଟ୍ୱା ପତିତଂ ଭୂମୌ ଦୂଷଣଂ ନିହତଂ ରଣେ । ୧୬ ।
ସାଧୁ ସାଧ୍ୱିତି କାକୁତ୍ସ୍ଥଂ ସର୍ବଭୂତାନ୍ୟପୂଜୟନ୍ ।
ଏତସ୍ମିନ୍ନନ୍ତରେ କ୍ରୁଦ୍ଧାସ୍ତ୍ରୟଃ ସେନାଗ୍ରଯାୟିନଃ । ୧୭ ।
ସଂହତ୍ୟାଭ୍ୟଦ୍ରବନ୍ ରାମଂ ମୃତ୍ୟୁପାଶାବପାଶିତାଃ ।
ମହାକପାଲଃ ସ୍ଥୂଲାକ୍ଷଃ ପ୍ରମାଥୀ ଚ ମହାବଳଃ । ୧୮ ।
ମହାକପାଲୋ ବିପୁଲଂ ଶୂଲମୁଦ୍ୟମ୍ୟ ରାକ୍ଷସଃ ।
ସ୍ଥୂଲାକ୍ଷଃ ପଟ୍ଟିଶଂ ଗୃହ୍ୟ ପ୍ରମାଥୀ ଚ ପରଶ୍ୱଧମ୍ । ୧୯ ।
ଦୃଷ୍ଟ୍ୱୈବାପତତସ୍ତୂର୍ଣଂ ରାଘବଃ ସାୟକୈଃ ଶିତୈଃ ।
ତୀକ୍ଷ୍ଣାଗ୍ରୈଃ ପ୍ରତିଜଗ୍ରାହ ସଂପ୍ରାପ୍ତାନତିଥୀନିବ । ୨୦ ।
ମହାକପାଲସ୍ୟ ଶିରଶ୍ଚିଚ୍ଛେଦ ପରମେଷୁଭିଃ ।
ଅସଂଖ୍ୟେୟୈସ୍ତୁ ବାଣୌଘୈଃ ପ୍ରମମାଥ ପ୍ରମାଥିନମ୍ । ୨୧ ।

---

ଅଗ୍ରଭାଗରେ ପତିତ ହେଲା । ଦୂଷଣର ଦୁଇ ହାତ ଛିଣ୍ଡିଯିବାରୁ ସେ ଛିନ୍ନଦନ୍ତ ମହାହସ୍ତୀ ପରି ଭୂତଳରେ ପତିତ ହେଲା । ଦୂଷଣ ଯୁଦ୍ଧରେ ନିହତ ହୋଇ ଭୂତଳରେ ପତିତ ହେବାର ଦେଖି ସମସ୍ତ ପ୍ରାଣୀ "ସାଧୁ, ସାଧୁ" ବୋଲି କହି ରାମଙ୍କୁ ସମ୍ବର୍ଦ୍ଧନା କଲେ । ଏହି ସମୟରେ ସୈନ୍ୟମାନଙ୍କର ଅଗ୍ରବର୍ତ୍ତୀ ତିନୋଟି ରାକ୍ଷସ ଏକତ୍ର ହୋଇ ମୃତ୍ୟୁପାଶବଦ୍ଧ ହେଲାପରି ଅତି-କ୍ରୋଧରେ ରାମଙ୍କ ଅଭିମୁଖରେ ପ୍ରଧାବିତ ହେଲେ । ସେମାନଙ୍କର ନାମ ମହା-କପାଳ, ସ୍ଥୂଳାକ୍ଷ ଏବଂ ମହାବଳୀ ପ୍ରମାଥୀ । ୧୬-୧୮ । ମହାକପାଳ ରାକ୍ଷସ ଗୋଟିଏ ବିଶାଳ ଶୂଳ ଉତ୍ତୋଳନ କରିଥିଲା । ସ୍ଥୂଳାକ୍ଷ ପଟ୍ଟିଶ ଏବଂ ପ୍ରମାଥୀ ପରଶୁ ଧାରଣ କରିଥିଲା । ୧୯ । ରାମ ତୀକ୍ଷ୍ଣଧାର ଶାଣିତ ଶରଦ୍ୱାରା ତାଙ୍କ ଅଭିମୁଖରେ ଧାବମାନ ସେହି ତିନିରାକ୍ଷସଙ୍କୁ ସମାଗତ ଅତିଥିସଦୃଶ ସ୍ୱାଗତ କଲେ । ୨୦ । ସେ ଉତ୍କୃଷ୍ଟ ଶରସମୂହଦ୍ୱାରା ମହାକପାଳର ଶିରଚ୍ଛେଦନ କଲେ ଏବଂ ଅସଂଖ୍ୟ ଶରଦ୍ୱାରା ପ୍ରମାଥୀକୁ ନିହତ କଲେ । ୨୧ । ସେ ନିହତ ହୋଇ ଶାଖାଯୁକ୍ତ ବିଶାଳ ବୃକ୍ଷପରି

ସ ପପାତ ହତୋ ଭୂମୌ ବିଟପୀବ ମହାଦ୍ରୁମଃ ।
ସ୍ଥୂଲାକ୍ଷସ୍ୟାକ୍ଷିଣୀ ତୀକ୍ଷ୍ଣୈଃ ପୂରୟାମାସ ସାୟକୈଃ । ୨୨ ।
ଦୂଷଣସ୍ୟାନୁଗାନ୍ ପଞ୍ଚସାହସ୍ରାନ୍ କୁପିତଃ କ୍ଷଣାତ୍ ।
ବାଣୌଘୈଃ ପଞ୍ଚସାହସ୍ରୈରନୟଦ୍ ଯମସାଦନମ୍ । ୨୩ ।
ଦୂଷଣଂ ନିହତଂ ଦୃଷ୍ଟ୍ୱା ତସ୍ୟ ଚୈବ ପଦାନୁଗାନ୍ ।
ବ୍ୟାଦିଦେଶ ଖରଃ କ୍ରୁଦ୍ଧଃ ସେନାଧ୍ୟକ୍ଷାନ୍ ମହାବଲାନ୍ । ୨୪ ।
ଅୟଂ ବିନିହତଃ ସଂଖ୍ୟେ ଦୂଷଣଃ ସପଦାନୁଗଃ ।
ମହତ୍ୟା ସେନୟା ସାର୍ଧଂ ଯୁଦ୍ଧ୍ୱା ରାମଂ କୁମାନୁଷମ୍ । ୨୫ ।
ଶସ୍ତ୍ରୈର୍ନାନାବିଧାକାରୈର୍ହନଧ୍ୱଂ ସର୍ବରାକ୍ଷସାଃ ।
ଏବମୁକ୍ତ୍ୱା ଖରଃ କ୍ରୁଦ୍ଧୋ ରାମମେବାଭିଦୁଦ୍ରୁବେ । ୨୬ ।
ଶ୍ୟେନଗାମୀ ପୃଥୁଗ୍ରୀବୋ ଯଜ୍ଞଶତ୍ରୁର୍ବିହଙ୍ଗମଃ ।
ଦୁର୍ଜୟଃ କରବୀରାକ୍ଷଃ ପରୁଷଃ କାଲକାର୍ମୁକଃ । ୨୭ ।
ମେଘମାଲୀ ମହାମାଲୀ ସର୍ପାସ୍ୟୋ ରୁଧିରାଶନଃ ।
ଦ୍ୱାଦଶୈତେ ମହାବୀର୍ଯା ବଲାଧ୍ୟକ୍ଷାଃ ସସୈନିକାଃ । ୨୮ ।
ରାମମେବାଭ୍ୟବର୍ତନ୍ତ ବିସୃଜନ୍ତଃ ଶରୋତ୍ତମାନ୍ ।
ତତଃ ପାବକସଂକାଶୈର୍ହେମବଜ୍ରବିଭୂଷିତୈଃ । ୨୯ ।

---

ଭୂମିରେ ପଡ଼ିଗଲା । ରାମ ତୀକ୍ଷ୍ଣ ଶରରେ ସ୍ଥୂଳାକ୍ଷର ଚକ୍ଷୁ ଦୁଇଟି ପୂର୍ଣ୍ଣ କରିଦେଲେ । । ୨୨ । ରାମ କ୍ରୋଧାନ୍ୱିତ ହୋଇ ପଞ୍ଚସହସ୍ର ଶରଦ୍ୱାରା ମୁହୂର୍ତ୍ତକ ମଧ୍ୟରେ ଦୂଷଣର ଅନୁଗାମୀ ପାଞ୍ଚ ସହସ୍ର ରାକ୍ଷସଙ୍କୁ ଯମାଳୟକୁ ପଠାଇଦେଲେ । ୨୩ । ଦୂଷଣ ଏବଂ ତାହାର ଅନୁଗାମୀ ରାକ୍ଷସମାନଙ୍କୁ ନିହତ ହେବାର ଦେଖି ଖର ଅତିଶୟ କ୍ରୁଦ୍ଧ ହୋଇ ମହାବଳୀ ସୈନ୍ୟାଧ୍ୟକ୍ଷମାନଙ୍କୁ ଆଦେଶ ଦେଲା ।୨୪ । ସେ କହିଲା, "ଦେଖ ଏହି ଦୂଷଣ ଓ ତାହାର ଅନୁଗାମୀମାନେ ବିଶାଳ ସୈନ୍ୟବାହିନୀ ସାହାଯ୍ୟରେ ନରାଧମ ରାମ ସହିତ ଯୁଦ୍ଧ କରି ନିହତ ହୋଇଅଛନ୍ତି । ୨୫ । ସୁତରାଂ ତୁମେ ରାକ୍ଷସମାନେ ସମସ୍ତେ ବିବିଧ ଶସ୍ତ୍ରଦ୍ୱାରା ତାହାକୁ ବଧ କର ।" ଖର ଏହା କହି କ୍ରୋଧରେ ରାମଙ୍କ ଆଡ଼କୁ ଧାବିତ ହେଲା । ୨୬ । ଶ୍ୟେନଗାମୀ, ପୃଥୁଗ୍ରୀବ, ଯଜ୍ଞଶତ୍ରୁ, ବିହଙ୍ଗମ, ଦୁର୍ଜୟ, କରବୀରାକ୍ଷ, ପରୁଷ, କାଳକାର୍ମୁକ, ମେଘମାଳୀ, ମହାମାଳୀ, ସର୍ପାସ୍ୟ ଏବଂ ରୁଧିରାଶନ ଏହି ବାରଜଣ ମହାପରାକ୍ରମୀ ସୈନ୍ୟାଧ୍ୟକ୍ଷ ନିଜ ନିଜ ସୈନ୍ୟମାନଙ୍କ ସହିତ ଉତ୍କୃଷ୍ଟ ଶରରାଜି ପ୍ରୟୋଗପୂର୍ବକ ରାମଙ୍କ ନିକଟରେ

ଜଘାନ ଶେଷଂ ତେଜସ୍ୱୀ ତସ୍ୟ ସୈନ୍ୟସ୍ୟ ସାୟକୈଃ ।
ତେ ରୁକ୍ମପୁଙ୍ଖା ବିଶିଖାଃ ସଧୂମା ଇବ ପାବକାଃ । ୩୦ ।
ନିଜଘ୍ନୁସ୍ତାନି ରକ୍ଷାଂସି ବଜ୍ରା ଇବ ମହାଦ୍ରୁମାନ୍ ।
ରକ୍ଷସାଂ ତୁ ଶତଂ ରାମଃ ଶତେନୈକେନ କର୍ଣିନା । ୩୧ ।
ସହସ୍ରଂ ଚ ସହସ୍ରେଣ ଜଘାନ ରଣମୂର୍ଧନି ।
ତୈର୍ଭିନ୍ନବର୍ମାଭରଣାଶ୍ଛିନ୍ନଭିନ୍ନଶରାସନାଃ । ୩୨ ।
ନିପେତୁଃ ଶୋଣିତାଦିଗ୍ଧା ଧରଣ୍ୟାଂ ରଜନୀଚରାଃ ।
ତୈର୍ମୁକ୍ତକେଶୈଃ ସମରେ ପତିତୈଃ ଶୋଣିତୋକ୍ଷିତୈଃ । ୩୩ ।
ଆସ୍ତୀର୍ଣା ବସୁଧା କୃତ୍ସ୍ନା ମହାବେଦିଃ କୁଶୈରିବ ।
କ୍ଷଣେନ ତୁ ମହାଘୋରଂ ବନଂ ନିହତରାକ୍ଷସମ୍ । ୩୪ ।
ବଭୂବ ନିରୟପ୍ରଖ୍ୟଂ ମାଂସଶୋଣିତକର୍ଦମମ୍ ।
ଚତୁର୍ଦଶ ସହସ୍ରାଣି ରକ୍ଷସାଂ ଭୀମକର୍ମଣାମ୍ । ୩୫ ।
ହତାନ୍ୟେକେନ ରାମେଣ ମାନୁଷେଣ ପଦାତିନା ।
ତସ୍ୟ ସୈନ୍ୟସ୍ୟ ସର୍ବସ୍ୟ ଖରଃ ଶେଷୋ ମହାରଥଃ । ୩୬ ।
ରାକ୍ଷସସ୍ତ୍ରିଶିରାଶ୍ଚୈବ ରାମଶ୍ଚ ରିପୁସୂଦନଃ ।
ଶେଷା ହତା ମହାସତ୍ତ୍ୱା ରାକ୍ଷସା ରଣମୂର୍ଧନି । ୩୭ ।

---

ଉପସ୍ଥିତ ହେଲେ । ଅନନ୍ତର ତେଜସ୍ୱୀ ରାମଚନ୍ଦ୍ର ହେମବର୍ଣ୍ଣ ବିଭୂଷିତ ଅଗ୍ନିତୁଲ୍ୟ ଶରସମୂହଦ୍ୱାରା ଅବଶିଷ୍ଟ ସୈନ୍ୟମାନଙ୍କୁ ହତ୍ୟା କରିବାକୁ ଲାଗିଲେ । ସେ ତାଙ୍କର ଧୂମଯୁକ୍ତ ଅଗ୍ନିତୁଲ୍ୟ ଏବଂ ସ୍ୱର୍ଣ୍ଣପୁଙ୍ଖଯୁକ୍ତ ଶରସମୂହଦ୍ୱାରା, ମହାବୃକ୍ଷମାନଙ୍କୁ ବଜ୍ର ବିନଷ୍ଟ କଲାପରି, ସେହି ରାକ୍ଷସମାନଙ୍କୁ ବିନଷ୍ଟ କରିଦେଲେ । ରାମ ଯୁଦ୍ଧକ୍ଷେତ୍ରରେ ଏକଶତ କର୍ଣ୍ଣୀଦ୍ୱାରା ଶହେ ରାକ୍ଷସଙ୍କୁ ଏବଂ ଏକସହସ୍ର ଶରଦ୍ୱାରା ଏକସହସ୍ର ରାକ୍ଷସଙ୍କୁ ନିହତ କରିଦେଲେ । ଏହିସବୁ ଶରଦ୍ୱାରା ରାକ୍ଷସମାନଙ୍କର ବର୍ମ, ଆଭରଣ ଏବଂ ଧନୁସମୂହ ଛିନ୍ନଭିନ୍ନ ହୋଇଗଲା ଓ ସେମାନେ ରକ୍ତାକ୍ତଶରୀର ହୋଇ ଭୂତଳରେ ପତିତ ହେଲେ । ଯଜ୍ଞବେଦୀ ଯେପରି କୁଶଦ୍ୱାରା ପରିବ୍ୟାପ୍ତ ହୋଇଥାଏ, ସେହିପରି ଶୋଣିତାକ୍ତ କଳେବର ମୁକ୍ତକେଶ ରାକ୍ଷସମାନଙ୍କଦ୍ୱାରା ସମଗ୍ର ପୃଥିବୀ ଏକାବେଳକେ ଆଚ୍ଛନ୍ନ ହୋଇଗଲା । ମୁହୂର୍ତ୍ତକ ମଧ୍ୟରେ ସେହି ମହାଘୋର ବନର ସମସ୍ତ ରାକ୍ଷସ ନିହତ ହେବାରୁ ତାହା ମାଂସ ଓ ଶୋଣିତର କର୍ଦ୍ଦମଦ୍ୱାରା ଆଚ୍ଛନ୍ନ ହୋଇ ନରକ ପ୍ରାୟ ହୋଇଗଲା । ଏକମାତ୍ର ମନୁଷ୍ୟ ରାମ ପଦାତିରୂପେ ଯୁଦ୍ଧ କରି ଚତୁର୍ଦ୍ଦଶ ସହସ୍ର ଭୀମକର୍ମା ରାକ୍ଷସଙ୍କୁ ବଧ କରିଦେଲେ । ସମୁଦାୟ ସୈନ୍ୟମଧ୍ୟରୁ କେବଳ

**ଘୋରା ଦୁର୍ବିଷହାଃ ସର୍ବେ ଲକ୍ଷ୍ମଣସ୍ୟାଗ୍ରଜେନ ତେ । ୩୮ ।**
**ତତସ୍ତୁ ତଦ୍ଭୀମବଲଂ ମହାହବେ**
**ସମୀକ୍ଷ୍ୟ ରାମେଣ ହତଂ ବଲୀୟସା ।**
**ରଥେନ ରାମଂ ମହତା ଖରସ୍ତଦା**
**ସମାସସାଦେନ୍ଦ୍ର ଇବୋଦ୍ୟତାଶନିଃ । ୩୯ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ ଅରଣ୍ୟକାଣ୍ଡେ ଦୂଷଣାଦିବଧୋ ନାମ
ଷଡ଼୍‌ବିଂଶଃ ସର୍ଗଃ

---

ମହାରଥ ଖର, ରାକ୍ଷସ ତ୍ରିଶିରା ଏବଂ ଶତ୍ରୁହନ୍ତା ରାମ ଏହି ତିନିଜଣ ମାତ୍ର ଅବଶିଷ୍ଟ ରହିଲେ । ମହାପରାକ୍ରମୀ ଘୋର ଦୁର୍ବିଷହ ଅନ୍ୟ ରାକ୍ଷସମାନେ ସମସ୍ତେ ଲକ୍ଷ୍ମଣାଗ୍ରଜଙ୍କ କର୍ତ୍ତୃକ ସେହି ଯୁଦ୍ଧକ୍ଷେତ୍ରରେ ନିହତ ହେଲେ । ୨୭ ୩୮ । ଅନନ୍ତର ମହାଯୁଦ୍ଧରେ ଭୀମବଳ ରାକ୍ଷସମାନେ ସମସ୍ତେ ବଳବାନ୍ ରାମଙ୍କକର୍ତ୍ତୃକ ନିହତ ହେବାର ଦେଖି, ଖର ବିଶାଳ ରଥରେ ଆରୋହଣ କରି ବଜ୍ର ଉଠାଇଥିବା ଇନ୍ଦ୍ରଙ୍କପରି ରାମଙ୍କୁ ଆକ୍ରମଣ କଲା । ୩୯ ।

---

# ସପ୍ତବିଂଶଃ ସର୍ଗଃ

## ତ୍ରିଶିରାବଧଃ

ଖରଂ ତୁ ରାମାଭିମୁଖଂ ପ୍ରୟାନ୍ତଂ ବାହିନୀପତିଃ ।
ରାକ୍ଷସସ୍ତ୍ରିଶିରା ନାମ ସଂନିପତ୍ୟେଦମବ୍ରବୀତ୍ । ୧ ।
ମାଂ ନିଯୋଜୟ ବିକ୍ରାନ୍ତ ସଂନିବର୍ତ୍ତସ୍ୱ ସାହସାତ୍ ।
ପଶ୍ୟ ରାମଂ ମହାବାହୁଂ ସଂଯୁଗେ ବିନିପାତିତମ୍ । ୨ ।
ପ୍ରତିଜାନାମି ତେ ସତ୍ୟମାୟୁଧଂ ଚାହମାଲଭେ ।
ଯଥା ରାମଂ ବଧିଷ୍ୟାମି ବଧାର୍ହଂ ସର୍ବରକ୍ଷସାମ୍ । ୩ ।
ଅହଂ ବାସ୍ୟ ରଣେ ମୃତ୍ୟୁରେଷ ବା ସମରେ ମମ ।
ବିନିବୃତ୍ୟ ରଣୋତ୍ସାହାନ୍ମୁହୂର୍ତ୍ତଂ ପ୍ରାଶ୍ନିକୋ ଭବ । ୪ ।
ପ୍ରହୃଷ୍ଟୋ ବା ହତେ ରାମେ ଜନସ୍ଥାନଂ ପ୍ରୟାସ୍ୟସି ।
ମୟି ବା ନିହତେ ରାମଂ ସଂଯୁଗାୟୋପଯାସ୍ୟସି । ୫ ।
ଖରସ୍ତ୍ରିଶିରସା ତେନ ମୃତ୍ୟୁଲୋଭାତ୍ ପ୍ରସାଦିତଃ ।
ଗଚ୍ଛ ଯୁଧ୍ୟେତ୍ୟନୁଜ୍ଞାତୋ ରାଘବାଭିମୁଖୋ ଯଯୌ । ୬ ।

---

## ୨୭ଶ ସର୍ଗ

### (ତ୍ରିଶିରାର ବଧ)

ଖର ରାମଙ୍କ ଆଡ଼କୁ ଅଗ୍ରସର ହେଉଥିବାର ଦେଖି ସେନାପତି ରାକ୍ଷସ ତ୍ରିଶିରା ତାହା ନିକଟରେ ପହଞ୍ଚି ଯାଇ କହିଲା ।୧। "ହେ ବିକ୍ରମି ! ତୁମେ ଏ ସାହସରୁ ନିବୃତ୍ତ ହୁଅ ଏବଂ ମୋତେ ଏ କାର୍ଯ୍ୟରେ ନିଯୁକ୍ତ କର । ତୁମେ ଦେଖ, ମହାବାହୁ ରାମ ମୋ କର୍ତ୍ତୃକ ଯୁଦ୍ଧରେ କପରି ନିହତ ହେଉଛି । ୨ । ମୁଁ ଅସ୍ତ୍ର ଧରି ତୁମ ନିକଟରେ ସତ୍ୟ କରି ପ୍ରତିଜ୍ଞା କରୁଛି ଯେ ସମସ୍ତ ରାକ୍ଷସଙ୍କର ବଧ୍ୟ ରାମକୁ ମୁଁ ନିଶ୍ଚୟ ବଧ କରିବ । ୩ । ତୁମେ ଯୁଦ୍ଧ ଉତ୍ସାହରୁ ନିବୃତ୍ତ ହୋଇ ମୁହୂର୍ତ୍ତିକ ପାଇଁ ପରୀକ୍ଷକ ରୂପେ ଦେଖ, ମୁଁ ତାହାକୁ ଯୁଦ୍ଧରେ ମାରୁଛି କି ସେ ମୋତେ ମାରୁଛି ? ।୪। ରାମ ଯୁଦ୍ଧରେ ନିହତ ହେଲେ ତୁମେ ହୃଷ୍ଟ ଆନନ୍ଦମନରେ ଜନସ୍ଥାନକୁ ଯିବ କିମ୍ବା ମୁଁ ନିହତ ହେଲେ ତୁମେ ରାମସମୀପକୁ ଯୁଦ୍ଧକରିବାକୁ ଅଗ୍ରସର ହେବ" ।୫। ତ୍ରିଶିରା ଏହିପରି ମୃତ୍ୟୁଲୋଭରେ ବଶୀଭୂତ ହୋଇ ଖରକୁ ପ୍ରସନ୍ନ କରାଇଲା ଏବଂ "ଯାଅ,ଯୁଦ୍ଧ କର" ବୋଲି ଖର ଅନୁମତି ଦେବାରୁ ସେ ରାମଙ୍କ ଆଡ଼କୁ ଅଗ୍ରସର ହେଲା । ୬ ।

ତ୍ରିଶିରାଶ୍ଚ ରଥେନୈବ ବାଜିଯୁକ୍ତେନ ଭାସ୍ୱତା ।
ଅଭ୍ୟଦ୍ରବଦ୍ରଣେ ରାମଂ ତ୍ରିଶୃଙ୍ଗ ଇବ ପର୍ବତଃ । ୭ ।
ଶରଧାରାସମୂହାନ୍ ସ ମହାମେଘ ଇବୋତ୍ସୃଜନ୍ ।
ବ୍ୟସୃଜତ୍ସଦୃଶଂ ନାଦଂ ଜଲାର୍ଦ୍ରସ୍ୟ ତୁ ଦୁନ୍ଦୁଭେଃ । ୮ ।
ଆଗଚ୍ଛନ୍ତଂ ତ୍ରିଶିରସଂ ରାକ୍ଷସଂ ପ୍ରେକ୍ଷ୍ୟ ରାଘବଃ ।
ଧନୁଷା ପ୍ରତିଜଗ୍ରାହ ବିଧୂନ୍ୱନ୍ ସାୟକାନ୍ ଶିତାନ୍ । ୯ ।
ସ ସଂପ୍ରହାରସ୍ତୁମୁଲୋ ରାମତ୍ରିଶିରସୋର୍ମହାନ୍ ।
ବଭୂବାତୀବ ବଲିନୋଃ ସିଂହକୁଞ୍ଜରୟୋରିବ । ୧୦ ।
ତତସ୍ତ୍ରିଶିରସା ବାଣୈର୍ଲଲାଟେ ତାଡ଼ିତସ୍ତ୍ରିଭିଃ ।
ଅମର୍ଷୀ କୁପିତୋ ରାମଃ ସଂରବ୍ଧମିଦମବ୍ରବୀତ୍ । ୧୧ ।
ଅହୋ ବିକ୍ରମଶୂରସ୍ୟ ରାକ୍ଷସସ୍ୟେଦୃଶଂ ବଲମ୍ ।
ପୁଷ୍ପୈରିବ ଶରୈର୍ଯସ୍ୟ ଲଲାଟେଽସ୍ମି ପରିକ୍ଷତଃ । ୧୨ ।
ମମାପି ପ୍ରତିଗୃହ୍ଣୀଷ୍ୱ ଶରାଂଶ୍ଚାପଗୁଣଚ୍ୟୁତାନ୍ ।
ଏବମୁକ୍ତ୍ୱା ତୁ ସଂରବ୍ଧଃ ଶରାନାଶୀବିଷୋପମାନ୍ । ୧୩ ।
ତ୍ରିଶିରୋବକ୍ଷସି କ୍ରୁଦ୍ଧୋ ନିଜଘାନ ଚତୁର୍ଦଶ ।
ଚତୁର୍ଭିସ୍ତୁରଗାନସ୍ୟ ଶରୈଃ ସଂନତପର୍ବଭିଃ । ୧୪ ।

---

ତିନଗୋଟି ଶୃଙ୍ଗବିଶିଷ୍ଟ ପର୍ବତପରି ତ୍ରିଶିରା ରାକ୍ଷସ ଦୀପ୍ତିଯୁକ୍ତ ଅଶ୍ୱଯୋଜିତ ରଥରେ ଆରୋହଣ କରି ସେହି ଯୁଦ୍ଧକ୍ଷେତ୍ରରେ ରାମଙ୍କ ଆଡ଼କୁ ଧାବମାନ ହେଲା । ୭ । ମହାମେଘ ଯେପରି ଜଳଧାରା ବର୍ଷଣ କରେ ସେହିପରି ତ୍ରିଶିରା ଶରଧାରା ବର୍ଷଣ କରି ଜଳାର୍ଦ୍ର ଦୁନ୍ଦୁଭିପରି ଗର୍ଜନ ଛାଡ଼ିଲା । ୮ । ତ୍ରିଶିରା ଆସୁଥିବାର ଦେଖି ରାଘବ ସୁତୀକ୍ଷ୍ଣ ଶରସମୂହ ବିଧୂନିତ କରି ଧନୁରେ ଚଢ଼ାଇଲେ ।୯। ରାମ ଏବଂ ତ୍ରିଶିରା ଉଭୟଙ୍କ ସେହି ମହାଯୁଦ୍ଧ ଅତିବଳବାନ୍ ସିଂହ ଓ ହସ୍ତୀ ମଧ୍ୟରେ ଯୁଦ୍ଧ ପରି ଅତିପ୍ରବଳ ହୋଇଥିଲା । ୧୦ । ଅନନ୍ତର କ୍ରୁଦ୍ଧ ରାମ ଲଲାଟଦେଶରେ ତ୍ରିଶିରାକର୍ତ୍ତୃକ ତିନୋଟି ବାଣଦ୍ୱାରା ବିଦ୍ଧହୋଇ କ୍ରୋଧରେ ଓ ଗର୍ବିତଭାବରେ କହିଲେ । ୧୧ । "ଅହୋ, ପରାକ୍ରମୀ ରାକ୍ଷସର ଏତେ ବଳ ! ମୁଁ ଲଲାଟଦେଶରେ ଏହାର ଶରରେ ସତେ ଯେପରି ପୁଷ୍ପମାନଙ୍କ ଦ୍ୱାରା ଆହତ ହୋଇଅଛି । ୧୨ । ଆଚ୍ଛା, ଏବେ ମୋର ଧନୁର୍ଗୁଣରୁ ନିକ୍ଷିପ୍ତ ଏହି ଶରମାନଙ୍କୁ ଗ୍ରହଣକର ।" ଏହା କହି କ୍ରୁଦ୍ଧ ରାମ ସଦର୍ପରେ ସର୍ପସଦୃଶ ଚତୁର୍ଦ୍ଦଶ ଶର ତ୍ରିଶିରାର ହୃଦୟରେ ବିଦ୍ଧ କଲେ । ତେଜସ୍ୱୀ ରାମ ଚାରିଗୋଟି ନତପର୍ବ ବାଣଦ୍ୱାରା ତାହାର ଚାରିଟି ଘୋଡ଼ାଙ୍କୁ ନିପାତ କଲେ ଏବଂ

ନ୍ୟପାତୟତ ତେଜସ୍ୱୀ ଚତୁରସ୍ତସ୍ୟ ବାଜିନଃ ।
ଅଷ୍ଟଭିଃ ସାୟକୈଃ ସୂତଂ ରଥୋପସ୍ଥାନ୍ୟପାତୟତ୍ । ୧୫ ।
ରାମଶ୍ଚିଚ୍ଛେଦ ବାଣେନ ଧ୍ୱଜଂ ଗୃସ୍ୟସମୁଚ୍ଛ୍ରିତମ୍ ।
ତତୋ ହତରଥାତ୍ତସ୍ମାଦୁତ୍ପତନ୍ତଂ ନିଶାଚରମ୍ । ୧୬ ।
ବିଭେଦ ରାମସ୍ତଂ ବାଣୈର୍ହୃଦୟେ ସୋଽଭବଜ୍ଜଡ଼ଃ ।
ସାୟକୈଶ୍ଚାପ୍ରମେୟାତ୍ମା ସାମର୍ଷସ୍ତସ୍ୟ ରକ୍ଷସଃ । ୧୭ ।
ଶିରାଂସ୍ୟପାତୟଦ୍ରାମୋ ବେଗବଦ୍ଭିସ୍ତ୍ରିଭିଃ ଶିତୈଃ ।
ସ ଭୂମୌ ରୁଧିରୋଦ୍ଗାରୀ ରାମବାଣାଭିପୀଡ଼ିତଃ । ୧୮ ।
ନ୍ୟପତତ୍ପତିତୈଃ ପୂର୍ବଂ ସ୍ୱଶିରୋଭିର୍ନିଶାଚରଃ ।
ହତଶେଷାସ୍ତତୋ ଭଗ୍ନା ରାକ୍ଷସାଃ ଖରସଂଶ୍ରୟାଃ । ୧୯ ।
ଦ୍ରବନ୍ତି ସ୍ମ ନ ତିଷ୍ଠନ୍ତି ବ୍ୟାଘ୍ରତ୍ରସ୍ତା ମୃଗା ଇବ ।
ତାନ୍ ଖରୋ ଦ୍ରବତୋ ଦୃଷ୍ଟ୍ୱା ନିବର୍ତ୍ୟ ରୁଷିତଃ ସ୍ୱୟମ୍ । ୨୦ ।
ରାମମେବାଭିଦୁଦ୍ରାବ ରାହୁଶ୍ଚନ୍ଦ୍ରମସଂ ଯଥା । ୨୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ ଅରଣ୍ୟକାଣ୍ଡେ ତ୍ରିଶିରୋବଧୋ
ନାମ ସପ୍ତବିଂଶଃ ସର୍ଗଃ

---

ଆଠଗୋଟି ଶରଦ୍ୱାରା ତାହାର ସାରଥିକୁ ରଥର ସମ୍ମୁଖଭାଗରୁ ଖସାଇ ପକାଇଲେ । ୧୩-୧୫ । ରାମ ଗୋଟିଏ ବାଣଦ୍ୱାରା ତାହାର ଅତ୍ୟୁନ୍ନତ ଧ୍ୱଜକୁ ମଧ୍ୟ ଛେଦନ କରିଦେଲେ । ଅନନ୍ତର ଅଶ୍ୱ ଓ ସାରଥିଶୂନ୍ୟ ରଥରୁ ଉତ୍ପତିତ ହେଉଥିବା ସେହି ତ୍ରିଶିରା ରାକ୍ଷସର ହୃଦୟକୁ ରାମ ଶରରାଜି ଦ୍ୱାରା ବିଦ୍ଧ କଲେ ଏବଂ ସେ ସଂଜ୍ଞାହୀନ ହୋଇଗଲା । ଅନନ୍ତର ଅପ୍ରମେୟାତ୍ମା ରାମ କ୍ରୋଧାନ୍ୱିତ ହୋଇ ତିନିଗୋଟି ବେଗଶାଳୀ ତୀକ୍ଷ୍ଣ ଶରଦ୍ୱାରା ତାହାର ତିନିଟିଯାକ ମୁଣ୍ଡ କାଟି ତଳେ ପକାଇଦେଲେ । ସେହି ରାକ୍ଷସ ରାମଙ୍କ ବାଣଦ୍ୱାରା ଆହତ ହୋଇ ରୁଧିର ଉଦ୍‌ଗୀରଣପୂର୍ବକ ପୂର୍ବରୁ ପଡ଼ିଯାଇଥିବା ନିଜର ତିନିଟିଯାକ ମସ୍ତକସହିତ ଭୂମିରେ ପଡ଼ିଗଲା । ଖରର ଆଶ୍ରିତ ହତାବଶିଷ୍ଟ ରାକ୍ଷସମାନେ ରଣରେ ଭଙ୍ଗ ଦେଇ ବ୍ୟାଘ୍ରତାଡ଼ିତ ମୃଗମାନଙ୍କ ପରି ପଳାୟନ କଲେ, ଆଉ ସେଠାରେ ରହିଲେ ନାହିଁ । ସେମାନେ ପଳାଇ ଯାଉଥିବାର ଦେଖି ଖର ସେମାନଙ୍କୁ ନିବର୍ତ୍ତାଇ କ୍ରୋଧରେ ରାହୁ ଚନ୍ଦ୍ରଙ୍କୁ ଗୋଡ଼ାଇଲା ପରି, ନିଜେ ରାମଙ୍କ ଆଡ଼କୁ ଧାବିତ ହେଲା । ୧୬-୨୧ ।

# ଅଷ୍ଟାବିଂଶଃ ସର୍ଗଃ

## ଖରରାମସଂପ୍ରହାରଃ

ନିହତଂ ଦୂଷଣଂ ଦୃଷ୍ଟ୍ୱା ରଣେ ତ୍ରିଶିରସା ସହ ।
ଖରସ୍ୟାପ୍ୟଭବତ୍ତ୍ରାସୋ ଦୃଷ୍ଟ୍ୱା ରାମସ୍ୟ ବିକ୍ରମମ୍ । ୧ ।
ସ ଦୃଷ୍ଟ୍ୱା ରାକ୍ଷସଂ ସୈନ୍ୟମବିଷହ୍ୟଂ ମହାବଳଃ ।
ହତମେକେନ ରାମେଣ ତ୍ରିଶିରୋ ଦୂଷଣାବପି । ୨ ।
ତଦ୍‌ବଳଂ ହତଭୂୟିଷ୍ଠଂ ବିମନାଃ ପ୍ରେକ୍ଷ୍ୟରାକ୍ଷସଃ ।
ଆସସାଦ ଖରୋ ରାମଂ ନମୁଚିର୍ବାସବଂ ଯଥା । ୩ ।
ବିକୃଷ୍ୟ ବଳବଚ୍ଚାପଂ ନାରାଚାନ୍ ରକ୍ତଭୋଜନାନ୍ ।
ଖରଶ୍ଚିକ୍ଷେପ ରାମାୟ କ୍ରୁଦ୍ଧାନାଶୀବିଷାନିବ । ୪ ।
ଜ୍ୟାଂ ବିଧୂନ୍ୱନ୍ ସୁବହୁଶଃ ଶିକ୍ଷୟାସ୍ତ୍ରାଣି ଦର୍ଶୟନ୍ ।
ଚଚାର ସମରେ ମାର୍ଗାନ୍ ଶରୈ ରଥଗତଃ ଖରଃ । ୫ ।
ସ ସର୍ବାଶ୍ଚ ଦିଶୋ ବାଣୈଃ ପ୍ରଦିଶଶ୍ଚ ମହାରଥଃ ।
ପୂରୟାମାସ ତଂ ଦୃଷ୍ଟ୍ୱା ରାମୋଽପି ସୁମହଦ୍ଧନୁଃ । ୬ ।

---

## ୨୮ଶ ସର୍ଗ

### (ଖର ଓ ରାମଙ୍କର ସଂଗ୍ରାମ)

ଯୁଦ୍ଧରେ ତ୍ରିଶିରା ସହିତ ଦୂଷଣ ନିହତ ହେବାର ଦେଖି ଏବଂ ରାମଙ୍କର ବଳବିକ୍ରମ ଦେଖି ଖରର ମଧ୍ୟ ମନରେ ଭୟ ଜାତ ହେଲା । ୧ । ଏକମାତ୍ର ରାମଙ୍କ ଦ୍ୱାରା ଦୁର୍ବିଷହ୍ୟ ରାକ୍ଷସସୈନ୍ୟ, ଦୂଷଣ ଏବଂ ତ୍ରିଶିରାକୁ ନିହତ ହେବାର ଦେଖି ଏବଂ ସେହି ସୈନ୍ୟମାନଙ୍କ ମଧ୍ୟରୁ ଅଧିକାଂଶ ମୃତ ହୋଇଥିବାର ଦେଖି, ମହାବଳୀ ରାକ୍ଷସ ଖର ମନରେ ଅତିଶୟ ଦୁଃଖିତ ହୋଇ ନମୁଚି ଇନ୍ଦ୍ରଙ୍କୁ ଆକ୍ରମଣ କଲା ପରି ରାମଙ୍କୁ ଆକ୍ରମଣ କଲା ।୨-୩। ଖର ମହାବଳଶାଳୀ ଧନୁକୁ ଆକର୍ଷଣ କରି ରାମଙ୍କ ପ୍ରତି ବିଷାକ୍ତ ସର୍ପସଦୃଶ ଶୋଣିତପାୟୀ ଶରସମୂହ ନିକ୍ଷେପ କଲା । ୪ । ବାରମ୍ବାର ଗୁଣ ଆକର୍ଷଣପୂର୍ବକ ସ୍ୱୀୟ ଶିକ୍ଷା ଏବଂ ଅସ୍ତ୍ରର କୌଶଳ ଦେଖାଇ ରଥସ୍ଥ ଖର ବହୁବିଧ ଶରମୋଚନପୂର୍ବକ ରଣକ୍ଷେତ୍ରରେ ବିଚରଣ କରିବାକୁ ଲାଗିଲା । ୫ । ସେହି ମହାରଥୀ ଖର ଶରସମୂହଦ୍ୱାରା ସମସ୍ତ ଦିଗ୍ ବିଦିଗ୍ ଆଚ୍ଛନ୍ନ କରିଦେଲା । ଏହା ଦେଖି ରାମ ମଧ୍ୟ ପ୍ରକାଣ୍ଡ ଧନୁ ଗ୍ରହଣ କରି ଅଗ୍ନି ସ୍ଫୁଲିଙ୍ଗସଦୃଶ ଅସହମାୟ

ସ ସାୟକୈର୍ଦୁର୍ବିଷହୈଃ ସସ୍ଫୁଲିଙ୍ଗୈରିବାଗ୍ନିଭିଃ ।
ନଭଶ୍ଚକାରାବିବରଂ ପର୍ଜନ୍ୟ ଇବ ବୃଷ୍ଟିଭିଃ । ୭ ।
ତଦ୍ ବଭୂବ ଶିତୈର୍ବାଣୈଃ ଖରରାମବିସର୍ଜିତୈଃ ।
ପର୍ଯ୍ୟାକାଶମନାକାଶଂ ସର୍ବତଃ ଶରସଂକୁଲମ୍ । ୮ ।
ଶରଜାଲାବୃତଃ ସୂର୍ଯ୍ୟୋ ନ ତଦା ସ୍ମ ପ୍ରକାଶତେ ।
ଅନ୍ୟୋନ୍ୟବଧ ସଂରମ୍ଭାଦୁଭୟୋଃ ସଂପ୍ରଯୁଧ୍ୟତୋଃ । ୯ ।
ତତୋ ନାଳୀକନାରାଚୈସ୍ତୀକ୍ଷ୍ଣାଗ୍ରୈଶ୍ଚ ବିକର୍ଣିଭିଃ ।
ଆଜଘାନ ଖରୋ ରାମଂ ତୋତ୍ରୈରିବ ମହାଦ୍ୱିପମ୍ । ୧୦ ।
ତଂ ରଥସ୍ଥଂ ଧନୁଷ୍ପାଣିଂ ରାକ୍ଷସଂ ପର୍ଯ୍ୟବସ୍ଥିତମ୍ ।
ଦଦୃଶୁଃ ସର୍ବଭୂତାନି ପାଶହସ୍ତମିବାନ୍ତକମ୍ । ୧୧ ।
ହନ୍ତାରଂ ସର୍ବସୈନ୍ୟସ୍ୟ ପୌରୁଷେ ପର୍ଯ୍ୟବସ୍ଥିତମ୍ ।
ପରିଶ୍ରାନ୍ତଂ ମହାସତ୍ତ୍ୱଂ ମେନେ ରାମଂ ଖରସ୍ତଦା । ୧୨ ।
ତଂ ସିଂହମିବ ବିକ୍ରାନ୍ତଂ ସିଂହବିକ୍ରାନ୍ତଗାମିନମ୍ ।
ଦୃଷ୍ଟ୍ୱା ନୋଦ୍‌ବିଜତେ ରାମଃ ସିଂହଃ କ୍ଷୁଦ୍ରମୃଗଂ ଯଥା । ୧୩ ।

---

ଶାୟକସମୂହ ବୃଷ୍ଟିକରି ମହାମେଘପରି ନଭୋମଣ୍ଡଳକୁ ନିବିଡ଼ଭାବରେ ଆଚ୍ଛାଦିତ କରି ପକାଇଲେ; ଆକାଶରେ ବିନ୍ଦୁ ମାତ୍ର ଶୂନ୍ୟ ସ୍ଥାନ ରହିଲା ନାହିଁ ।୬-୭। ଖର ଓ ରାମଙ୍କ ଦ୍ୱାରା ବିମୁକ୍ତ ତୀକ୍ଷଣ ଶରସମୂହରେ ସମଗ୍ର ନଭୋମଣ୍ଡଳ ସମାଚ୍ଛନ୍ନ ହୋଇ ସର୍ବତୋଭାବରେ ଅବକାଶବିହୀନ ହୋଇଗଲା । ୮ । ପରସ୍ପରକୁ ବଧ କରିବା ଅଭିପ୍ରାୟରେ ଉଭୟେ ପରସ୍ପର ସହିତ ଯୁଦ୍ଧ କରୁଥିବାବେଳେ ସୂର୍ଯ୍ୟ ଶରରାଜି ଦ୍ୱାରା ଆବୃତ ହୋଇ ଆଉ ଦେଖାଗଲେ ନାହିଁ ।୯। ଅନନ୍ତର ମହାଗଜକୁ ଯେପରି ଅଂକୁଶଦ୍ୱାରା ଆଘାତ କରନ୍ତି, ସେହିପରି ଖର ତୀକ୍ଷ୍ଣାଗ୍ର ନାଳିକ ନାରାଚ ଓ ବିକର୍ଣ୍ଣୀ ଅସ୍ତ୍ରସମୂହଦ୍ୱାରା ରାମଙ୍କୁ ଆଘାତ କରିବାକୁ ଲାଗିଲା । ୧୦ । ସେତେବେଳେ ସମସ୍ତ ପ୍ରାଣୀ ରଥସ୍ଥିତ ଧନୁର୍ଦ୍ଧାରୀ ରାକ୍ଷସ ଖରକୁ ପାଶଧାରୀ କୃତାନ୍ତସଦୃଶ ବସିଥିବାର ଦେଖିଲେ । ୧୧ । ଖର ସେତେବେଳେ ନିଜର ସମୁଦାୟ ସୈନ୍ୟ-ବିନାଶକାରୀ, ଦୃଢ଼ପୁରୁଷତ୍ୱସମ୍ପନ୍ନ, ମହାବଳୀ ରାମଙ୍କୁ "ପରିଶ୍ରାନ୍ତ ହୋଇ ପଡ଼ିଛନ୍ତି" ବୋଲି ବିଚାରିଲା । ୧୨ । ସିଂହ ଯେପରି ମୃଗଶିଶୁକୁ ଦେଖି ଉଦ୍‌ବିଗ୍ନ ହୁଏ ନାହିଁ, ସେହିପରି ସିଂହସଦୃଶ ବଳଶାଳୀ ଏବଂ ସିଂହବିକ୍ରମରେ ଏଣେ ତେଣେ ବୁଲୁଥିବା ଖରକୁ ଦେଖି ରାମ ଲେଶମାତ୍ର ଉଦ୍‌ବିଗ୍ନ ହେଲେ ନାହିଁ । ୧୩ । ଅନନ୍ତର

ତତଃ ସୂର୍ଯ୍ୟନିକାଶେନ ରଥେନ ମହତା ଖରଃ ।
ଆସସାଦ ରଣେ ରାମଂ ପତଙ୍ଗ ଇବ ପାବକମ୍ ।୧୪ ।
ତତୋଽସ୍ୟ ସଶରଂ ଚାପଂ ମୁଷ୍ଟିଦେଶେ ମହାତ୍ମନଃ ।
ଖରଶ୍ଚିଚ୍ଛେଦ ରାମସ୍ୟ ଦର୍ଶୟନ୍ ପାଣିଲାଘବମ୍ । ୧୫ ।
ସ ପୁନସ୍ତ୍ୱପରାନ୍ ସପ୍ତ ଶରାନାଦାୟ କର୍ମଣି ।
ନିଜଘାନ ଖରଃ କ୍ରୁଦ୍ଧଃ ଶକ୍ରାଶନିସମପ୍ରଭାନ୍ । ୧୬ ।
ତତସ୍ତତ୍ପ୍ରହତଂ ବାଣୈଃ ଖରମୁକ୍ତୈଃ ସୁପର୍ବଭିଃ ।
ପପାତ କବଚଂ ଭୂମୌ ରାମସ୍ୟାଦିତ୍ୟବର୍ଚସଃ । ୧୭ ।
ତତଃ ଶରସହସ୍ରେଣ ରାମମପ୍ରତିମୌଜସମ୍ ।
ଅର୍ଦୟିତ୍ୱା ମହାନାଦଂ ନନାଦ ସମରେ ଖରଃ । ୧୮ ।
ସ ଶରୈରର୍ପିତଃ କ୍ରୁଦ୍ଧଃ ସର୍ବଗାତ୍ରେଷୁ ରାଘବଃ ।
ରରାଜ ସମରେ ରାମୋ ବିଧୂମୋଽଗ୍ନିରିବ ଜ୍ୱଲନ୍ । ୧୯ ।
ତତୋ ଗମ୍ଭୀରନିର୍ହ୍ରାଦଂ ରାମଃ ଶତ୍ରୁନିବର୍ହଣଃ ।
ଚକାରାନ୍ତାୟ ସ ରିପୋଃ ସଜ୍ୟମନ୍ୟନ୍ମହଦ୍ଧନୁଃ । ୨୦।
ସୁମହଦ୍ ବୈଷ୍ଣବଂ ଯତ୍ତଦତିସୃଷ୍ଟଂ ମହର୍ଷିଣା ।
ବରଂ ତଦ୍ଧନୁରୁଦ୍ୟମ୍ୟ ଖରଂ ସମଭିଧାବତ । ୨୧ ।

---

ପତଙ୍ଗ ଅଗ୍ନି ଆଡ଼କୁ ପ୍ରଧାବିତ ହେଲାପରି ଖର ସୂର୍ଯ୍ୟସଦୃଶ ଦୀପ୍ତିମନ୍ତ ବିଶାଳ ରଥରେ ବସି ଯୁଦ୍ଧରେ ରାମଙ୍କୁ ଆକ୍ରମଣ କଲା । ୧୪ । ଅନନ୍ତର ଖର ନିଜର ହସ୍ତର କ୍ଷିପ୍ରତା ଦେଖାଇ ମହାତ୍ମା ରାମଙ୍କର ଶରସଂଯୋଜିତ ଧନୁକୁ ମୁଷ୍ଟିଦେଶରେ ଛେଦନ କରିପକାଇଲା । ୧୫ । ତାପରେ ସେ କ୍ରୋଧରେ ଇନ୍ଦ୍ରଙ୍କ ବଜ୍ରତୁଲ୍ୟ ପ୍ରଭାଶାଳୀ ଆଉ ସାତଗୋଟି ଶରଗ୍ରହଣ କରି ରାମଙ୍କ କବଚ ଉପରେ ଆଘାତ କଲା । ୧୬ । ସୂର୍ଯ୍ୟସଦୃଶ ତେଜସ୍ୱୀ ରାମଙ୍କର କବଚ ଖରଦ୍ୱାରା ନିକ୍ଷିପ୍ତ ପର୍ବବିଶିଷ୍ଟ ଶରସମୂହଦ୍ୱାରା ଭିନ୍ନ ହୋଇ ଭୂମିରେ ପଡ଼ିଗଲା । ୧୭ । ଅନନ୍ତର ଖର ସହସ୍ର ସହସ୍ର ଶରରେ ଅତୁଳନୀୟ ବଳଶାଳୀ ରାମଙ୍କୁ ପ୍ରପୀଡ଼ିତ କରି ଯୁଦ୍ଧରେ ଘୋର ଗର୍ଜନ କରିବାକୁ ଲାଗିଲା । ୧୮ । ରଘୁନନ୍ଦନ ରାମଙ୍କର ସମସ୍ତ ଶରୀରରେ ଶରମାନ ଲାଗି ରହିଥିବାରୁ ସେ କ୍ରୁଦ୍ଧ ହୋଇ ଧୂମଶୂନ୍ୟ ପ୍ରଜ୍ୱଳିତ ଅଗ୍ନିସଦୃଶ ଯୁଦ୍ଧଭୂମିରେ ଶୋଭା ପାଇଲେ । ୧୯ । ଅନନ୍ତର ଶତ୍ରୁସୂଦନ ରାମ ଶତ୍ରୁର ବିନାଶ ନିମନ୍ତେ ଗମ୍ଭୀରଶବ୍ଦକାରୀ ଅନ୍ୟ ଏକ ବିଶାଳ ଧନୁରେ ଗୁଣସଂଯୋଗ କଲେ । ୨୦ । ସେ ମହର୍ଷି ଅଗସ୍ତିଙ୍କ ଦ୍ୱାରା ପ୍ରଦତ୍ତ ସେହି ବୃହତ୍ ବୈଷ୍ଣବଧନୁ ଉତ୍ତୋଳନ କରି ଖର

ତତଃ କନକପୁଙ୍ଖୈସ୍ତୁ ଶରୈଃ ସଂନତପର୍ବଭିଃ ।
ବିଭେଦ ରାମଃ ସଂକ୍ରୁଦ୍ଧଃ ଖରସ୍ୟ ସମରେ ଧ୍ୱଜମ୍ ।୨୨।
ସ ଦର୍ଶନୀୟୋ ବହୁଧା ବିକୀର୍ଣଃ କାଞ୍ଚନଧ୍ୱଜଃ ।
ଜଗାମ ଧରଣୀଂ ସୂର୍ଯୋ ଦେବତାନାମିବାଜ୍ଞୟା ।୨୩।
ତଂ ଚତୁର୍ଭିଃ ଖରଃ କ୍ରୁଦ୍ଧୋ ରାମଂ ଗାତ୍ରେଷୁ ମାର୍ଗଣୈଃ ।
ବିବ୍ୟାଧ ଯୁଧି ମର୍ମଜ୍ଞୋ ମାତଙ୍ଗମିବ ତୋମରୈଃ ।୨୪।
ସ ରାମୋ ବହୁଭିର୍ବାଣୈଃ ଖରକାର୍ମୁକନିଃସୃତୈଃ ।
ବିଦ୍ଧୋ ରୁଧିରସିକ୍ତାଙ୍ଗୋ ବଭୂବ ରୁଷିତୋ ଭୃଶମ୍ ।୨୫।
ସ ଧନୁର୍ଧନ୍ୱିନାଂ ଶ୍ରେଷ୍ଠଃ ପ୍ରଗୃହ୍ୟ ପରମାହବେ ।
ମୁମୋଚ ପରମେଷ୍ୱାସଃ ଷଟ୍ ଶରାନଭିଲକ୍ଷିତାନ୍ ।୨୬।
ଶିରସ୍ୟେକେନ ବାଣେନ ଦ୍ୱାଭ୍ୟାଂ ବାହ୍ୱୋରଥାର୍ପୟତ୍ ।
ତ୍ରିଭିଶ୍ଚନ୍ଦ୍ରାର୍ଧବକ୍ତ୍ରୈଶ୍ଚ ବକ୍ଷସ୍ୟଭିଜଘାନ ହ ।୨୭।
ତତଃ ପଶ୍ଚାନ୍ମହାତେଜା ନାରାଚାନ୍ ଭାସ୍କରୋପମାନ୍ ।
ଜିଘାଂସୁ ରାକ୍ଷସଂ କ୍ରୁଦ୍ଧସ୍ତ୍ରୟୋଦଶ ସମାଦଦେ ।୨୮।
ତତୋଽସ୍ୟ ଯୁଗମେକେନ ଚତୁର୍ଭିଶ୍ଚତୁରୋ ହୟାନ୍ ।
ଷଷ୍ଠେନ ତୁ ଶିରଃ ସଙ୍ଖ୍ୟେ ଖରସ୍ୟ ରଥସାରଥେଃ ।୨୯।

---

ଆଡ଼କୁ ପ୍ରଧାବିତ ହେଲେ ।୨୧। ଅନନ୍ତର ରାମ ଅତିଶୟ କ୍ରୁଦ୍ଧ ହୋଇ ସ୍ୱର୍ଣ୍ଣପୁଙ୍ଖଯୁକ୍ତ ନତପର୍ବ ଶରମାନଙ୍କଦ୍ୱାରା ଯୁଦ୍ଧରେ ଖରର ଧ୍ୱଜକୁ ଛେଦନ କରିପକାଇଲେ ।୨୨। ସେହି ସୁନ୍ଦର ସୁବର୍ଣ୍ଣଧ୍ୱଜ ବହୁ ଖଣ୍ଡରେ ଛିନ୍ନଭିନ୍ନ ହୋଇ, ଦେବତାମାନଙ୍କ ନିର୍ଦ୍ଦେଶରେ ଅସ୍ତମିତ ହେଉଥିବା ସୂର୍ଯ୍ୟଙ୍କ ସଦୃଶ ଧରାତଳରେ ପତିତ ହେଲା ।୨୩। ମର୍ମଜ୍ଞ ଖର କ୍ରୁଦ୍ଧ ହୋଇ ଚାରିଗୋଟି ବାଣଦ୍ୱାରା, ହସ୍ତୀକୁ ଅଙ୍କୁଶ ଦ୍ୱାରା ବିଦ୍ଧ କଲାପରି ରାମଙ୍କ ଶରୀରକୁ ବିଦ୍ଧ କଲା ।୨୪। ଖରର ଧନୁରୁ ନିର୍ଗତ ବହୁ ଶରରେ ବିଦ୍ଧ ହେବାରୁ ରାମଙ୍କ ଶରୀର ରକ୍ତାପ୍ଲୁତ ହୋଇଗଲା ଏବଂ ସେ ଅତିଶୟ କ୍ରୁଦ୍ଧ ହୋଇ ଉଠିଲେ ।୨୫। ଶ୍ରେଷ୍ଠ ଧନୁର୍ଦ୍ଧର ରାମ ଦୃଢ଼ଭାବରେ ଧନୁ ଧାରଣ କରି ଲକ୍ଷ୍ୟସ୍ଥିରପୂର୍ବକ ଛଅଗୋଟି ଶର ମୋଚନକଲେ ।୨୬। ସେ ଗୋଟିଏ ବାଣରେ ଖରର ମସ୍ତକ, ଦୁଇଟି ବାଣରେ ତାହାର ବାହୁଯୁଗଳ ଏବଂ ତିନୋଟି ଅର୍ଦ୍ଧଚନ୍ଦ୍ରମୁଖବିଶିଷ୍ଟ ବାଣରେ ତାହାର ବକ୍ଷସ୍ଥଳ ବିଦ୍ଧ କଲେ ।୨୭। ଅନନ୍ତର ରାକ୍ଷସବଧୋଦ୍ୟତ ମହାତେଜା ରାମ କ୍ରୁଦ୍ଧ ହୋଇ ତେରଗୋଟି ସୂର୍ଯ୍ୟସଦୃଶ ପ୍ରଭାବିଶିଷ୍ଟ ଶର ଗ୍ରହଣ କଲେ ।୨୮। ଅନନ୍ତର ଇନ୍ଦ୍ରସଦୃଶ ମହାବଳୀ ରାମ ଗୋଟିଏ

ନିଭିସ୍ତ୍ରିବେଣୁଂ ବଲବାନ୍ ଦ୍ୱାଭ୍ୟାମକ୍ଷଂ ମହାବଲଃ ।
ଦ୍ୱାଦଶେନ ତୁ ବାଣେନ ଖରସ୍ୟ ସଶରଂ ଧନୁଃ । ୩୦ ।
ଛିତ୍ତ୍ୱା ବଜ୍ରନିକାଶେନ ରାଘବଃ ପ୍ରହସନ୍ନିବ ।
ତ୍ରୟୋଦଶେନେନ୍ଦ୍ରସମୋ ବିଭେଦ ସମରେ ଖରମ୍ । ୩୧ ।
ପ୍ରଭଗ୍ନଧନ୍ୱା ବିରଥୋ ହତାଶ୍ୱୋ ହତସାରଥିଃ ।
ଗଦାପାଣିରବପ୍ଲୁତ୍ୟ ତସ୍ଥୌ ଭୂମୌ ଖରସ୍ତଦା । ୩୨ ।
ତତ୍କର୍ମ ରାମସ୍ୟ ମହାରଥସ୍ୟ
ସମେତ୍ୟ ଦେବାଶ୍ଚ ମହର୍ଷୟଶ୍ଚ ।
ଅପୂଜୟନ୍ ପ୍ରାଞ୍ଜଲୟଃ ପ୍ରହୃଷ୍ଟା-
ସ୍ତଦା ବିମାନାଗ୍ରଗତାଃ ସମେତାଃ । ୩୩ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଅରଣ୍ୟକାଣ୍ଡେ ଖରରାମସମ୍ପ୍ରହାରୋ ନାମ ଅଷ୍ଟାବିଂଶଃ ସର୍ଗଃ

---

ବାଣରେ ତାହାର ରଥର ଯୁଆଳି, ଚାରିଟି ବାଣରେ ଚାରିଟି ଅଶ୍ୱ, ଗୋଟିଏ ବାଣରେ ସାରଥିର ମସ୍ତକ, ତିନୋଟି ବାଣରେ ତ୍ରିବେଣୁ, ଦୁଇଟି ବାଣରେ ଅକ୍ଷ ଏବଂ ଦ୍ୱାଦଶ ବାଣରେ ଖରର ଶରଯୁକ୍ତ ଧନୁ ଛେଦନ କରି ହସି ହସି ବଜ୍ରସଦୃଶ ତ୍ରୟୋଦଶ ବାଣରେ ଖରକୁ ଯୁଦ୍ଧରେ ବଦ୍ଧ କଲେ । ୨୯-୩୧ । ସେତେବେଳେ ଖର ହତଧନୁ, ହତରଥ, ହତସାରଥି ଓ ହତାଶ୍ୱ ହୋଇ ଗଦା ଧାରଣ କଲା ଏବଂ ରଥରୁ ଡେଇଁପଡ଼ି ଭୂମି ଉପରେ ଠିଆ ହୋଇ ରହିଲା । ୩୨ । ସେତେବେଳେ ବିମାନସ୍ଥ ଦେବତା ଓ ମହର୍ଷିଗଣ ମହାରଥ ରାମଙ୍କର ସେହି କର୍ମ ଅବଲୋକନ କରି ପରମହର୍ଷ ଲାଭକଲେ ଏବଂ ସମସ୍ତେ ସମବେତ ହୋଇ ଅଞ୍ଜଳିବନ୍ଧନପୂର୍ବକ ରାମଙ୍କୁ ସମ୍ବର୍ଦ୍ଧନା କଲେ । ୩୩ ।

# ଏକୋନତ୍ରିଂଶଃ ସର୍ଗଃ

## ଖରଗଦାଭେଦନମ୍

ଖରଂ ତୁ ବିରଥଂ ରାମୋ ଗଦାପାଣିମବସ୍ଥିତମ୍ ।
ମୃଦୁପୂର୍ବଂ ମହାତେଜା ପରୁଷଂ ବାକ୍ୟମବ୍ରବୀତ୍ ।୧।
ଗଦାଶ୍ୱରଥସଂବାଧେ ବଲେ ମହତି ତିଷ୍ଠତା ।
କୃତଂ ସୁଦାରୁଣଂ କର୍ମ ସର୍ବଲୋକଜୁଗୁପ୍ସିତମ୍ । ୨ ।
ଉଦ୍ବେଜନୀୟୋ ଭୂତାନାଂ ନୃଶଂସଃ ପାପକର୍ମକୃତ୍ ।
ତ୍ରୟାଣାମପି ଲୋକାନାମୀଶ୍ୱରୋଽପି ନ ତିଷ୍ଠତି । ୩ ।
କର୍ମ ଲୋକବିରୁଦ୍ଧଂ ତୁ କୁର୍ବାଣଂ କ୍ଷଣଦାଚର ।
ତୀକ୍ଷ୍ଣଂ ସର୍ବଜନୋ ହନ୍ତି ସର୍ପଂ ଦୁଷ୍ଟମିବାଗତମ୍ । ୪ ।
ଲୋଭାତ୍ପାପାନି କୁର୍ବାଣଃ କାମାଦ୍ୱା ଯୋ ନ ବୁଧ୍ୟତେ ।
ହୃଷ୍ଟଃ ପଶ୍ୟତି ତସ୍ୟାନ୍ତଂ ବ୍ରାହ୍ମଣୀ* କରକାଦିବ । ୫ ।

---

## ୨୯ଶ ସର୍ଗ

### ( ଖରର ଗଦାଚ୍ଛେଦନ )

ଅନନ୍ତର ମହାତେଜା ରାମ ଖରକୁ ରଥହୀନ ହୋଇ ଗଦାଧାରଣପୂର୍ବକ ଭୂମି ଉପରେ ଠିଆ ହୋଇଥିବାର ଦେଖି ତାକୁ ମୃଦୁଭାବରେ ଆରମ୍ଭ କରି କଠୋର ବାକ୍ୟରେ କହିବାକୁ ଲାଗିଲେ ।୧। "ତୁମେ ହସ୍ତୀ, ଅଶ୍ୱ ଓ ରଥାଦିଯୁକ୍ତ ସୈନ୍ୟ-ମଧ୍ୟରେ ରହି ସର୍ବଲୋକନିନ୍ଦିତ ଅତିନିଷ୍ଠୁର କାର୍ଯ୍ୟ କରିଅଛ । ୨ । ପ୍ରାଣୀମାନଙ୍କର ଉଦ୍‌ବେଗଜାତକାରୀ ନୃଶଂସ ପାପାଚାରୀ ବ୍ୟକ୍ତି ତ୍ରିଲୋକର ପ୍ରଭୁ ହେଲେ ମଧ୍ୟ ସେ କଦାପି ତିଷ୍ଠି ପାରେ ନାହିଁ । ୩ । ହେ ନିଶାଚର ! ଲୋକବିରୁଦ୍ଧ କର୍ମକାରୀ ଏବଂ ତୀକ୍ଷ୍ଣସ୍ୱଭାବ ଲୋକକୁ ଲୋକେ ସମାଗତ ଦୁଷ୍ଟ କାଳଭୁଜଙ୍ଗ ସଦୃଶ ସଂହାର କରିଥାନ୍ତି । ୪ । ଯେଉଁ ବ୍ୟକ୍ତି କାମ ବା ଲୋଭହେତୁ ପାପକାର୍ଯ୍ୟାନୁଷ୍ଠାନ କରି ମଧ୍ୟ ତାହାର ଫଳ ବୁଝିପାରେ ନାହିଁ, ସେ ବ୍ୟକ୍ତି ନିଷ୍ଟସ୍ୱ କରକାଭକ୍ଷଣକାରୀ

---

* ବ୍ରାହ୍ମଣୀ ନାମରେ ଗୋଟିଏ ରକ୍ତପୁଚ୍ଛବିଶିଷ୍ଟ କ୍ଷୁଦ୍ର ଜନ୍ତୁ ଅଛି । ସେ କୁଅ ପଥର ଭକ୍ଷଣ କଲେ ତାହାର ମୃତ୍ୟୁ ଘଟିଥାଏ ବୋଲି ପ୍ରସିଦ୍ଧି ଅଛି ।

ବସତୋ ଦଣ୍ଡକାରଣ୍ୟେ ତାପସାନ୍ ଧର୍ମଚାରିଣଃ ।
କିଂ ନୁ ହତ୍ୱା ମହାଭାଗାନ୍ ଫଳଂ ପ୍ରାପ୍ସ୍ୟସି ରାକ୍ଷସ । ୬ ।
ନ ଚିରଂ ପାପକର୍ମାଣଃ କ୍ରୂରା ଲୋକଜୁଗୁପ୍ସିତାଃ ।
ଐଶ୍ୱର୍ଯ୍ୟଂ ପ୍ରାପ୍ୟ ତିଷ୍ଠନ୍ତି ଶୀର୍ଣ୍ଣମୂଳା ଇବ ଦ୍ରୁମାଃ । ୭ ।
ଅବଶ୍ୟଂ ଲଭତେ ଜନ୍ତୁଃ ଫଳଂ ପାପସ୍ୟ କର୍ମଣଃ ।
ଘୋରଂ ପର୍ଯ୍ୟାଗତେ କାଲେ ଦ୍ରୁମଃ ପୁଷ୍ପମିବାର୍ତ୍ତବମ୍ ।୮ ।
ନ ଚିରାତ୍ ପ୍ରାପ୍ୟତେ ଲୋକେ ପାପାନାଂ କର୍ମଣାଂ ଫଳମ୍ ।
ସବିଷାଣାମିବାନ୍ନାନାଂ ଭୁକ୍ତାନାଂ କ୍ଷଣଦାଚର । ୯ ।
ପାପମାଚରତାଂ ଘୋରଂ ଲୋକସ୍ୟାପ୍ରିୟମିଚ୍ଛତାମ୍ ।
ଅହମାସାଦିତୋ ରାଜ୍ଞା ପ୍ରାଣାନ୍ ହନ୍ତୁଂ ନିଶାଚର । ୧୦ ।
ଅଦ୍ୟ ହି ତ୍ୱାଂ ମୟା ମୁକ୍ତାଃ ଶରାଃ କାଞ୍ଚନଭୂଷଣାଃ ।
ବିଦାର୍ଯ୍ୟ ନିପତିଷ୍ୟନ୍ତି ବଲ୍ମୀକମିବ ପନ୍ନଗାଃ । ୧୧ ।
ଯେ ତ୍ୱୟା ଦଣ୍ଡକାରଣ୍ୟେ ଭକ୍ଷିତା ଧର୍ମଚାରିଣଃ ।
ତାନଦ୍ୟ ନିହତଃ ସଂଖ୍ୟେ ସସୈନ୍ୟୋଽନୁଗମିଷ୍ୟସି । ୧୨ ।

---

ବ୍ରାହ୍ମଣୀପରି ନିଜ ମୃତ୍ୟୁକୁ ନିଜେ ଦେଖେ । ୫ । ରେ ରାକ୍ଷସ ! ତୁ ଦଣ୍ଡକାରଣ୍ୟବାସୀ ଧର୍ମନିରତ ମହାତେଜା ତପସ୍ୱୀମାନଙ୍କୁ ହତ୍ୟାକରି କ'ଣ ବା ଫଳ ପାଇବୁ ? । ୬ । କ୍ରୂରସ୍ୱଭାବ ଲୋକମାନେ ଚିରକାଳ ପାପାନୁଷ୍ଠାନ କରି, ଲୋକରେ ନିନ୍ଦିତ ହୋଇ ଐଶ୍ୱର୍ଯ୍ୟ ଲାଭକଲେ ମଧ୍ୟ ଶୀର୍ଣ୍ଣମୂଳ ବୃକ୍ଷପରି ଚିରକାଳ ରହିପାରନ୍ତି ନାହିଁ । ୭ । ବୃକ୍ଷ ଯେପରି ଯଥାଋତୁରେ ପୁଷ୍ପ ଲାଭକରେ, ସେହିପରି ପ୍ରାଣୀ ଯଥାସମୟରେ ନିଜକୃତ ପାପକାର୍ଯ୍ୟର ଭୟଙ୍କର ଫଳ ଅବଶ୍ୟ ଲାଭକରେ ।୮। ହେ ରାକ୍ଷସ ! ବିଷମିଶ୍ରିତ ଅନ୍ନ ଭକ୍ଷଣକଲେ ତାହାର ଫଳ ଯେପରି ଅନିବାର୍ଯ୍ୟ, ସେହିପରି ଏ ଜଗତରେ ପାପକାର୍ଯ୍ୟର ଫଳ ଅବିଲମ୍ବେ ମିଳିଥାଏ । ୯ । ହେ ରାକ୍ଷସ ! ଭୟଙ୍କର ପାପାଚାରୀ ଏବଂ ଜଗତର ଅନିଷ୍ଟାଭିଳାଷୀ ବ୍ୟକ୍ତିମାନଙ୍କର ପ୍ରାଣସଂହାର ନିମନ୍ତେ ମୁଁ ରାଜାଙ୍କ ଦ୍ୱାରା ଏଠାକୁ ପ୍ରେରିତ ହୋଇଅଛି । ୧୦ । ସର୍ପ ଯେପରି ଉଇହୁଙ୍କାକୁ ଫୁଟାଇ ନିର୍ଗତ ହୁଏ, ସେହିପରି ମୋର ସ୍ୱର୍ଣ୍ଣଭୂଷିତ ଶରସମୂହ ଆଜି ତୋର ଶରୀର ବିଦାରଣ କରି ନିର୍ଗତ ହେବ । ୧୧ । ତୁ ଏ ଦଣ୍ଡକାରଣ୍ୟରେ ଯେଉଁ ଧର୍ମନିଷ୍ଠ ତପସ୍ୱୀମାନଙ୍କୁ ଭକ୍ଷଣ କରିଅଛୁ, ଆଜି ତୁ ଯୁଦ୍ଧରେ ନିହତ ହୋଇ ନିଜର ସୈନ୍ୟମାନଙ୍କ ସହିତ ସେହିମାନଙ୍କର ଅନୁଗାମୀ ହେବୁ । ୧୨ । ଯେଉଁ ମହର୍ଷିମାନଙ୍କୁ

ଅଦ୍ୟ ତ୍ୱାଂ ନିହତଂ ବାଣୈଃ ପଶ୍ୟନ୍ତୁ ପରମର୍ଷୟଃ ।
ନିରୟସ୍ଥଂ ବିମାନସ୍ଥା ଯେ ତ୍ୱୟା ହିଂସିତାଃ ପୁରା । ୧୩ ।
ପ୍ରହର ତ୍ୱଂ ଯଥାକାମଂ କୁରୁ ଯତ୍ନଂ କୁଳାଧମ ।
ଅଦ୍ୟ ତେ ପାତୟିଷ୍ୟାମି ଶିରସ୍ତାଳଫଳଂ ଯଥା । ୧୪ ।
ଏବମୁକ୍ତସ୍ତୁ ରାମେଣ କ୍ରୁଦ୍ଧଃ ସଂରକ୍ତଲୋଚନଃ ।
ପ୍ରତ୍ୟୁବାଚ ଖରୋ ରାମଂ ପ୍ରହସନ୍ କ୍ରୋଧମୂର୍ଚ୍ଛିତଃ । ୧୫ ।
ପ୍ରାକୃତାନ୍ ରାକ୍ଷସାନ୍ ହତ୍ୱା ଯୁଦ୍ଧେ ଦଶରଥାତ୍ମଜ ।
ଆତ୍ମନା କଥମାତ୍ମାନମପ୍ରଶସ୍ୟଂ ପ୍ରଶଂସସି । ୧୬ ।
ବିକ୍ରାନ୍ତା ବଲବନ୍ତୋ ବା ଯେ ଭବନ୍ତି ନରର୍ଷଭାଃ ।
କଥୟନ୍ତି ନ ତେ କିଂଚିତ୍ତେଜସା ସ୍ୱେନ ଗର୍ବିତାଃ । ୧୭ ।
ପ୍ରାକୃତାସ୍ତ୍ୱକୃତାତ୍ମାନୋ ଲୋକେ କ୍ଷତ୍ରିୟପାଂସନାଃ ।
ନିରର୍ଥକଂ ବିକତ୍ଥନ୍ତେ ଯଥା ରାମ ବିକତ୍ଥସେ ।୧୮ ।
କୁଲଂ ବ୍ୟପଦିଶନ୍ ବୀରଃ ସମରେ କୋଽଭିଧାସ୍ୟତି ।
ମୃତ୍ୟୁକାଲେ ହି ସଂପ୍ରାପ୍ତେ ସ୍ୱୟମପ୍ରସ୍ତବେ ସ୍ତବମ୍ । ୧୯ ।

---

ପ୍ରତି ତୁ ପୂର୍ବେ ହିଂସାଚରଣ କରିଥିଲୁ, ଆଜ ସେମାନେ ବିମାନରେ ବସିରହି ତୋତେ ମୋ ବାଣରେ ନିହତ ହୋଇ ନରକରେ ଯାଇ ବାସ କରିବାର ଦେଖନ୍ତୁ । ୧୩ । ରେ କୁଳାଧମ ! ତୁ ଯେତେ ଇଚ୍ଛା ମୋତେ ପ୍ରହାର କର ଏବଂ ଯେତେ ଯତ୍ନ କରିବାର କର ପଛକେ, ମୁଁ ଆଜ ନିଶ୍ଚୟ ତୋର ମସ୍ତକକୁ ତାଳଫଳ ସଦୃଶ ଭୂତଳରେ ନିପତିତ କରିବି”। ୧୪ । ରାମ ଏ କଥା କହିବାରୁ କ୍ରୋଧରେ ଖରର ଚକ୍ଷୁ ରକ୍ତବର୍ଣ୍ଣ ହୋଇଗଲା ଏବଂ ସେ କ୍ରୋଧରେ ଜ୍ଞାନଶୂନ୍ୟ ହୋଇ ହସିହସି ଉତ୍ତର ଦେଲା ।୧୫। “ହେ ଦଶରଥନନ୍ଦନ ! ଯୁଦ୍ଧରେ ସାଧାରଣ ରାକ୍ଷସମାନଙ୍କୁ ନିହତ କରି, ପ୍ରକୃତପକ୍ଷେ ନିଜେ ପ୍ରଶଂସ୍ୟ ନ ହେଲେ ମଧ୍ୟ, ତୁ ନିଜେ କାହିଁକି ନିଜକୁ ଏତେ ପ୍ରଶଂସା କରୁଛୁ । ୧୬। ବଳବାନ୍ ବିକ୍ରମଶାଳୀ ନରଶ୍ରେଷ୍ଠମାନେ କେବେ ନିଜ-ତେଜରେ ଗର୍ବିତ ହୋଇ ଆତ୍ମଶ୍ଳାଘା କରନ୍ତି ନାହିଁ । ୧୭ । ହେ ରାମ ! ଅଶୁଦ୍ଧଚିତ୍ତ ସାଧାରଣ କ୍ଷତ୍ରିୟକୁଳାଧମମାନେ, ଏ ସଂସାରରେ ତୁ ଯେପରି ଆତ୍ମ ପ୍ରଶଂସା କରୁଛୁ, ସେହିପରି ଆତ୍ମପ୍ରଶଂସା କରିଥାନ୍ତି । ୧୮ । ମୃତ୍ୟୁକାଳ ଉପସ୍ଥିତ ହେଲେ କେଉଁ ବୀରପୁରୁଷ ସ୍ୱୀୟ ବଂଶର ନାମ ଉଲ୍ଲେଖ କରି ପ୍ରଶଂସାର ଅଯୋଗ୍ୟ ସମୟରେ ନିଜେ ନିଜକୁ ପ୍ରଶଂସା କରେ ?।୧୯ । ସ୍ୱର୍ଣ୍ଣସଦୃଶ ଦେଖାଯାଉଥିବା ଉତ୍ତପ୍ତ

ସର୍ବଥୈବ ଲଘୁତ୍ୱଂ ତେ କତ୍ଥନେନ ବିଦର୍ଶିତମ୍ ।
ସୁବର୍ଣ୍ଣପ୍ରତିରୂପେଣ ତପ୍ତେନେବ କୁଶାଗ୍ନିନା । ୨୦ ।
ନ ତୁ ମାମିହ ତିଷ୍ଠନ୍ତଂ ପଶ୍ୟସି ତ୍ୱଂ ଗଦାଧରମ୍ ।
ଧରାଧରମିବାକମ୍ପ୍ୟଂ ପର୍ବତଂ ଧାତୁଭିଶ୍ଚିତମ୍ । ୨୧ ।
ପର୍ଯ୍ୟାପ୍ତୋଽହଂ ଗଦାପାଣିର୍ହନ୍ତୁଂ ପ୍ରାଣାନ୍ ରଣେ ତବ ।
ତ୍ରୟାଣାମପି ଲୋକାନାଂ ପାଶହସ୍ତ ଇବାନ୍ତକଃ । ୨୨ ।
କାମଂ ବହ୍ୱପି ବକ୍ତବ୍ୟଂ ତ୍ୱୟି ବକ୍ଷ୍ୟାମି ନ ତ୍ୱହମ୍ ।
ଅସ୍ତଂ ଗଚ୍ଛେଦ୍ଧି ସବିତା ଯୁଦ୍ଧବିଘ୍ନସ୍ତତୋ ଭବେତ୍ । ୨୩ ।
ଚତୁର୍ଦ୍ଦଶ ସହସ୍ରାଣି ରାକ୍ଷସାନାଂ ହତାନି ତେ ।
ତ୍ୱଦ୍ବିନାଶାତ୍କରୋମ୍ୟେଷ ତେଷାମସ୍ରପ୍ରମାର୍ଜନମ୍ । ୨୪ ।
ଇତ୍ୟୁକ୍ତ୍ୱା ପରମକ୍ରୁଦ୍ଧସ୍ତାଂ ଗଦାଂ ପରମାଙ୍ଗଦଃ ।
ଖରଶ୍ଚିକ୍ଷେପ ରାମାୟ ପ୍ରଦୀପ୍ତାମଶନିଂ ଯଥା । ୨୫ ।
ଖରବାହୁପ୍ରମୁକ୍ତା ସା ପ୍ରଦୀପ୍ତା ମହତୀ ଗଦା ।
ଭସ୍ମ ବୃକ୍ଷାଂଶ୍ଚ ଗୁଲ୍ମାଂଶ୍ଚ କୃତ୍ୱାଗାତ୍ସମୀପତଃ । ୨୬ ।

---

ତାମ୍ରପର ତୁ ତୋର ଏହି ଆତ୍ମଶ୍ଳାଘାଦ୍ୱାରା ସର୍ବଥା ନିଜର ଲଘୁତ୍ୱ ଦେଖାଇ ଦେଇଅଛୁ । ୨୦ । ମୋତେ ଏଠାରେ ଗଦା ଧାରଣ କରି ଦଣ୍ଡାୟମାନ ହୋଇଥିବାର ଦେଖି ବିବିଧ ଧାତୁପୂର୍ଣ୍ଣ ପର୍ବତସଦୃଶ ମୋତେ ତୁ କଣ ଅକମ୍ପମାନ ମନେକରୁ ନାହୁଁ । ୨୧ । ପାଶଧାରୀ ଯମ ଯେପରି ତିନିଲୋକର ପ୍ରାଣସଂହାର କରନ୍ତି, ମୁଁ ସେହିପରି ଗଦାହସ୍ତରେ ଯୁଦ୍ଧରେ ତୋର ପ୍ରାଣସଂହାର କରିବାପାଇଁ ସମ୍ପୂର୍ଣ୍ଣ ସମର୍ଥ ଅଟେ । ୨୨ । ତୋ ବିଷୟରେ ବହୁତ କଥା କହିବାର ଅଛି; ମାତ୍ର ମୁଁ ସେସବୁ ଆଉ କହିବି ନାହିଁ । କାରଣ ଯଦି ସୂର୍ଯ୍ୟ ଅସ୍ତମିତ ହୋଇଯାନ୍ତି ତେବେ ଯୁଦ୍ଧରେ ବିଘ୍ନ ଘଟିବ । ୨୩ । ତୁ ଯେଉଁ ଚତୁର୍ଦ୍ଦଶ ସହସ୍ର ରାକ୍ଷସଙ୍କର ବିନାଶ କରିଛୁ, ଆଜ ମୁଁ ତୋତେ ବିନାଶ କରିବାଦ୍ୱାରା ସେମାନଙ୍କର ଅଶ୍ରୁପ୍ରମାର୍ଜ୍ଜନ କରାଇବି ।" ।୨୪। ଏହା କହି ଖର ଅତିଶୟ କ୍ରୁଦ୍ଧ ହୋଇ ଅତ୍ୟୁତ୍କୃଷ୍ଟ କନକବଳୟଯୁକ୍ତ ସେହି ଗଦାକୁ ଜ୍ୱଳନ୍ତ ବଜ୍ରସଦୃଶ ରାମଙ୍କପ୍ରତି ନିକ୍ଷେପ କଲା । ୨୫ । ଖରର ବାହୁଦ୍ୱାରା ପ୍ରକ୍ଷିପ୍ତ ସେହି ପ୍ରଦୀପ୍ତ ବିଶାଳ ଗଦା ବୃକ୍ଷ ଓ ଗୁଳ୍ମମାନଙ୍କୁ ଭସ୍ମକରି ରାମଙ୍କ ନିକଟକୁ ଧାବମାନ ହେଲା । ୨୬ । ରାମ ଶରଜାଳ ପ୍ରୟୋଗକରି ସାକ୍ଷାତ୍ ମୃତ୍ୟୁପାଶସଦୃଶ ସବେଗରେ

ତାମାପତନ୍ତୀଂ ଜ୍ୱଳିତାଂ ମୃତ୍ୟୁପାଶୋପମାଂ ଗଦାମ୍ ।
ଅନ୍ତରୀକ୍ଷଗତାଂ ରାମଶ୍ଚିଚ୍ଛେଦ ବହୁଧା ଶରୈଃ । ୨୭ ।
ସା ବିଶୀର୍ଣ୍ଣା ଶରୈର୍ଭଗ୍ନା ପପାତ ଧରଣୀତଳେ ।
ଗଦା ମନ୍ତ୍ରୌଷଧବଳୈର୍ବ୍ୟାଳୀବ ବିନିପାତିତା । ୨୮ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ଖରଗଦାଭେଦନମ୍
ନାମ ଏକୋନତ୍ରିଂଶଃ ସର୍ଗଃ

---

ଆକାଶରେ ଆସୁଥିବା ସେହି ସୁବିଶାଳ ଗଦାକୁ ବହୁଖଣ୍ଡ କରି ଛେଦନ କରି-ପକାଇଲେ । ୨୭ । ବିଷାକ୍ତ ହିଂସ୍ର ସର୍ପ ଯେପରି ମନ୍ତ୍ର ଏବଂ ଔଷଧର ପ୍ରଭାବରେ ବିନିପାତିତ ହୁଏ, ସେହିପରି ଏହି ଗଦା ଶରଦ୍ୱାରା ଛିନ୍ନ ଏବଂ ବିଶୀର୍ଣ୍ଣ ହୋଇ ଧରାତଳରେ ନିପତିତ ହେଲା । ୨୮ ।

---

# ତ୍ରିଂଶଃ ସର୍ଗଃ

## ଖରସଂହାରଃ

ଭିତ୍ତ୍ୱା ତୁ ତାଂ ଗଦାଂ ବାଣୈ ରାଘବୋ ଧର୍ମବତ୍ସଲଃ ।
ସ୍ମୟମାନଃ ଖରଂ ବାକ୍ୟଂ ସଂରବ୍ଧମିଦମବ୍ରବୀତ୍ । ୧ ।
ଏତତ୍ତେ ବଲସର୍ବସ୍ୱଂ ଦର୍ଶିତଂ ରାକ୍ଷସାଧମ ।
ଶକ୍ତିହୀନତରୋ ମତ୍ତୋ ବୃଥା ତ୍ୱମବଗର୍ଜସି । ୨ ।
ଏଷା ବାଣବିନିର୍ଭିନ୍ନା ଗଦା ଭୂମିତଲଂ ଗତା ।
ଅଭିଧାନପ୍ରଗଲ୍ଭସ୍ୟ ତବ ପ୍ରତ୍ୟୟଘାତିନୀ । ୩ ।
ଯତ୍ତ୍ୱୟୋକ୍ତଂ ବିନଷ୍ଟାନାମହମଶ୍ରୁପ୍ରମାର୍ଜନମ୍ ।
ରାକ୍ଷସାନାଂ କରୋମୀତି ମିଥ୍ୟା ତଦପି ତେ ବଚଃ । ୪ ।
ନୀଚସ୍ୟ କ୍ଷୁଦ୍ରଶୀଳସ୍ୟ ମିଥ୍ୟାବୃତ୍ତସ୍ୟ ରକ୍ଷସଃ ।
ପ୍ରାଣାନପହରିଷ୍ୟାମି ଗରୁତ୍ମାନମୃତଂ ଯଥା । ୫ ।
ଅଦ୍ୟ ତେ ଛିନ୍ନକଣ୍ଠସ୍ୟ ଫେନବୁଦ୍‌ବୁଦଭୂଷିତମ୍ ।
ବିଦାରିତସ୍ୟ ମଦ୍‌ବାଣୈର୍ମହୀ ପାସ୍ୟତି ଶୋଣିତମ୍ । ୬ ।

---

## ୩୦ଶ ସର୍ଗ

### ( ଖରସଂହାର )

ଧର୍ମବତ୍ସଳ ରାମ ଶରରାଜଦ୍ୱାରା ସେହି ଗଦାକୁ ଛିନ୍ନକରି ଈଷତ୍ ହାସ୍ୟପୂର୍ବକ କ୍ରୁଦ୍ଧ ଖରକୁ କହିଲେ । ୧ । "ହେ ରାକ୍ଷସାଧମ ! ଏଇତ ତୋର ବଳସର୍ବସ୍ୱ ପ୍ରଦର୍ଶିତ ହେଲା । ତୁ ମୋଠାରୁ ହୀନବଳ ହୋଇ କାହିଁକି ବୃଥା ଗର୍ଜନ କରୁଛୁ । । ୨ । ତୁ କେବଳ ବାଗାଡ଼ମ୍ବରରେ ପଟୁ । ତୋର ଏହି ଶତ୍ରୁଘାତିନୀ ଗଦା ମୋର ବାଣରେ ଛିନ୍ନଭିନ୍ନ ହୋଇ ଭୂତଳରେ ପତିତ ହୋଇଅଛି । ୩ । ତୁ କହିଥିଲୁ କି "ମୁଁ ନିହତ ରାକ୍ଷସମାନଙ୍କର ଅଶ୍ରୁପ୍ରମାର୍ଜନ କରିବି; ତୋର ସେ କଥା ଏବେ ମିଥ୍ୟା ହେଲା । ୪। ଗରୁଡ଼ ଯେପରି ଅମୃତ ଅପହରଣ କରିଥିଲେ, ସେହିପରି ମୁଁ ବର୍ତ୍ତମାନ ନୀଚ, କ୍ଷୁଦ୍ରସ୍ୱଭାବ, ମିଥ୍ୟାଚାରୀ ତୋର ପ୍ରାଣ ହରଣ କରିବି । ୫ । ଆଜି ମୋର ବାଣରେ ବିଦାରିତ ହୋଇ ତୋର କଣ୍ଠ ଛିନ୍ନ ହେଲେ ପୃଥିବୀ ତୋର

ପାଂସୁରୂଷିତସର୍ବାଙ୍ଗଃ ସ୍ରସ୍ତନ୍ୟସ୍ତଭୁଜଦ୍ୱୟଃ ।
ସ୍ୱପ୍ସ୍ୟସେ ଗାଂ ସମାଲିଙ୍ଗ୍ୟ ଦୁର୍ଲଭାଂ ପ୍ରମଦାମିବ । ୭ ।
ପ୍ରବୃଦ୍ଧନିଦ୍ରେ ଶୟିତେ ତ୍ୱୟି ରାକ୍ଷସପାଂସନେ ।
ଭବିଷ୍ୟନ୍ତ୍ୟଶରଣ୍ୟାନାଂ ଶରଣ୍ୟା ଦଣ୍ଡକା ଇମେ । ୮ ।
ଜନସ୍ଥାନେ ହତସ୍ଥାନେ ତବ ରାକ୍ଷସ ମଚ୍ଛରୈଃ ।
ନିର୍ଭୟା ବିଚରିଷ୍ୟନ୍ତି ସର୍ବତୋ ମୁନୟୋ ବନେ । ୯ ।
ଅଦ୍ୟ ବିପ୍ରସରିଷ୍ୟନ୍ତି ରାକ୍ଷସ୍ୟୋ ହତବାନ୍ଧବାଃ ।
ବାଷ୍ପାର୍ଦ୍ରବଦନା ଦୀନା ଭୟାଦନ୍ୟଭୟାବହାଃ । ୧୦ ।
ଅଦ୍ୟ ଶୋକରସଜ୍ଞାସ୍ତା ଭବିଷ୍ୟନ୍ତି ନିରର୍ଥିକାଃ ।
ଅନୁରୂପକୁଲାଃ ପତ୍ନ୍ୟୋ ଯାସାଂ ତ୍ୱଂ ପତିରୀଦୃଶଃ । ୧୧ ।
ନୃଶଂସ ନୀଚ କ୍ଷୁଦ୍ରାତ୍ମନ୍ନିତ୍ୟଂ ବ୍ରାହ୍ମଣକଣ୍ଟକ ।
ଯତ୍କୃତେ ଶଙ୍କିତୈରଗ୍ନୌ ମୁନିଭିଃ ପାତ୍ୟତେ ହବିଃ । ୧୨ ।
ତମେବମଭିସଂରବ୍ଧଂ ବ୍ରୁବାଣଂ ରାଘବଂ ରଣେ ।
ଖରୋ ନିର୍ଭର୍ତ୍ସୟାମାସ ରୋଷାତ୍‌ଖରତରସ୍ୱନଃ । ୧୩ ।

---

ଫେନ-ବୁଦ୍‌ବୁଦଶୋଭିତ ରକ୍ତପାନ କରିବ । ୬ । ଆଜ ତୁ ଧୂଳିଧୂସରିତ ଶରୀରରେ ଶିଥିଳ ଭୂତଳନ୍ୟସ୍ତ ଭୁଜଦ୍ୱୟଦ୍ୱାରା ଦୁର୍ଲଭ ମହିଳାପରି ପୃଥିବୀକୁ ଆଲିଙ୍ଗନକରି ଶୟନ କରିବୁ ।୭। ହେ ରାକ୍ଷସାଧମ ! ତୁ ମହାନିଦ୍ରାରେ ଶୟନ କଲେ ଏହି ଦଣ୍ଡକାରଣ୍ୟ ଶରଣବିହୀନ ଋଷିମାନଙ୍କର ପୁଣି ଆଶ୍ରୟସ୍ଥଳ ହେବ । ୮ । ହେ ରାକ୍ଷସ ! ମୋ ଶରଦ୍ୱାରା ଜନସ୍ଥାନ ରାକ୍ଷସଶୂନ୍ୟ ହେଲେ ମୁନିମାନେ ଏ ବନରେ ଗୃହଆଡ଼େ ନିର୍ଭୀକଭାବରେ ବିଚରଣ କରିବେ । ୯ । ଅନ୍ୟମାନଙ୍କର ଭୟ ଜାତ କରୁଥିବା ରାକ୍ଷସୀମାନେ ଆଜ ହତବାନ୍ଧବ ଏବଂ ଅଶ୍ରୁପୂର୍ଣ୍ଣମୁଖ ହୋଇ ମୋ ଭୟରେ ଜନ-ସ୍ଥାନରୁ ପଳାୟନ କରିବେ । ୧୦ । ଈଦୃଶ ଅବସ୍ଥାପନ୍ନ ତୁ ଯେଉଁମାନଙ୍କର ପତି, ତୋର ସେହି ତୁଲ୍ୟବଂଶୀୟା ପତ୍ନୀମାନେ ଶୋକ-ରସର ମର୍ମ ବୁଝିବେ ଏବଂ ନିଃସହାୟ ହେବେ । ୧୧ । ରେ ନୃଶଂସ କ୍ଷୁଦ୍ରାତ୍ମା ବ୍ରାହ୍ମଣକଣ୍ଟକ ! ତୋପାଇଁ ମୁନିମାନେ ସର୍ବଦା ଅତିଶୟ ଶଙ୍କିତ ହୋଇ ଅଗ୍ନିରେ ଆହୁତି ପ୍ରଦାନ କରୁଅଛନ୍ତି"।୧୨। ଯୁଦ୍ଧରେ ରାମ ଅତିଶୟ କ୍ରୁଦ୍ଧ ହୋଇ ଏପ୍ରକାର କହିବାରୁ ଖର ରାଗିଯାଇ ଉଗ୍ରତର ସ୍ୱରରେ ତାଙ୍କୁ ଭର୍ତ୍ସନା କରିବାକୁ ଲାଗିଲା । ୧୩ । "ତୁ ନିଶ୍ଚୟ ନିତାନ୍ତ ଗର୍ବିତ

ଦୃଢ଼ଂ ଖଲ୍ୱବଲସ୍ତ୍ୱୋଽସି ଭୟେଷ୍ୱପି ଚ ନିର୍ଭୟଃ ।
ବାଚ୍ୟାବାଚ୍ୟଂ ତତୋ ହି ତ୍ୱଂ ମୃତ୍ୟୁବଶ୍ୟୋ ନ ବୁଧ୍ୟସେ ।୧୪।
କାଳପାଶପରିକ୍ଷିପ୍ତା ଭବନ୍ତି ପୁରୁଷା ହି ଯେ ।
କାର୍ଯାକାର୍ଯଂ ନ ଜାନନ୍ତି ତେ ନିରସ୍ତଷଡ଼ିନ୍ଦ୍ରିୟାଃ । ୧୫ ।
ଏବମୁକ୍ତ୍ୱା ତତୋ ରାମଂ ସଂରୁଧ୍ୟ ଭ୍ରୁକୁଟୀଂ ତତଃ ।
ସ ଦଦର୍ଶ ମହାସାଲମବିଦୂରେ ନିଶାଚରଃ । ୧୬ ।
ରଣେ ପ୍ରହରଣସ୍ୟାର୍ଥେ ସର୍ବତୋ ହ୍ୟବଲୋକୟନ୍ ।
ସ ତମୁତ୍ପାଟୟାମାସ ସଂଦଶ୍ୟ ଦଶନଚ୍ଛଦମ୍ । ୧୭ ।
ତଂ ସମୁତ୍ପାଟ୍ୟ ବାହୁଭ୍ୟାଂ ବିନଦ୍ୟ ଚ ମହାବଳଃ ।
ରାମମୁଦ୍ଦିଶ୍ୟ ଚିକ୍ଷେପ ହତସ୍ତ୍ୱମିତି ଚାବ୍ରବୀତ୍ । ୧୮ ।
ତମାପତନ୍ତଂ ବାଣୌଘୈଶ୍ଛିତ୍ତ୍ୱା ରାମଃ ପ୍ରତାପବାନ୍ ।
ରୋଷମାହାରୟତ୍ତୀବ୍ରଂ ନିହନ୍ତୁଂ ସମରେ ଖରମ୍ । ୧୯ ।
ଜାତସ୍ୱେଦସ୍ତତୋ ରାମୋ ରୋଷାଦ୍ରକ୍ତାନ୍ତଲୋଚନଃ ।
ନିର୍ବିଭେଦ ସହସ୍ରେଣ ବାଣାନାଂ ସମରେ ଖରମ୍ । ୨୦ ।
ତସ୍ୟ ବାଣାନ୍ତରାଦ୍ରକ୍ତଂ ବହୁ ସୁସ୍ରାବ ଫେନିଲମ୍ ।
ଗିରେଃ ପ୍ରସ୍ରବଣସ୍ୟେବ ତୋୟଧାରାପରିସ୍ରବଃ । ୨୧ ।

---

ହୋଇ ଭୟପ୍ରଦ ବିଷୟରେ ମଧ୍ୟ ଭୟ କରୁନାହୁଁ, ସେହିହେତୁରୁ ତୁ ମୃତ୍ୟୁର ବଶୀଭୂତ ହୋଇ ବାଚ୍ୟାବାଚ୍ୟ ବୁଝିପାରୁନାହୁଁ ।୧୪। ଯେଉଁ ବ୍ୟକ୍ତିମାନେ କାଳପାଶରେ ଆବଦ୍ଧ ହୋଇଥାନ୍ତି, ସେମାନଙ୍କର ଛ'ଟିଯାକ ଇନ୍ଦ୍ରିୟ ଅବଶ ହୋଇ ପଡ଼ିଥିବାରୁ ସେମାନେ କାର୍ଯ୍ୟାକାର୍ଯ୍ୟ ବୁଝିପାରନ୍ତି ନାହିଁ" ।୧୫। ରାକ୍ଷସ ଖର ରାମଙ୍କୁ ଏହି କଥା କହି ଭ୍ରୂକୁଟୀ କୁଞ୍ଚନ କରି ଅନତିଦୂରରେ ଏକ ପ୍ରକାଣ୍ଡ ଶାଳବୃକ୍ଷ ଦେଖିଲା ।୧୬। ଯୁଦ୍ଧରେ ପ୍ରହରଣରୂପରେ ବ୍ୟବହାର କରିବା ପାଇଁ ସେ ଚାରିଆଡ଼କୁ ଦୃଷ୍ଟିପକାଇ ଦାନ୍ତକାମୁଡ଼ି ସେହି ଶାଳବୃକ୍ଷକୁ ଉତ୍ପାଟନ କଲା ।୧୭। ମହାବଳୀ ଖର ତାହାକୁ ବାହୁଦ୍ୱାରା ଉତ୍ପାଟନ କରି ଘୋର ଗର୍ଜନପୂର୍ବକ "ତୁ ମଲୁ" ବୋଲି କହି ରାମଙ୍କୁ ଲକ୍ଷ୍ୟକରି ତାହା ନିକ୍ଷେପକଲା ।୧୮। ପ୍ରତାପଶାଳୀ ରାମ ଶରସମୂହଦ୍ୱାରା ତାଙ୍କ ଆଡ଼କୁ ଆସୁଥିବା ସେହି ବୃକ୍ଷକୁ ଛେଦନକରି ଯୁଦ୍ଧରେ ଖରକୁ ବଧ କରିବାପାଇଁ ପ୍ରଚଣ୍ଡ କ୍ରୋଧ ଧାରଣ କଲେ ।୧୯। ରାମଙ୍କ ଶରୀରରୁ ଘର୍ମନିର୍ଗତ ହେଲା ଓ କ୍ରୋଧରେ ତାଙ୍କର ଚକ୍ଷୁ ରକ୍ତବର୍ଣ୍ଣ ହୋଇଗଲା । ସେ ଯୁଦ୍ଧରେ ସହସ୍ର ସହସ୍ର ଶରପ୍ରୟୋଗ କରି ଖରକୁ ଛିନ୍ନଭିନ୍ନ କରି ପକାଇଲେ ।୨୦। ପର୍ବତ-ପ୍ରସ୍ରବଣରୁ ଯେପରି ବାରିଧାରା ନିର୍ଗତ ହୁଏ, ସେହିପରି ତାହାର ବାଣଭିନ୍ନ ଦେହର

ବିହ୍ୱଳଃ ସ କୃତୋ ବାଣୈଃ ଖରୋ ରାମେଣ ସଂଯୁଗେ ।
ମତ୍ତୋ ରୁଧିରଗନ୍ଧେନ ତମେବାଭ୍ୟଦ୍ରବଦ୍ଦ୍ରୁତମ୍ । ୨୨ ।
ତମାପତନ୍ତଂ ସଂରବ୍ଧଂ କୃତାସ୍ତ୍ରୋ ରୁଧିରାପ୍ଳୁତମ୍ ।
ଅପାସର୍ପଦ୍ଦ୍ୱିତ୍ରିପଦଂ କିଂଚିତ୍ତ୍ୱରିତବିକ୍ରମଃ । ୨୩ ।
ତତଃ ପାବକସଂକାଶଂ ବଧାୟ ସମରେ ଶରମ୍ ।
ଖରସ୍ୟ ରାମୋ ଜଗ୍ରାହ ବ୍ରହ୍ମଦଣ୍ଡମିବାପରମ୍ । ୨୪ ।
ସ ତଂ ଦତ୍ତଂ ମଘବତା ସୁରରାଜେନ ଧୀମତା ।
ସଂଦଧେ ଚାପି ଧର୍ମାତ୍ମା ମୁମୋଚ ଚ ଖରଂ ପ୍ରତି । ୨୫ ।
ସ ବିମୁକ୍ତୋ ମହାବାଣୋ ନିର୍ଘାତସମନିଃସ୍ୱନଃ ।
ରାମେଣ ଧନୁରାୟମ୍ୟ ଖରସ୍ୟୋରସି ଚାପତତ୍ । ୨୬ ।
ସ ପପାତ ଖରୋ ଭୂମୌ ଦହ୍ୟମାନଃ ଶରାଗ୍ନିନା ।
ରୁଦ୍ରେଣେବ ବିନିର୍ଦଗ୍ଧଃ ଶ୍ୱେତାରଣ୍ୟେ* ଯଥାନ୍ଧକଃ । ୨୭ ।
ସ ବୃତ୍ର ଇବ ବଜ୍ରେଣ ଫେନେନ ନମୁଚିର୍ଯଥା ।
ବଲୋ ବେନ୍ଦ୍ରାଶନିହତୋ ନିପପାତ ହତଃ ଖରଃ । ୨୮ ।

---

ଛିଦ୍ରରୁ ଫେନିଲ ରକ୍ତ ନିର୍ଗତ ହେବାକୁ ଲାଗିଲା ।୨୧। ଯୁଦ୍ଧରେ ଖର ରାମଙ୍କ ଶରରାଜିର ଆଘାତରେ ବିହ୍ୱଳହୋଇ ଏବଂ ରକ୍ତଗନ୍ଧରେ ଉନ୍ମତ୍ତ ହୋଇ ଦ୍ରୁତବେଗରେ ତାଙ୍କର ଆଡ଼କୁ ପ୍ରଧାବିତ ହେଲା ।୨୨। ଏହିପରି କ୍ରୁଦ୍ଧ ଏବଂ ରକ୍ତାକ୍ତଶରୀର ହୋଇ ତାହାକୁ ଦୌଡ଼ିଆସୁଥିବାର ଦେଖି ଶସ୍ତ୍ରନିପୁଣ ରାମ କ୍ଷିପ୍ରଗତିରେ ଦୁଇ ତିନି ପାଦ ପଛକୁ ଘୁଞ୍ଚିଗଲେ । ୨୩ । ଅନନ୍ତର ରାମ ଯୁଦ୍ଧରେ ଖରର ବଧସାଧନ ନିମନ୍ତେ ଦ୍ୱିତୀୟ ବ୍ରହ୍ମଦଣ୍ଡସଦୃଶ ଅଗ୍ନିତୁଲ୍ୟ ଏକ ଶରକୁ ଗ୍ରହଣ କଲେ ।୨୪। ଧର୍ମାତ୍ମା ରାମ ଧୀମାନ୍ ଦେବରାଜ ଇନ୍ଦ୍ରଙ୍କ ପ୍ରଦତ୍ତ ସେହି ଶର ସନ୍ଧାନ କରି ଖରଆଡ଼କୁ ଲକ୍ଷ୍ୟକରି ମୋଚନ କଲେ । ୨୫। ରାମ ଧନୁ ଉତ୍ତୋଳନ କରି ବଜ୍ରପାତସଦୃଶ ଗର୍ଜନକାରୀ ଏହି ଯେଉଁ ମହାବାଣ ମୋଚନ କଲେ ତାହା ଖରର ବକ୍ଷସ୍ଥଳରେ ଯାଇ ପଡ଼ିଲା । ୨୬ । ଶ୍ୱେତାରଣ୍ୟରେ ରୁଦ୍ରଙ୍କ କର୍ତ୍ତୃକ ବିନିର୍ଦଗ୍ଧ ହୋଇ ଅନ୍ଧକାସୁର ଯେପରି ଭୂମିରେ ପତିତ ହୋଇଥିଲା, ସେହିପରି ଖର ବାଣାଗ୍ନିଦ୍ୱାରା ଦଗ୍ଧ ହୋଇ ଭୂମିରେ ପତିତ ହେଲା । ୨୭ । ବୃତ୍ର ଯେପରି ବଜ୍ରଦ୍ୱାରା, ନମୁଚି ଯେପରି ଫେନଦ୍ୱାରା ଏବଂ ବଳାସୁର ଯେପରି ବଜ୍ରଦ୍ୱାରା ନିହତ ହୋଇଥିଲା, ଖର ସେହିପରି

---

* କାବେରୀ ନଦୀତୀରବର୍ତ୍ତୀ ଶ୍ୱେତାରଣ୍ୟରେ ରୁଦ୍ର ଅନ୍ଧକାସୁରକୁ ନିହତ କରିଥିବା ବିଷୟ ପୁରାଣମାନଙ୍କରେ ବର୍ଣ୍ଣିତ ଅଛି ।

ତତୋ ରାଜର୍ଷୟଃ ସର୍ବେ ସଂଗତାଃ ପରମର୍ଷୟଃ ।
ସଭାଜ୍ୟ ମୁଦିତା ରାମମିଦଂ ବଚନମବ୍ରୁବନ୍ । ୨୯ ।
ଏତଦର୍ଥଂ ମହାଭାଗ ମହେନ୍ଦ୍ରଃ ପାକଶାସନଃ ।
ଶରଭଙ୍ଗାଶ୍ରମଂ ପୁଣ୍ୟମାଜଗାମ ପୁରନ୍ଦରଃ । ୩୦ ।
ଆନୀତସ୍ତ୍ୱମିମଂ ଦେଶମୁପାୟେନ ମହର୍ଷିଭିଃ ।
ଏଷାଂ ବଧାର୍ଥଂ କ୍ରୂରାଣାଂ ରକ୍ଷସାଂ ପାପକର୍ମଣାମ୍ । ୩୧ ।
ତଦିଦଂ ନଃ କୃତଂ କାର୍ଯଂ ତ୍ୱୟା ଦଶରଥାତ୍ମଜ ।
ସୁଖଂ ଧର୍ମଂ ଚରିଷ୍ୟନ୍ତି ଦଣ୍ଡକେଷୁ ମହର୍ଷୟଃ । ୩୨ ।
ଏତସ୍ମିନ୍ନନ୍ତରେ ଦେବାଶ୍ଚାରଣୈଃ ସହ ସଂଗତାଃ ।
ଦୁନ୍ଦୁଭୀଂଶ୍ଚାଭିନିଘ୍ନନ୍ତଃ ପୁଷ୍ପବର୍ଷଂ ସମନ୍ତତଃ । ୩୩ ।
ରାମସ୍ୟୋପରି ସଂହୃଷ୍ଟା ବବୃଷୁର୍ବିସ୍ମିତାସ୍ତଦା ।
ଅର୍ଧାଧିକମୁହୂର୍ତେନ ରାମେଣ ନିଶିତୈଃ ଶରୈଃ । ୩୪ ।
ଚତୁର୍ଦଶ ସହସ୍ରାଣି ରକ୍ଷସାଂ ଭୀମକର୍ମଣାମ୍ ।
ଖରଦୂଷଣମୁଖ୍ୟାନାଂ ନିହତାନି ମହାହବେ । ୩୫ ।
ଅହୋବତ ମହତ୍କର୍ମ ରାମସ୍ୟ ବିଦିତାତ୍ମନଃ ।
ଅହୋ ବୀର୍ଯମହୋ ଦାକ୍ଷ୍ୟଂ ବିଷ୍ଣୋରିବ ହି ଦୃଶ୍ୟତେ । ୩୬ ।

---

ନିହତ ହୋଇ ପଡ଼ିଗଲେ । ୨୮ । ଅନନ୍ତର ସମବେତ ରାଜର୍ଷି ଓ ମହର୍ଷିମାନେ ସମସ୍ତେ ଆନନ୍ଦିତ ହୋଇ ରାମଙ୍କୁ ଅଭିବାଦନ କରି ଏହିକଥା କହିଲେ ।୨୯।"ହେ ମହାଭାଗ ! ଏଇଥିଲାଗି ପାକଶାସନ ପୁରନ୍ଦର ଇନ୍ଦ୍ର ପବିତ୍ର ଶରଭଙ୍ଗାଶ୍ରମକୁ ଆସିଥିଲେ । ୩୦ । ତୁମେ ଏହି ନିଷ୍ଠୁର ପାପାଚାରୀ ରାକ୍ଷସମାନଙ୍କର ବଧନିମନ୍ତେ ମହର୍ଷିମାନଙ୍କଦ୍ୱାରା କୌଶଳକ୍ରମେ ଏହି ଅଞ୍ଚଳକୁ ଆନୀତ ହୋଇଥିଲ ।୩୧। ହେ ଦଶରଥନନ୍ଦନ ! ତୁମେ ବର୍ତ୍ତମାନ ଆମ୍ଭମାନଙ୍କର ସେହି କାର୍ଯ୍ୟ ସମ୍ପାଦନ କରିଅଛ । ଏଣିକି ମହର୍ଷିମାନେ ଦଣ୍ଡକାରଣ୍ୟରେ ସୁଖରେ ଧର୍ମାଚରଣ କରିବେ" । ୩୨। ଏହି ସମୟରେ ଦେବଗଣ ଚାରଣମାନଙ୍କ ସହିତ ମିଳିତ ହୋଇ ଦୁନ୍ଦୁଭିବାଦନପୂର୍ବକ ଅତିଶୟ ଆନନ୍ଦିତ ଏବଂ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଚାରିଆଡ଼ୁ ରାମଙ୍କ ଉପରେ ପୁଷ୍ପବୃଷ୍ଟି କରିବାକୁ ଲାଗିଲେ । ସେମାନେ କହିଲେ, "ରାମ ଏହି ମହାଯୁଦ୍ଧରେ ମୁହୂର୍ତ୍ତକ ମଧ୍ୟରେ ତୀକ୍ଷ୍ଣଶରଦ୍ୱାରା ଖର, ଦୂଷଣପ୍ରମୁଖ ଚଉଦ ହଜାର ଭୀମକର୍ମା ରାକ୍ଷସଙ୍କୁ ନିହତ କରିଦେଲେ । ଅହୋ ! ବିଦିତାତ୍ମା ରାମଙ୍କର ଏହି ମହତ୍ କର୍ମ ଅତି ଆଶ୍ଚର୍ଯ୍ୟଜନକ । ତାଙ୍କର ବୀର୍ଯ୍ୟ ଏବଂ ଦକ୍ଷତା ଠିକ୍ ବିଷ୍ଣୁଙ୍କପରି ଜଣାଯାଉଛି" ।୩୩-୩୬। ସେହି

ଇତ୍ୟେବମୁକ୍ତ୍ୱା ତେ ସର୍ବେ ଯଯୁର୍ଦେବା ଯଥାଗତମ୍ ।
ଏତସ୍ମିନ୍ନନ୍ତରେ ବୀରୋ ଲକ୍ଷ୍ମଣଃ ସହ ସୀତୟା । ୩୭ ।
ଗିରିଦୁର୍ଗାଦ୍ୱିନିଷ୍କ୍ରମ୍ୟ ସଂବିବେଶାଶ୍ରମଂ ସୁଖୀ ।
ତତୋ ରାମସ୍ତୁ ବିଜୟୀ ପୂଜ୍ୟମାନୋ ମହର୍ଷିଭିଃ । ୩୮ ।
ପ୍ରବିବେଶାଶ୍ରମଂ ବୀରୋ ଲକ୍ଷ୍ମଣେନାଭିପୂଜିତଃ ।
ତଂ ଦୃଷ୍ଟ୍ୱା ଶତ୍ରୁହନ୍ତାରଂ ମହର୍ଷୀଣାଂ ସୁଖାବହମ୍ । ୩୯ ।
ବଭୂବ ହୃଷ୍ଟା ବୈଦେହୀ ଭର୍ତାରଂ ପରିଷସ୍ୱଜେ ।
ମୁଦା ପରମୟା ଯୁକ୍ତା ଦୃଷ୍ଟ୍ୱା ରକ୍ଷୋଗଣାନ୍ ହତାନ୍ । ୪୦ ।
ରାମଂ ଚୈବାବ୍ୟଥଂ ଦୃଷ୍ଟ୍ୱା ତୁତୋଷ ଜନକାତ୍ମଜା । ୪୧ ।

ତତସ୍ତୁ ତଂ ରାକ୍ଷସସଂଘମର୍ଦନମ୍
ସମ୍ପୂଜ୍ୟମାନଂ ମୁଦିତୈର୍ମହର୍ଷିଭିଃ ।
ପୁନଃ ପରିଷ୍ୱଜ୍ୟ ଶଶିପ୍ରଭାନନା
ବଭୂବ ହୃଷ୍ଟା ଜନକାତ୍ମଜା ତଦା । ୪୨ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ଖରସଂହାରୋ ନାମ
ତ୍ରିଂଶଃ ସର୍ଗଃ

---

ଦେବତାମାନେ ଏହିପରି କହି ନିଜ ନିଜ ସ୍ଥାନକୁ ପ୍ରସ୍ଥାନ କଲେ । ଇତିମଧ୍ୟରେ ବୀର ଲକ୍ଷ୍ମଣ ସୀତାଙ୍କ ସହିତ ଗିରିଦୁର୍ଗମଧ୍ୟରୁ ବାହାରି ସୁଖରେ ଆସି ଆଶ୍ରମରେ ପ୍ରବେଶ କଲେ । ଅନନ୍ତର ବିଜୟୀ ରାମ ମହର୍ଷିଗଣଙ୍କଦ୍ୱାରା ପୂଜିତ ଏବଂ ଲକ୍ଷ୍ମଣଙ୍କଦ୍ୱାରା ଅଭିନନ୍ଦିତ ହୋଇ ଆଶ୍ରମମଧ୍ୟରେ ପ୍ରବେଶ କଲେ । ମହର୍ଷିମାନଙ୍କର ସୁଖବର୍ଦ୍ଧନକାରୀ, ଶତ୍ରୁହନ୍ତା ସ୍ୱାମୀଙ୍କୁ ଦେଖି ବୈଦେହୀ ଅତିଶୟ ଆନନ୍ଦିତ ହୋଇ ତାଙ୍କୁ ଆଲିଙ୍ଗନ କଲେ । ରାକ୍ଷସଗଣଙ୍କୁ ନିହତ ଏବଂ ରାମଙ୍କୁ ସଂପୂର୍ଣ୍ଣ ଅକ୍ଷତ ଦେଖି ଜନକନନ୍ଦିନୀ ଅତିଶୟ ଆନନ୍ଦ ଓ ସନ୍ତୋଷ ଲାଭ କଲେ । ୩୭-୪୧ । ସେତେବେଳେ ଜନକନନ୍ଦିନୀ ଚନ୍ଦ୍ରବଦନା ସୀତା ରାକ୍ଷସକୁଳମର୍ଦ୍ଦନକାରୀ ଏବଂ ଆହ୍ଲାଦିତ ମହର୍ଷିମାନଙ୍କଦ୍ୱାରା ସମ୍ମାନିତ ରାମଙ୍କୁ ପୁନର୍ବାର ଆଲିଙ୍ଗନ କରି ସାତିଶୟ ଆନନ୍ଦିତ ହେଲେ । ୪୨ ।

---

# ଏକତ୍ରିଂଶଃ ସର୍ଗଃ

## ରାବଣଖରବୃତ୍ତୋପଲମ୍ଭଃ

ତ୍ୱରମାଣସ୍ତତୋ ଗତ୍ୱା ଜନସ୍ଥାନାଦକମ୍ପନଃ ।
ପ୍ରବିଶ୍ୟ ଲଙ୍କାଂ ବେଗେନ ରାବଣଂ ବାକ୍ୟମବ୍ରବୀତ୍ । ୧ ।
ଜନସ୍ଥାନସ୍ଥିତା ରାଜନ୍ ରାକ୍ଷସା ବହବୋ ହତାଃ ।
ଖରଶ୍ଚ ନିହତଃ ସଂଖ୍ୟେ କଥଂଚିଦହମାଗତଃ । ୨ ।
ଏବମୁକ୍ତୋ ଦଶଗ୍ରୀବଃ କ୍ରୁଦ୍ଧଃ ସଂରକ୍ତଲୋଚନଃ ।
ଅକମ୍ପନମୁବାଚେଦଂ ନିର୍ଦହନ୍ନିବ ଚକ୍ଷୁଷା । ୩ ।
କେନ ଭୀମଂ ଜନସ୍ଥାନଂ ହତଂ ମମ ପରାସୁନା ।
କୋ ହି ସର୍ବେଷୁ ଲୋକେଷୁ ଗତିଂ ନାଧିଗମିଷ୍ୟତି । ୪ ।
ନ ହି ମେ ବିପ୍ରିୟଂ କୃତ୍ୱା ଶକ୍ୟଂ ମଘବତା ସୁଖମ୍ ।
ପ୍ରାପ୍ତୁଂ ବୈଶ୍ରବଣେନାପି ନ ଯମେନ ନ ବିଷ୍ଣୁନା । ୫ ।
କାଳସ୍ୟ ଚାପ୍ୟହଂ କାଲୋ'ଦହେୟମପି ପାବକମ୍ ।
ମୃତ୍ୟୁଂ ମରଣଧର୍ମେଣ ସଂଯୋଜୟିତୁମୁତ୍ସହେ । ୬ ।

---

## ୩୧ଶ ସର୍ଗ

( ରାବଣକର୍ତ୍ତୃକ ଖରର ମୃତ୍ୟୁସମ୍ବାଦପ୍ରାପ୍ତି )

ଅନନ୍ତର ଅକମ୍ପନ ନାମକ ରାକ୍ଷସ ଅତିଦ୍ରୁତପଦରେ ଜନସ୍ଥାନରୁ ପ୍ରସ୍ଥାନ କରି ଏବଂ ବେଗରେ ଲଙ୍କାରେ ପ୍ରବେଶକରି ରାବଣକୁ କହିଲା ।୧। "ହେ ରାଜନ୍ ! ଜନସ୍ଥାନ-ବାସୀ ବହୁସଂଖ୍ୟକ ରାକ୍ଷସ ଏବଂ ସ୍ୱୟଂ ଖର ମଧ୍ୟ ଯୁଦ୍ଧରେ ନିହତ ହୋଇଅଛନ୍ତି ; ମୁଁ କୌଣସିମତେ ବଞ୍ଚିପାରି ଏଠାକୁ ଚାଲି ଆସିଛି" । ୨ । ସେ ଏହିପରି କହିବା-ଉତ୍ତାରୁ କ୍ରୋଧରେ ଦଶଗ୍ରୀବ ରାବଣର ଚକ୍ଷୁ ରକ୍ତବର୍ଣ୍ଣ ହୋଇଗଲା ଏବଂ ସେହି ଚକ୍ଷୁରେ ସେ ଅକମ୍ପନକୁ ସତେ ଯେପରି ଦହନ କରିଦେବ, ସେହିପରିଭାବରେ ଚାହିଁ କହିଲା । ୩ । "କେଉଁ ଲୋକର ଆୟୁଃ ଶେଷ ହୋଇଅଛି ଏବଂ କାହାପାଇଁ ସମସ୍ତ ଲୋକରେ ଆଶ୍ରୟ ଦୁର୍ଲ୍ଲଭ ହୋଇଅଛି ଯେ ସେ ମୋର ସେହି ଭୟଙ୍କର ଜନସ୍ଥାନକୁ ଧ୍ୱଂସ କରିଅଛି ?। ୪ । ମୋର ଅପ୍ରିୟ କାର୍ଯ୍ୟ କରି ଇନ୍ଦ୍ର, କୁବେର, ଯମ ବା ବିଷ୍ଣୁ କେହିହେଲେ ସୁଖଲାଭ କରିବାକୁ ସମର୍ଥ ହେବେ ନାହିଁ । ୫ । ମୁଁ କାଳର ମଧ୍ୟ କାଳ । ମୁଁ ଅଗ୍ନିକୁ ଦଗ୍ଧ କରି ଦେଇପାରେଁ ଏବଂ ଯମର ମଧ୍ୟ ମୃତ୍ୟୁବିଧାନ କରିପାରେଁ । ୬ । ମୁଁ କ୍ରୁଦ୍ଧ ହେଲେ ସୂର୍ଯ୍ୟ ଓ ଅଗ୍ନି ଉଭୟଙ୍କୁ

**ଦହେଯ୍ୟମପି ସଂକ୍ରୁଦ୍ଧସ୍ତେଜସାଦଭ୍ୟପାବକୌ ।**
**ବାତସ୍ୟ ତରସା ବେଗଂ ନିହନ୍ତୁମହମୁତ୍ସହେ । ୭ ।**
**ତଥା କ୍ରୁଦ୍ଧଂ ଦଶଗ୍ରୀବଂ କୃତାଞ୍ଜଳିରକମ୍ପନଃ ।**
**ଭୟାତ୍ସଂଦିଗ୍ଧୟା ବାଚା ରାବଣଂ ଯାଚତେଽଭୟମ୍ । ୮ ।**
**ଦଶଗ୍ରୀବୋଽଭୟଂ ତସ୍ମୈ ପ୍ରଦଦୌ ରକ୍ଷସାଂ ବରଃ ।**
**ସ ବିସ୍ରବ୍ଧୋଽବ୍ରବୀଦ୍ୱାକ୍ୟମସଂଦିଗ୍ଧମକମ୍ପନଃ । ୯ ।**
**ପୁତ୍ରୋ ଦଶରଥସ୍ୟାସ୍ତି ସିଂହସଂହନନୋ ଯୁବା ।**
**ରାମୋ ନାମ ବୃଷସ୍କନ୍ଧୋ ବୃତ୍ତାୟତମହାଭୁଜଃ ।୧୦ ।**
**ବୀରଃ ପୃଥୁଯଶାଃ ଶ୍ରୀମାନତୁଲ୍ୟବଲବିକ୍ରମଃ ।**
**ହତଂ ତେନ ଜନସ୍ଥାନଂ ଖରଶ୍ଚ ସହଦୂଷଣଃ । ୧୧ ।**
**ଅକମ୍ପନବଚଃ ଶ୍ରୁତ୍ୱା ରାବଣୋ ରାକ୍ଷସାଧିପଃ ।**
**ନାଗେନ୍ଦ୍ର ଇବ ନିଃଶ୍ୱସ୍ୟ ବଚନଂ ଚେଦମବ୍ରବୀତ୍ । ୧୨ ।**
**ସ ସୁରେନ୍ଦ୍ରେଣ ସଂଯୁକ୍ତୋ ରାମଃ ସର୍ବାମରୈଃ ସହ ।**
**ଉପଯାତୋ ଜନସ୍ଥାନଂ ବ୍ରୂହି କଚ୍ଚିଦକମ୍ପନ । ୧୩ ।**
**ରାବଣସ୍ୟ ପୁନର୍ବାକ୍ୟଂ ନିଶମ୍ୟ ତଦକମ୍ପନଃ ।**
**ଆଚଚକ୍ଷେ ବଲଂ ତସ୍ୟ ବିକ୍ରମଂ ଚ ମହାତ୍ମନଃ । ୧୪ ।**

---

ଦଗ୍ଧ କରିଦେଇ ପାରିବି ଏବଂ ମୋର ଶକ୍ତିଦ୍ୱାରା ମୁଁ ବାୟୁର ବେଗକୁ ମଧ୍ୟ ରୁଦ୍ଧ କରିଦେଇ ପାରିବି" ।୭ । ଦଶଗ୍ରୀବ ରାବଣ ଏପରି କ୍ରୁଦ୍ଧ ହେବାରୁ ଅକମ୍ପନ ଭୟରେ କୃତାଞ୍ଜଳି ହୋଇ ତାହାକୁ ଅଭୟ ପ୍ରାର୍ଥନା କଲା । ୮ । ରାକ୍ଷସଶ୍ରେଷ୍ଠ ଦଶାନନ ତାହାକୁ ଅଭୟ ଦେଲା । ଅକମ୍ପନ ଆଶ୍ୱସ୍ତ ହୋଇ ନିଃସନ୍ଦେହଭାବରେ କହିଲା ।୯। "ଦଶରଥଙ୍କର 'ରାମ' ନାମରେ ଗୋଟିଏ ପୁଅ ଅଛି । ସେ ଯୁବକ ଓ ସିଂହ-ବିକ୍ରମୀ, ବୃଷଭସଦୃଶ ସ୍କନ୍ଧବିଶିଷ୍ଟ ଏବଂ ତାର ବାହୁଦ୍ୱୟ ଦୀର୍ଘ ଏବଂ ବର୍ତ୍ତୁଳ । ସେ ବୀର, ବିଶାଳଯଶା, ଶ୍ରୀମାନ୍ ଏବଂ ତାର ବଳବିକ୍ରମ ଅତୁଳନୀୟ । ତାହାର ଦ୍ୱାରା ଖର ଏବଂ ଦୂଷଣ ସହିତ ସମଗ୍ର ଜନସ୍ଥାନ ନିହତ ହୋଇଅଛି" । ୧୦-୧୧ । ରାକ୍ଷସାଧିପତି ରାବଣ ଅକମ୍ପନର କଥା ଶୁଣି ନାଗରାଜପରି ଘନ ଘନ ନିଃଶ୍ୱାସ ପକାଇ କହିଲା । ୧୨ । "ଅକମ୍ପନ ! ତେବେ ତୁ କହ, ରାମ କଅଣ ଦେବତାଗଣ ଓ ଇନ୍ଦ୍ରଙ୍କ ସହିତ ସମ୍ମିଳିତ ହୋଇ ଜନସ୍ଥାନରେ ଆସି ଉପସ୍ଥିତ ହୋଇଅଛି ?" । ୧୩ । ଅକମ୍ପନ ରାବଣର ସେହି କଥା ଶୁଣି ମହାତ୍ମା ରାମଙ୍କ ବଳ ଓ ବିକ୍ରମ ବର୍ଣ୍ଣନା କରିବାକୁ ଲାଗିଲା । ୧୪ । "ମହାତେଜସ୍ୱୀ ରାମ

ରାମୋ ନାମ ମହାତେଜାଃ ଶ୍ରେଷ୍ଠଃ ସର୍ବଧନୁଷ୍ମତାମ୍ ।
ଦିବ୍ୟାସ୍ତ୍ରଗୁଣସମ୍ପନ୍ନଃ ପୁରନ୍ଦରସମୋ ଯୁଧି । ୧୫ ।
ତସ୍ୟାନୁରୂପୋ ବଲବାନ୍ ରକ୍ତାକ୍ଷୋ ଦୁନ୍ଦୁଭିସ୍ୱନଃ ।
କନୀୟାଁଲ୍ଲକ୍ଷ୍ମଣୋ ନାମ ଭ୍ରାତା ଶଶିନିଭାନନଃ । ୧୬ ।
ସ ତେନ ସହ ସଂଯୁକ୍ତଃ ପାବକେନାନିଲୋ ଯଥା ।
ଶ୍ରୀମାନ୍ ରାଜବରସ୍ତେନ ଜନସ୍ଥାନଂ ନିପାତିତମ୍ । ୧୭ ।
ନୈବ ଦେବା ମହାତ୍ମାନୋ ନାତ୍ର କାର୍ଯା ବିଚାରଣା ।
ଶରା ରାମେଣ ତୂତ୍ସୃଷ୍ଟା ରୁକ୍ମପୁଙ୍ଖାଃ ପତତ୍ରିଣଃ । ୧୮ ।
ସର୍ପାଃ ପଞ୍ଚାନନା ଭୂତ୍ୱା ଭକ୍ଷୟନ୍ତି ସ୍ମ ରାକ୍ଷସାନ୍ ।
ଯେନ ଯେନ ଚ ଗଚ୍ଛନ୍ତି ରାକ୍ଷସା ଭୟକର୍ଶିତାଃ । ୧୯ ।
ତେନ ତେନ ସ୍ମ ପଶ୍ୟନ୍ତି ରାମମେବାଗ୍ରତଃ ସ୍ଥିତମ୍ ।
ଇତ୍ଥଂ ବିନାଶିତଂ ତେନ ଜନସ୍ଥାନଂ ତବାନଘ । ୨୦ ।
ଅକମ୍ପନବଚଃ ଶ୍ରୁତ୍ୱା ରାବଣୋ ବାକ୍ୟମବ୍ରବୀତ୍ ।
ଜନସ୍ଥାନଂ ଗମିଷ୍ୟାମି ହନ୍ତୁଂ ରାମଂ ସଲକ୍ଷ୍ମଣମ୍ । ୨୧ ।

---

ଧନୁର୍ଦ୍ଧାରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ, ସମସ୍ତ ଦିବ୍ୟ ଅସ୍ତ୍ରମାନଙ୍କର ଗୁଣ ଓ ଶକ୍ତି ତାହାର ଆୟତ୍ତାଧୀନ ଏବଂ ସେ ଯୁଦ୍ଧରେ ଇନ୍ଦ୍ରଙ୍କ ସଦୃଶ ପରାକ୍ରମୀ ଅଟେ । ୧୫ । ତାହାର କନିଷ୍ଠ ଭ୍ରାତା ଲକ୍ଷ୍ମଣ ମଧ୍ୟ ତା'ପରି ବଳବାନ୍ । ତାର ସ୍ୱର ଦୁନ୍ଦୁଭିପରି ଗମ୍ଭୀର, ଚକ୍ଷୁ ରକ୍ତବର୍ଣ୍ଣ ଏବଂ ମୁଖମଣ୍ଡଳ ଚନ୍ଦ୍ରସଦୃଶ । ୧୬ । ବାୟୁ ଅଗ୍ନି ସହିତ ମିଳିତ ହେଲାପରି, ଶ୍ରୀମାନ୍ ରାଜଶ୍ରେଷ୍ଠ ରାମ ଲକ୍ଷ୍ମଣ ସହିତ ମିଳିତ ହୋଇ ଜନସ୍ଥାନକୁ ଧ୍ୱଂସ କରିଅଛି । ୧୭ । ମହାତ୍ମା ଦେବଗଣ ସେଠାକୁ ଆସି ନ ଥିଲେ ଓ ଏ ବିଷୟରେ ସନ୍ଦେହ କରିବା ଉଚିତ ନୁହେଁ; କେବଳ ରାମଦ୍ୱାରା ନିକ୍ଷିପ୍ତ ସ୍ୱର୍ଣ୍ଣପୁଙ୍ଖ ଶରମାନେ ପଞ୍ଚମୁଖ ସର୍ପସଦୃଶ ହୋଇ ରାକ୍ଷସମାନଙ୍କୁ ଭକ୍ଷଣ କରି ପକାଇଲେ । ରାକ୍ଷସମାନେ ଭୟବିହ୍ୱଳ ହୋଇ ଯେଉଁ ଯେଉଁ ଆଡ଼କୁ ଯାଉଥିଲେ, ସେହି ସେହିଠାରେ ରାମଙ୍କୁହିଁ ଆଗରେ ଠିଆହୋଇଥିବାର ଦେଖୁଥିଲେ । ହେ ନିଷ୍ପାପ ! ଏହିପରିଭାବରେ ତାହାର ଦ୍ୱାରାହିଁ ତୁମ୍ଭର ସମଗ୍ର ଜନସ୍ଥାନ ବିନଷ୍ଟ ହୋଇଅଛି" । ୧୮-୨୦ । ଅକମ୍ପନର କଥା ଶୁଣି ରାବଣ କହିଲା "ମୁଁ ଲକ୍ଷ୍ମଣସହିତ ରାମଙ୍କୁ ବଧ କରିବା ପାଇଁ ଜନସ୍ଥାନକୁ ଯିବି" । ୨୧ । ରାବଣ ଏହିପରି କହିବାଉତ୍ତାରୁ ଅକମ୍ପନ କହିଲା,

ଅଥୈବମୁକ୍ତେ ବଚନେ ପ୍ରୋବାଚେଦମକମ୍ପନଃ ।
ଶୃଣୁ ରାଜନ୍ ଯଥାବୃତ୍ତଂ ରାମସ୍ୟ ବଲପୌରୁଷମ୍ । ୨୨ ।
ଅସାଧ୍ୟଃ କୁପିତୋ ରାମୋ ବିକ୍ରମେଣ ମହାଯଶାଃ ।
ଆପଗାୟାଃ ସୁପୂର୍ଣାୟା ବେଗଂ ପରିହରେଚ୍ଛରୈଃ । ୨୩ ।
ସତାରଗ୍ରହନକ୍ଷତ୍ରଂ ନଭଶ୍ଚାପ୍ୟବସାଦୟେତ୍ ।
ଅସୌ ରାମସ୍ତୁ ମଜ୍ଜନ୍ତୀଂ ଶ୍ରୀମାନଭ୍ୟୁଦ୍ଧରେନ୍ମହୀମ୍ । ୨୪ ।
ଭିତ୍ତ୍ୱା ବେଲାଂ ସମୁଦ୍ରସ୍ୟ ଲୋକାନାପ୍ଲାବୟେଦ୍‌ବିଭୁଃ ।
ବେଗଂ ବାପି ସମୁଦ୍ରସ୍ୟ ବାୟୁଂ ବା ବିଧମେଚ୍ଛରୈଃ । ୨୫ ।
ସଂହୃତ୍ୟ ବା ପୁନର୍ଲୋକାନ୍ ବିକ୍ରମେଣ ମହାଯଶାଃ ।
ଶକ୍ତଃ ସ ପୁରୁଷବ୍ୟାଘ୍ରଃ ସ୍ରଷ୍ଟୁଂ ପୁନରପି ପ୍ରଜାଃ । ୨୬ ।
ନ ହି ରାମୋ ଦଶଗ୍ରୀବ ଶକ୍ୟୋ ଜେତୁଂ ତ୍ୱୟା ଯୁଧି ।
ରକ୍ଷସାଂ ବାପି ଲୋକେନ ସ୍ୱର୍ଗଃ ପାପଜନୈରିବ । ୨୭ ।
ନ ତଂ ବଧ୍ୟମହଂ ମନ୍ୟେ ସର୍ବୈର୍ଦେବାସୁରୈରପି ।
ଅୟଂ ତସ୍ୟ ବଧୋପାୟସ୍ତଂ ମମୈକମନାଃ ଶୃଣୁ । ୨୮ ।

---

"ହେ ରାଜନ୍ ! ରାମର ଯାଦୃଶ ବଳ, ପୌରୁଷ ଏବଂ ଚରିତ୍ର ତାହା ଶ୍ରବଣ କର । ୨୨ । ମହାଯଶା ରାମ କ୍ରୁଦ୍ଧ ହେଲେ ତାଙ୍କୁ ବିକ୍ରମରେ କେହି ସାଧ୍ୟକରି ପାରିବ ନାହିଁ । ସେ ଶରସମୂହଦ୍ୱାରା ଜଳପୂର୍ଣ୍ଣ ନଦୀର ବେଗକୁ ମଧ୍ୟ ନିରୋଧ କରି ଦେଇପାରିବ ।୨୩। ସେ ତାରା, ଗ୍ରହ ଓ ନକ୍ଷତ୍ର ସହିତ ସମଗ୍ର ନଭୋମଣ୍ଡଳକୁ ଅବସନ୍ନ କରିଦେଇ ପାରେ । ଶ୍ରୀମାନ୍ ରାମ ନିମଜ୍ଜିତ ହୋଇଯାଇଥିବା ପୃଥିବୀକୁ ମଧ୍ୟ ଟେକି ଧରିପାରିବ । ୨୪ । ସେ ସମୁଦ୍ରର ବେଳାକୁ ଭେଦ କରିଦେଇ ସମଗ୍ର ଲୋକକୁ ପ୍ଲାବିତ କରିଦେବାକୁ ମଧ୍ୟ ସମର୍ଥ ଅଟେ । ସେ ଶରସମୂହଦ୍ୱାରା ସମୁଦ୍ର କିମ୍ବା ବାୟୁର ପଥରୋଧ କରିଦେଇପାରେ । ୨୫ । ସେହି ମହାଯଶସ୍ୱୀ ଶ୍ରୀମାନ୍ ପୁରୁଷ-ଶ୍ରେଷ୍ଠ, ସ୍ୱୀୟ ବିକ୍ରମଦ୍ୱାରା ସମଗ୍ର ଲୋକ ସଂହାରକରି ପୁନର୍ବାର ପ୍ରଜା ସୃଷ୍ଟି କରିବାକୁ ସମର୍ଥ ଅଟେ । ୨୬ । ହେ ଦଶାନନ ! ପାପୀ ଲୋକ ଯେପରି ସ୍ୱର୍ଗ ଜୟ-କରିବାକୁ ସମର୍ଥ ହୁଏ ନାହିଁ, ସେହିପରି ରାମକୁ ତୁମେ ବା ସମଗ୍ର ରାକ୍ଷସଜଗତ ଜୟ କରିବାକୁ ସମର୍ଥ ହେବ ନାହିଁ । ୨୭। ମୋର ମନେହୁଏ ସମଗ୍ର ଦେବତା ଏବଂ ଅସୁରମାନେ ମଧ୍ୟ ତାହାର ବଧସାଧନ କରି ପାରିବେ ନାହିଁ । ତେବେ ତାହାର ବଧର ଉପାୟ ମୁଁ କହୁଅଛି; ମୋରଠାରେ କଥା ଏକମନରେ ଶୁଣ ।୨୮। ସୀତା ନାମରେ

ଭାର୍ଯ୍ୟା ତସ୍ୟୋତ୍ତମା ଲୋକେ ସୀତା ନାମ ସୁମଧ୍ୟମା ।
ଶ୍ୟାମା ସମବିଭକ୍ତାଙ୍ଗୀ ସ୍ତ୍ରୀରତ୍ନଂ ରତ୍ନଭୂଷିତା । ୨୯ ।
ନୈବ ଦେବୀ ନ ଗନ୍ଧର୍ବୀ ନାପ୍ସରା ନାପି ଦାନବୀ ।
ତୁଲ୍ୟା ସୀମନ୍ତିନୀ ତସ୍ୟା ମାନୁଷୀଷୁ କୁତୋ ଭବେତ୍ । ୩୦ ।
ତସ୍ୟାପହର ଭାର୍ଯ୍ୟାଂ ତ୍ୱଂ ପ୍ରମଥ୍ୟ ତୁ ମହାବନେ ।
ସ ତସ୍ୟା ରହିତଃ କାମୀ ରାମୋ ହାସ୍ୟତି ଜୀବିତମ୍ । ୩୧ ।
ଅରୋଚୟତ ତଦ୍‌ବାକ୍ୟଂ ରାବଣୋ ରାକ୍ଷସାଧିପଃ ।
ଚିନ୍ତୟିତ୍ୱା ମହାବାହୁରକମ୍ପନମୁବାଚ ହ । ୩୨ ।
ବାଢ଼ଂ କଲ୍ୟଂ ଗମିଷ୍ୟାମି ହ୍ୟେକଃ ସାରଥିନା ସହ ।
ଆନୟିଷ୍ୟାମି ବୈଦେହୀମିମାଂ ହୃଷ୍ଟୋ ମହାପୁରୀମ୍ । ୩୩ ।
ଅଥୈବ ମୁକ୍ତ୍ୱା ପ୍ରୟଯୌ ଖରଯୁକ୍ତେନ ରାବଣଃ ।
ରଥେନାଦିତ୍ୟବର୍ଣ୍ଣେନ ଦିଶଃ ସର୍ବାଃ ପ୍ରକାଶୟନ୍ । ୩୪ ।
ସ ରଥୋ ରାକ୍ଷସେନ୍ଦ୍ରସ୍ୟ ନକ୍ଷତ୍ରପଥଗୋ ମହାନ୍ ।
ସଂଚାର୍ଯ୍ୟମାଣଃ ଶୁଶୁଭେ ଜଲଦେ ଚନ୍ଦ୍ରମା ଇବ । ୩୫ ।
ସ ମାରୀଚାଶ୍ରମଂ ପ୍ରାପ୍ୟ ତାଟକେୟମୁପାଗମତ୍ ।
ମାରୀଚେନାର୍ଚ୍ଚିତୋ ରାଜା ଭକ୍ଷ୍ୟଭୋଜ୍ୟୈରମାନୁଷୈଃ । ୩୬ ।

---

ତାହାର ଏକ ଜଗତଶ୍ରେଷ୍ଠା ପତ୍ନୀ ଅଛି । ସେ ସୁନ୍ଦରୀର ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ସମାନ ଅନୁପାତବିଶିଷ୍ଟ, ସେ ରତ୍ନବିଭୂଷିତା ଏବଂ ସ୍ତ୍ରୀମାନଙ୍କମଧ୍ୟରେ ରତ୍ନସ୍ୱରୂପା ଅଟେ । ୨୯ । ଦେବୀ, ଗନ୍ଧର୍ବୀ, ଅପ୍ସରୀ ବା ପନ୍ନଗୀ କେହି ସେ ସୀମନ୍ତିନୀର ତୁଲ୍ୟ ନୁହନ୍ତି । ସୁତରାଂ ମାନବୀମଧ୍ୟରେ ତାହା ସମାନ ଆଉ କିଏ ହୋଇ ପାରେ ! । ୩୦ । ତୁମେ ସେ ମହାବନକୁ ଯାଇ ପ୍ରତାରଣାପୂର୍ବକ ତାହାର ଭାର୍ଯ୍ୟାକୁ ଅପହରଣ କର । ସେହି କାମୀ ରାମ ଭାର୍ଯ୍ୟାଠାରୁ ବିଚ୍ଛିନ୍ନ ହେଲେ ଆପେ ପ୍ରାଣତ୍ୟାଗ କରିବ" । ୩୧ । ଏହି କଥା ମହାବାହୁ ରାକ୍ଷସରାଜରାବଣର ମନକୁ ପାଇଲା । ସେ ଚିନ୍ତାକରି ଅକମ୍ପନକୁ କହିଲା, "ଆଚ୍ଛା ହଉ, ମୁଁ କାଲିହିଁ କେବଳ ସାରଥି ସହିତ ଏକାକୀ ଯାଇ ଆନନ୍ଦମନରେ ବୈଦେହୀକୁ ଏହି ମହାନଗରୀକୁ ଘେନିଆସିବି" । ୩୩ । ଅନନ୍ତର ରାବଣ ଏହିପରି କହି ଗର୍ଦ୍ଦଭଯୋଜିତ ଆଦିତ୍ୟବର୍ଣ୍ଣ ରଥରେ ବସି ସମଗ୍ର ଦିଗ ଉଦ୍ଭାସିତ କରି ପ୍ରସ୍ଥାନ କଲା । ୩୪ । ରାକ୍ଷସରାଜର ସେହି ମହାରଥ ନକ୍ଷତ୍ରପଥରେ ସବେଗରେ ସଂଚରଣ କରି ମେଘଖଣ୍ଡମଧ୍ୟରେ ଚନ୍ଦ୍ରମାପରି ଶୋଭା ପାଇଲା । ୩୫ । ସେ ଯାଇ ତାଡ଼କାର ପୁତ୍ର ମାରୀଚର ଆଶ୍ରମରେ ଉପସ୍ଥିତ ହେଲା ଏବଂ ମାରୀଚ ତାହାକୁ ଅସାଧାରଣ ଭକ୍ଷ୍ୟ ଭୋଜ୍ୟାଦି ଦ୍ୱାରା ଅଭ୍ୟର୍ଥନା କଲା । ୩୬ ।

ତଂ ସ୍ୱୟଂ ପୂଜୟିତ୍ୱା ତୁ ଆସନେନୋଦକେନ ଚ ।
ଅର୍ଥୋପହିତୟା ବାଚା ମାରୀଚୋ ବାକ୍ୟମବ୍ରବୀତ୍ ।୩୭।
କଚ୍ଚିତ୍ ସୁକୁଶଲଂ ରାଜଁଲ୍ଲୋକାନାଂ ରାକ୍ଷସେଶ୍ୱର ।
ଆଶଙ୍କେ ନାଥ ଜାନେ ତ୍ୱଂ ଯତସ୍ତୂର୍ଣମିହାଗତଃ ।୩୮।
ଏବମୁକ୍ତୋ ମହାତେଜା ମାରୀଚେନ ସ ରାବଣଃ ।
ତତଃ ପଶ୍ଚାଦିଦଂ ବାକ୍ୟମବ୍ରବୀଦ୍ ବାକ୍ୟକୋବିଦଃ ।୩୯।
ଆରକ୍ଷୋ ମେ ହତସ୍ତାତ ରାମେଣାକ୍ଲିଷ୍ଟକର୍ମଣା ।
ଜନସ୍ଥାନମବଧ୍ୟଂ ତତ୍ସର୍ବଂ ଯୁଧି ନିପାତିତମ୍ ।୪୦।
ତସ୍ୟ ମେ କୁରୁ ସାଚିବ୍ୟଂ ତସ୍ୟ ଭାର୍ଯାପହାରଣେ ।
ରାକ୍ଷସେନ୍ଦ୍ରବଚଃ ଶ୍ରୁତ୍ୱା ମାରୀଚୋ ବାକ୍ୟମବ୍ରବୀତ୍ ।୪୧।
ଆଖ୍ୟାତା କେନ ସୀତା ସା ମିତ୍ରରୂପେଣ ଶତ୍ରୁଣା ।
ତ୍ୱୟା ରାକ୍ଷସଶାର୍ଦୂଲ କୋ ନ ନନ୍ଦତି ନିନ୍ଦିତଃ ।୪୨।
ସୀତାମିହାନୟସ୍ୱେତି କୋ ବ୍ରବୀତି ବ୍ରବୀହି ମେ ।
ରକ୍ଷୋଲୋକସ୍ୟ ସର୍ବସ୍ୟ କଃ ଶୃଙ୍ଗଂ ଛେତ୍ତୁମିଚ୍ଛତି ।୪୩।
ପ୍ରୋତ୍ସାହୟତି କଶ୍ଚିତ୍ତ୍ୱାଂ ସ ହି ଶତ୍ରୁରସଂଶୟଃ ।
ଆଶୀବିଷମୁଖାଦ୍ଦଂଷ୍ଟ୍ରାମୁଦ୍ଧର୍ତୁଂ ଚେଚ୍ଛତି ତ୍ୱୟା ।୪୪।

---

ମାରୀଚ ସ୍ୱୟଂ ରାବଣଙ୍କୁ ଆସନ ଏବଂ ଅର୍ଘ୍ୟାଦି ଦ୍ୱାରା ଅର୍ଚ୍ଚନା କରି ଅର୍ଥସଙ୍ଗତ ବାକ୍ୟରେ କହିଲା ।୩୭। "ହେ ରାଜନ୍ ରାକ୍ଷସାଧିପ ! ଜଗତର ସମସ୍ତ ମଙ୍ଗଳ ତ ? ତୁମେ ଏପରି ଶୀଘ୍ର ଆସିଥିବାରୁ ମୋର ସେ ବିଷୟରେ ଆଶଙ୍କା ହେଉଛି; ମୁଁ ଠିକକରି ଜାଣି ପାରୁନାହିଁ" ।୩୮। ମାରୀଚ ଏପରି କହିବାଉତ୍ତାରୁ ମହାତେଜା ବଚନପଟୁ ରାବଣ କହିଲା । "ହେ ତାତ ! ଅକ୍ଲିଷ୍ଟକର୍ମା ରାମ ମୋର ସୀମାରକ୍ଷାକାରୀ ରାକ୍ଷସସମୂହଙ୍କୁ ବିନାଶ କରିଅଛି ଏବଂ ସମସ୍ତ ଅବଧ୍ୟ ଜନସ୍ଥାନ ଯୁଦ୍ଧରେ ଧ୍ୱଂସ କରିଅଛି ।୪୦। ସୁତରାଂ ତାର ଭାର୍ଯ୍ୟାକୁ ଅପହରଣ କରିବାରେ ତୁମେ ମୋର ସହାୟତା କର" । ରାକ୍ଷସରାଜର କଥା ଶୁଣି ମାରୀଚ କହିଲା ।୪୧। "କେଉଁ ମିତ୍ରରୂପୀ ଶତ୍ରୁ ତୁମକୁ ସୀତା କଥା କହିଲା ? ହେ ରାକ୍ଷସଶ୍ରେଷ୍ଠ ! ଏପରି କେଉଁ ନିନ୍ଦିତ ବ୍ୟକ୍ତି ତୁମ ପ୍ରତି ସନ୍ତୁଷ୍ଟ ନୁହେ ?।୪୨।"ସୀତାକୁ ଏଠାକୁ ଆଣ" ବୋଲି କିଏ ତୁମକୁ କହିଛି ମୋତେ କହ । ସମଗ୍ର ରାକ୍ଷସଲୋକର ଶିଙ୍ଗ ଭାଙ୍ଗିଦେବାକୁ କିଏ ଇଚ୍ଛା କରୁଛି ?।୪୩। ତୁମକୁ ଏ ବିଷୟରେ କିଏ ଉତ୍ସାହିତ କରୁଅଛି ? ସେ ନିଶ୍ଚୟ ତୁମର ଶତ୍ରୁ; ଏଥିରେ ସନ୍ଦେହ ନାହିଁ । ସେ ତୁମଦ୍ୱାରା ବିଷାକ୍ତ ସାପମୁହଁରୁ

କର୍ମଣା ତେନ କେନାସି କାପଥଂ ପ୍ରତିପାଦିତଃ ।
ସୁଖସୁପ୍ତସ୍ୟ ତେ ରାଜନ୍ ପ୍ରହୃତଂ କେନ ମୂର୍ଧନି । ୪୫ ।
ବିଶୁଦ୍ଧବଂଶାଭିଜନାଗ୍ରହସ୍ତ-
ସ୍ତେଜୋମଦଃ ସଂସ୍ଥିତଦୋର୍ବିଷାଣଃ ।
ଉଦୀକ୍ଷିତୁଂ ରାବଣ ନେହଯୁକ୍ତଃ
ସ ସଂଯୁଗେ ରାଘବଗନ୍ଧହସ୍ତୀ । ୪୬ ।
ଅସୌ ରଣାନ୍ତଃସ୍ଥିତସନ୍ଧିବାଲୋ
ବିଦଗ୍ଧରକ୍ଷୋମୃଗହା ନୃସିଂହଃ ।
ସୁପ୍ତସ୍ତ୍ୱୟା ବୋଧୟିତୁଂ ନ ଯୁକ୍ତଃ
ଶରାଙ୍ଗପୂର୍ଣୋ ନିଶିତାସିଦଂଷ୍ଟ୍ରଃ । ୪୭।
ଚାପାବହାରେ ଭୁଜବେଗପଙ୍କେ
ଶରୋର୍ମିମାଲେ ସୁମହାହବୌଘେ ।
ନ ରାମପାତାଳମୁଖେଽତିଘୋରେ
ପ୍ରସ୍କନ୍ଦିତୁଂ ରାକ୍ଷସରାଜ ଯୁକ୍ତମ୍ । ୪୮ ।
ପ୍ରସୀଦ ଲଙ୍କେଶ୍ୱର ରାକ୍ଷସେନ୍ଦ୍ର
ଲଙ୍କାଂ ପ୍ରସନ୍ନୋ ଭବ ସାଧୁ ଗଚ୍ଛ ।

---

ଦାନ୍ତ ଉପାଡ଼ିବାକୁ ଇଚ୍ଛାକରୁଛ । ୪୪ । କେଉଁ ବ୍ୟକ୍ତି ଏପରି କର୍ମଦ୍ୱାରା ତୁମକୁ ଅସତ୍‌ପଥରେ ପ୍ରବର୍ତ୍ତିତ କରାଇଅଛି ? ହେ ରାଜନ୍ ! ତୁମେ ସୁଖ ଶାନ୍ତିରେ ଶୋଇଥିବାବେଳେ କିଏ ତୁମ୍ଭର ମସ୍ତକରେ ପ୍ରହାର କରିଅଛି ? ୪୫ । ହେ ରାବଣ ! ବିଶୁଦ୍ଧ ବଂଶ ଯାହାର ଶୁଣ୍ଢାଗ୍ର, ପ୍ରତାପ ଯାହାର ମଦ ଏବଂ ସୁସଜ୍ଜିତ ବାହୁଯୁଗଳ ଯାହାର ଦନ୍ତଦ୍ୱୟ ସେହି ରାମରୂପୀ ମତ୍ତହସ୍ତୀକୁ ଯୁଦ୍ଧରେ ଭେଟିବା ମଧ୍ୟ ଉଚିତ ନୁହେଁ । ୪୬ । ଯୁଦ୍ଧମଧ୍ୟରେ ଅବସ୍ଥାନହିଁ ତାହାର ସନ୍ଧି ଓ କେଶରାଜି, ସୁତୀକ୍ଷ୍ଣ ଖଡ୍‌ଗ ତାହାର ଦନ୍ତପଂକ୍ତି, ସେ ରଣକୁଶଳ ରାକ୍ଷସରୂପ ମୃଗମାନଙ୍କର ନିହନ୍ତା । ସେହି ଶରରୂପ ଅଙ୍ଗବିଶିଷ୍ଟ ରାମରୂପୀ ନିଦ୍ରିତ ସିଂହକୁ ଜାଗରିତ କରିବା ତୁମପକ୍ଷରେ ଉଚିତ ନୁହେଁ । ୪୭ । ହେ ରାକ୍ଷସରାଜ ! ଯେଉଁଠାରେ ଧନୁରୂପ ହିଂସ୍ରଜନ୍ତୁ ବିଦ୍ୟମାନ, ବାହୁବେଗରୂପି ପଙ୍କ ଏବଂ ଶରରୂପ ତରଙ୍ଗମାଳା ଦ୍ୱାରା ଯାହା ସମାକୁଳ ଏବଂ ତୁମୁଳ ଯୁଦ୍ଧରୂପ ଜଳରାଶିରେ ଯାହା ବେଷ୍ଟିତ, ସେହି ଅତି ଭୟଙ୍କର ରାମରୂପୀ ପାତାଳମୁଖରେ ପ୍ରବେଶ କରିବା ତୁମ୍ଭର ଉଚିତ ନୁହେଁ । ୪୮ । ଅତଏବ ହେ ରାକ୍ଷସରାଜ ଲଙ୍କେଶ୍ୱର ! ତୁମେ ପ୍ରସନ୍ନ ହୁଅ ଏବଂ ସୁଖରେ

ତ୍ୱଂ ସ୍ୱେଷୁ ଦାରେଷୁ ରମସ୍ୱ ନିତ୍ୟମ୍
ରାମଃ ସଭାର୍ଯ୍ୟୋ ରମତାଂ ବନେଷୁ । ୪୯ ।
ଏବମୁକ୍ତୋ ଦଶଗ୍ରୀବୋ ମାରୀଚେନ ସ ରାବଣଃ ।
ନ୍ୟବର୍ତ୍ତତ ପୁରୀଂ ଲଙ୍କାଂ ବିବେଶ ଚ ଗୃହୋତ୍ତମମ୍ ।୫୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ରାବଣଖରବୃତ୍ତାନ୍ତୋପଲମ୍ଭୋ
ନାମ ଏକତ୍ରିଂଶଃ ସର୍ଗଃ ।

———

ଲଙ୍କାକୁ ଫେରିଯାଅ । ତୁମେ ନିତ୍ୟ ସ୍ୱୀୟ ପତ୍ନୀମାନଙ୍କ ସହିତ ବିହାର କର ଏବଂ ରାମ ମଧ୍ୟ ବନମଧ୍ୟରେ ଭାର୍ଯ୍ୟା ସହିତ ବିହାର କରୁଥାନ୍ତୁ” । ୪୯ । ମାରୀଚ ଏପରି କହିବାଉତ୍ତାରୁ ଦଶଗ୍ରୀବ ରାବଣ ଲଙ୍କାକୁ ଫେରିଆସିଲେ ଏବଂ ନିଜର ଉତ୍କୃଷ୍ଟ ରାଜପ୍ରାସାଦରେ ପ୍ରବେଶ କଲେ ।

———

# ଦ୍ୱାତ୍ରିଂଶଃ ସର୍ଗଃ

## ଶୂର୍ପଣଖୋଦ୍ୟମଃ

ତତଃ ଶୂର୍ପଣଖା ଦୃଷ୍ଟ୍ୱା ସହସ୍ରାଣି ଚତୁର୍ଦଶ ।
ହତାନ୍ୟେକେନ ରାମେଣ ରକ୍ଷସାଂ ଭୀମକର୍ମଣାମ୍ । ୧ ।
ଦୂଷଣଂ ଚ ଖରଂ ଚୈବ ହତଂ ତ୍ରିଶିରସା ସହ ।
ଦୃଷ୍ଟ୍ୱା ପୁନର୍ମହାନାଦଂ ନନାଦ ଜଲଦୋ ଯଥା । ୨ ।
ସା ଦୃଷ୍ଟ୍ୱା କର୍ମ ରାମସ୍ୟ କୃତମନ୍ୟୈଃ ସୁଦୁଷ୍କରମ୍ ।
ଜଗାମ ପରମୋଦ୍‌ବିଗ୍ନା ଲଙ୍କାଂ ରାବଣପାଲିତାମ୍ । ୩ ।
ସା ଦଦର୍ଶ ବିମାନାଗ୍ରେ ରାବଣଂ ଦୀପ୍ତତେଜସମ୍ ।
ଉପୋପବିଷ୍ଟଂ ସଚିବୈର୍ମରୁଦ୍ଭିରିବ ବାସବମ୍ । ୪ ।
ଆସୀନଂ ସୂର୍ଯସଂକାଶେ କାଞ୍ଚନେ ପରମାସନେ ।
ରୁକ୍ମବେଦୀଗତଂ ପ୍ରାଜ୍ୟଂ ଜ୍ୱଲନ୍ତମିବ ପାବକମ୍ । ୫ ।
ଦେବଗନ୍ଧର୍ବଭୂତାନାମୃଷୀଣାଂ ଚ ମହାତ୍ମନାମ୍ ।
ଅଜେୟଂ ସମରେଶୂରଂ ବ୍ୟାତ୍ତାନନମିବାନ୍ତକମ୍ । ୬ ।

---

## ୩୨ଶ ସର୍ଗ

### (ଶୂର୍ପଣଖାର ପ୍ରରୋଚନା)

ଏକମାତ୍ର ରାମଙ୍କ ଦ୍ୱାରା ଭୀମକର୍ମା ଚତୁର୍ଦ୍ଦଶ ସହସ୍ର ରାକ୍ଷସ ନିହତ ହେବାର ଏବଂ ଖର, ଦୂଷଣ ଓ ତ୍ରିଶିରଙ୍କୁ ମଧ୍ୟ ନିହତ ହେବାର ଦେଖି ଶୂର୍ପଣଖା ମେଘପରି ଘୋର ଗର୍ଜନ କରିବାକୁ ଲାଗିଲା । ୧-୨ । ଅନ୍ୟର ଯାହା ନିତାନ୍ତ ଦୁଃସାଧ୍ୟ, ରାମ ସେହି କାର୍ଯ୍ୟ କରିବାର ଦେଖି. ଶୂର୍ପଣଖା ନିତାନ୍ତ ଉଦ୍‌ବିଗ୍ନ ହୋଇ ରାବଣପାଳିତା ଲଙ୍କା ନଗରୀକୁ ଗମନ .କଲା । ୩ । ସେ ଦେଖିଲା, ଦୀପ୍ତତେଜା ରାବଣ ବିମାନର ଅଗ୍ରଦେଶରେ ବସି ରହିଛି । ମରୁତ୍‌ମାନେ ଯେପରି ଇନ୍ଦ୍ରଙ୍କୁ ବେଢ଼ି ରହିଥାଆନ୍ତି, ସେହିପରି ମନ୍ତ୍ରୀମାନେ ତା'ପାଖରେ ଘେରିଆଡ଼େ ବସିଛନ୍ତି ।୪। ସୂର୍ଯ୍ୟତୁଲ୍ୟ ସ୍ୱର୍ଣ୍ଣନିର୍ମିତ ଉତ୍କୃଷ୍ଟ ଆସନରେ ବସି, ସ୍ୱର୍ଣ୍ଣମୟ ବେଦୀମଧ୍ୟରେ ପ୍ରଚୁର ହବିଦ୍ୱାରା ପ୍ରଜ୍ୱଳିତ ଅଗ୍ନି-ସଦୃଶ ସେ ଦେଖାଯାଉଅଛି । ୫ । ଦେବ, ଗନ୍ଧର୍ବ, ଭୂତ ଓ ମହାତ୍ମା ଋଷିମାନେ କେହି ସେ ବୀରକୁ ଯୁଦ୍ଧରେ ଜୟ କରି ପାରନ୍ତି ନାହିଁ । ସେ ଯମସଦୃଶ ମୁଖ

ଦେବାସୁରବିମର୍ଦ୍ଦେଷୁ ବଜ୍ରାଶନିକୃତବ୍ରଣମ୍ ।
ଐରାବତବିଷାଣାଗ୍ରୈରුଦ୍‌ଘୃଷ୍ଟକିଣବକ୍ଷସମ୍ । ୭ ।
ବିଂଶଦ୍ଭୁଜଂ ଦଶଗ୍ରୀବଂ ଦର୍ଶନୀୟପରିଚ୍ଛଦମ୍ ।
ବିଶାଳବକ୍ଷସଂ ବୀରଂ ରାଜଲକ୍ଷଣଶୋଭିତମ୍ । ୮ ।
ସ୍ନିଗ୍ଧବୈଦୂର୍ଯ୍ୟସଙ୍କାଶଂ ତପ୍ତକାଞ୍ଚନକୁଣ୍ଡଳମ୍ ।
ସୁଭୁଜଂ ଶୁକ୍ଲଦଶନଂ ମହାସ୍ୟଂ ପର୍ବତୋପମମ୍ । ୯ ।
ବିଷ୍ଣୁଚକ୍ରନିପାତୈଶ୍ଚ ଶତଶୋ ଦେବସଂଯୁଗେ ।
ଅନ୍ୟୈଃ ଶସ୍ତ୍ରପ୍ରହାରୈଶ୍ଚ ମହାଯୁଦ୍ଧେଷୁ ତାଡ଼ିତମ୍ । ୧୦ ।
ଆହତାଙ୍ଗଂ ସମସ୍ତୈଶ୍ଚ ଦେବପ୍ରହରଣୈସ୍ତଥା ।
ଅକ୍ଷୋଭ୍ୟାଣାଂ ସମୁଦ୍ରାଣାଂ କ୍ଷୋଭଣଂ କ୍ଷିପ୍ରକାରିଣମ୍ । ୧୧ ।
କ୍ଷେପ୍ତାରଂ ପର୍ବତେନ୍ଦ୍ରାଣାଂ ସୁରାଣାଂ ଚ ପ୍ରମର୍ଦ୍ଦନମ୍ ।
ଉଚ୍ଛେତ୍ତାରଂ ଚ ଧର୍ମାଣାଂ ପରଦାରାଭିମର୍ଶନମ୍ । ୧୨ ।
ସର୍ବଦିବ୍ୟାସ୍ତ୍ରଯୋକ୍ତାରଂ ଯଜ୍ଞବିଘ୍ନକରଂ ସଦା ।
ପୁରୀଂ ଭୋଗବତୀଂ ପ୍ରାପ୍ୟ ପରାଜିତ୍ୟ ଚ ବାସୁକିମ୍ । ୧୩ ।

---

ବ୍ୟାଦାନ କରି ରହିଅଛି । ୬ । ଦେବାସୁର ଯୁଦ୍ଧମାନଙ୍କରେ ତାର ଶରୀରରେ ବଜ୍ରର ଆଘାତ ହୋଇଥିବାରୁ ସେଥିର କ୍ଷତ ଚିହ୍ନମାନ ବିଦ୍ୟମାନ ରହିଅଛି, ଏବଂ ଐରାବତର ଦଶନାଗ୍ର ଆଘାତଚିହ୍ନ ମଧ୍ୟ ତା'ର ବକ୍ଷଃସ୍ଥଳରେ ରହିଅଛି । ୭ । ତା'ର କୋଡ଼ିଏଟି ଭୁଜ ଓ ଦଶଟି ଗ୍ରୀବା ଅଛି । ତାହାର ପରିଚ୍ଛଦ ଉତ୍ତମ ଓ ଦର୍ଶନୀୟ ହୋଇଅଛି, ବକ୍ଷସ୍ଥଳ ବିଶାଳ ଏବଂ ତା'ର ଦେହରେ ରାଜଲକ୍ଷଣ ଶୋଭା ପାଉଛି । । ୮ । ତା'ର କୁଣ୍ଡଳ ତପ୍ତକାଞ୍ଚନରେ ନିର୍ମିତ, ବାହୁ ଅତିସୁନ୍ଦର, ଦନ୍ତପଂକ୍ତି ଶୁକ୍ଳବର୍ଣ୍ଣ, ମୁଖମଣ୍ଡଳ ବିଶାଳ, ଶରୀର ପର୍ବତସଦୃଶ ଏବଂ ତା'ର କାନ୍ତି ସୁଚିକ୍କଣ ବୈଦୂର୍ଯ୍ୟମଣିପରି ଦେଖାଯାଉଛି । ୯ । ଦେବତାମାନଙ୍କ ସହିତ ଯୁଦ୍ଧରେ ବିଷ୍ଣୁଙ୍କର ଚକ୍ରାଘାତ ଏବଂ ଅନ୍ୟ ମହାଯୁଦ୍ଧରେ ଅନ୍ୟାନ୍ୟ ଅସ୍ତ୍ର ପ୍ରୟୋଗଦ୍ୱାରା ସେ ବହୁବାର ଆହତ ହୋଇଥିଲା । ୧୦ । ଏହିପରିଭାବରେ ଦେବତାମାନଙ୍କର ସକଳପ୍ରକାର ଅସ୍ତ୍ରଦ୍ୱାରା ତାହାର ଶରୀର କ୍ଷତବିକ୍ଷତ ହୋଇଥିଲା । ସେ ପ୍ରଶାନ୍ତ ସମୁଦ୍ରମାନଙ୍କୁ ମଧ୍ୟ ସଙ୍ଗେ ସଙ୍ଗେ ବିକ୍ଷୋଭିତ କରିଦେଇ ପାରୁଥିଲା । ୧୧ । ସେ ଶ୍ରେଷ୍ଠ ପର୍ବତମାନଙ୍କୁ ଉଠେଇ ଫୋପାଡ଼ି ଦେଇପାରୁଥିଲା, ଦେବତାମାନଙ୍କୁ ଧ୍ୱଂସ କରିଦେଉଥିଲା, ଧର୍ମର ଉଚ୍ଛେଦସାଧନ କରୁଥିଲା ଏବଂ ପରସ୍ତ୍ରୀମାନଙ୍କର ସତୀତ୍ୱଧର୍ମ ନଷ୍ଟ କରୁଥିଲା । ୧୨ । ସେ ସମସ୍ତପ୍ରକାର ଦିବ୍ୟାସ୍ତ୍ର ପ୍ରୟୋଗ କରିପାରୁଥିଲା ଏବଂ ସର୍ବଦା ଯଜ୍ଞର ବିଘ୍ନସାଧନ କରୁଥିଲା । ସେ ଭୋଗବତୀ ନଗରୀକୁ ଯାଇ ସେଠାରେ

ତକ୍ଷକସ୍ୟ ପ୍ରିୟାଂ ଭାର୍ଯ୍ୟାଂ ପରାଜିତ୍ୟ ଜହାର ଯଃ ।
କୈଳାସପର୍ବତଂ ଗତ୍ୱା ବିଜିତ୍ୟ ନରବାହନମ୍ । ୧୪ ।
ବିମାନଂ ପୁଷ୍ପକଂ ତସ୍ୟ କାମଗଂ ବୈ ଜହାର ଯଃ ।
ବନଂ ଚୈତ୍ରରଥଂ ଦିବ୍ୟଂ ନଳିନୀଂ ନନ୍ଦନଂ ବନମ୍ । ୧୫ ।
ବିନାଶୟତି ଯଃ କ୍ରୋଧାଦ୍ଦେବୋଦ୍ୟାନାନି ବୀର୍ଯ୍ୟବାନ୍ ।
ଚନ୍ଦ୍ରସୂର୍ଯ୍ୟୌ ମହାଭାଗାବୁତ୍ତିଷ୍ଠନ୍ତୌ ପରଂତପୌ । ୧୬ ।
ନିବାରୟତି ବାହୁଭ୍ୟାଂ ଯଃ ଶୈଳଶିଖରୋପମଃ ।
ଦଶବର୍ଷସହସ୍ରାଣି ତପସ୍ତପ୍ତ୍ୱା ମହାବନେ । ୧୭ ।
ପୁରା ସ୍ୱୟମ୍ଭୁବେ ଧୀରଃ ଶିରାଂସ୍ୟୁପଜହାର ଯଃ ।
ଦେବଦାନବଗନ୍ଧର୍ବପିଶାଚପତଗୋରଗୈଃ । ୧୮ ।
ଅଭୟଂ ଯସ୍ୟ ସଂଗ୍ରାମେ ମୃତ୍ୟୁତୋ ମାନୁଷାଦୃତେ ।
ମନ୍ତ୍ରୈରଭିଷ୍ଟୁତଂ ପୁଣ୍ୟମଧ୍ୱରେଷୁ ଦ୍ୱିଜାତିଭିଃ । ୧୯ ।
ହବିର୍ଧାନେଷୁ ଯଃ ସୋମମୁପହନ୍ତି ମହାବଳଃ ।
ଆପ୍ତଯଜ୍ଞହରଂ କ୍ରୂରଂ ବ୍ରହ୍ମଘ୍ନଂ ଦୁଷ୍ଟଚାରିଣମ୍ । ୨୦ ।
କର୍କଶଂ ନିରନୁକ୍ରୋଶଂ ପ୍ରଜାନାମହିତେ ରତମ୍ ।
ରାବଣଂ ସର୍ବଭୂତାନାଂ ସର୍ବଲୋକଭୟାବହମ୍ । ୨୧ ।

---

ନାଗରାଜ ବାସୁକି ଓ ତକ୍ଷକକୁ ପରାଜିତ କରି ତକ୍ଷକର ପ୍ରିୟା ଭାର୍ଯ୍ୟାକୁ ହରଣ କରିଥିଲା । ସେ କୈଳାସ ପର୍ବତକୁ ଯାଇ, ନରବାହନ କୁବେରଙ୍କୁ ଜୟକରି ତାଙ୍କର କାମଗାମୀ ପୁଷ୍ପକବିମାନ ବଳପୂର୍ବକ ହରଣ କରିଥିଲା । ସେହି ବୀର୍ଯ୍ୟବାନ୍ ରାବଣ ଚୈତ୍ରରଥ ନାମକ ଦିବ୍ୟ ବନନଳିନୀ ଓ ନନ୍ଦନବନ ପ୍ରଭୃତି ଦେବୋଦ୍ୟାନମାନଙ୍କୁ କ୍ରୋଧରେ ବିନଷ୍ଟ କରିଅଛି । ପର୍ବତଶୃଙ୍ଗସଦୃଶ ମହାକାୟ ରାବଣ ଉଦୀୟମାନ ମହାଭାଗ ଶତ୍ରୁଦମନକାରୀ ଚନ୍ଦ୍ର ଓ ସୂର୍ଯ୍ୟ ଦୁହିଙ୍କୁ ଦୁଇ ବାହୁଦ୍ୱାରା ନିରୋଧ କରିପାରେ । ପୂର୍ବେ ସେହି ଧୈର୍ଯ୍ୟଶୀଳ ରାବଣ ମହାବନରେ ଦଶସହସ୍ର ବର୍ଷ ତପସ୍ୟା କରି ବ୍ରହ୍ମାଙ୍କୁ ନିଜର ମସ୍ତକଗୁଡ଼ିକ ଉପହାର ଦେଇଥିଲା । ମନୁଷ୍ୟବ୍ୟତୀତ ଦେବ, ଦାନବ, ଗନ୍ଧର୍ବ, ପିଶାଚ, ପତଗ ବା ଉରଗ କାହାରିଠାରୁ ଯୁଦ୍ଧରେ ତାର ମୃତ୍ୟୁଭୟ ନାହିଁ । ଦ୍ୱିଜାତିଗଣ ଯଜ୍ଞରେ ମନ୍ତ୍ରୋଚ୍ଚାରଣପୂର୍ବକ ତା'ର ସ୍ତବ କରି-ଥାଆନ୍ତି । ୧୩-୧୯ । ଏହି ମହାବଳୀ ରାବଣ ହୋମଶାଳାକୁ ଯାଇ ପବିତ୍ର ସୋମ ନଷ୍ଟକରେ ଏବଂ ସମାପ୍ତ ହୋଇଥିବା ଯଜ୍ଞକୁ ବିନଷ୍ଟ କରିଦିଏ । ସେ କ୍ରୂର, ବ୍ରହ୍ମଘାତୀ ଏବଂ ଦୁରାଚାରୀ । ୨୦ । ସେ ନିଷ୍ଠୁରସ୍ୱଭାବ, ନିର୍ଦ୍ଦୟ ଏବଂ ପ୍ରଜାମାନଙ୍କର ଅହିତାଚରଣ କରିଥାଏ । ସେ ସବୁ ପ୍ରାଣୀଙ୍କର ଭୟ ଉତ୍ପାଦନ କରୁଥିବାରୁ ତାହାର

ରାକ୍ଷସୀ ଭ୍ରାତରଂ ଶୂରଂ ସା ଦଦର୍ଶ ମହାବଳମ୍ ।
ତଂ ଦିବ୍ୟବସ୍ତ୍ରାଭରଣଂ ଦିବ୍ୟମାଲ୍ୟୋପଶୋଭିତମ୍ । ୨୨ ।
ଆସନେ ସୂପବିଷ୍ଟଂ ଚ କାଲକାଲମିବୋଦ୍ୟତମ୍ ।
ରାକ୍ଷସେନ୍ଦ୍ରଂ ମହାଭାଗଂ ପୌଲସ୍ତ୍ୟକୁଲନନ୍ଦନମ୍ । ୨୩ ।
ରାବଣଂ ଶତ୍ରୁହନ୍ତାରଂ ମନ୍ତ୍ରିଭିଃ ପରିବାରିତମ୍ ।
ଅଭିଗମ୍ୟାବ୍ରବୀଦ୍ ବାକ୍ୟଂ ରାକ୍ଷସୀ ଭୟବିହ୍ୱଳା । ୨୪ ।
ତମବ୍ରବୀଦ୍ଦୀପ୍ତବିଶାଳଲୋଚନମ୍
ପ୍ରଦର୍ଶୟିତ୍ୱା ଭୟମୋହମୂର୍ଚ୍ଛିତା ।
ସୁଦାରୁଣଂ ବାକ୍ୟମଭୀତଚାରିଣୀ
ମହାତ୍ମନା ଶୂର୍ପଣଖା ବିରୂପିତା । ୨୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ ଅରଣ୍ୟକାଣ୍ଡେ ଶୂର୍ପଣଖୋଦ୍ୟମୋ ନାମ
ଦ୍ୱାତ୍ରିଂଶଃ ସର୍ଗଃ

---

ନାମ 'ରାବଣ' । ୨୧ । ରାକ୍ଷସୀ ଶୂର୍ପଣଖା ଦେଖିଲା ଯେ ମହାବଳ, ମହାଭାଗ, ପୌଲସ୍ତ୍ୟକୁଳନନ୍ଦନ, ଶତ୍ରୁଘାତୀ, ରାକ୍ଷସରାଜ ଭ୍ରାତା ରାବଣ ଦିବ୍ୟବସ୍ତ୍ର, ଦିବ୍ୟ-ଅଳଙ୍କାର ଓ ମାଲ୍ୟବିଭୂଷିତ ହୋଇ ଏବଂ ମନ୍ତ୍ରିଗଣପରିବେଷ୍ଟିତ ହୋଇ ସାକ୍ଷାତ-କାଳର କାଳସ୍ୱରୂପ ଆସନରେ ଉପବିଷ୍ଟ ହୋଇ ରହିଅଛି । ଭୟବିହ୍ୱଳା ରାକ୍ଷସୀ ଶୂର୍ପଣଖା ତାହା ସମୀପକୁ ଯାଇ କହିଲା । ୨୨-୨୪ । ମହାତ୍ମା ଲକ୍ଷ୍ମଣଙ୍କ କର୍ତ୍ତୃକ ବିରୂପିତ ହେବା ଫଳରେ ସେ ରାକ୍ଷସୀ ପୂର୍ବରୁ ନିର୍ଭୀକଭାବରେ ସର୍ବତ୍ର ବିଚରଣ କରୁଥିଲେ ମଧ୍ୟ ବର୍ତ୍ତମାନ ନିତାନ୍ତ ଭୟବିହ୍ୱଳ ଏବଂ ମୋହରେ ସଂଜ୍ଞାହୀନ ହୋଇ-ପଡ଼ିଥିଲା । ସେ ଦୀପ୍ତ-ବିସ୍ତୃତ-ଲୋଚନ-ବିଶିଷ୍ଟ ରାବଣର ନିକଟବର୍ତ୍ତୀ ହୋଇ ନିଜର ଅବସ୍ଥା ତାକୁ ଦେଖାଇ କଠୋର ବାକ୍ୟରେ କହିବାକୁ ଲାଗିଲା । ୨୫ ।

# ତ୍ରୟସ୍ତ୍ରିଂଶଃ ସର୍ଗଃ

## ରାବଣନିନ୍ଦା

ତତଃ ଶୂର୍ପଣଖା ଦୀନା ରାବଣଂ ଲୋକରାବଣମ୍ ।
ଅମାତ୍ୟମଧ୍ୟେ ସଂକ୍ରୁଦ୍ଧା ପରୁଷଂ ବାକ୍ୟମବ୍ରବୀତ୍ ।୧।
ପ୍ରମତ୍ତଃ କାମଭୋଗେଷୁ ସ୍ୱୈରବୃତ୍ତୋ ନିରଙ୍କୁଶଃ ।
ସମୁତ୍ପନ୍ନଂ ଭୟଂ ଘୋରଂ ବୋଦ୍ଧବ୍ୟଂ ନାବବୁଧ୍ୟସେ ।୨।
ସକ୍ତଂ ଗ୍ରାମ୍ୟେଷୁ ଭୋଗେଷୁ କାମବୃତ୍ତଂ ମହୀପତିମ୍ ।
ଲୁବ୍ଧଂ ନ ବହୁମନ୍ୟନ୍ତେ ଶ୍ମଶାନାଗ୍ନିମିବ ପ୍ରଜାଃ ।୩।
ସ୍ୱୟଂ କାର୍ଯ୍ୟାଣି ଯଃ କାଲେ ନାନୁତିଷ୍ଠତି ପାର୍ଥିବଃ ।
ସ ତୁ ବୈ ସହ ରାଜ୍ୟେନ ତୈଶ୍ଚ କାର୍ଯ୍ୟୈର୍ବିନଶ୍ୟତି ।୪।
ଅଯୁକ୍ତଚାରଂ ଦୁର୍ଦର୍ଶଂ ଅସ୍ୱାଧୀନଂ ନରାଧିପମ୍ ।
ବର୍ଜୟନ୍ତି ନରା ଦୂରାନ୍ନଦୀପଙ୍କମିବ ଦ୍ୱିପାଃ ।୫।

---

## ୩୩ଶ ସର୍ଗ

( ଶୂର୍ପଣଖାର ରାବଣ ନିନ୍ଦା )

ଅନନ୍ତର ଶୂର୍ପଣଖା କ୍ରୋଧରେ ଲୋକମାନଙ୍କର ଭୟଉତ୍ପାଦନକାରୀ ରାବଣକୁ ମନ୍ତ୍ରୀମାନଙ୍କ ସମକ୍ଷରେ କଠୋର ବାକ୍ୟ କହିବାକୁ ଲାଗିଲା ।୧। "ତୁ ସ୍ୱେଚ୍ଛାଚାରୀ ହୋଇ ନିରଙ୍କୁଶଭାବରେ କାମଭୋଗରେ ଅତିଶୟ ମତ୍ତହୋଇ ରହିଅଛୁ । ସେଥିପାଇଁ ତୋର ଅବଶ୍ୟଜ୍ଞାତବ୍ୟ ଏହି ଯେ ଘୋର ବିପଦ ଉପସ୍ଥିତ ହୋଇଅଛି ତୁ ତାହା ଜାଣୁ ନାହୁଁ ।୨। ଯେଉଁ ରାଜା ଗ୍ରାମ୍ୟ ଭୋଗ୍ୟରେ ସର୍ବଦା ଆସକ୍ତ ରହେ, ସ୍ୱେଚ୍ଛାଚାରୀ ଏବଂ ଲୋଭୀ ହୁଏ; ପ୍ରଜାମାନେ ଶ୍ମଶାନାଗ୍ନି ସଦୃଶ ସେ ରାଜାକୁ ସମାଦର କରନ୍ତି ନାହିଁ ।୩। ଯେଉଁ ରାଜା ଯଥାସମୟରେ ନିଜେ ନିଜର କାର୍ଯ୍ୟ ଅନୁଷ୍ଠାନ ନ-କରେ ସେ ତାର ରାଜ୍ୟ ଏବଂ ସେହି ସମସ୍ତ କାର୍ଯ୍ୟ ସହିତ ବିନଷ୍ଟ ହୋଇଥାଏ ।୪। ଯେଉଁ ରାଜା ଚର ନିଯୁକ୍ତ ନ କରେ ବା ଲୋକଙ୍କୁ ସହଜରେ ଦେଖାଦିଏ ନାହିଁ ଏବଂ ପରାଧୀନ ହୁଏ, ହସ୍ତୀମାନେ ନଦୀପଙ୍କକୁ ବର୍ଜନ କଲାପରି 'ପ୍ରଜାମାନେ ତାହାକୁ ଦୂରରୁ ପରିହାର କରିଥାନ୍ତି ।୫। ଯେଉଁ ରାଜାମାନେ ପରାଧୀନ ହୋଇ ନିଜର

ଯେ ନ ରକ୍ଷନ୍ତି ବିଷୟମସ୍ୱାଧୀନା ନରାଧିପାଃ ।
ତେ ନ ବୃଦ୍ଧ୍ୟା ପ୍ରକାଶନ୍ତେ ଗିରୟଃ ସାଗରେ ଯଥା ।୬।
ଆତ୍ମବଦ୍ଭିର୍ବିଗୃହ୍ୟ ତ୍ୱଂ ଦେବଗନ୍ଧର୍ବଦାନବୈଃ ।
ଅଯୁକ୍ତଚାରଶ୍ଚପଲଃ କଥଂ ରାଜା ଭବିଷ୍ୟସି ।୭।
ତ୍ୱଂ ତୁ ବାଲସ୍ୱଭାବଶ୍ଚ ବୁଦ୍ଧିହୀନଶ୍ଚ ରାକ୍ଷସ ।
ଜ୍ଞାତବ୍ୟଂ ତୁ ନ ଜାନୀଷେ କଥଂ ରାଜା ଭବିଷ୍ୟସି ।୮।
ଯେଷାଂ ଚାରଶ୍ଚ କୋଶଶ୍ଚ ନୟଶ୍ଚ ଜୟତାଂ ବର ।
ଅସ୍ୱାଧୀନା ନରେନ୍ଦ୍ରାଣାଂ ପ୍ରାକୃତୈସ୍ତେ ଜନୈଃ ସମାଃ ।୯।
ଯସ୍ମାତ୍ ପଶ୍ୟନ୍ତି ଦୂରସ୍ଥାନ୍ ସର୍ବାନର୍ଥାନ୍ନରାଧିପାଃ ।
ଚାରେଣ ତସ୍ମାଦୁଚ୍ୟନ୍ତେ ରାଜାନୋ ଦୀର୍ଘଚକ୍ଷୁଷଃ ।୧୦।
ଅଯୁକ୍ତଚାରଂ ମନ୍ୟେ ତ୍ୱାଂ ପ୍ରାକୃତୈଃ ସଚିବୈର୍ବୃତମ୍ ।
ସ୍ୱଜନଂ ତୁ ଜନସ୍ଥାନଂ ହତଂ ଯୋ ନାବବୁଧ୍ୟସେ ।୧୧।
ଚତୁର୍ଦଶ ସହସ୍ରାଣି ରକ୍ଷସାଂ କ୍ରୂରକର୍ମଣାମ୍ ।
ହତାନ୍ୟେକେନ ରାମେଣ ଖରଶ୍ଚ ସହଦୂଷଣଃ ।୧୨।
ଋଷୀଣାମଭୟଂ ଦତ୍ତଂ କୃତକ୍ଷେମାଶ୍ଚ ଦଣ୍ଡକାଃ ।
ଧର୍ଷିତଂ ଚ ଜନସ୍ଥାନଂ ରାମେଣାକ୍ଲିଷ୍ଟକର୍ମଣା ।୧୩।

---

ରାଜ୍ୟକୁ ରକ୍ଷା ନ କରନ୍ତି, ସମୁଦ୍ରମଧ୍ୟରେ ବୁଡ଼ି ରହିଥିବା ପର୍ବତପରି ସେମାନଙ୍କର ବୃଦ୍ଧି ପ୍ରକାଶିତ ହୁଏ ନାହିଁ ।୬। ତୁ ଚପଳସ୍ୱଭାବ, ଉପଯୁକ୍ତ ଚାର ନିଯୁକ୍ତ କରିନାହୁଁ; ସୁତରାଂ ଶୁଦ୍ଧାତ୍ମା ଦେବ, ଦାନବ ଓ ଗନ୍ଧର୍ବମାନଙ୍କ ସହିତ ଶତ୍ରୁତା କରି ତୁ କିପରି ରାଜା ହୋଇ ରହିବୁ? ।୭। ହେ ରାକ୍ଷସ ! ତୁ ବାଳକସ୍ୱଭାବ ଏବଂ ବୁଦ୍ଧିହୀନ । ଯାହା ତୋର ଜାଣିବା ଉଚିତ ତାହା ତୁ ଜାଣୁ ନାହୁଁ । ସୁତରାଂ ତୁ କିପରି ରାଜା ହୋଇ ରହିବୁ ?।୮। ହେ ବିଜୟୀଶ୍ରେଷ୍ଠ ! ଯେଉଁମାନଙ୍କର ଚାର, କୋଷ ଏବଂ ରାଜନୀତି ନିଜର ଆୟତ୍ତ ନୁହେଁ, ସେପରି ରାଜାମାନେ ସାଧାରଣ ଲୋକଙ୍କ ସହିତ ସମାନ । ।୯। ରାଜାମାନେ ଚାରମାନଙ୍କଦ୍ୱାରା ଦୂରବର୍ତ୍ତୀ ସମସ୍ତ ବିଷୟ ଦେଖିପାରନ୍ତି ବୋଲି ସେମାନଙ୍କୁ ଦୀର୍ଘଚକ୍ଷୁ କୁହାଯାଏ ।୧୦। ତୁ ଯେ ସ୍ୱଜନ ଓ ଜନସ୍ଥାନ ବିନଷ୍ଟ ହୋଇଥିବା କଥା ଏପର୍ଯ୍ୟନ୍ତ ଜାଣି ନାହୁଁ, ସେଥିରୁ ମୋତେ ମନେହୁଏ ତୁ ଉପଯୁକ୍ତ ଚାର ନିଯୁକ୍ତ କରି ନାହୁଁ ଏବଂ ଅତି ସାଧାରଣବୁଦ୍ଧି ମନ୍ତ୍ରୀମାନଙ୍କଦ୍ୱାରା ବେଷ୍ଟିତ-ହୋଇ ରହିଅଛୁ ।୧୧। ଏକମାତ୍ର ରାମଦ୍ୱାରା ଦୂଷଣ ସହିତ ଖର ଏବଂ ଚଉଦ ସହସ୍ର କ୍ରୂରକର୍ମା ରାକ୍ଷସ ନିହତ ହୋଇଅଛନ୍ତି ।୧୨। ଅକ୍ଲିଷ୍ଟକର୍ମା ରାମ ଋଷିମାନଙ୍କୁ ଅଭୟ ଦେଇଅଛି, ଦଣ୍ଡକାରଣ୍ୟକୁ ନିଷ୍କଣ୍ଟକ କରିଅଛି ଏବଂ

ତ୍ୱଂ ତୁ ଲୁବ୍ଧଃ ପ୍ରମତ୍ତଶ୍ଚ ପରାଧୀନଶ୍ଚ ରାବଣ ।
ବିଷୟେ ସ୍ୱେ ସମୁତ୍ପନ୍ନଂ ଭୟଂ ଯୋ ନାବବୁଧ୍ୟସେ । ୧୪ ।
ତୀକ୍ଷ୍ଣମଲ୍ପପ୍ରଦାତାରଂ ପ୍ରମତ୍ତଂ ଗର୍ବିତଂ ଶଠମ୍ ।
ବ୍ୟସନେ ସର୍ବଭୂତାନି ନାଭିଧାବନ୍ତି ପାର୍ଥିବମ୍ । ୧୫ ।
ଅତିମାନିନମଗ୍ରାହ୍ୟମାତ୍ମସମ୍ଭାବିତଂ ନରମ୍ ।
କ୍ରୋଧନଂ ବ୍ୟସନେ ହନ୍ତି ସ୍ୱଜନୋଽପି ମହୀପତିମ୍ । ୧୬ ।
ନାନୁତିଷ୍ଠତି କାର୍ଯ୍ୟାଣି ଭୟେଷୁ ନ ବିଭେତି ଚ ।
କ୍ଷିପ୍ରଂ ରାଜ୍ୟାଚ୍ୟୁତୋ ଦୀନସ୍ତୃଣୈସ୍ତୁଲ୍ୟୋ ଭବେଦିହ । ୧୭ ।
ଶୁଷ୍କୈଃ କାଷ୍ଠୈର୍ଭବେତ୍ କାର୍ଯ୍ୟଂ ଲୋଷ୍ଟୈରପି ଚ ପାଂଶୁଭିଃ ।
ନ ତୁ ସ୍ଥାନାତ୍ ପରିଭ୍ରଷ୍ଟୈଃ କାର୍ଯ୍ୟଂ ସ୍ୟାଦ୍ୱସୁଧାଧିପୈଃ । ୧୮ ।
ଉପଭୁକ୍ତଂ ଯଥା ବାସଃ ସ୍ରଜୋ ବା ମୃଦିତା ଯଥା ।
ଏବଂ ରାଜ୍ୟାତ୍ ପରିଭ୍ରଷ୍ଟଃ ସମର୍ଥୋଽପି ନିରର୍ଥକଃ । ୧୯ ।
ଅପ୍ରମତ୍ତଶ୍ଚ ଯୋ ରାଜା ସର୍ବଜ୍ଞୋ ବିଜିତେନ୍ଦ୍ରିୟଃ ।
କୃତଜ୍ଞୋ ଧର୍ମଶୀଳଶ୍ଚ ସ ରାଜା ତିଷ୍ଠତେ ଚିରମ୍ । ୨୦ ।

---

ଜନସ୍ଥାନକୁ ଧ୍ୱସ୍ତବିଧ୍ୱସ୍ତ କରିଅଛୁ । ୧୩ । କିନ୍ତୁ ହେ ରାବଣ ! ତୁ ଲୋଭର ବଶୀଭୂତ, ପ୍ରମତ୍ତ ଏବଂ ସର୍ବଦା ପରର ଅଧୀନ ହୋଇ ରହିଅଛୁ । ସୁତରାଂ ନିଜ ରାଜ୍ୟରେ ଯେଉଁ ଭୟ ଉପସ୍ଥିତ ହୋଇଅଛି ତାହା ବୁଝୁ ନାହୁଁ । ୧୪। ଯେଉଁ ରାଜା ତୀକ୍ଷ୍ଣସ୍ୱଭାବ, ପ୍ରମତ୍ତ, ଗର୍ବୀ, ଶଠ ଏବଂ ଯେ ଅଳ୍ପ ଦାନକରେ ସେପରି ରାଜାକୁ ବିପଦ ସମୟରେ ପ୍ରାଣୀମାନେ ସାହାଯ୍ୟ କରିବାକୁ ଆସନ୍ତି ନାହିଁ ।୧୫। ଯେଉଁ ରାଜା ଅତି ଅଭିମାନୀ, କ୍ରୋଧନସ୍ୱଭାବ, ଅନ୍ୟକୁ ଗ୍ରାହ୍ୟ କରେ ନାହିଁ ଏବଂ ନିଜକୁ ଖୁବ୍ ବଡ଼ ବୋଲି ମନେକରେ, ସେପରି ରାଜାକୁ ବିପଦ ସମୟରେ ନିଜର ଆତ୍ମୀୟ ଲୋକମାନେ ମଧ୍ୟ ହତ୍ୟା କରିଥାନ୍ତି । ୧୬ । ଯେଉଁ ରାଜା ନିଜେ କାର୍ଯ୍ୟନିର୍ବାହ କରେ ନାହିଁ ଏବଂ ଭୟ ଉପସ୍ଥିତ ହେଲେ ଭୀତ ହୁଏ ନାହିଁ, ସେପରି ରାଜା ଅଚିରାତ୍ ରାଜ୍ୟଚ୍ୟୁତ ହୋଇ ଦୀନ ଏବଂ ତୃଣବତ୍ ଉପେକ୍ଷଣୀୟ ହୋଇଥାଏ । ୧୭ । ଶୁଷ୍କକାଷ୍ଠ, ଲୋଷ୍ଟ୍ର ବା ଧୂଳିଦ୍ୱାରା ମଧ୍ୟ କାର୍ଯ୍ୟ ହୋଇପାରେ; କିନ୍ତୁ ସ୍ଥାନଭ୍ରଷ୍ଟ ରାଜାମାନଙ୍କଦ୍ୱାରା କୌଣସି କାର୍ଯ୍ୟ ହୁଏ ନାହିଁ ।୧୮। ବ୍ୟବହୃତବସ୍ତ୍ର ଏବଂ ମର୍ଦ୍ଦିତମାଲ୍ୟ ସଦୃଶ ରାଜ୍ୟଭ୍ରଷ୍ଟ ରାଜା ସମର୍ଥ ହେଲେ ମଧ୍ୟ ନିରର୍ଥକ ଅଟେ । ୧୯ । ଯେଉଁରାଜା ପ୍ରମାଦରହିତ, ସର୍ବଜ୍ଞ , ଜିତେନ୍ଦ୍ରିୟ, କୃତଜ୍ଞ ଏବଂ ଧର୍ମସ୍ୱଭାବ, ସେ ରାଜପଦରେ

ନୟନାଭ୍ୟାଂ ପ୍ରସୁପ୍ତୋଽପି ଜାଗର୍ତ୍ତି ନୟଚକ୍ଷୁଷା ।
ବ୍ୟକ୍ତକ୍ରୋଧପ୍ରସାଦଶ୍ଚ ସ ରାଜା ପୂଜ୍ୟତେ ଜନୈଃ । ୨୧ ।
ତ୍ୱଂ ତୁ ରାବଣ ଦୁର୍ବୁଦ୍ଧିର୍ଗୁଣୈରେତୈର୍ବିବର୍ଜିତଃ ।
ଯସ୍ୟ ତେଽବିଦିତଶ୍ଚାରୈ ରକ୍ଷସାଂ ସୁମହାନ୍ ବଧଃ । ୨୨ ।

ପରାବମନ୍ତା ବିଷୟେଷୁ ସଂଗତୋ
ନ ଦେଶକାଳପ୍ରବିଭାଗତତ୍ତ୍ୱବିତ୍ ।
ଅଯୁକ୍ତବୁଦ୍ଧିର୍ଗୁଣଦୋଷନିଶ୍ଚୟେ
ବିପନ୍ନରାଜ୍ୟୋ ନ ଚିରାଦ୍‌ବିପତ୍ସ୍ୟସେ । ୨୩ ।
ଇତି ସ୍ୱଦୋଷାନ୍ ପରିକୀର୍ତ୍ତିତାଂସ୍ତୟା
ସମୀକ୍ଷ୍ୟ ବୁଦ୍ଧ୍ୟା କ୍ଷଣଦାଚରେଶ୍ୱରଃ ।
ଧନେନ ଦର୍ପେଣ ବଲେନ ଚାନ୍ୱିତୋ
ବିଚିନ୍ତୟାମାସ ଚିରଂ ସ ରାବଣଃ । ୨୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ରାବଣନିନ୍ଦା
ନାମ ତ୍ରୟସ୍ତ୍ରିଂଶଃ ସର୍ଗଃ

---

ଶରଣ୍ୟ ହୁଏ । ୨୦ । ଯେଉଁ ରାଜା ଆଖିବୁଜି ଶୋଇଥିଲେ ମଧ୍ୟ ନୀତିରୂପ ଚକ୍ଷୁଦ୍ୱାରା ଜାଗ୍ରତ ରହିଥାଏ ଏବଂ ଯାହାର କ୍ରୋଧ ଏବଂ ଅନୁଗ୍ରହ କାର୍ଯ୍ୟଦ୍ୱାରା ବ୍ୟକ୍ତ ହୁଏ, ତାହାକୁହିଁ ଲୋକେ ପୂଜା କରିଥାନ୍ତି । ୨୧ । କିନ୍ତୁ ହେ ରାବଣ ! ତୁ ଦୁର୍ବୁଦ୍ଧି ଏବଂ ଏହି ସମସ୍ତ ଗୁଣବର୍ଜିତ । କାରଣ ରାକ୍ଷସମାନଙ୍କର ଏହି ଯେ ମହାସଂହାର ହୋଇଗଲା ତୁ ତାହା ଗୁପ୍ତଚରମାନଙ୍କଦ୍ୱାରା କିଛି ଜାଣିଲୁ ନାହିଁ । ୨୨ । ତୁ କେବଳ ଅନ୍ୟମାନଙ୍କୁ ଅପମାନ ଦେଉ, ସର୍ବଦା ବିଷୟଭୋଗରେ ଆସକ୍ତ ହୋଇ ରହିଛୁ. ଦେଶକାଳବିଭାଗର ତତ୍ତ୍ୱ ବୁଝୁନାହୁଁ, ଗୁଣଦୋଷ ବିଚାର କରିବାରେ ଉପଯୁକ୍ତ ବୁଦ୍ଧି ପ୍ରୟୋଗ କରୁନାହୁଁ; ସୁତରାଂ ଅଚିରାତ୍ ତୁ ଓ ତୋର ରାଜ୍ୟ ବିପନ୍ନ ହେବ" । ୨୩। ଧନ, ବଳ ଓ ଗର୍ବସମନ୍ୱିତ ରାକ୍ଷସରାଜ ରାବଣ ଶୂର୍ପଣଖାକୁ ଏହିପରି ନିଜ ଦୋଷାବଳୀ କୀର୍ତ୍ତନ କରିବାର ଦେଖି ବହୁକାଳପର୍ଯ୍ୟନ୍ତ ମନେ ମନେ ଚିନ୍ତା କରିବାକୁ ଲାଗିଲା । ୨୪ ।

# ଚତୁସ୍ତ୍ରିଂଶଃ ସର୍ଗଃ

## ସୀତାହରଣୋପଦେଶଃ

ତତଃ ଶୂର୍ପଣଖାଂ କ୍ରୁଦ୍ଧାଂ ବ୍ରୁବନ୍ତୀଂ ପୁରୁଷଂ ବଚଃ ।
ଅମାତ୍ୟମଧ୍ୟେ ସଂକ୍ରୁଦ୍ଧଃ ପରିପପ୍ରଚ୍ଛ ରାବଣଃ । ୧ ।
କଶ୍ଚ ରାମଃ କଥଂବୀର୍ଯ୍ୟଃ କିଂରୂପଃ କିଂପରାକ୍ରମଃ ।
କିମର୍ଥଂ ଦଣ୍ଡକାରଣ୍ୟଂ ପ୍ରବିଷ୍ଟଃ ସ ଦୁରାସଦମ୍ । ୨ ।
ଆୟୁଧଂ କିଂ ଚ ରାମସ୍ୟ ନିହତା ଯେନ ରାକ୍ଷସାଃ ।
ଖରଶ୍ଚ ନିହତଃ ସଂଖ୍ୟେ ଦୂଷଣସ୍ତ୍ରିଶିରାସ୍ତଥା । ୩ ।
ଇତ୍ୟୁକ୍ତା ରାକ୍ଷସେନ୍ଦ୍ରେଣ ରାକ୍ଷସୀ କ୍ରୋଧମୂର୍ଚ୍ଛିତା ।
ତତୋ ରାମଂ ଯଥାତତ୍ତ୍ୱମାଖ୍ୟାତୁମୁପଚକ୍ରମେ । ୪ ।
ଦୀର୍ଘବାହୁର୍ବିଶାଳାକ୍ଷଶ୍ଚୀରକୃଷ୍ଣାଜିନାମ୍ବରଃ ।
କନ୍ଦର୍ପସମରୂପଶ୍ଚ ରାମୋ ଦଶରଥାତ୍ମଜଃ । ୫ ।
ଶକ୍ରଚାପନିଭଂ ଚାପଂ ବିକୃଷ୍ୟ କନକାଙ୍ଗଦମ୍ ।
ଦୀପ୍ତାନ୍ କ୍ଷିପତି ନାରାଚାନ୍ ସର୍ପାନିବ ମହାବିଷାନ୍ । ୬ ।

---

## ୩୪ଶ ସର୍ଗ

### ( ସୀତାହରଣ ଉପଦେଶ )

କ୍ରୁଦ୍ଧା ଶୂର୍ପଣଖା ମନ୍ତ୍ରିସଭାମଧ୍ୟରେ ଏପରି କଟୁକଥା କହିବାରୁ ରାବଣ ଅତିଶୟ କ୍ରୁଦ୍ଧ ହୋଇ ତାହାକୁ ପଚାରିଲା । ୧ । "ରାମ କିଏ ? ତାହାର ବୀର୍ଯ୍ୟ, ରୂପ ଏବଂ ପରାକ୍ରମ କିପରି ? ସେ ଦୁର୍ଗମ ଦଣ୍ଡକାରଣ୍ୟକୁ କି ଉଦ୍ଦେଶ୍ୟରେ ପ୍ରବେଶ କରିଛି ? । ୨ । ରାମର କି ଅସ୍ତ୍ର ଅଛି ଯେ ସେ ସେଥିରେ ସମସ୍ତ ରାକ୍ଷସଙ୍କୁ, ଖରକୁ, ଦୂଷଣକୁ ତଥା ତ୍ରିଶିରାକୁ ବଧ କରିଦେଲା" ।୩। ରାକ୍ଷସରାଜ ରାବଣ ଏହିପରି କହିବାରୁ ରାକ୍ଷସୀ ଶୂର୍ପଣଖା କ୍ରୋଧରେ ହତଜ୍ଞାନ ହୋଇ ରାମଙ୍କ ବିଷୟରେ ଯଥାଯଥଭାବରେ ବର୍ଣ୍ଣନା କରିବାକୁ ଆରମ୍ଭ କଲା । ୪। ସେ କହିଲା "ଦଶରଥଙ୍କ ପୁତ୍ର ରାମ କନ୍ଦର୍ପସଦୃଶ ରୂପବାନ, ଦୀର୍ଘବାହୁ, ବିଶାଳଲୋଚନ, ବଲ୍କଳ ଏବଂ କୃଷ୍ଣାଜିନ ପିନ୍ଧିଅଛି । ୫ । ସେ କନକବଳୟଯୁକ୍ତ ଇନ୍ଦ୍ରଙ୍କ ଧନୁସଦୃଶ ଧନୁ ଆକର୍ଷଣ କରି ତୀବ୍ର ବିଷଧର ସର୍ପସଦୃଶ ପ୍ରଦୀପ୍ତ ଶରରାଜି ନିକ୍ଷେପ କରେ । ୬ । ରାମ ଯୁଦ୍ଧରେ

ନାଦଦାନଂ ଶରାନ୍ ଘୋରାନ୍ନ ମୁଞ୍ଚନ୍ତଂ ଶିଲୀମୁଖାନ୍ ।
ନ କାର୍ମୁକଂ ବିକର୍ଷନ୍ତଂ ରାମଂ ପଶ୍ୟାମି ସଂଯୁଗେ ।୭।
ହନ୍ୟମାନଂ ତୁ ତତ୍ସୈନ୍ୟଂ ପଶ୍ୟାମି ଶରବୃଷ୍ଟିଭିଃ ।
ଇନ୍ଦ୍ରେଣେବୋତ୍ତମଂ ସସ୍ୟମାହତଂ ତ୍ୱଶ୍ମବୃଷ୍ଟିଭିଃ ।୮।
ରକ୍ଷସାଂ ଭୀମରୂପାଣାଂ ସହସ୍ରାଣି ଚତୁର୍ଦ୍ଦଶ ।
ନିହତାନି ଶରୈସ୍ତୀକ୍ଷ୍ଣୈସ୍ତେନୈକେନ ପଦାତିନା ।୯।
ଅର୍ଦ୍ଧାଧିକମୁହୂର୍ତ୍ତେନ ଖରଶ୍ଚ ସହଦୂଷଣଃ ।
ଋଷୀଣାମଭୟଂ ଦତ୍ତଂ କୃତକ୍ଷେମାଶ୍ଚ ଦଣ୍ଡକାଃ ।୧୦।
ଏକା କଥଂଚିନ୍ମୁକ୍ତାହଂ ପରିଭୂୟ ମହାତ୍ମନା ।
ସ୍ତ୍ରୀବଧଂ ଶଙ୍କମାନେନ ରାମେଣ ବିଦିତାତ୍ମନା ।୧୧।
ଭ୍ରାତା ଚାସ୍ୟ ମହାତେଜା ଗୁଣତସ୍ତୁଲ୍ୟବିକ୍ରମଃ ।
ଅନୁରକ୍ତଶ୍ଚ ଭକ୍ତଶ୍ଚ ଲକ୍ଷ୍ମଣୋ ନାମ ବୀର୍ଯ୍ୟବାନ୍ ।୧୨।
ଅମର୍ଷୀ ଦୁର୍ଜୟୋ ଜେତା ବିକ୍ରାନ୍ତୋ ବୁଦ୍ଧିମାନ୍ ବଲୀ ।
ରାମସ୍ୟ ଦକ୍ଷିଣୋ ବାହୁର୍ନିତ୍ୟଂ ପ୍ରାଣୋ ବହିଶ୍ଚରଃ ।୧୩।

---

କେତେବେଳେ ସେ ଭୟଙ୍କର ଶରରାଜି ଗ୍ରହଣ କରି ମୋଚନ ନ କରୁଛି ବା କେତେବେଳେ ଧନୁ ଆକର୍ଷଣ ନ କରୁଛି, ଏପରି ଅବସ୍ଥାରେ ତାକୁ ମୁଁ କେତେବେଳେ ଦେଖିପାରିଲି ନାହିଁ ।୭। ଇନ୍ଦ୍ର ଯେପରି ଶିଳାବୃଷ୍ଟି କରି ଉତ୍କୃଷ୍ଟ ଶସ୍ୟରାଜି ନଷ୍ଟ କରିଦିଏ, ସେହିପରି ତାହାର ଶରବୃଷ୍ଟିଦ୍ୱାରା ସେହି ସୈନ୍ୟମାନଙ୍କୁ ମୁଁ ଅନବରତ ନିହତ ହେବାର ଦେଖିଲି ।୮। ରାମ ଏକାକୀ ପଦାତିକ ହୋଇ ଦେଢ଼ମୁହୂର୍ତ୍ତମଧ୍ୟରେ ତୀକ୍ଷଣ ଶରରାଜିଦ୍ୱାରା ଭୀମରୂପୀ ଚତୁର୍ଦ୍ଦଶ ସହସ୍ର ରାକ୍ଷସଙ୍କୁ ଏବଂ ଖର ତଥା ଦୂଷଣକୁ ନିହତକରି ଋଷିମାନଙ୍କୁ ଅଭୟ ଦାନକଲେ ଏବଂ ସମଗ୍ର ଦଣ୍ଡକାରଣ୍ୟକୁ ନିରାପଦ କରିଦେଲେ ।୯-୧୦। ସେହି ଆତ୍ମତତ୍ତ୍ୱଜ୍ଞ ମହାତ୍ମା ରାମ ସ୍ତ୍ରୀବଧ ଆଶଙ୍କାକରି କେବଳ ମୋତେ ଏହିପରି ଅଙ୍ଗହୀନ କରି କୌଣସିମତେ ପ୍ରାଣରେ ନ ମାରି ଛାଡ଼ିଦେଲେ ।୧୧। ଲକ୍ଷ୍ମଣ ନାମକ ତାଙ୍କର ଭ୍ରାତା ମହାତେଜସ୍ୱୀ ଏବଂ ଗୁଣ ତଥା ବିକ୍ରମରେ ତାହାରିତୁଲ୍ୟ ଅଟେ । ସେ ତାହାପ୍ରତି ଅନୁରକ୍ତ, ଭକ୍ତ ତଥା ଅତିଶୟ ବୁଦ୍ଧିମାନ୍, ବଳବାନ୍, ବିକ୍ରମୀ, ଅଭିମାନୀ, ସମସ୍ତଙ୍କର ବିଜେତା ଏବଂ ଦୁର୍ଜେୟ ଅଟେ । ସେ ରାମର ଦକ୍ଷିଣ ବାହୁସଦୃଶ ଏବଂ ବାହ୍ୟସଞ୍ଚାରୀ ପ୍ରାଣସଦୃଶ ।୧୨-୧୩। ପୁଣି ରାମର ଯେ ଧର୍ମପତ୍ନୀ ଅଛି, ତାର ଚକ୍ଷୁ

ରାମସ୍ୟ ତୁ ବିଶାଲାକ୍ଷୀ ପୂର୍ଣ୍ଣେନ୍ଦୁସଦୃଶାନନା ।
ଧର୍ମପତ୍ନୀ ପ୍ରିୟା ଭର୍ତ୍ତୁର୍ନିତ୍ୟଂ ପ୍ରିୟହିତେ ରତା । ୧୪ ।
ସା ସୁକେଶୀ ସୁନାସୋରୁଃ ସୁରୂପା ଚ ଯଶସ୍ୱିନୀ ।
ଦେବତେବ ବନସ୍ୟାସ୍ୟ ରାଜତେ ଶ୍ରୀରିବାପରା । ୧୫ ।
ତପ୍ତକାଞ୍ଚନବର୍ଣ୍ଣାଭା ରକ୍ତତୁଙ୍ଗନଖୀ ଶୁଭା ।
ସୀତା ନାମ ବରାରୋହା ବୈଦେହୀ ତନୁମଧ୍ୟମା । ୧୬ ।
ନୈବ ଦେବୀ ନ ଗନ୍ଧର୍ବୀ ନ ଯକ୍ଷୀ ନ ଚ କିନ୍ନରୀ ।
ନୈବଂରୂପା ମୟା ନାରୀ ଦୃଷ୍ଟପୂର୍ବା ମହୀତଲେ । ୧୭ ।
ଯସ୍ୟ ସୀତା ଭବେଦ୍ଭାର୍ଯ୍ୟା ଯଂ ଚ ହୃଷ୍ଟା ପରିଷ୍ୱଜେତ୍ ।
ଅତିଜୀବେତ୍ସ ସର୍ବେଷୁ ଲୋକେଷ୍ୱପି ପୁରନ୍ଦରାତ୍ । ୧୮ ।
ସା ସୁଶୀଲା ବପୁଃଶ୍ଲାଘ୍ୟା ରୂପେଣାପ୍ରତିମା ଭୁବି ।
ତବାନୁରୂପା ଭାର୍ଯ୍ୟା ସ୍ୟାତ୍ତ୍ୱଂ ଚ ତସ୍ୟାସ୍ତଥା ପତିଃ । ୧୯ ।

---

ଅତିଶୟ ବିସ୍ତାରିତ ଏବଂ ବଦନ ପୂର୍ଣ୍ଣଚନ୍ଦ୍ରସଦୃଶ । ସେ ସ୍ୱାମୀର ଅତିପ୍ରିୟ ଏବଂ ତାହାର ପ୍ରିୟ ଏବଂ ହିତକାର୍ଯ୍ୟରେ ସର୍ବଦା ତତ୍ପର । ୧୪ । ସେହି ଯଶସ୍ୱିନୀର କେଶ, ନାସିକା, ଉରୁ ଓ ରୂପ ଅତି ସୁନ୍ଦର । ସେ ସେହି ବନର ଅଧିଷ୍ଠାତ୍ରୀ ଦେବତାସ୍ୱରୂପ ଏବଂ ଦ୍ୱିତୀୟ ଲକ୍ଷ୍ମୀସ୍ୱରୂପ ଶୋଭାପାଉଅଛି । ୧୫ । ତା'ର ବର୍ଣ୍ଣର ଜ୍ୟୋତି ତପ୍ତକାଞ୍ଚନସଦୃଶ, ନଖପଂକ୍ତିର ଅଗ୍ରଭାଗ ରକ୍ତବର୍ଣ୍ଣ, କଟି କ୍ଷୀଣ, ନିତମ୍ବ ଅତି ସୁନ୍ଦର । ସେହି ସୁନ୍ଦରୀ ବିଦେହରାଜଦୁହିତାର ନାମ ସୀତା । ୧୬ । କି ଦେବୀ, କି ଗନ୍ଧର୍ବୀ କି କିନ୍ନରୀ ଏବଂ କି ଯକ୍ଷୀ, କୌଣସି ରମଣୀକୁ ମୁଁ ଏ ପୃଥିବୀରେ ତା'ପରି ସୁନ୍ଦରୀ ଦେଖି ନାହିଁ ।୧୭ । ସେହି ସୀତା ଯାହାର ଭାର୍ଯ୍ୟା ହେବ ଏବଂ ସେ ଯାହାକୁ ହର୍ଷଭରେ ଆଲିଙ୍ଗନ କରିବ, ସେ ବ୍ୟକ୍ତି ସମସ୍ତ ପ୍ରାଣୀଙ୍କମଧ୍ୟରେ ଇନ୍ଦ୍ରଙ୍କଠାରୁ ଅଧିକ ବଳ ସୁଖରେ ଜୀବନଯାପନ କରିବ । ୧୮ । ତା'ର ସ୍ୱଭାବ ଅତିସୁନ୍ଦର ଏବଂ ତା'ର ଶରୀର ସମସ୍ତଙ୍କର ପ୍ରଶଂସନୀୟ । ପୃଥିବୀରେ ସେ ରୂପରେ ଅତୁଳନୀୟା । ସେ ତୋରହିଁ ଉପଯୁକ୍ତ ଭାର୍ଯ୍ୟା ହେବ ଏବଂ ତୁଇହିଁ ତା'ର ଉପଯୁକ୍ତ ପତି ହେବୁ ।୧୯। ତା'ର ପୟୋଧରଯୁଗଳ ଉନ୍ନତ,ଜଘନ ବିଶାଳ ଏବଂ

ତାଂ ତୁ ବିସ୍ତୀର୍ଣ୍ଣଜଘନାଂ ପୀନଶ୍ରୋଣୀପୟୋଧରାମ୍ ।
ଭାର୍ଯ୍ୟାର୍ଥେ ଚ ତବାନେତୁମୁଦ୍ୟତାହଂ ବରାନନାମ୍ । ୨୦ ।
ବିରୂପିତାସ୍ମି କ୍ରୂରେଣ ଲକ୍ଷ୍ମଣେନ ମହାଭୁଜ ।
ତାଂ ତୁ ଦୃଷ୍ଟ୍ୱାଦ୍ୟ ବୈଦେହୀଂ ପୂର୍ଣ୍ଣଚନ୍ଦ୍ରନିଭାନନାମ୍ । ୨୧ ।
ମନ୍ମଥସ୍ୟ ଶରାଣାଂ ବୈ ତ୍ୱଂ ବିଧେୟୋ ଭବିଷ୍ୟସି ।
ଯଦି ତସ୍ୟାମଭିପ୍ରାୟୋ ଭାର୍ଯ୍ୟାର୍ଥେ ତବ ଜାୟତେ । ୨୨ ।
ଶୀଘ୍ରମୁଦ୍ଧ୍ରିୟତାଂ ପାଦୋ ଜୟାର୍ଥମିହ ଦକ୍ଷିଣଃ ।
କୁରୁ ପ୍ରିୟଂ ତଥା ତେଷାଂ ରକ୍ଷସାଂ ରାକ୍ଷସେଶ୍ୱର । ୨୩ ।
ବଧାତ୍ତସ୍ୟ ନୃଶଂସସ୍ୟ ରାମସ୍ୟାଶ୍ରମବାସିନଃ ।
ତଂ ଶରୈର୍ନିଶିତୈର୍ହତ୍ୱା ଲକ୍ଷ୍ମଣଂ ଚ ମହାରଥମ୍ । ୨୪ ।
ହତନାଥାଂ ସୁଖଂ ସୀତାଂ ଯଥାବଦୁପଭୋକ୍ଷ୍ୟସେ ।
ରୋଚତେ ଯଦି ତେ ବାକ୍ୟଂ ମମୈତଦ୍ରାକ୍ଷସେଶ୍ୱର । ୨୫ ।
କ୍ରିୟତାଂ ନିର୍ବିଶଙ୍କେନ ବଚନଂ ମମ ରାବଣ ।
ବିଜ୍ଞାୟେହାତ୍ମଶକ୍ତିଂ ଚ ହ୍ରିୟତାମବଲା ବଲାତ୍ । ୨୬ ।
ସୀତା ସର୍ବାନବଦ୍ୟାଙ୍ଗୀ ଭାର୍ଯ୍ୟାର୍ଥେ ରାକ୍ଷସେଶ୍ୱର ।୨୭।

---

ମୁଖମଣ୍ଡଳ ଅତି ଉତ୍କୃଷ୍ଟ । ହେ ମହାଭୁଜ ! ମୁଁ ତାହାକୁ ତୋର ଭାର୍ଯ୍ୟା କରିବା ଉଦ୍ଦେଶ୍ୟରେ ଆଣିବାକୁ ଉଦ୍ୟତ ହେବାରୁ କ୍ରୂର ଲକ୍ଷ୍ମଣ ମୋତେ ଏପରି ବିରୂପ କରିଦେଇଅଛି । ସେହି ପୂର୍ଣ୍ଣଚନ୍ଦ୍ରବଦନା ବୈଦେହୀଙ୍କୁ ଦେଖିବାମାତ୍ରେ ତୁ ନିଶ୍ଚୟ କନ୍ଦର୍ପଶରର ବଶୀଭୂତ ହେବୁ । ଯଦି ତାହାକୁ ପତ୍ନୀରୂପରେ ବରଣ କରିବାକୁ ତୋର ଅଭିପ୍ରାୟ ଥାଏ, ତାହାହେଲେ ଶୀଘ୍ର ଏହି ମୁହୂର୍ତ୍ତରେ ଜୟ କରିବା ନିମନ୍ତେ ଦକ୍ଷିଣ ପାଦ ଉଠାଅ । ହେ ରାକ୍ଷସେଶ୍ୱର ! ସେହି ଆଶ୍ରମବାସୀ ରାମକୁ ବଧକରି ରାକ୍ଷସମାନଙ୍କର ପ୍ରିୟସାଧନ କର । ତୁ ସେହି ରାମକୁ ଏବଂ ମହାରଥୀ ଲକ୍ଷ୍ମଣଙ୍କୁ ତୀକ୍ଷ୍ଣ ବାଣଦ୍ୱାରା ସଂହାର କରି ବିଧବା ସୀତାକୁ ସୁଖରେ ମନଇଚ୍ଛା ଭୋଗ କରିବୁ । ହେ ରାକ୍ଷସରାଜ ରାବଣ ! ମୋର ଏକଥା ଯଦି ତୋର ମନକୁ ପାଉଛି, ତେବେ ନିଃଶଙ୍କଭାବରେ ମୋ'ର କଥା କର । ହେ ରାକ୍ଷସେଶ୍ୱର ! ଏ ବିଷୟରେ ନିଜର ଶକ୍ତି ବୁଝି ସର୍ବାଙ୍ଗସୁନ୍ଦରୀ ଅବଳା ସୀତାକୁ ଭାର୍ଯ୍ୟା କରିବାପାଇଁ ବଳପୂର୍ବକ ଅପହରଣ କର । ୨୦-୨୭ । ରାମ ଅକୁଟିଳଗାମୀ ଶରରାଜିଦ୍ୱାରା ଜନସ୍ଥାନବାସୀ

ନଶମ୍ୟ ରାମେଣ ଶରୈରଜିହ୍ମଗୈ-
ର୍ହତାଞ୍ଜନସ୍ଥାନଗତାନ୍ନିଶାଚରାନ୍ ।
ଖରଂ ଚ ବୁଦ୍ଧ୍ୱା ନିହତଂ ଚ ଦୂଷଣମ୍
ତ୍ୱମଦ୍ୟ କୃତ୍ୟଂ ପ୍ରତିପତ୍ତୁ ମର୍ହସି । ୨୮ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଅରଣ୍ୟକାଣ୍ଡେ ସୀତାହରଣୋପଦେଶୋ ନାମ ଚତୁସ୍ତ୍ରିଂଶଃ ସର୍ଗଃ

---

ସମସ୍ତ ରାକ୍ଷସଙ୍କୁ ନିହତ କରିଅଛି ଏ କଥା ଶୁଣି ଓ ଖର ତଥା ଦୂଷଣ ନିହତ ହୋଇଥିବାର ଜାଣି ତୋର ଏ କ୍ଷେତ୍ରରେ ଯାହା କର୍ତ୍ତବ୍ୟ ତାହା ସ୍ଥିର କର । ୨୮ ।

---

# ପଞ୍ଚତ୍ରିଂଶଃ ସର୍ଗଃ

## ମାରୀଚାଶ୍ରମପୁନର୍ଗମନମ୍

ତତଃ ଶୂର୍ପଣଖାବାକ୍ୟଂ ତଚ୍ଛ୍ରୁତ୍ୱା ରୋମହର୍ଷଣମ୍ ।
ସଚିବାନଭ୍ୟନୁଜ୍ଞାୟ କାର୍ଯ୍ୟଂ ବୁଦ୍ଧ୍ୱା ଜଗାମ ସଃ ।୧।
ତତ୍ କାର୍ଯ୍ୟମନୁଗମ୍ୟାନ୍ତର୍ଯଥାବଦୁପଲଭ୍ୟ ଚ ।
ଦୋଷାଣାଂ ଚ ଗୁଣାନାଂ ଚ ସଂପ୍ରଧାର୍ଯ୍ୟ ବଲାବଲମ୍ ।୨।
ଇତି କର୍ତ୍ତବ୍ୟମିତ୍ୟେବ କୃତ୍ୱା ନିଶ୍ଚୟମାତ୍ମନଃ ।
ସ୍ଥିରବୁଦ୍ଧିସ୍ତତୋ ରମ୍ୟାଂ ଯାନଶାଲାମୁପାଗମତ୍ ।୩।
ଯାନଶାଲାଂ ତତୋ ଗତ୍ୱା ପ୍ରଚ୍ଛନ୍ନୋ ରାକ୍ଷସାଧିପଃ ।
ସୂତଂ ସଂଚୋଦୟାମାସ ରଥଃ ସଂଯୋଜ୍ୟତାମିତି ।୪।
ଏବମୁକ୍ତଃ କ୍ଷଣେନୈବ ସାରଥିର୍ଲଘୁବିକ୍ରମଃ ।
ରଥଂ ସଂଯୋଜୟାମାସ ତସ୍ୟାଭିମତମୁତ୍ତମମ୍ ।୫।
କାଞ୍ଚନଂ ରଥମାସ୍ଥାୟ କାମଗଂ ରତ୍ନଭୂଷିତମ୍ ।
ପିଶାଚବଦନୈର୍ଯୁକ୍ତଂ ଖରୈଃ କନକଭୂଷଣୈଃ ।୬।

---

### ୩୫ଶ ସର୍ଗ

(ରାବଣର ମାରୀଚାଶ୍ରମକୁ ପୁନର୍ଗମନ)

ଅନନ୍ତର ଶୂର୍ପଣଖାର ସେହି ରୋମହର୍ଷଣକାରୀ କଥା ଶୁଣି ରାବଣ ମନେ ମନେ କର୍ତ୍ତବ୍ୟ ସ୍ଥିର କରି ମନ୍ତ୍ରୀମାନଙ୍କୁ ବିଦାୟ ଦେଇ ସେଠାରୁ ପ୍ରସ୍ଥାନ କଲା ।୧। ସେ ମନେ ମନେ ସେହି କାର୍ଯ୍ୟ ସ୍ଥିର କରି, ତାହାର ଗୁରୁତ୍ୱ ଉପଲବ୍ଧି କରି ଏବଂ ତହିଁର ଗୁଣଦୋଷର ବଳାବଳ ଅବଧାରଣ କରି 'ଏହାହିଁ କର୍ତ୍ତବ୍ୟ' ଏ କଥା ନିଜ ମନରେ ସ୍ଥିର କରିବାପରେ ସେଠାରୁ ଯାଇ ରମଣୀୟ ଯାନଶାଳାରେ ଉପସ୍ଥିତ ହେଲା ।୨-୩। ରାକ୍ଷସରାଜ ରାବଣ ପ୍ରଚ୍ଛନ୍ନଭାବରେ ଯାନଶାଳାକୁ ଯାଇ "ରଥ ସଂଯୋଜିତ କର" ବୋଲି ସାରଥିକୁ ଆଦେଶ ଦେଲା ।୪। କ୍ଷିପ୍ରଗତିବିଶିଷ୍ଟ ସାରଥି ଏପରି ଆଦେଶ ପାଇ ମୁହୂର୍ତ୍ତକମଧ୍ୟରେ ତାହାର ଅଭିମତ ଉତ୍କୃଷ୍ଟ ରଥ ଯୋଚିଲା ।୫। ସେହି ରଥ କାମଗାମୀ, ସ୍ୱର୍ଣ୍ଣନିର୍ମିତ ଏବଂ ରତ୍ନବିଭୂଷିତ । ଏଥିରେ ସ୍ୱର୍ଣ୍ଣାଳଙ୍କାର ଭୂଷିତ ପିଶାଚମୁହାଁ ଗଧମାନେ ଯୋଗ୍ୟ ହୋଇଥିଲେ ।୬।

ମେଘପ୍ରତିମନାଦେନ ସ ତେନ ଧନଦାନୁଜଃ ।
ରାକ୍ଷସାଧିପତିଃ ଶ୍ରୀମାନ୍ ଯଯୌ ନଦନଦୀପତିମ୍ ।୭।
ସ ଶ୍ୱେତବାଲବ୍ୟଜନଃ ଶ୍ୱେତଚ୍ଛତ୍ରୋ ଦଶାନନଃ ।
ସ୍ନିଗ୍ଧବୈଦୂର୍ଯ୍ୟସଂକାଶସ୍ତପ୍ତକାଞ୍ଚନକୁଣ୍ଡଳଃ ।୮।
ଦଶାସ୍ୟୋ ବିଂଶତିଭୁଜୋ ଦର୍ଶନୀୟପରିଚ୍ଛଦଃ ।
ତ୍ରିଦଶାରିର୍ମୁନୀନ୍ଦ୍ରଘ୍ନୋ ଦଶଶୀର୍ଷ ଇବାଦ୍ରିରାଟ୍ ।୯।
କାମଗଂ ରଥମାସ୍ଥାୟ ଶୁଶୁଭେ ରାକ୍ଷସେଶ୍ୱରଃ ।
ବିଦ୍ୟୁନ୍ମଣ୍ଡଳବାନ୍ ମେଘଃ ସବଲାକ ଇବାମ୍ବରେ ।୧୦।
ସଶୈଳଂ ସାଗରାନୂପଂ ବୀର୍ଯ୍ୟବାନବଲୋକୟନ୍ ।
ନାନାପୁଷ୍ପଫଳୈର୍ବୃକ୍ଷୈରନୁକୀର୍ଣ୍ଣଂ ସହସ୍ରଶଃ ।୧୧।
ଶୀତମଙ୍ଗଳତୋୟାଭିଃ ପଦ୍ମିନୀଭିଃ ସମନ୍ତତଃ ।
ବିଶାଳୈରାଶ୍ରମପଦୈର୍ବେଦିମଦ୍ଭିରଲଂକୃତମ୍ ।୧୨।
କଦଲ୍ୟଟବିସଂବାଧଂ ନାଳିକେରୋପଶୋଭିତମ୍ ।
ସାଳୈସ୍ତାଳୈସ୍ତମାଳୈଶ୍ଚ ପୁଷ୍ପିତୈସ୍ତରୁଭିର୍ବୃତମ୍ ।୧୩।

---

କୁବେରଙ୍କର କନିଷ୍ଠଭ୍ରାତା ରାକ୍ଷସରାଜ ଶ୍ରୀମାନ୍ ରାବଣ ମେଘପରି ଗର୍ଜୁଥିବା ସେହି ରଥରେ ବସି ନଦନଦୀପତି ସମୁଦ୍ରର ଅଭିମୁଖରେ ଯାତ୍ରା କଲା ।୭। ତାହାର ବ୍ୟଜନ ଓ ଛତ୍ର ଶ୍ୱେତବର୍ଣ୍ଣ, ଦେହକାନ୍ତି ସୁଚିକ୍କଣ ବୈଦୂର୍ଯ୍ୟମଣିସଦୃଶ, କୁଣ୍ଡଳ ତପ୍ତକାଞ୍ଚନନିର୍ମିତ ଏବଂ ତାର ଦଶୋଟି ମୁଖ ଓ କୋଡ଼ିଏଟି ବାହୁ ଓ ତା'ର ପୋଷାକ ପରିଚ୍ଛଦ ଅତି ରମଣୀୟ । ଦେବତାମାନଙ୍କର ଶତ୍ରୁ ଏବଂ ମୁନୀନ୍ଦ୍ରଗଣଙ୍କର ନିହନ୍ତା ସେହି ରାବଣ ସାକ୍ଷାତ୍ ପର୍ବତରାଜସଦୃଶ କାମଗାମୀ ରଥରେ ଆରୋହଣ କରି, ଆକାଶରେ ବିଦ୍ୟୁନ୍ମଣ୍ଡଳ ଏବଂ ସାରସପଂକ୍ତିଯୁକ୍ତ ମେଘସଦୃଶ ଶୋଭାପାଇଲା ।୮-୧୦। ବୀର୍ଯ୍ୟବାନ୍ ରାବଣ ଯିବା ବାଟରେ ପର୍ବତ ପରିବ୍ୟାପ୍ତ ସମୁଦ୍ରତୀରବର୍ତ୍ତୀ ଜଳବହୁଳ ପ୍ରଦେଶମାନ ଅବଲୋକନ କଲା । ବିବିଧ ଫଳପୁଷ୍ପପୂର୍ଣ୍ଣ ସହସ୍ର ସହସ୍ର ବୃକ୍ଷ ଏବଂ ଶୀତଳ ପବିତ୍ର ଜଳପୂର୍ଣ୍ଣ ପୁଷ୍କରିଣୀସମୂହଦ୍ୱାରା ତାହାର ଚତୁର୍ଦ୍ଦିଗ ପରିପୂର୍ଣ୍ଣ ହୋଇଅଛି । ସେଠାରେ ବେଦୀଯୁକ୍ତ ବିଶାଳ ଆଶ୍ରମମାନ ଶୋଭାପାଉଛି । କଦଳୀବନ, ନାରିକେଳ, ଶାଳ, ତାଳ ଓ ତମାଳ ପ୍ରଭୃତି ନାନାଜାତୀୟ ପୁଷ୍ପିତବୃକ୍ଷ ଆଶ୍ରମମାନଙ୍କର ଚାରିପାଖରେ

ଅତ୍ୟନ୍ତନିୟତାହାରୈଃ ଶୋଭିତଂ ପରମର୍ଷିଭିଃ ।
ନାଗୈଃ ସୁପର୍ଣ୍ଣୈର୍ଗନ୍ଧର୍ବୈଃ କିଂନରୈଶ୍ଚ ସହସ୍ରଶଃ । ୧୪ ।
ଆଜୈର୍ବୈଖାନସୈର୍ଧୂମ୍ରୈର୍ବାଲଖିଲ୍ୟୈର୍ମରୀଚିପୈଃ ।
ଜିତକାମୈଶ୍ଚ ସିଦ୍ଧୈଶ୍ଚ ଚାରଣୈରୁପଶୋଭିତମ୍ । ୧୫ ।
ଦିବ୍ୟାଭରଣମାଲ୍ୟାଭିର୍ଦିବ୍ୟରୂପାଭିରାବୃତମ୍ ।
କ୍ରୀଡାରତିବିଧିଜ୍ଞାଭିରପ୍‌ସରୋଭିଃ ସହସ୍ରଶଃ । ୧୬ ।
ସେବିତଂ ଦେବପତ୍ନୀଭିଃ ଶ୍ରୀମତୀଭିରୁପାସିତମ୍ ।
ଦେବଦାନବସଂଘୈଶ୍ଚ ଚରିତଂ ତ୍ୱମୃତାଶିଭିଃ । ୧୭ ।
ହଂସକ୍ରୌଞ୍ଚପ୍ଲବାକୀର୍ଣ୍ଣଂ ସାରସୈଃ ସଂପ୍ରଣାଦିତମ୍ ।
ବୈଡୂର୍ଯ୍ୟପ୍ରସ୍ତରଂ ରମ୍ୟଂ ସ୍ନିଗ୍ଧଂ ସାଗରତେଜସା । ୧୮ ।
ପାଣ୍ଡୁରାଣି ବିଶାଲାନି ଦିବ୍ୟମାଲ୍ୟଯୁତାନି ଚ ।
ତୂର୍ଯ୍ୟଗୀତାଭିଜୁଷ୍ଟାନି ବିମାନାନି ସମନ୍ତତଃ । ୧୯ ।
ତପସା ଜିତଲୋକାନାଂ କାମଗାନ୍ୟଭିସଂପତନ୍ ।
ଗନ୍ଧର୍ବାପ୍‌ସରସଶ୍ଚୈବ ଦଦର୍ଶ ଧନଦାନୁଜଃ । ୨୦ ।

---

ସେବିତ ହେଉଛି । ସଂଯତାହାରୀ ମହର୍ଷିଗଣ, ସହସ୍ର ସହସ୍ର ନାଗ, ସୁପର୍ଣ୍ଣ, ଗନ୍ଧର୍ବ ଓ କିନ୍ନର, ଜିତକାମ ସିଦ୍ଧ ଓ ଚାରଣଗଣ ଏବଂ ଜନ୍ମରହିତ ବୈଖାନସ, ଧୂମ୍ରବର୍ଣ୍ଣ ବାଲଖିଲ୍ୟ ଏବଂ କେବଳ କିରଣାହାରୀ ମହର୍ଷିମାନେ ସେ ସ୍ଥାନର ଶୋଭା ବୃଦ୍ଧି କରୁଅଛନ୍ତି । ୧୧-୧୫ । ଦିବ୍ୟ ଅଳଙ୍କାର, ଦିବ୍ୟମାଲ୍ୟ ଓ ଦିବ୍ୟରୂପଶାଳିନୀ କ୍ରୀଡ଼ାରତିନିପୁଣା ସହସ୍ର ସହସ୍ର ଅପ୍‌ସରା, ଶ୍ରୀସମ୍ପନ୍ନା ଦେବପତ୍ନୀ ଏବଂ ଅମୃତଭୋଜୀ ଦେବଦାନବଗଣ ସେଠାରେ ସର୍ବଦା ବିଚରଣ ଓ ଉପାସନା କରୁଛନ୍ତି । ୧୬-୧୭ । ହଂସ, କ୍ରୌଞ୍ଚ ଓ ଭେକମାନେ ଏହାର ଚାରିଆଡ଼େ ପୂରି ରହିଛନ୍ତି ଏବଂ ସାରସମାନଙ୍କ ରବରେ ଏହା ପ୍ରତିଧ୍ୱନିତ ହେଉଛି । ବୈଡ଼ୂର୍ଯ୍ୟ ସଦୃଶ ଶ୍ୟାମଳବର୍ଣ୍ଣର ପ୍ରସ୍ତର ସେ ସ୍ଥାନକୁ ରମଣୀୟ କରୁଅଛି ଏବଂ ସମୁଦ୍ରତରଙ୍ଗର ହିଲ୍ଲୋଳ ତାହାକୁ ଶୀତଳ ଓ ସ୍ନିଗ୍ଧ କରୁଅଛି । ୧୮ । କୁବେରାନୁଜ ରାବଣ ଚାରିଆଡ଼େ ଦିବ୍ୟ-ମାଲ୍ୟଯୁକ୍ତ, ଗୀତ ବାଦ୍ୟରେ ପ୍ରତିଧ୍ୱନିତ ଶ୍ୱେତବର୍ଣ୍ଣ ବିଶାଳ ବିମାନମାନ ଦେଖିଲା । ଯେଉଁମାନେ ତପୋବଳରେ ବିବିଧ ଲୋକ ଜୟ କରିଛନ୍ତି, ଏହି କାମଗାମୀ ବିମାନମାନଙ୍କରେ ସେହିମାନେ ବସିଛନ୍ତି । ଏହା ବ୍ୟତୀତ ସେ ବହୁ ଗନ୍ଧର୍ବ ଓ

ନିର୍ଯାସରସମୂଲାନାଂ ଚନ୍ଦନାନାଂ ସହସ୍ରଶଃ ।
ବନାନି ପଶ୍ୟନ୍ ସୌମ୍ୟାନି ଘ୍ରାଣତୃପ୍ତିକରାଣି ଚ । ୨୧ ।
ଅଗରୂଣାଂ ଚ ମୁଖ୍ୟାନାଂ ବନାନ୍ୟୁପବନାନି ଚ ।
କକ୍କୋଲାନାଂ ଚ ଜାତ୍ୟାନାଂ ଫଳାନାଂ ଚ ସୁଗନ୍ଧିନାମ୍ । ୨୨ ।
ପୁଷ୍ପାଣି ଚ ତମାଳସ୍ୟ ଗୁଲ୍ମାନି ମରିଚସ୍ୟ ଚ ।
ମୁକ୍ତାନାଂ ଚ ସମୂହାନି ଶୁଷ୍ୟମାଣାନି ତୀରତଃ । ୨୩ ।
ଶଙ୍ଖାନାଂ ପ୍ରସ୍ତରଂ ଚୈବ ପ୍ରବାଳନିଚୟଂ ତଥା ।
କାଞ୍ଚନାନି ଚ ଶୈଳାନି ରାଜତାନି ଚ ସର୍ବଶଃ । ୨୪ ।
ପ୍ରସ୍ରବାଣି ମନୋଜ୍ଞାନି ପ୍ରସନ୍ନାନି ହ୍ରଦାନି ଚ ।
ଧନଧାନ୍ୟୋପପନ୍ନାନି ସ୍ତ୍ରୀରତ୍ନୈରାବୃତାନି ଚ । ୨୫ ।
ହସ୍ତ୍ୟଶ୍ୱରଥଗାଢ଼ାନି ନଗରାଣ୍ୟବଲୋକୟନ୍ ।
ତଂ ସମଂ ସର୍ବତଃ ସ୍ନିଗ୍ଧଂ ମୃଦୁସଂସ୍ପର୍ଶମାରୁତମ୍ । ୨୬ ।
ଅନୂପଂ ସିନ୍ଧୁରାଜସ୍ୟ ଦଦର୍ଶ ତ୍ରିଦିବୋପମମ୍ ।
ତତ୍ରାପଶ୍ୟତ୍ସ ମେଘାଭଂ ନ୍ୟଗ୍ରୋଧମୃଷିଭିର୍ବୃତମ୍ । ୨୭ ।
ସମନ୍ତାଦ୍ ଯସ୍ୟ ତାଃ ଶାଖାଃ ଶତଯୋଜନମାୟତାଃ ।
ଯସ୍ୟ ହସ୍ତିନମାଦାୟ ମହାକାୟଂ ଚ କଚ୍ଛପମ୍ । ୨୮ ।

---

ଅପ୍ସରଙ୍କୁ ମଧ୍ୟ ଦେଖିଲା । ୧୯-୨୦ । ଅନନ୍ତର ସେ ମୂଳରୁ ରସ ନିଗୁଡ଼ୁଥିବା ଘ୍ରାଣତୃପ୍ତିକର ସହସ୍ର ସହସ୍ର ସୁନ୍ଦର ଚନ୍ଦନବନ, ଉତ୍କୃଷ୍ଟ ଅଗୁରୁକାନନ ଓ ସୁଗନ୍ଧଯୁକ୍ତ ଉତ୍କୃଷ୍ଟଜାତୀୟ କଙ୍କୋଳ ବୃକ୍ଷର ବନ, ତମାଳଫୁଲ, ମରିଚର ବୁଦା, ସମୁଦ୍ରକୂଳରେ ଶୁଖୁଥିବା ମୁକ୍ତାବଳି, ପ୍ରସ୍ତର ସ୍ତୂପ ଶଙ୍ଖ ଏବଂ ପୋହଳାଗଦାମାନ, ସୁବର୍ଣ୍ଣ ଓ ରୌପ୍ୟମୟ ପର୍ବତଗଣ, ମନୋହର ଝରଣା, ନିର୍ମଳ ଜଳପୂର୍ଣ୍ଣ ହ୍ରଦ ଏବଂ ଧନଧାନ୍ୟସମ୍ପନ୍ନ, ସ୍ତ୍ରୀରତ୍ନପୂର୍ଣ୍ଣ, ହସ୍ତୀ ଅଶ୍ୱ ଓ ରଥବହୁଳ ନଗରମାନ ଅବଲୋକନ କରି, ସେଠାରୁ ସିନ୍ଧୁରାଜର ଉପକୂଳବର୍ତ୍ତୀ ସ୍ୱର୍ଗତୁଲ୍ୟ ରମଣୀୟ, ମୃଦୁସମୀରଣଯୁକ୍ତ ସମତଳପ୍ରଦେଶରେ ଯାଇ ପହଞ୍ଚିଲା । ସେଠାକୁ ଯାଇ ସେ ଋଷିମାନଙ୍କଦ୍ୱାରା ପରିବୃତ, ମେଘସଦୃଶ ନୀଳବର୍ଣ୍ଣ ଗୋଟିଏ ବିଶାଳ ବଟବୃକ୍ଷ ଦେଖିଲା । ୨୧-୨୭ । ତାର ଶାଖାସମୂହ ଚତୁର୍ଦ୍ଦିଗରେ ଶତଯୋଜନଯାଏ ବିସ୍ତୃତ । ପୂର୍ବେ ମହାବଳୀ ଗରୁଡ଼ ଗୋଟିଏ ହସ୍ତୀ ଏବଂ ଗୋଟିଏ ପ୍ରକାଣ୍ଡକାୟ କଚ୍ଛପ ଖାଇବାକୁ ଧରି ଏହି ବଟବୃକ୍ଷର

ଭକ୍ଷାର୍ଥଂ ଗରୁଡ଼ଃ ଶାଖାମାଜଗାମ ମହାବଲଃ ।
ତସ୍ୟ ତାଂ ସହସା ଶାଖାଂ ଭାରେଣ ପତଗୋତ୍ତମଃ । ୨୯ ।
ସୁପର୍ଣଃ ପର୍ଣବହୁଳାଂ ବଭଞ୍ଜ ଚ ମହାବଲଃ ।
ତତ୍ର ବୈଖାନସା ମାଷା ବାଲଖିଲ୍ୟା ମରୀଚପାଃ । ୩୦ ।
ଆଜା ବଭୂବୁ ଧୂମ୍ରାଶ୍ଚ ସଙ୍ଗତାଃ ପରମର୍ଷୟଃ ।
ତେଷାଂ ଦୟାର୍ଥଂ ଗରୁଡ଼ସ୍ତାଂ ଶାଖାଂ ଶତଯୋଜନାମ୍ । ୩୧ ।
ଭଗ୍ନାମାଦାୟ ବେଗେନ ତୌ ଚୋଭୌ ଗଜକଚ୍ଛପୌ ।
ଏକପାଦେନ ଧର୍ମାତ୍ମା ଭକ୍ଷୟିତ୍ୱା ତଦାମିଷମ୍ । ୩୨ ।
ନିଷାଦବିଷୟଂ ହତ୍ୱା ଶାଖୟା ପତଗୋତ୍ତମଃ ।
ପ୍ରହର୍ଷମତୁଲଂ ଲେଭେ ମୋକ୍ଷୟିତ୍ୱା ମହାମୁନୀନ୍ । ୩୩ ।
ସ ତେନୈବ ପ୍ରହର୍ଷେଣ ଦ୍ୱିଗୁଣୀକୃତବିକ୍ରମଃ ।
ଅମୃତାନୟନାର୍ଥଂ ବୈ ଚକାର ମତିମାନ୍ ମତିମ୍ । ୩୪ ।
ଅୟୋଜାଲାନି ନିର୍ମଥ୍ୟ ଭିତ୍ତ୍ୱା ରତ୍ନମୟଂ ଗୃହମ୍ ।
ମହେନ୍ଦ୍ରଭବନାଦ୍ଗୁପ୍ତମାଜହାରାମୃତଂ ତତଃ । ୩୫ ।
ତଂ ମହର୍ଷିଗଣୈର୍ଜୁଷ୍ଟଂ ସୁପର୍ଣକୃତଲକ୍ଷଣମ୍ ।
ନାମ୍ନା ସୁଭଦ୍ରଂ ନ୍ୟଗ୍ରୋଧଂ ଦଦର୍ଶ ଧନଦାନୁଜଃ । ୩୬ ।

---

ଶାଖାରେ ବସିଥିଲେ । ସେ ପକ୍ଷିରାଜ ନିଜର ଗୁରୁଭାରରେ ଏହାର ବହୁପତ୍ରବିଶିଷ୍ଟ ଶାଖାକୁ ଭାଙ୍ଗି ପକାଇଥିଲେ । ସେହି ବୃକ୍ଷତଳେ ବୈଖାନସ, ମାଷଭୋଜୀ, ମରୀଚପ, ବାଲଖିଲ୍ୟ, ଧୂମ୍ରାକ୍ଷ ପ୍ରଭୃତି ମହର୍ଷିମାନେ ସମବେତ ହୋଇ ରହିଥିଲେ । ଧର୍ମାତ୍ମା ଗରୁଡ଼ ସେମାନଙ୍କ ପ୍ରତି ଦୟାକରି ସେହି ଭାଙ୍ଗିଯାଇଥିବା ଶତଯୋଜନପରିମିତ ଶାଖାକୁ ଏବଂ ସେ ଦୁଇ ଗଜ ଓ କଚ୍ଛପଙ୍କୁ ଧରି ବେଗରେ ଉଡିଗଲେ । ସେହି ପକ୍ଷିରାଜ ଗୋଟିଏ ପାଦରେ ଗଜକଚ୍ଛପଙ୍କର ମାଂସ ଖାଇ ଏବଂ ସେ ଶାଖାକୁ ପକାଇଦେବାଦ୍ୱାରା ନିଷାଦରାଜ୍ୟକୁ ଧ୍ୱଂସ କରି ସେହି ମହାମୁନିମାନଙ୍କୁ ରକ୍ଷା କଲେ ବୋଲି ଅପ୍ରତିମ ଆନନ୍ଦ ଲାଭ କରିଥିଲେ ।୨୮-୩୩। ସେହି ଆନନ୍ଦରେ ତାଙ୍କର ବିକ୍ରମ ଦୁଇଗୁଣ ବଢ଼ିଗଲା ଏବଂ ମତିମାନ ଗରୁଡ଼ ଅମୃତ ଆନୟନ କରିବାପାଇଁ ମନରେ ନିଶ୍ଚୟ କଲେ । ୩୪ । ଅନନ୍ତର ସେ ଲୁହାଜାଲ ଭାଙ୍ଗି ଏବଂ ରତ୍ନଗୃହକୁ ଭେଦକରି ମହେନ୍ଦ୍ରଙ୍କ ଭବନରୁ ଗୁପ୍ତଭାବରେ ରଖାଯାଇଥିବା ଅମୃତ ଆଣିଥିଲେ ।୩୫। କୁବେରଙ୍କର କନିଷ୍ଠ ଭ୍ରାତା ରାବଣ ସେହି ମହର୍ଷିଗଣସେବିତ ଏବଂ ଗରୁଡ଼ଚିହ୍ନିତ ସୁଭଦ୍ର ନାମକ ବଟବୃକ୍ଷକୁ ଦେଖିଲା ।୩୬। ସେ ସେଠାରୁ ନଦୀପତି ସମୁଦ୍ରର ଅପର

ତଂ ତୁ ଗତ୍ୱା ପରଂ ପାରଂ ସମୁଦ୍ରସ୍ୟ ନଦୀପତେଃ ।
ଦଦର୍ଶାଶ୍ରମମେକାନ୍ତେ ରମ୍ୟେ ପୁଣ୍ୟେ ବନାନ୍ତରେ । ୩୭ ।
ତତ୍ର କୃଷ୍ଣାଜିନଧରଂ ଜଟାବଲ୍କଲଧାରଣମ୍ ।
ଦଦର୍ଶ ନିୟତାହାରଂ ମାରୀଚଂ ନାମ ରାକ୍ଷସମ୍ । ୩୮ ।
ରାବଣସ୍ତଂ ସମାଗମ୍ୟ ବିଧିବତ୍ତେନ ରକ୍ଷସା ।
ମାରୀଚେନାର୍ଚ୍ଚିତୋ ରାଜା ସର୍ବକାମୈରମାନୁଷୈଃ । ୩୯ ।
ତଂ ସ୍ୱୟଂ ପୂଜୟିତ୍ୱା ତୁ ଭୋଜନେନୋଦକେନ ଚ ।
ଅର୍ଥୋପହିତୟା ବାଚା ମାରୀଚୋ ବାକ୍ୟମବ୍ରବୀତ୍ । ୪୦ ।
କଚ୍ଚିତ୍ତେ କୁଶଳଂ ରାଜନ୍ ଲଙ୍କାୟାଂ ରାକ୍ଷସେଶ୍ୱର ।
କେନାର୍ଥେନ ପୁନସ୍ତ୍ୱଂ ବୈ ତୂର୍ଣମେବମିହାଗତଃ । ୪୧ ।
ଏବମୁକ୍ତୋ ମହାତେଜା ମାରୀଚେନ ସ ରାବଣଃ ।
ତଂ ତୁ ପଶ୍ଚାଦିଦଂ ବାକ୍ୟମବ୍ରବୀଦ୍ବାକ୍ୟକୋବିଦଃ । ୪୨।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ଅରଣ୍ୟକାଣ୍ଡେ ମାରୀଚାଶ୍ରମପୁନର୍ଗମନମ୍ ନାମ ପଞ୍ଚତ୍ରିଂଶଃ ସର୍ଗଃ ।

---

ପାରକୁ ଗମନ କରି ରମଣୀୟ ଏବଂ ପବିତ୍ର ବନମଧ୍ୟରେ ଏକ ନିର୍ଜନ ଆଶ୍ରମ ଦେଖିଲେ । ୩୭ । ସେହିଠାରେ ସେ କୃଷ୍ଣାଜିନ ଓ ବଲ୍କଳ ପରିଧାନକାରୀ, ଜଟାଧାରୀ ଏବଂ ସଂଯତାହାରୀ ମାରୀଚ ନାମକ ରାକ୍ଷସକୁ ଦେଖିଲେ । ୩୮ । ରାଜା ରାବଣ ମାରୀଚ ସହିତ ମିଳିତହେବାଉତ୍ତାରୁ ସେ ବିହିତ ବିଧାନରେ ବିବିଧ ଅମାନୁଷ ଭୋଜ୍ୟ ବସ୍ତୁଦ୍ୱାରା ତାଙ୍କୁ ସତ୍କାର କଲା । ୩୯ । ଏହିପରି ଭୋଜ୍ୟ ଏବଂ ପାନୀୟ ଦ୍ୱାରା ନିଜେ ଅର୍ଚ୍ଚନା କରି ମାରୀଚ ଅର୍ଥସଂଗତ ବାକ୍ୟରେ ତାହାଙ୍କୁ କହିଲା ।୪୦। "ହେ ରାଜନ୍, ରାକ୍ଷସେଶ୍ୱର ! ଲଙ୍କାରେ ସବୁ କୁଶଳ ତ ? କି ନିମନ୍ତେ ତୁମେ ପୁଣି ଏତେ ଶୀଘ୍ର ଏଠାକୁ ଆସିଲ ?" । ୪୧ । ମାରୀଚ ଏହିପରି କହିବାଉତ୍ତାରୁ ବାକ୍ୟବିଶାରଦ ମହାତେଜା ରାବଣ ତାହାଙ୍କୁ ଏହି କଥା କହିଲା । ୪୨ ।

# ଷଟ୍‌ତ୍ରିଂଶଃ ସର୍ଗଃ

## ସହାୟୈଷଣା

ମାରୀଚ ଶ୍ରୂୟତାଂ ତାତ ବଚନଂ ମମ ଭାଷତଃ ।
ଆର୍ତ୍ତୋଽସ୍ମି ମମ ଚାର୍ତ୍ତସ୍ୟ ଭବାନ୍ ହି ପରମା ଗତିଃ । ୧ ।
ଜାନୀଷେ ତ୍ୱଂ ଜନସ୍ଥାନଂ ଭ୍ରାତା ଯତ୍ର ଖରୋ ମମ ।
ଦୂଷଣଶ୍ଚ ମହାବାହୁଃ ସ୍ୱସା ଶୂର୍ପଣଖା ଚ ମେ । ୨ ।
ତ୍ରିଶିରାଶ୍ଚ ମହାତେଜା ରାକ୍ଷସଃ ପିଶିତାଶନଃ ।
ଅନ୍ୟେ ଚ ବହବଃ ଶୂରା ଲବ୍ଧଲକ୍ଷା ନିଶାଚରାଃ । ୩ ।
ବସନ୍ତି ମନ୍ନିୟୋଗେନ ନିତ୍ୟବାସଂ ଚ ରାକ୍ଷସାଃ ।
ବାଧମାନା ମହାରଣ୍ୟେ ମୁନୀନ୍ ବୈ ଧର୍ମଚାରିଣଃ । ୪ ।
ଚତୁର୍ଦ୍ଦଶ ସହସ୍ରାଣି ରକ୍ଷସାଂ ଭୀମକର୍ମଣାମ୍ ।
ଶୂରାଣାଂ ଲବ୍ଧଲକ୍ଷାଣାଂ ଖରଚିତ୍ତାନୁବର୍ତ୍ତିନାମ୍ । ୫ ।
ତେ ତ୍ୱିଦାନୀଂ ଜନସ୍ଥାନେ ବସମାନା ମହାବଲାଃ ।
ସଙ୍ଗତାଃ ପରମାୟତ୍ତା ରାମେଣ ସହ ସଂଯୁଗେ । ୬ ।

---

## ୩୬ଶ ସର୍ଗ

(ସାହାଯ୍ୟ ପ୍ରାର୍ଥନା)

"ହେ ତାତ ମାରୀଚ ! ମୁଁ କହୁଛି ଶୁଣ, ମୁଁ ବିପନ୍ନ ହୋଇଅଛି । ତୁମେହିଁ ମୋର ଏ ବିପଦରେ ପରମଗତି । ୧ । ତୁମେ ତ ଜାଣ, ଜନସ୍ଥାନରେ ମୋର ଭ୍ରାତା ଖର, ମହାବାହୁ ଦୂଷଣ ଏବଂ ମୋର ଭଉଣୀ ଶୂର୍ପଣଖା ବାସ କରନ୍ତି । ୨ । ମାଂସଭୋଜୀ ମହାତେଜା ରାକ୍ଷସ ତ୍ରିଶିରା ଏବଂ ବହୁସଂଖ୍ୟକ ଲକ୍ଷ୍ୟଭେଦକାରୀ ବୀର ରାକ୍ଷସ ମୋ ନିର୍ଦ୍ଦେଶ ଅନୁସାରେ ସେଠାରେ ବାସକରି ଧର୍ମାଚରଣକାରୀ ମୁନିମାନଙ୍କ ଅନୁଷ୍ଠାନରେ ବାଧା ଦେଇଥାନ୍ତି । ୩-୪ । ସେମାନଙ୍କର ସଂଖ୍ୟା ଚଉଦ ହଜାର । ସେମାନେ ସମସ୍ତ ବୀର, ଭୀମକର୍ମା, ଖରର କଥା ଅନୁସାରେ ଚଳନ୍ତି ଏବଂ ଲକ୍ଷ୍ୟଭେଦ କରିବାରେ ସେମାନେ ଲବ୍ଧପ୍ରତିଷ୍ଠ । ୫ । ସମ୍ପ୍ରତି ଜନସ୍ଥାନବାସୀ ସେହି ମହାବଳୀ [illegible] ଖର ପ୍ରମୁଖ ରାକ୍ଷସମାନେ ନାନା ଅସ୍ତ୍ରଧାରଣ କରି ରାମ ସହିତ ଯୁଦ୍ଧରେ ପ୍ରବୃତ୍ତ ହୋଇଥିଲେ । ରାମ କ୍ରୋଧାବିଷ୍ଟ ହୋଇ ବି ଲେଶମାତ୍ର କଠୋର ବାକ୍ୟ ପ୍ରୟୋଗ ନ କରି ଧନୁରେ ଶରସଂଯୋଗ କଲା । ଏହାପରେ ସେହି ପାଦରକ୍ଷୀ,

ନାନାପ୍ରହରଣୋପେତାଃ ଖରପ୍ରମୁଖରାକ୍ଷସାଃ ।
ତେନ ସଞ୍ଜାତରୋଷେଣ ରାମେଣ ରଣମୂର୍ଦ୍ଧନି । ୭ ।
ଅନୁକ୍ତ୍ୱା ପରୁଷଂ କିଂଚିଚ୍ଛରୈର୍ବ୍ୟାପାରିତଂ ଧନୁଃ ।
ଚତୁର୍ଦ୍ଦଶ ସହସ୍ରାଣି ରକ୍ଷସାମୁଗ୍ରତେଜସାମ୍ । ୮ ।
ନିହତାନି ଶରୈସ୍ତୀକ୍ଷ୍ଣୈର୍ମାନୁଷେଣ ପଦାତିନା ।
ଖରଶ୍ଚ ନିହତଃ ସଂଖ୍ୟେ ଦୂଷଣଶ୍ଚ ନିପାତିତଃ । ୯ ।
ହତସ୍ତ୍ରିଶିରାଶ୍ଚାପି ନିର୍ଭୟା ଦଣ୍ଡକାଃ କୃତାଃ ।
ପିତ୍ରା ନିରସ୍ତଃ କ୍ରୁଦ୍ଧେନ ସଭାର୍ଯ୍ୟଃ କ୍ଷୀଣଜୀବିତଃ । ୧୦ ।
ସ ହନ୍ତା ତସ୍ୟ ସୈନ୍ୟସ୍ୟ ରାମଃ କ୍ଷତ୍ରିୟପାଂସନଃ ।
ଦୁଃଶୀଳଃ କର୍କଶସ୍ତୀକ୍ଷ୍ଣୋ ମୂର୍ଖୋ ଲୁବ୍ଧୋଽଜିତେନ୍ଦ୍ରିୟଃ । ୧୧ ।
ତ୍ୟକ୍ତଧର୍ମୋ ହ୍ୟଧର୍ମାତ୍ମା ଭୂତାନାମହିତେ ରତଃ ।
ଯେନ ବୈରଂ ବିନାରଣ୍ୟେ ସତ୍ତ୍ୱମାଶ୍ରିତ୍ୟ କେବଳମ୍ । ୧୨ ।
କର୍ଣ୍ଣନାସାପହରଣାଦ୍ ଭଗିନୀ ମେ ବିରୂପିତା ।
ତସ୍ୟ ଭାର୍ଯ୍ୟାଂ ଜନସ୍ଥାନାତ୍ସୀତାଂ ସୁରସୁତୋପମାମ୍ । ୧୩ ।
ଆନୟିଷ୍ୟାମି ବିକ୍ରମ୍ୟ ସହାୟସ୍ତତ୍ର ମେ ଭବ ।
ତ୍ୱୟା ହ୍ୟହଂ ସହାୟେନ ପାର୍ଶ୍ୱସ୍ଥେନ ମହାବଳ । ୧୪ ।

---

ମାନବ,ରାମ ତୀକ୍ଷ୍ଣ ଶରଦ୍ୱାରା ଚଉଦ ହଜାର ଉଗ୍ରତେଜା ରାକ୍ଷସଙ୍କୁ ମାରପକାଇଲେ । ସେ ଯୁଦ୍ଧରେ ଖର ଏବଂ ଦୂଷଣ ମଧ୍ୟ ନିହତ ହେଲେ । ୭-୯ । ସେ ତ୍ରିଶିରାକୁ ମଧ୍ୟ ହତ କରିଅଛି ଏବଂ ସମୁଦାୟ ଦଣ୍ଡକାରଣ୍ୟକୁ ନିର୍ଭୟ କରିଅଛି । ତାର ପିତା କ୍ରୁଦ୍ଧ ହୋଇ ସେହି କ୍ଷୀଣଜୀବୀ ରାମକୁ ଭାର୍ଯ୍ୟା ସହିତ ବାହାର କରିଦେଇଅଛି ।୧୦। ସେହି ଦୁଃଶୀଳ, କର୍କଶ, ତୀକ୍ଷ୍ଣ, ମୂର୍ଖ, ଲୁବ୍ଧ, ଅଜିତେନ୍ଦ୍ରିୟ, କ୍ଷତ୍ରିୟାଧମ ରାମ ଏହି ରାକ୍ଷସମାନଙ୍କର ସଂହାରକର୍ତ୍ତା ।୧୧। ସେ ଧର୍ମତ୍ୟାଗକରି ଏବଂ ଅଧର୍ମକୁ ଆଶ୍ରୟ କରି ସର୍ବଦା ପ୍ରାଣୀମାନଙ୍କର ଅହିତରେ ରତ ହୋଇଅଛି । ସେହିହେତୁରୁ ସେ ବିନା ଶତ୍ରୁତାରେ କେବଳ ନିଜ ବଳ ଉପରେ ନିର୍ଭର କରି ମୋର ଭଗିନୀର କର୍ଣ୍ଣ ନାସାଚ୍ଛେଦନପୂର୍ବକ ତାହାକୁ ବିରୂପ କରିଦେଇଅଛି । ଏବେ ମୁଁ ନିଜର ବିକ୍ରମରେ ଜନସ୍ଥାନରୁ ତାହାର ଭାର୍ଯ୍ୟା ଦେବକନ୍ୟାସଦୃଶୀ ସୀତାକୁ ଆନୟନ କରିବି । ଏ ବିଷୟରେ ତୁମେ ମୋର ସହାୟ ହୁଅ । ହେ ମହାବଳ ! ତୁମେ ଏବଂ ମୋର ଭାଇମାନେ ମୋର ସହାୟ ରୂପେ ପାଖରେ ରହିଥିଲେ ମୁଁ ଯୁଦ୍ଧରେ ସମଗ୍ର ଦେବତାଙ୍କୁ

ଭ୍ରାତୃଭିଶ୍ଚ ସୁରାନ୍ ଯୁଦ୍ଧେ ସମଗ୍ରାନ୍ନାଭିଚିନ୍ତୟେ ।
ତସ୍ମାଦ୍ଧ୍ୟୋ ଭବ ତ୍ୱଂ ମେ ସମର୍ଥୋ ହ୍ୟସି ରାକ୍ଷସ । ୧୫ ।
ବୀର୍ଯ୍ୟେ ଯୁଦ୍ଧେ ଚ ଦର୍ପେ ଚ ନ ହ୍ୟସ୍ତି ସଦୃଶସ୍ତବ ।
ଉପାୟଜ୍ଞୋ ମହାଶ୍ଚୂରଃ ମହାମାୟାବିଶାରଦଃ । ୧୬ ।
ଏତଦର୍ଥମହଂ ପ୍ରାପ୍ତସ୍ତ୍ୱତ୍ସମୀପଂ ନିଶାଚର ।
ଶୃଣୁ ତତ୍ କର୍ମ ସାହାଯ୍ୟେ ଯତ୍ କାର୍ଯ୍ୟଂ ବଚନାନ୍ମମ । ୧୭ ।
ସୌବର୍ଣ୍ଣସ୍ତ୍ୱଂ ମୃଗୋ ଭୂତ୍ୱା ଚିତ୍ରୋ ରଜତବିନ୍ଦୁଭିଃ ।
ଆଶ୍ରମେ ତସ୍ୟ ରାମସ୍ୟ ସୀତାୟାଃ ପ୍ରମୁଖେ ଚର । ୧୮ ।
ତ୍ୱାଂ ତୁ ନିଃସଂଶୟଂ ସୀତା ଦୃଷ୍ଟ୍ୱା ତୁ ମୃଗରୂପିଣମ୍ ।
ଗୃହ୍ୟତାମିତି ଭର୍ତ୍ତାରଂ ଲକ୍ଷ୍ମଣଂ ଚାଭିଧାସ୍ୟତି । ୧୯ ।
ତତସ୍ତୟୋରପାୟେ ତୁ ଶୂନ୍ୟେ ସୀତାଂ ଯଥାସୁଖମ ।
ନିରବାଧୋ ହରିଷ୍ୟାମି ରାହୁଶ୍ଚନ୍ଦ୍ରପ୍ରଭାମିବ । ୨୦ ।
ତତଃ ପଶ୍ଚାତ୍ସୁଖଂ ରାମେ ଭାର୍ଯ୍ୟାହରଣକର୍ଷିତେ ।
ବିସ୍ରବ୍ଧଃ ପ୍ରହରିଷ୍ୟାମି କୃତାର୍ଥେନାନ୍ତରାତ୍ମନା । ୨୧ ।
ତସ୍ୟ ରାମକଥାଂ ଶ୍ରୁତ୍ୱା ମାରୀଚସ୍ୟ ମହାତ୍ମନଃ ।
ଶୁଷ୍କଂ ସମଭବଦ୍‌ବକ୍ତ୍ରଂ ପରିତ୍ରସ୍ତୋ ବଭୂବ ହ । ୨୨ ।

---

ମଧ୍ୟ ଖାତିର କରେ ନାହିଁ । ସୁତରାଂ ହେ ରାକ୍ଷସ ! ତୁମେ ମୋର ସହାୟ ହୁଅ । ତୁମେ ସେଥିପାଇଁ ସର୍ବଥା ସମର୍ଥ ଅଛ । ୧୨-୧୫ । ବଳରେ, ଦର୍ପରେ ଏବଂ ଯୁଦ୍ଧରେ ତୁମ୍ଭର ସମକକ୍ଷ ଆଉ କେହି ନାହିଁ । ତୁମେ ମହାବୀର, ଉପାୟଜ୍ଞ ଏବଂ ମାୟାରେ ଅତିଶୟ ନିପୁଣ । ୧୬ । ହେ ନିଶାଚର ! ଏହିହେତୁରୁ ମୁଁ ତୁମ୍ଭ ପାଖକୁ ଆସିଅଛି । ମୋର ସାହାଯ୍ୟ ନିମନ୍ତେ ଯାହା କରିବାକୁ ହେବ ତାହା କହୁଛି ଶୁଣ । ୧୭ । ତୁମେ ରୌପ୍ୟବିନ୍ଦୁଚିହ୍ନିତ ଏକ ସ୍ୱର୍ଣ୍ଣମୃଗ ହୋଇ ରାମର ଆଶ୍ରମକୁ ଯାଇ ସୀତା ସମ୍ମୁଖରେ ବିଚରଣ କର । ୧୮ । ସୀତା ମୃଗରୂପୀ ତୁମକୁ ଦେଖି ନିଶ୍ଚୟ ତାର ସ୍ୱାମୀ ଏବଂ ଲକ୍ଷ୍ମଣକୁ କହିବ, "ଏହାକୁ ଧରିଆଣ" । ୧୯ । ତଦନନ୍ତର ସେ ଦୁହେଁ ଚାଲିଗଲେ ମୁଁ ଆଶ୍ରମକୁ ଶୂନ୍ୟ ଦେଖି ଯଥାସୁଖରେ ଓ ନିର୍ବିଘ୍ନରେ ରାହୁ ଚନ୍ଦ୍ର-ପ୍ରଭାକୁ ଗ୍ରାସକଲା ପରି ସୀତାକୁ ହରଣ କରି ଆଣିବି । ୨୦ । ଅନନ୍ତର ରାମ ଭାର୍ଯ୍ୟା-ହରଣଶୋକରେ କ୍ଷୀଣ ହୋଇଗଲାଉତ୍ତାରୁ ମୁଁ ସଫଳମନୋରଥ ହୋଇ ପୂର୍ଣ୍ଣ ଆତ୍ମପ୍ରତ୍ୟୟ ସହକାରେ ତାହାକୁ ମନସୁଖରେ ପ୍ରହାର କରିବି" । ୨୧ । ରାବଣଠାରୁ ରାମଙ୍କ କଥା ଶୁଣି ମହାତ୍ମା ମାରୀଚର ମୁଖ ଶୁଷ୍କହୋଇଗଲା ଏବଂ ସେ ସାତିଶୟ ତ୍ରସ୍ତହୋଇ

ତପ୍ତୌ ପଣ୍ଡିତହ୍ୟାଷ୍ଟୌ ନେତ୍ରୈରନିମିଷୈରିବ ।
ମୃତଭୂତ ଇବାର୍ତ୍ତସ୍ତୁ ରାବଣଂ ସମୁଦୈକ୍ଷତ । ୨୩ ।
ସ ରାବଣଂ ତ୍ରସ୍ତବିଷଣ୍ଣଚେତା
ମହାବନେ ରାମପରାକ୍ରମଜ୍ଞଃ ।
କୃତାଞ୍ଜଳିସ୍ତତ୍ତ୍ୱମୁବାଚ ବାକ୍ୟମ୍
ହିତଂ ଚ ତସ୍ମୈ ହିତମାତ୍ମନଶ୍ଚ । ୨୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ସହାୟୈଷଣା
ନାମ ଷଟ୍‌ତ୍ରିଂଶଃ ସର୍ଗଃ

---

ପଡ଼ିଲା । ୨୨ । ସେ ତାହାର ଶୁଷ୍କ ଓଷ୍ଠଦୁଇଟି ଲେହନ କରି କରି ଆର୍ତ୍ତଭାବରେ ମୃତବତ୍ ନିର୍ନିମେଷଲୋଚନରେ ରାବଣ ଆଡ଼କୁ ଚାହିଁ ରହିଲା । ୨୩ । ସେ ପୂର୍ବେ ମହାବନରେ ରାମଙ୍କର ପରାକ୍ରମ ଜାଣିଥିଲା । ସୁତରାଂ ତ୍ରସ୍ତ ଏବଂ ବିଷଣ୍ଣମନା ହୋଇ କୃତାଞ୍ଜଳିପୁଟରେ ରାବଣକୁ ନିଜର ଓ ତାର ହିତଜନକ ତତ୍ତ୍ୱ କଥା କହିଲା । ୨୪ ।

# ସପ୍ତତ୍ରିଂଶଃ ସର୍ଗଃ

## ଅପ୍ରିୟପଥ୍ୟବଚନମ୍

ତଚ୍ଛ୍ରୁତ୍ୱା ରାକ୍ଷସେନ୍ଦ୍ରସ୍ୟ ବାକ୍ୟଂ ବାକ୍ୟବିଶାରଦଃ ।
ପ୍ରତ୍ୟୁବାଚ ମହାପ୍ରାଜ୍ଞୋ ମାରୀଚୋ ରାକ୍ଷସେଶ୍ୱରମ୍ । ୧।
ସୁଲଭାଃ ପୁରୁଷା ରାଜନ୍ ସତତଂ ପ୍ରିୟବାଦିନଃ ।
ଅପ୍ରିୟସ୍ୟ ଚ ପଥ୍ୟସ୍ୟ ବକ୍ତା ଶ୍ରୋତା ଚ ଦୁର୍ଲଭଃ । ୨ ।
ନ ନୂନଂ ବୁଧ୍ୟସେ ରାମଂ ମହାବୀର୍ଯ୍ୟଂ ଗୁଣୋନ୍ନତମ୍ ।
ଅଯୁକ୍ତଚାରଶ୍ଚପଲୋ ମହେନ୍ଦ୍ର ବରୁଣୋପମମ୍ । ୩ ।
ଅପି ସ୍ୱସ୍ତି ଭବେତ୍ତାତ ସର୍ବେଷାଂ ଭୁବି ରକ୍ଷସାମ୍ ।
ଅପି ରାମୋ ନ ସଂକ୍ରୁଦ୍ଧଃ କୁର୍ଯ୍ୟାଲ୍ଲୋକମରାକ୍ଷସମ୍ । ୪ ।
ଅପି ତେ ଜୀବିତାନ୍ତାୟ ନୋତ୍ପନ୍ନା ଜନକାତ୍ମଜା ।
ଅପି ସୀତା ନିମିତ୍ତଂ ଚ ନ ଭବେଦ୍ ବ୍ୟସନଂ ମହତ୍ । ୫ ।
ଅପି ତ୍ୱାମୀଶ୍ୱରଂ ପ୍ରାପ୍ୟ କାମବୃତ୍ତଂ ନିରଙ୍କୁଶମ୍ ।
ନ ବିନଶ୍ୟେତ୍ପୁରୀ ଲଙ୍କା ତ୍ୱୟା ସହ ସରାକ୍ଷସା ।୬।

---

## ୩୭ଶ ସର୍ଗ

### (ମାରୀଚର ଅପ୍ରିୟ ଏବଂ ହିତବଚନ)

ବାକ୍ୟନିପୁଣ ମହାପ୍ରାଜ୍ଞ ମାରୀଚ ରାକ୍ଷସରାଜ ରାବଣର କଥା ଶୁଣି ତାହାକୁ କହିଲା । ୧ । "ହେ ରାଜନ୍ ! ପ୍ରିୟବାଦୀ ବ୍ୟକ୍ତି ସର୍ବଦା ସୁଲଭ, କିନ୍ତୁ ଅପ୍ରିୟ ଏବଂ ହିତବାକ୍ୟର ବକ୍ତା ଏବଂ ଶ୍ରୋତା ଉଭୟହିଁ ଦୁର୍ଲଭ ।୨। ତୁ ଚପଳସ୍ୱଭାବ ଏବଂ ଉପଯୁକ୍ତ ଚର ନିଯୁକ୍ତ କରିନାହୁଁ । ସେଥିପାଇଁ, ରାମ ଯେ ସାକ୍ଷାତ୍ ବରୁଣ ଏବଂ ମହେନ୍ଦ୍ରସଦୃଶ ମହାପରାକ୍ରମୀ ଏବଂ ଉନ୍ନତଗୁଣଶାଳୀ ଏହା ତୁ ଜାଣି ନାହୁଁ ।୩। ହେ ତାତ ! ଏହାଦ୍ୱାରା କଣ ଜଗତରେ ରାକ୍ଷସକୁଳର ମଙ୍ଗଳ ହେବ ? ରାମ କଣ କ୍ରୁଦ୍ଧହୋଇ ସମଗ୍ର ଜଗତକୁ ରାକ୍ଷସଶୂନ୍ୟ କରିଦେବ ନାହିଁ ?।୪। ଜନକାତ୍ମଜା କ'ଣ ତୋର ପ୍ରାଣ ବିନାଶ ନିମନ୍ତେ ଉତ୍ପନ୍ନ ହୋଇନାହାନ୍ତି ? ସୀତାଙ୍କ ଲାଗି କଣ ତୋର ଘୋର ବିପଦ ଉପସ୍ଥିତ ହେବ ନାହିଁ ? । ୫ । ତୁ ଯଥେଚ୍ଛାଚାରୀ ଏବଂ ନିରଙ୍କୁଶ, ସୁତରାଂ ତୋତେ ରାଜାରୂପେ ପାଇ ସମସ୍ତ ରାକ୍ଷସ ଏବଂ ତୋ ସହିତ ସମଗ୍ର ଲଙ୍କାପୁରୀ ବିନଷ୍ଟ ହେବ ନାହିଁ କି ? ।୬। ତୋପରି ଯେଉଁ ରାଜା

ବୃଦ୍ଧଃ କାମବୃତ୍ତୋ ହି ଦୁଃଶୀଲଃ ପାପମନ୍ତ୍ରିତଃ ।
ଆତ୍ମାନଂ ସ୍ୱଜନଂ ରାଷ୍ଟ୍ରଂ ସ ରାଜା ହନ୍ତି ଦୁର୍ମତିଃ । ୭ ।
ନ ଚ ପିତ୍ରା ପରିତ୍ୟକ୍ତୋ ନାମର୍ଯ୍ୟାଦଃ କଥଂଚନ ।
ନ ଲୁବ୍ଧୋ ନ ଚ ଦୁଃଶୀଲୋ ନ ଚ କ୍ଷତ୍ରିୟପାଂସନଃ । ୮ ।
ନ ଚ ଧର୍ମଗୁଣୈର୍ହୀନଃ କୌସଲ୍ୟାନନ୍ଦବର୍ଦ୍ଧନଃ ।
ନ ତୀକ୍ଷ୍ଣୋ ନ ଚ ଭୂତାନାଂ ସର୍ବେଷାମହିତେ ରତଃ ।୯ ।
ବଞ୍ଚିତଂ ପିତରଂ ଦୃଷ୍ଟ୍ୱା କୈକେୟ୍ୟା ସତ୍ୟବାଦିନମ୍ ।
କରିଷ୍ୟାମୀତି ଧର୍ମାତ୍ମା ତାତ ପ୍ରବ୍ରଜିତୋ ବନମ୍ । ୧୦ ।
କୈକେୟ୍ୟାଃ ପ୍ରିୟକାମାର୍ଥଂ ପିତୁର୍ଦଶରଥସ୍ୟ ଚ ।
ହିତ୍ୱା ରାଜ୍ୟଂ ଚ ଭୋଗାଂଶ୍ଚ ପ୍ରବିଷ୍ଟୋ ଦଣ୍ଡକାବନମ୍ । ୧୧ ।
ନ ରାମଃ କର୍କଶସ୍ତାତ ନାବିଦ୍ୱାନ୍ନାଜିତେନ୍ଦ୍ରିୟଃ ।
ଅନୃତଂ ଦୁଃଶ୍ରୁତଂ ଚୈବ ନୈବ ତ୍ୱଂ ବକ୍ତୁମର୍ହସି । ୧୨ ।
ରାମୋ ବିଗ୍ରହବାନ୍ ଧର୍ମଃ ସାଧୁଃ ସତ୍ୟପରାକ୍ରମଃ ।
ରାଜା ସର୍ବସ୍ୟ ଲୋକସ୍ୟ ଦେବାନାଂ ମଘବାନିବ ।୧୩ ।

---

ଯଥେଚ୍ଛାଚାରୀ, ପାପବୁଦ୍ଧି ଏବଂ ଦୁଷ୍ଟଚରିତ, ସେହି ଦୁର୍ବୁଦ୍ଧି ରାଜା ନିଜକୁ, ସମୁଦାୟ ରାଜ୍ୟକୁ ଏବଂ ସ୍ୱଜନମାନଙ୍କୁ ବିନଷ୍ଟ କରିଥାଏ । ୭ । ରାମ କଦାପି ପିତୃକର୍ତ୍ତୃକ ପରିତ୍ୟକ୍ତ ହୋଇନାହାନ୍ତି । ସେ ମର୍ଯ୍ୟାଦାହୀନ ନୁହନ୍ତି ବା ଲୁବ୍ଧ, ଦୁଃଶୀଳ କିମ୍ବା କ୍ଷତ୍ରିୟକୁଳାଧମ ନୁହନ୍ତି । ୮ । କୌଶଲ୍ୟାଙ୍କର ଆନନ୍ଦବର୍ଦ୍ଧନକାରୀ ରାମ ଧର୍ମହୀନ ବା ଗୁଣହୀନ ନୁହନ୍ତି । ସେ ତୀକ୍ଷ୍ଣସ୍ୱଭାବ ନୁହନ୍ତି କିମ୍ବା ସବୁ ପ୍ରାଣୀଙ୍କର ଅହିତରେ ରତ ନୁହନ୍ତି । ୯ । ହେ ତାତ ! ସତ୍ୟବାଦୀ ପିତା କୈକେୟୀଙ୍କ ଦ୍ୱାରା ପ୍ରତାରିତ ହୋଇଥିବାର ଦେଖି ସେ ଧର୍ମାତ୍ମା 'ମୁଁ ପିତୃସତ୍ୟ ପାଳନ କରିବି' ବୋଲି କହି ନିଜେ ବନକୁ ଆସିଛନ୍ତି ।୧୦। ପିତା ଦଶରଥଙ୍କର ଏବଂ କୈକେୟୀଙ୍କର ପ୍ରିୟସାଧନ କରିବା ଉଦ୍ଦେଶ୍ୟରେ ସେ ରାଜ୍ୟ ଏବଂ ରାଜଭୋଗ ପରିତ୍ୟାଗ କରି ଦଣ୍ଡକାରଣ୍ୟରେ ପ୍ରବେଶ କରିଅଛନ୍ତି । ୧୧ । ହେ ତାତ ! ରାମ କର୍କଶସ୍ୱଭାବ ନୁହନ୍ତି, ମୂର୍ଖ ନୁହନ୍ତି ବା ଅଜିତେନ୍ଦ୍ରିୟ ନୁହନ୍ତି । ତୁମ୍ଭର ଏପରି ମିଥ୍ୟା ଏବଂ ଅଶ୍ରାବ୍ୟ କଥା କହିବା ଉଚିତ ନୁହେଁ । ୧୨। ରାମ ସାକ୍ଷାତ ମୂର୍ତ୍ତିମାନ୍ ଧର୍ମ । ସେ ସାଧୁ ଏବଂ ସତ୍ୟପରାକ୍ରମ । ଦେବତାମାନଙ୍କର ଇନ୍ଦ୍ର ଯେପରି ରାଜା, ସେ ସବୁ ପ୍ରାଣୀଙ୍କର ସେହିପରି ରାଜା

କଥଂ ତ୍ୱଂ ତସ୍ୟ ବୈଦେହୀଂ ରକ୍ଷିତାଂ ସ୍ୱେନ ତେଜସା ।
ଇଚ୍ଛସି ପ୍ରସଭଂ ହର୍ତ୍ତୁଂ ପ୍ରଭାମିବ ବିବସ୍ୱତଃ । ୧୪ ।
ଶରାର୍ଚ୍ଚିଷମନାଧୃଷ୍ୟଂ ଚାପଖଡ୍‌ଗେନ୍ଧନଂ ରଣେ ।
ରାମାଗ୍ନିଂ ସହସା ଦୀପ୍ତଂ ନ ପ୍ରବେଷ୍ଟୁଂ ତ୍ୱମର୍ହସି । ୧୫ ।
ଧନୁର୍ବ୍ୟାଦିତଦୀପ୍ତାସ୍ୟଂ ଶରାର୍ଚ୍ଚିଷମମର୍ଷଣମ୍ ।
ଚାପପାଶଧରଂ ବୀରଂ ଶତ୍ରୁସୈନ୍ୟପ୍ରହାରିଣମ୍ । ୧୬ ।
ରାଜ୍ୟଂ ସୁଖଂ ଚ ସଂତ୍ୟଜ୍ୟ ଜୀବିତଂ ଚେଷ୍ଟମାତ୍ମନଃ ।
ନାତ୍ୟାସାଦୟିତୁଂ ତାତ ରାମାନ୍ତକମିହାର୍ହସି । ୧୭ ।
ଅପ୍ରମେୟଂ ହି ତତ୍ତେଜୋ ଯସ୍ୟ ସା ଜନକାତ୍ମଜା ।
ନ ତ୍ୱଂ ସମର୍ଥସ୍ତାଂ ହର୍ତ୍ତୁଂ ରାମଚାପାଶ୍ରୟାଂ ବନେ । ୧୮ ।
ତସ୍ୟ ସା ନରସିଂହସ୍ୟ ସିଂହୋରସ୍କସ୍ୟ ଭାମିନୀ ।
ପ୍ରାଣେଭ୍ୟୋଽପି ପ୍ରିୟତରା ଭାର୍ଯାନିତ୍ୟମନୁବ୍ରତା । ୧୯ ।
ନ ସା ଧର୍ଷୟିତୁଂ ଶକ୍ୟା ମୈଥିଲ୍ୟୋଜସ୍ୱିନଃ ପ୍ରିୟା ।
ଦୀପ୍ତସ୍ୟେବ ହୁତାଶସ୍ୟ ଶିଖା ସୀତା ସୁମଧ୍ୟମା ।୨୦ ।

---

ଅନ୍ୱୟ । ୧୩ । ଯେ ସୀତାଙ୍କୁ ନିଜ ତେଜରେ ରକ୍ଷା କରିଛନ୍ତି; ତୁମେ ସୂର୍ଯ୍ୟରପ୍ରଭା-ସଦୃଶ ସେହି ବୈଦେହୀଙ୍କୁ ବଳାତ୍କାରରେ ହରଣ କରିବାକୁ କାହିଁକି ଇଚ୍ଛା କରୁଛ ? । ୧୪ । ଶରରାଜ ଯାହାର ଶିଖା ଏବଂ ଖଡ୍‌ଗ ଓ ଧନୁ ଯାହାର ଇନ୍ଧନ, ସେହି ଅଜେୟ ରାମରୂପ ପ୍ରଜ୍ୱଳିତ ଅଗ୍ନିରେ ସହସା ତୁମ୍ଭର ପ୍ରବେଶ କରିବା ଆଦୌ ଉଚିତ ନୁହେଁ । ୧୫ । ରାମ ସାକ୍ଷାତ୍ କୃତାନ୍ତସଦୃଶ, ଧନୁ ତାଙ୍କର ଆଁ କରିଥିବା ଜ୍ୱଳନ୍ତ ମୁଖ, ଶରସମୂହ ତାଙ୍କର ଶିଖାସଦୃଶ; ରାଜ୍ୟ, ସୁଖ ଓ ନିଜର ଅଭୀଷ୍ଟ ପ୍ରାଣକୁ ଜଳାଞ୍ଜଳି ଦେଇ ସେହି ଅଭିମାନୀ,ଉଗ୍ରଧନୁରୂପକ ପାଶଧାରୀ,ଶତ୍ରୁସୈନ୍ୟଘାତୀ ରାମରୂପୀ ଯମର ସମୀପବର୍ତ୍ତୀ ହେବା ତୁମ୍ଭର ଉଚିତ ନୁହେଁ । ୧୬-୧୭ । ଜନକନନ୍ଦିନୀ ଯାହାର ଭାର୍ଯ୍ୟା ତା'ର ତେଜ ଅତୁଳନୀୟ । ସେ ବନରେ ରାମଙ୍କ ଧନୁର ବଳକୁ ଆଶ୍ରୟ କରି ରହିଛନ୍ତି, ସୁତରାଂ ତୁମେ ତାଙ୍କୁ ହରଣ କରିବାକୁ କଦାପି ସମର୍ଥ ହେବ ନାହିଁ । ୧୮ । ସିଂହସଦୃଶ ବିଶାଳବକ୍ଷ ନରସିଂହ ରାମ ତାଙ୍କର ସତତ ଅନୁଗତା ଭାର୍ଯ୍ୟାକୁ ପ୍ରାଣ ଅପେକ୍ଷା ଅଧିକ ପ୍ରିୟ ଜ୍ଞାନ କରନ୍ତି । ୧୯ । କୃଶକଟି ସୀତା ପ୍ରଜ୍ୱଳିତ ଅଗ୍ନିର ଶିଖାସଦୃଶ । ସେହି ତେଜସ୍ୱୀ ରାମଙ୍କର ପ୍ରିୟା ମୈଥିଲୀଙ୍କୁ କେହି କେବେ ଧର୍ଷଣ କରିପାରିବ ନାହିଁ ।୨୦। ହେ ରାକ୍ଷସରାଜ ! ତୁମ୍ଭର ଏ ବୃଥା

କିମୁଦ୍ୟମମିମଂ ବ୍ୟର୍ଥଂ କୃତ୍ୱା ତେ ରାକ୍ଷସାଧିପ ।
ଦୃଷ୍ଟଶ୍ଚେତ୍ତ୍ୱଂ ରଣେ ତେନ ତଦନ୍ତଂ ତବ ଜୀବିତମ୍ । ୨୧ ।
ଜୀବିତଂ ଚ ସୁଖଂ ଚୈବ ରାଜ୍ୟଂ ଚୈବ ସୁଦୁର୍ଲଭମ୍ ।
ଯଦୀଚ୍ଛସି ଚିରଂ ଭୋକ୍ତୁଂ ମା କୃଥା ରାମବିପ୍ରିୟମ୍ । ୨୨।
ସ ସର୍ବୈଃ ସଚିବୈଃ ସାର୍ଧଂ ବିଭୀଷଣପୁରୋଗମୈଃ ।
ମନ୍ତ୍ରୟିତ୍ୱା ତୁ ଧର୍ମିଷ୍ଠୈଃ କୃତ୍ୱା ନିଶ୍ଚୟମାତ୍ମନଃ । ୨୩ ।
ଦୋଷାଣାଂ ଚ ଗୁଣାନାଂ ଚ ସଂପ୍ରଧାର୍ଯ ବଲାବଲମ୍ ।
ଆତ୍ମନଶ୍ଚ ବଲଂ ଜ୍ଞାତ୍ୱା ରାଘବସ୍ୟ ଚ ତତ୍ତ୍ୱତଃ । ୨୪ ।
ହିତାହିତଂ ବିନିଶ୍ଚିତ୍ୟ କ୍ଷମଂ ତ୍ୱଂ କର୍ତୁମର୍ହସି । ୨୫ ।
ଅହଂ ତୁ ମନ୍ୟେ ତବ ନ କ୍ଷମଂ ରଣେ
ସମାଗମଂ କୋସଲରାଜସୂନୁନା ।
ଇଦଂ ହି ଭୂୟଃ ଶୃଣୁ ବାକ୍ୟମୁତ୍ତମମ୍
କ୍ଷମଂ ଚ ଯୁକ୍ତଂ ଚ ନିଶାଚରେଶ୍ୱର । ୨୬ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ଅପ୍ରିୟପଥ୍ୟବଚନମ୍ ନାମ
ସପ୍ତତ୍ରିଂଶଃ ସର୍ଗଃ

---

ଉଦ୍ୟମରେ କି ପ୍ରୟୋଜନ ? ତୁମେ ଯଦି ଯୁଦ୍ଧରେ ତାଙ୍କ ହାବୁଡ଼ରେ ପଡ଼ିଯିବ, ତେବେ ସେହିଠାରେ ତୁମ ଜୀବନ ଶେଷ । ୨୧ । ତୁମେ ଯଦି ନିଜର ଜୀବନ, ସୁଖ ଏବଂ ଦୁର୍ଲଭ ରାଜ୍ୟ ଚିରକାଳ ଭୋଗ କରିବାକୁ ଇଚ୍ଛାକର, ତେବେ ରାମର ଅପ୍ରିୟ କାର୍ଯ୍ୟ କଦାପି କର ନାହିଁ ।୨୨। ଅତଏବ ତୁମେ ବିଭୀଷଣପ୍ରମୁଖ ସମସ୍ତ ଧର୍ମନିଷ୍ଠ ମନ୍ତ୍ରୀମାନଙ୍କ ସହିତ ମନ୍ତ୍ରଣାକରି, ଦୋଷ, ଗୁଣ ଏବଂ ବଳାବଳ ନିର୍ଦ୍ଧାରଣ କରି, ନିଜର ବଳ ଓ ରାମଙ୍କର ବଳ ଯଥାର୍ଥଭାବରେ ବୁଝି ଏବଂ ହିତାହିତ ନିଶ୍ଚୟ କରି ଯାହା ତୁମେ କରିବାକୁ ସମର୍ଥ ହେବ ତାହା ତୁମ୍ଭର କରିବା ଉଚିତ ।୨୩-୨୫। ମୋର କିନ୍ତୁ ମନେ ହୁଏ, କୋଶଳରାଜପୁତ୍ର ରାମଙ୍କ ସହିତ ତୁମ୍ଭର ଯୁଦ୍ଧସମାଗମ ଠିକ ହେବନାହିଁ । ଅତଏବ ହେ ରାକ୍ଷସାଧିପ ! ମୁଁ ତୁମକୁ ପୁଣି ଯୁକ୍ତିଯୁକ୍ତ ହିତକଥା କହୁଛି ଶୁଣ ! ୨୬ ।

---

# ଅଷ୍ଟାତ୍ରିଂଶଃ ସର୍ଗଃ

## ରାମାସ୍ତ୍ରମହିମା

କଦାଚଦପ୍ୟହଂ ବୀର୍ଯ୍ୟାତ୍ପର୍ଯ୍ୟଟନ୍ ପୃଥିବୀମିମାମ୍ ।
ବଳଂ ନାଗସହସ୍ରସ୍ୟ ଧାରୟନ୍ ପର୍ବତୋପମଃ । ୧ ।
ନୀଳଜୀମୂତସଂକାଶସ୍ତପ୍ତକାଞ୍ଚନକୁଣ୍ଡଲଃ ।
ଭୟଂ ଲୋକସ୍ୟ ଜନୟନ୍ କିରୀଟୀପରିଘାୟୁଧଃ । ୨ ।
ବ୍ୟଚରଂ ଦଣ୍ଡକାରଣ୍ୟେ ଋଷିମାଂସାନି ଭକ୍ଷୟନ୍ ।
ବିଶ୍ୱାମିତ୍ରୋଽଥ ଧର୍ମାତ୍ମା ମଦ୍‌ବିତ୍ରସ୍ତୋ ମହାମୁନିଃ । ୩ ।
ସ୍ୱୟଂ ଗତ୍ୱା ଦଶରଥଂ ନରେନ୍ଦ୍ରମିଦମବ୍ରବୀତ୍ ।
ଅୟଂ ରକ୍ଷତୁ ମାଂ ରାମଃ ପର୍ବକାଲେ ସମାହିତଃ । ୪ ।
ମାରୀଚାନ୍ମେ ଭୟଂ ଘୋରଂ ସମୁତ୍ପନ୍ନଂ ନରେଶ୍ୱର ।
ଇତ୍ୟେବମୁକ୍ତୋ ଧର୍ମାତ୍ମା ରାଜା ଦଶରଥସ୍ତଦା । ୫ ।
ପ୍ରତ୍ୟୁବାଚ ମହାଭାଗଂ ବିଶ୍ୱାମିତ୍ରଂ ମହାମୁନିମ୍ ।
ବାଲୋ ଦ୍ୱାଦଶବର୍ଷୋଽୟମକୃତାସ୍ତ୍ରଶ୍ଚ ରାଘବଃ । ୬ ।

---

## ୩୮ଶ ସର୍ଗ

( ରାମଙ୍କ ଅସ୍ତ୍ର ମହିମାବର୍ଣ୍ଣନ )

"ଏକ ସମୟରେ ମୁଁ ବଳଦୃପ୍ତ ହୋଇ ଏହି ପୃଥିବୀ ପର୍ଯ୍ୟଟନ କରୁଥିଲି । ମୋର ପର୍ବତୋପମ ଶରୀରରେ ସହସ୍ର ହସ୍ତୀର ବଳ ଥିଲା । ମୋର ଶରୀରକାନ୍ତି ନୀଳମେଘସଦୃଶ ହୋଇଥିଲା । ମୁଁ ତପ୍ତସ୍ୱର୍ଣ୍ଣକୁଣ୍ଡଳ ପରିଧାନ କରିଥିଲି ଏବଂ ମୁକୁଟ ପିନ୍ଧି, ହାତରେ ପରିଘ ଅସ୍ତ୍ର ଧରି ସବୁ ଲୋକଙ୍କ ମନରେ ଭୟ ଜାତ କରାଉଥିଲି । ୧-୨ । ମୁଁ ସେତେବେଳେ ଋଷିମାନଙ୍କର ମାଂସ ଖାଇ ଦଣ୍ଡକାରଣ୍ୟରେ ବିଚରଣ କରୁଥିଲି । ଧର୍ମାତ୍ମା ମହାମୁନି ବିଶ୍ୱାମିତ୍ର ସେତେବେଳେ ମୋ ଭୟରେ ତ୍ରସ୍ତ ହୋଇ ନିଜେ ଯାଇ ରାଜା ଦଶରଥଙ୍କୁ କହିଲେ, "ଏହି ରାମ ଯଜ୍ଞସମୟରେ ସାବଧାନ ହୋଇ ମୋତେ ରକ୍ଷାକରନ୍ତୁ । ୩-୪ । ହେ ନରାଧିପ ! ମାରୀଚଠାରୁ ମୋର ମହାଭୟ ଜାତ ହୋଇଅଛି ।" ସେ ଏହିପରି କହିବାଉତ୍ତାରୁ ଧର୍ମାତ୍ମା ରାଜା ଦଶରଥ ସେତେବେଳେ ମହାଭାଗ, ମହାମୁନି ବିଶ୍ୱାମିତ୍ରଙ୍କୁ କହିଲେ, "ଏହି ରାମ ବାରବର୍ଷର

କାମଂ ତୁ ମମ ଯତ୍ସୈନ୍ୟଂ ମୟା ସହ ଗମିଷ୍ୟତି ।
ବଲେନ ଚତୁରଙ୍ଗେଣ ସ୍ୱୟମେତ୍ୟ ନିଶାଚରାନ୍ । ୭ ।
ବଧିଷ୍ୟାମି ମୁନିଶ୍ରେଷ୍ଠ ଶତ୍ରୂଂସ୍ତବ ଯଥେପ୍ସିତମ୍ ।
ଇତ୍ୟେବମୁକ୍ତଃ ସ ମୁନୀ ରାଜାନଂ ପୁନରବ୍ରବୀତ୍ । ୮ ।
ରାମାନ୍ନାନ୍ୟଦ୍ବଲଂ ଲୋକେ ପର୍ଯ୍ୟାପ୍ତଂ ତସ୍ୟ ରକ୍ଷସଃ ।
ଦେବତାନାମପି ଭବାନ୍ ସମରେଷ୍ୱଭିପାଲକଃ । ୯ ।
ଆସୀତ୍ତବ କୃତଂ କର୍ମ ତ୍ରିଲୋକେ ବିଦିତଂ ନୃପ ।
କାମମସ୍ତୁ ମହତ୍ସୈନ୍ୟଂ ତିଷ୍ଠତ୍ୱିହ ପରଂତପ । ୧୦ ।
ବାଲୋଽପ୍ୟେଷ ମହାତେଜାଃ ସମର୍ଥସ୍ତସ୍ୟ ନିଗ୍ରହେ ।
ଗମିଷ୍ୟେ ରାମମାଦାୟ ସ୍ୱସ୍ତି ତେଽସ୍ତୁ ପରଂତପ । ୧୧ ।
ଏବମୁକ୍ତ୍ୱା ତୁ ସ ମୁନିସ୍ତମାଦାୟ ନୃପାତ୍ମଜମ୍ ।
ଜଗାମ ପରମପ୍ରୀତୋ ବିଶ୍ୱାମିତ୍ରଃ ସ୍ୱମାଶ୍ରମମ୍ । ୧୨ ।
ତଂ ତଦା ଦଣ୍ଡକାରଣ୍ୟେ ଯଜ୍ଞମୁଦ୍ଦିଶ୍ୟ ଦୀକ୍ଷିତମ୍ ।
ବଭୂବୋପସ୍ଥିତୋ ରାମଶ୍ଚିତ୍ରଂ ବିସ୍ଫାରୟନ୍ ଧନୁଃ । ୧୩ ।

---

ପିଲା । ସେ ଏପର୍ଯ୍ୟନ୍ତ ଅସ୍ତ୍ରଶିକ୍ଷା କରିନାହିଁ ।୫-୬। ମୋର ପର୍ଯ୍ୟାପ୍ତ ସୈନ୍ୟବାହିନୀ ମୋ ସଙ୍ଗରେ ଯିବ । ମୁନିଶ୍ରେଷ୍ଠ ! ମୁଁ ସ୍ୱୟଂ ଚତୁରଙ୍ଗ ବଳସହିତ ଯାଇ ତୁମ ଇଚ୍ଛାଅନୁସାରେ ତୁମ ଶତ୍ରୁ ରାକ୍ଷସମାନଙ୍କୁ ବଧକରିବ ।" ସେ ଏପରି କହିବାରୁ ମୁନି ପୁଣି ରାଜାଙ୍କୁ କହିଲେ, "ହେ ଶତ୍ରୁସୂଦନ ! ରାମ ଭିନ୍ନ ଆଉ କାହାର ବଳ ସେ ରାକ୍ଷସପାଇଁ ଯଥେଷ୍ଟ ହେବ ନାହିଁ । ଅବଶ୍ୟ ଆପଣ ଯୁଦ୍ଧରେ ଦେବତାଙ୍କୁ ମଧ୍ୟ ରକ୍ଷାକରନ୍ତି ।୭-୯। ହେ ରାଜନ୍ ! ଆପଣ ଯେଉଁ ଯେଉଁ କାର୍ଯ୍ୟ କରିଛନ୍ତି, ତାହା ତ୍ରିଲୋକରେ ବିଖ୍ୟାତ । ଆପଣଙ୍କର ମହାସୈନ୍ୟ ଖୁବ୍ ପର୍ଯ୍ୟାପ୍ତ ହୋଇପାରେ, ମାତ୍ର ତାହା ଏହିଠାରେ ଥାଉ ।୧୦। ଏହି ମହାତେଜସ୍ୱୀ ରାମ ବାଳକ ହେଲେ ମଧ୍ୟ ତାକୁ ପରାସ୍ତ କରିବାପାଇଁ ସେ ସମର୍ଥ ଅଟେ । ହେ ଅରିନ୍ଦମ ! ତୁମର ମଙ୍ଗଳ ହେଉ, ମୁଁ ରାମଙ୍କୁ ନେଇଯିବି" ।୧୧। ମହର୍ଷି ବିଶ୍ୱାମିତ୍ର ଏହି କଥା, କହି ସେହି ରାଜକୁମାରଙ୍କୁ ସାଙ୍ଗରେ ନେଇ ଓ ପରମପ୍ରୀତ ହୋଇ ନିଜ ଆଶ୍ରମକୁ ଗଲେ ।୧୨। ଅନନ୍ତର ସେ ଦଣ୍ଡକାରଣ୍ୟରେ ଯଜ୍ଞ ଉଦ୍ଦେଶ୍ୟରେ ଦୀକ୍ଷିତହେବାରୁ ରାମ ବିଚିତ୍ର ଧନୁ ବିସ୍ଫାରିତ କରି ତାହାଙ୍କ ନିକଟରେ ଉପସ୍ଥିତ ରହିଲେ ।୧୩। ଅଜାତଶ୍ମଶ୍ରୁ,

ଅଜାତବ୍ୟଞ୍ଜନଃ ଶ୍ରୀମାନ୍ ପଦ୍ମପତ୍ରନିଭେକ୍ଷଣଃ ।
କାକପକ୍ଷଧରୋ ଧନ୍ୱୀ ଶିଖୀ କନକମାଲୟା । ୧୪ ।
ଶୋଭୟନ୍ ଦଣ୍ଡକାରଣ୍ୟଂ ଦୀପ୍ତେନ ସ୍ୱେନ ତେଜସା ।
ଅଦୃଶ୍ୟତ ତତୋ ରାମୋ ବାଲଚନ୍ଦ୍ର ଇବୋଦ୍‌ଗତଃ । ୧୫ ।
ତତୋଽହଂ ମେଘସଂକାଶସ୍ତପ୍ତକାଞ୍ଚନକୁଣ୍ଡଳଃ ।
ବଳୀ ଦତ୍ତବରୋ ଦର୍ପାଦାଜଗାମ ତଦାଶ୍ରମମ୍ । ୧୬ ।
ତେନ ଦୃଷ୍ଟଃ ପ୍ରବିଷ୍ଟୋଽହଂ ସହସୈବୋଦ୍ୟତାୟୁଧଃ ।
ମାଂ ତୁ ଦୃଷ୍ଟ୍ୱା ଧନୁଃ ସଜ୍ୟମସଂଭ୍ରାନ୍ତଶ୍ଚକାର ସଃ । ୧୭ ।
ଅବଜାନନ୍ନହଂ ମୋହାଦ୍ ବାଲୋଽୟମିତି ରାଘବମ୍ ।
ବିଶ୍ୱାମିତ୍ରସ୍ୟ ତାଂ ବେଦିମଭ୍ୟଧାବଂ କୃତତ୍ୱରଃ । ୧୮ ।
ତେନ ମୁକ୍ତସ୍ତତୋ ବାଣଃ ଶିତଃ ଶତ୍ରୁନିବର୍ହଣଃ ।
ତେନାହଂ ତାଡ଼ିତଃ କ୍ଷିପ୍ତଃ ସମୁଦ୍ରେ ଶତଯୋଜନେ । ୧୯ ।
ନେଚ୍ଛତା ତାତ ମାଂ ହନ୍ତୁଂ ତଦା ବୀରେଣ ରକ୍ଷିତଃ ।
ରାମସ୍ୟ ଶରବେଗେଣ ନିରସ୍ତୋଽହମଚେତନଃ । ୨୦ ।
ପାତିତୋଽହଂ ତଦା ତେନ ଗମ୍ଭୀରେ ସାଗରାମ୍ଭସି ।
ପ୍ରାପ୍ୟ ସଂଜ୍ଞାଂ ଚିରାତ୍ତାତ ଲଙ୍କାଂ ପ୍ରତିଗତଃ ପୁରୀମ୍ । ୨୧ ।

---

ପଦ୍ମପଲାଶଲୋଚନ, ଶିଖା କାକପକ୍ଷ ଓ ଧନୁର୍ଦ୍ଧାରୀ ଶ୍ରୀମାନ୍ ରାମ ସ୍ୱର୍ଣ୍ଣମାଳାବିଭୂଷିତ ହୋଇ ନିଜର ପ୍ରଦୀପ୍ତତେଜରେ ଦଣ୍ଡକାରଣ୍ୟକୁ ଶୋଭାନ୍ୱିତ କରି ଉଦିତ ବାଳଚନ୍ଦ୍ର-ସଦୃଶ ଦେଖାଗଲେ । ୧୪-୧୫ । ସେ ସମୟରେ ମୁଁ ତପ୍ତକାଞ୍ଚନକୁଣ୍ଡଳ ପରିଧାନ କରି ମେଘସଦୃଶ ହୋଇ ବରଲାଭହେତୁ ନିଜବଳରେ ଦୃପ୍ତ ହୋଇ ସେ ଆଶ୍ରମକୁ ଆସିଲି ।୧୬। ମୁଁ ପ୍ରବେଶ କରିବାର ସେ ଦେଖିଲେ ଏବଂ ମୋତେ ଦେଖି ତତ୍‌କ୍ଷଣାତ୍ ଶସ୍ତ୍ର ଉଦ୍ୟତ କରି ବିନା ଉଦ୍‌ବେଗରେ ଧନୁରେ ଜ୍ୟାରୋପଣ କଲେ ।୧୭। ମୁଁ ରାମଙ୍କୁ 'ଏ ପିଲା' ବୋଲି ଅବଜ୍ଞା କରି ଶୀଘ୍ରଗତିରେ ବିଶ୍ୱାମିତ୍ରଙ୍କର ସେହି ବେଦୀଠାକୁ ଦୌଡ଼ିଗଲି । ୧୮ । ଅନନ୍ତର ରାମ ଶତ୍ରୁସଂହାରକ୍ଷମ ଶାଣିତ ଶର ମୋଚନକଲେ । ମୁଁ ସେହି ଶରଦ୍ୱାରା ତାଡ଼ିତ ହୋଇ ଶତଯୋଜନ ଦୂରବର୍ତ୍ତୀ ସମୁଦ୍ରରେ ଆସି ପଡ଼ିଲି ।୧୯। ହେ ତାତ ! ସେ ବୀର ସେତେବେଳେ ମୋତେ ବଧ-କରିବାକୁ ଇଚ୍ଛା ନ କରି ରକ୍ଷା କରିଥିଲେ । ମୁଁ ରାମଙ୍କ ଶରବେଗରେ ନିରସ୍ତ ଏବଂ ମୂର୍ଚ୍ଛିତ ହୋଇ ସୁଗଭୀର ସମୁଦ୍ର ଜଳରେ ନିପତିତ ହେଲି । ମୁଁ ବହୁକାଳପରେ ସଂଜ୍ଞାଲାଭ କରି ଲଙ୍କାପୁରୀକୁ ପ୍ରତ୍ୟାଗମନ କଲି ।୨୦-୨୧। ଏହାପରେ ମୁଁ ସେତେବେଳେ

ଏବମସ୍ମି ତଦା ମୁକ୍ତଃ ସହାୟାସ୍ତୁ ନିପାତିତାଃ ।
ଅକୃତାସ୍ତ୍ରେଣ ବାଲେନ ରାମେଣାକ୍ଲିଷ୍ଟକର୍ମଣା । ୨୨ ।
ତନ୍ମୟା ବାର୍ଯମାଣସ୍ତ୍ୱଂ ଯଦି ରାମେଣ ବିଗ୍ରହମ୍ ।
କରିଷ୍ୟସ୍ୟାପଦଂ ଘୋରାଂ କ୍ଷିପ୍ରଂ ପ୍ରାପ୍ୟ ନ ଶିଷ୍ୟସି । ୨୩ ।
କ୍ରୀଡ଼ାରତିବିଧିଜ୍ଞାନାଂ ସମାଜୋତ୍ସବଦର୍ଶିନାମ୍ ।
ରକ୍ଷସାଂ ଚୈବ ସନ୍ତାପମନର୍ଥଂ ଚାହରିଷ୍ୟସି । ୨୪ ।
ହର୍ମ୍ୟପ୍ରାସାଦସଂବାଧାଂ ନାନାରତ୍ନବିଭୂଷିତାମ୍ ।
ଦ୍ରକ୍ଷ୍ୟସି ତ୍ୱଂ ପୁରୀଂ ଲଙ୍କାଂ ବିନଷ୍ଟାଂ ମୈଥିଲୀକୃତେ । ୨୫ ।
ଅକୁର୍ବନ୍ତୋଽପି ପାପାନି ଶୁଚୟଃ ପାପସଂଶ୍ରୟାତ୍ ।
ପରପାପୈର୍ବିନଶ୍ୟନ୍ତି ମତ୍ସ୍ୟା ନାଗହ୍ରଦେ ଯଥା । ୨୬ ।
ଦିବ୍ୟଚନ୍ଦନଦିଗ୍ଧାଙ୍ଗାନ୍ ଦିବ୍ୟାଭରଣଭୂଷିତାନ୍ ।
ଦ୍ରକ୍ଷ୍ୟସ୍ୟଭିହତାନ୍ ଭୂମୌ ତବ ଦୋଷାତ୍ତୁ ରାକ୍ଷସାନ୍ । ୨୭।
ହୃତଦାରାନ୍ ସଦାରାଂଶ୍ଚ ଦଶ ବିଦ୍ରବତୋ ଦିଶଃ ।
ହତଶେଷାନଶରଣାନ୍ ଦ୍ରକ୍ଷ୍ୟସି ତ୍ୱଂ ନିଶାଚରାନ୍ । ୨୮ ।

---

ଅକ୍ଲିଷ୍ଟକର୍ମା ଏବଂ ଅସ୍ତ୍ରଶିକ୍ଷା ନ କରିଥିବା ବାଳକ ରାମଙ୍କଦ୍ୱାରା ମୁକ୍ତ ହୋଇଥିଲି । ମାତ୍ର ମୋର ସାହାଯ୍ୟକାରୀ ରାକ୍ଷସମାନଙ୍କୁ ସେ ନିପାତ କରିଦେଇଥିଲେ । ୨୨ । ଅତଏବ ମୁଁ ବାରଣ କରିବା ସତ୍ତ୍ୱେ ତୁମେ ଯଦି ରାମଙ୍କ ସହିତ ଯୁଦ୍ଧକର, ତେବେ ତୁମେ ଅଚିରାତ୍ ଘୋର ବିପଦାପନ୍ନ ହୋଇ ବିନଷ୍ଟ ହେବ ଏବଂ ସର୍ବଦା ସମାଜ ଓ ଉତ୍ସବ ଆଦିରେ ରତ ରହିଥିବା ତଥା କ୍ରୀଡ଼ାକୌତୁକନିପୁଣ ରାକ୍ଷସମାନଙ୍କର ସନ୍ତାପ ଓ ଅନିଷ୍ଟ ଆହରଣ କରିବ । ୨୩-୨୪ । ସୀତାଙ୍କ ଲାଗି ହର୍ମ୍ୟ ପ୍ରାସାଦପୂର୍ଣ୍ଣ ନାନାରତ୍ନବିଭୂଷିତ ଲଙ୍କାନଗରୀକୁ ତୁମେ ବିନଷ୍ଟ ହେବାର ଦେଖିବ । ୨୫ । ଯେପରି ସର୍ପ ଥିବା ହ୍ରଦରେ ରହିଥିବା ମତ୍ସ୍ୟମାନେ ବିନଷ୍ଟ ହୋଇଥାନ୍ତି, ସେହିପରି ପାପ କରୁ ନ ଥିବା ଶୁଦ୍ଧଚିତ୍ତ ବ୍ୟକ୍ତିମାନେ ମଧ୍ୟ ପାପୀ ଲୋକର ସଂସର୍ଗ ହେତୁରୁ ତାହାଁର ପାପଲାଗି ବିନଷ୍ଟ ହୋଇଥାନ୍ତି । ୨୬ । ତୁମେ ଦେଖିବ ଯେ ତୁମର ଦୋଷରୁ ଦିବ୍ୟଚନ୍ଦନଲିପ୍ତାଙ୍ଗ ଦିବ୍ୟାଭରଣଭୂଷିତ ରାକ୍ଷସମାନେ ନିହତ ହୋଇ ଭୂମିସାତ୍ ହେବେ । ୨୭ । ଏହି ନିଶାଚରଙ୍କ ମୃତାବଶିଷ୍ଟ ରାକ୍ଷସମାନେ କିଏ ବା ହୃତଦାର ହୋଇ କିଏ ବା ପତ୍ନୀସହିତ ଦଶଦିଗରେ ପଳାୟନ କରିବାର ତୁମେ

ଶରଜାଲପରିକ୍ଷିପ୍ତାମଗ୍ନିଜ୍ୱାଲାସମାବୃତାମ୍ ।
ପ୍ରଦଗ୍ଧଭବନାଂ ଲଙ୍କାଂ ଦ୍ରକ୍ଷ୍ୟସି ତ୍ୱଂ ନ ସଂଶୟଃ । ୨୯ ।
ପରଦାରାଭିମର୍ଶାତ୍ତୁ ନାନ୍ୟତ୍ପାପତରଂ ମହତ୍ ।
ପ୍ରମଦାନାଂ ସହସ୍ରାଣି ତବ ରାଜନ୍ ପରିଗ୍ରହଃ । ୩୦ ।
ଭବ ସ୍ୱଦାରନିରତଃ ସ୍ୱକୁଲଂ ରକ୍ଷ ରାକ୍ଷସ ।
ମାନମୃଦ୍ଧିଂ ଚ ରାଜ୍ୟଂ ଚ ଜୀବିତଂ ଚେଷ୍ଟମାତ୍ମନଃ । ୩୧ ।
କଳତ୍ରାଣି ଚ ସୌମ୍ୟାନି ମିତ୍ରବର୍ଗଂ ତଥୈବ ଚ ।
ଯଦୀଚ୍ଛସି ଚିରଂ ଭୋକ୍ତୁଂ ମା କୃଥା ରାମବିପ୍ରିୟମ୍ । ୩୨ ।
ନିବାର୍ଯ୍ୟମାଣଃ ସୁହୃଦା ମୟା ଭୃଶମ୍
ପ୍ରସହ୍ୟ ସୀତାଂ ଯଦି ଧର୍ଷୟିଷ୍ୟସି ।
ଗମିଷ୍ୟସି କ୍ଷୀଣବଲଃ ସବାନ୍ଧବୋ
ଯମକ୍ଷୟଂ ରାମଶରାତ୍ତଜୀବିତଃ । ୩୩ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ତ୍ରୟସ୍ତ୍ରିଂଶ ନାମ
ଅଷ୍ଟାତ୍ରିଂଶଃ ସର୍ଗଃ

---

ଦେଖିବ । ୨୮ । ଲଙ୍କା ଶରଜାଳସମାକୁଳ ଏବଂ ଅଗ୍ନିଶିଖାପରିବ୍ୟାପ୍ତ ହୋଇ ତାହାର ସମସ୍ତ ଗୃହ ଭସ୍ମୀଭୂତ ହୋଇଯିବାର ତୁମେ ଦେଖିବ, ଏଥିରେ ସନ୍ଦେହ ନାହିଁ । ୨୯ । ପରଦାର ହରଣ ଅପେକ୍ଷା ଆଉ ଗୁରୁତର ପାପ ନାହିଁ । ହେ ରାଜନ୍ ! ତୁମେ ସହସ୍ର ସହସ୍ର ମହିଳାଙ୍କୁ ବିବାହ କରିଅଛ । ୩୦ । ସୁତରାଂ ହେ ରାକ୍ଷସ ! ତୁମେ ନିଜର ସେହି ପତ୍ନୀମାନଙ୍କଠାରେ ଆସକ୍ତ ରହି ନିଜର କୁଳ, ମାନ, ସମୃଦ୍ଧି, ରାଜ୍ୟ ଓ ନିଜର ଈପ୍ସିତ ପ୍ରାଣକୁ ରକ୍ଷାକର । ୩୧ । ତୁମେ ତୁମ ସୁନ୍ଦରୀ ପତ୍ନୀମାନଙ୍କୁ ଏବଂ ମିତ୍ରବର୍ଗଙ୍କୁ ଯଦି ଚିରକାଳ ଉପଭୋଗ କରିବାକୁ ଇଚ୍ଛାକର, ତାହାହେଲେ ରାମର ଅପ୍ରିୟ କାର୍ଯ୍ୟ କଦାପି କର ନାହିଁ । ୩୨ । ମୁଁ ତୁମର ସୁହୃଦ, ତୁମକୁ ବାରମ୍ବାର ବାରଣ କରୁଛି; ତଥାପି ଯଦି ତୁମେ ବଳପୂର୍ବକ ସୀତାଙ୍କ ପ୍ରତି ଅତ୍ୟାଚାର କର ତାହାହେଲେ ନିଶ୍ଚୟ ତୁମକୁ ସବାନ୍ଧବେ କ୍ଷୀଣବଳ ଓ କ୍ଷୀଣପ୍ରାଣ ହୋଇ ରାମର ଶରରେ ଯମପୁରକୁ ଯିବାକୁ ହେବ । ୩୩ ।

---

# ଏକୋନଚତ୍ୱାରିଂଶଃ ସର୍ଗଃ

### ସାହାଯ୍ୟକାନଭ୍ୟୁପଗମଃ

ଏବମସ୍ମି ତଦା ମୁକ୍ତଃ କଥଂଚିତ୍ତେନ ସଂଯୁଗେ ।
ଇଦାନୀମପି ଯଦ୍‌ବୃତ୍ତଂ ତଚ୍ଛୃଣୁଷ୍ୱ ନିରୁତ୍ତରମ୍ । ୧ ।
ରାକ୍ଷସାଭ୍ୟାମହଂ ଦ୍ୱାଭ୍ୟାମନିର୍ବିଣ୍ଣସ୍ତଥା କୃତଃ ।
ସହିତୋ ମୃଗରୂପାଭ୍ୟାଂ ପ୍ରବିଷ୍ଟୋ ଦଣ୍ଡକାବନମ୍ । ୨ ।
ଦୀପ୍ତଜିହ୍ୱୋ ମହାକାୟସ୍ତୀକ୍ଷ୍ଣଦଂଷ୍ଟ୍ରୋ ମହାବଲଃ ।
ବ୍ୟଚରଂ ଦଣ୍ଡକାରଣ୍ୟଂ ମାଂସଭକ୍ଷୋ ମହାମୃଗଃ ।୩ ।
ଅଗ୍ନିହୋତ୍ରେଷୁ ତୀର୍ଥେଷୁ ଚୈତ୍ୟବୃକ୍ଷେଷୁ ରାବଣ ।
ଅତ୍ୟନ୍ତଘୋରୋ ବ୍ୟଚରଂ ତାପସାନ୍ ସଂପ୍ରଧର୍ଷୟନ୍ । ୪ ।
ନିହତ୍ୟ ଦଣ୍ଡକାରଣ୍ୟେ ତାପସାନ୍ ଧର୍ମଚାରିଣଃ ।
ରୁଧିରାଣି ପିବଂସ୍ତେଷାଂ ତଥା ମାଂସାନି ଭକ୍ଷୟନ୍ । ୫ ।
ଋଷିମାଂସାଶନଃ କ୍ରୂରସ୍ତ୍ରାସୟନ୍ ବନଗୋଚରାନ୍ ।
ତଥା ରୁଧିରମତ୍ତୋଽହଂ ବ୍ୟଚରନ୍ ଦଣ୍ଡକାବନମ୍ । ୬ ।

---

## ୩୯ଶ ସର୍ଗ

( ସହାୟ ହେବାପାଇଁ ଅସ୍ୱୀକାର )

"ସେତେବେଳେ ମୁଁ ଏହିପରି କୌଣସିପ୍ରକାରେ ଯୁଦ୍ଧରେ ରାମଙ୍କଠାରୁ ମୁକ୍ତ
ହୋଇଥିଲି । ପୁଣି ଏବେ ଯାହା ଘଟିଛି ତାହା କୌଣସି ଉତ୍ତର ନ ଦେଇ ଶୁଣ ।
। ୧ । ମୁଁ ଏହିପରିଭାବରେ ପୂର୍ବ ଦୁଃଖ ପାସୋରି ଦୁଇଟି ମୃଗରୂପଧାରୀ ରାକ୍ଷସଙ୍କ
ସହିତ ଦଣ୍ଡକାରଣ୍ୟରେ ପ୍ରବେଶ କଲି । ୨ । ମୁଁ ପ୍ରକାଣ୍ଡକାୟ ମହାବଳୀ ତୀକ୍ଷ୍ଣ-
ଦଂଷ୍ଟ୍ରାଯୁକ୍ତ ମାଂସଭକ୍ଷୀ ଏବଂ ପ୍ରଦୀପ୍ତଜିହ୍ୱାବିଶିଷ୍ଟ ମହାମୃଗ ହୋଇ ଦଣ୍ଡକାରଣ୍ୟରେ
ବିଚରଣ କରିବାକୁ ଲାଗିଲି । ହେ ରାବଣ ! ମୁଁ ଅଗ୍ନିହୋତ୍ର ଯଜ୍ଞଶାଳା, ଚୈତ୍ୟବୃକ୍ଷ
ଏବଂ ଜଳାଶୟ ଘାଟମାନଙ୍କରେ ଏହି ଭୟଙ୍କର ରୂପଧାରଣ କରି ତପସ୍ୱୀମାନଙ୍କୁ
ଉତ୍ପୀଡ଼ନ କରି ବିଚରଣ କରିବାକୁ ଲାଗିଲି । ୪ । ମୁଁ ଦଣ୍ଡକାରଣ୍ୟରେ ଧର୍ମଚାରୀ
ତପସ୍ୱୀମାନଙ୍କୁ ହତ୍ୟାକରି ସେମାନଙ୍କର ରକ୍ତ ପିଉଥିଲି ଏବଂ ମାଂସ ଖାଉଥିଲି ।
। ୫ । ଏହିପରି ଋଷିମାଂସ ଭକ୍ଷଣକରି ଏବଂ ରକ୍ତପାନୋନ୍ମତ୍ତ ହୋଇ କ୍ରୂର-
ଭାବରେ ବନବାସୀମାନଙ୍କୁ ତ୍ରସ୍ତ କରାଇ ଦଣ୍ଡକାରଣ୍ୟରେ ବିଚରଣ କରୁ କରୁ ମୁଁ

ଆସାଦୟଂ ତଦା ରାମଂ ତାପସଂ ଧର୍ମମାଶ୍ରିତମ୍ ।
ବୈଦେହୀଂ ଚ ମହାଭାଗାଂ ଲକ୍ଷ୍ମଣଂ ଚ ମହାରଥମ୍ । ୭ ।
ତାପସଂ ନିୟତାହାରଂ ସର୍ବଭୂତହିତେ ରତମ୍ ।
ସୋଽହଂ ବନଗତଂ ରାମଂ ପରିଭୂୟ ମହାବଲମ୍ । ୮ ।
ତାପସୋଽୟମିତି ଜ୍ଞାତ୍ୱା ପୂର୍ବବୈରମନୁସ୍ମରନ୍ ।
ଅଭ୍ୟଧାବଂ ହି ସଂକ୍ରୁଦ୍ଧସ୍ତୀକ୍ଷ୍ଣଶୃଙ୍ଗୋ ମୃଗାକୃତିଃ । ୯ ।
ଜିଘାଂସୁରକୃତପ୍ରଜ୍ଞସ୍ତଂ ପ୍ରହାରମନୁସ୍ମରନ୍ ।
ତେନ ମୁକ୍ତାସ୍ତ୍ରୟୋ ବାଣାଃ ଶିତାଃ ଶତ୍ରୁନିବର୍ହଣାଃ । ୧୦ ।
ବିକୃଷ୍ୟ ସୁମହଚ୍ଚାପଂ ସୁପର୍ଣାନିଲନିସ୍ୱନାଃ ।
ତେ ବାଣା ବଜ୍ରସଙ୍କାଶାଃ ସୁଘୋରା ରକ୍ତଭୋଜନାଃ । ୧୧ ।
ଆଜଗ୍ମୁଃ ସହିତାଃ ସର୍ବେ ତ୍ରୟଃ ସଂନତପର୍ବଣଃ ।
ପରାକ୍ରମଜ୍ଞୋ ରାମସ୍ୟ ଶଠୋ ଦୃଷ୍ଟଭୟଃ ପୁରା । ୧୨ ।
ସମୁତ୍କ୍ରାନ୍ତସ୍ତତୋ ମୁକ୍ତସ୍ତାବୁଭୌ ରାକ୍ଷସୌ ହତୌ ।
ଶରେଣ ମୁକ୍ତୋ ରାମସ୍ୟ କଥଂଚିତ୍ ପ୍ରାପ୍ୟ ଜୀବିତମ୍ । ୧୩ ।
ଇହ ପ୍ରବ୍ରାଜିତୋ ଯୁକ୍ତସ୍ତାପସୋଽହଂ ସମାହିତଃ ।
ବୃକ୍ଷେ ବୃକ୍ଷେ ଚ ପଶ୍ୟାମି ଚୀରକୃଷ୍ଣାଜିନାମ୍ବରମ୍ । ୧୪ ।

---

ସେତେବେଳେ ଧର୍ମପରାୟଣ ତପସ୍ୱୀ ରାମ, ମହାଭାଗା ବୈଦେହୀ ଏବଂ ମହାରଥୀ ଲକ୍ଷ୍ମଣଙ୍କ ପାଖରେ ପହଞ୍ଚିଲେ । ୬-୭ । ମୁଁ ସବୁ ପ୍ରାଣିହିତରେ ରତ, ନିୟତାହାରୀ, ବନବାସୀ,ତପସ୍ୱୀ,ମହାବଳୀ ରାମଙ୍କୁ 'ଏ ତପସ୍ୱୀ' ବୋଲି ଜାଣି ଅବଜ୍ଞାକରି ଏବଂ ପୂର୍ବ ଶତ୍ରୁତା ସ୍ମରଣ କରି କ୍ରୁଦ୍ଧହୋଇ ତୀକ୍ଷ୍ଣ ଶୃଙ୍ଗବିଶିଷ୍ଟ ମୃଗବେଶରେ ତାଙ୍କଆଡ଼କୁ ଧାବମାନ ହେଲି । ମୁଁ ତାଙ୍କର ପୂର୍ବ ପ୍ରହାର ସ୍ମରଣକରି ମୂର୍ଖତାହେତୁ ତାଙ୍କୁ ହତ୍ୟା କରିବାକୁ ଇଚ୍ଛା କରିଥିଲି । ସେ ପ୍ରକାଣ୍ଡ ଧନୁ ଆକର୍ଷଣ କରି ଗରୁଡ଼ ଏବଂ ପବନଙ୍କପରି ଗର୍ଜନ କରୁଥିବା ତିନୋଟି ଶତ୍ରୁସଂହାରକାରୀ ଶାଣିତ ଶର ନିକ୍ଷେପ କଲେ । ସେହି ବଜ୍ରସଦୃଶ ମହାଭୟଙ୍କର ରକ୍ତପାୟୀ ନତପର୍ବ ଶର ତିନିଟିଯାକ ଏକ-ସଙ୍ଗରେ ଆସିଲେ । ମୁଁ ପୂର୍ବେ ରାମଙ୍କ ଭୟ ଅନୁଭବ କରିଥିବାରୁ ତାହାଙ୍କର ପରାକ୍ରମ ଜାଣି ଚଞ୍ଚଳଭାବରେ ସେଠାରୁ ପଳାଇ ଆସି ରକ୍ଷା ପାଇଗଲି । ମାତ୍ର ସେହି ଅନ୍ୟ ଦୁଇଟି ରାକ୍ଷସ ନିହତ ହେଲେ । ମୁଁ ରାମଙ୍କ ଶରରୁ ରକ୍ଷାପାଇ କୌଣସିମତେ ପ୍ରାଣ ରକ୍ଷାକରି ଏଠାକୁ ପଳାଇ ଆସି ଏଠାରେ ସମାହିତଚିତ୍ତରେ ଉପଯୁକ୍ତ ତାପସବ୍ରତ ଗ୍ରହଣ କରିଅଛି । ହେ ରାବଣ ! ମୁଁ ଭୟଭୀତ ହୋଇ

ଗୃହୀତଧନୁଷଂ ରାମଂ ପାଶହସ୍ତମିବାନ୍ତକମ୍ ।
ଅପି ରାମସହସ୍ରାଣି ଭୀତଃ ପଶ୍ୟାମି ରାବଣ । ୧୫ ।
ରାମଭୂତମିଦଂ ସର୍ବମରଣ୍ୟଂ ପ୍ରତିଭାତି ମେ ।
ରାମମେବ ହି ପଶ୍ୟାମି ରହିତେ ରାକ୍ଷସାଧିପ । ୧୬ ।
ଦୃଷ୍ଟ୍ୱା ସ୍ୱପ୍ନଗତଂ ରାମମୁଦ୍ଭ୍ରାମାମି ବିଚେତନଃ ।
ରକାରାଦୀନି ନାମାନି ରାମତ୍ରସ୍ତସ୍ୟ ରାବଣ । ୧୭ ।
ରତ୍ନାନି ଚ ରଥାଶ୍ଚୈବ ବିତ୍ରାସଂ ଜନୟନ୍ତି ମେ ।
ଅହଂ ତସ୍ୟ ପ୍ରଭାବଜ୍ଞୋ ନ ଯୁଦ୍ଧଂ ତେନ ତେ କ୍ଷମମ୍ । ୧୮ ।
ବଳିଂ ବା ନମୁଚିଂ ବାପି ହନ୍ୟାଦ୍ଧି ରଘୁନନ୍ଦନଃ ।
ରଣେ ରାମେଣ ଯୁଧ୍ୟସ୍ୱ କ୍ଷମାଂ ବା କୁରୁ ରାକ୍ଷସ । ୧୯ ।
ନ ତେ ରାମକଥା କାର୍ଯା ଯଦି ମାଂ ଦ୍ରଷ୍ଟୁମିଚ୍ଛସି ।
ବହବଃ ସାଧବୋ ଲୋକେ ଯୁକ୍ତା ଧର୍ମମନୁଷ୍ଠିତାଃ । ୨୦ ।
ପରେଷାମପରାଧେନ ବିନଷ୍ଟାଃ ସପରିଚ୍ଛଦାଃ ।
ସୋଽହଂ ତବାପରାଧେନ ବିନଶ୍ୟେୟଂ ନିଶାଚର । ୨୧ ।
କୁରୁ ଯତ୍ତେ କ୍ଷମଂ ତତ୍ତ୍ୱମହଂ ତ୍ୱାଂ ନାନୁଯାମି ହ ।
ରାମଶ୍ଚ ହି ମହାତେଜା ମହାସତ୍ତ୍ୱୋ ମହାବଳଃ । ୨୨ ।

---

ପ୍ରତିବୃକ୍ଷରେ ବଲ୍କଳ ଓ କୃଷ୍ଣାଜିନଧାରୀ ଧନୁର୍ଦ୍ଧାରୀ ରାମଙ୍କୁ ପାଶହସ୍ତ ଯମଙ୍କ ସଦୃଶ ସହସ୍ରମୂର୍ତ୍ତିରେ ଦେଖୁଅଛି ।୮-୧୫। ହେ ରାକ୍ଷସରାଜ ! ଏ ସମସ୍ତ ଅରଣ୍ୟ ମୋତେ ରାମମୟ ଦେଖାଯାଉଅଛି । ମୁଁ ନିର୍ଜନ ସ୍ଥାନରେ କେବଳ ରାମଙ୍କୁହିଁ ଦେଖୁଅଛି । ୧୬ । ମୁଁ ସ୍ୱପ୍ନରେ ରାମଙ୍କୁ ଦେଖି ସଂଜ୍ଞାହୀନ ଏବଂ ଉଦ୍ଭ୍ରାନ୍ତ ହୋଇ-ପଡ଼ୁଛି । ହେ ରାବଣ ! ମୁଁ ରାମର ଭୟରେ ଭୀତ ହୋଇଥିବାରୁ 'ରତ୍ନ' 'ରଥ' ପ୍ରଭୃତି 'ର'କାର ମୂଳରେ ଥିବା ଶବ୍ଦ ଶୁଣିବାମାତ୍ରେ ମୋ ମନରେ ଭୟ ଜାତ ହେଉଛି । ମୁଁ ତାଙ୍କର ପ୍ରଭାବ ଭଲକରି ଜାଣେ, ସୁତରାଂ ତାଙ୍କ ସହିତ ଯୁଦ୍ଧ କରିବାକୁ ତୁ ସମର୍ଥ ନୋହୁ ।୧୭-୧୮। ରଘୁନନ୍ଦନ ରାମ ବଳି ବା ନମୁଚିକୁ ମଧ୍ୟ ହତ୍ୟା କରିପାରନ୍ତି । ହେ ରାକ୍ଷସ ! ତୁମେ ଯୁଦ୍ଧରେ ରାମଙ୍କ ସହିତ ଯୁଦ୍ଧକର ବା ତାଙ୍କୁ କ୍ଷମାକର;କିନ୍ତୁ ମୋତେ ଯଦି ଦେଖିବାକୁ ଇଚ୍ଛାକର ତେବେ ମୋପାଖରେ ରାମକଥା କହ ନାହିଁ । ଏ ସଂସାରରେ ବହୁସଂଖ୍ୟକ ଉପଯୁକ୍ତ ଧର୍ମନିଷ୍ଠ ସାଧୁ ବ୍ୟକ୍ତି ଅନ୍ୟର ଅପରାଧରେ ସପରିବାରରେ ବିନଷ୍ଟ ହୋଇଅଛନ୍ତି । ହେ ନିଶାଚର ! ସେହିପରି ମୋତେ ମଧ୍ୟ ତୋର ଅପରାଧହେତୁ ବିନଷ୍ଟ ହେବାକୁ ହେବ ।୧୯-୨୧। ତୁମେ ଯାହା କରିବାର ଉପଯୁକ୍ତ ମନେକରୁଛ ତାହା କର, ମାତ୍ର ମୁଁ କେବେ ତୁମ ସଙ୍ଗରେ ଯିବି ନାହିଁ ।

ଅପି ରାକ୍ଷସଲୋକସ୍ୟ ଭବେଦନ୍ତକରୋଽପି ହି ।
ଯଦି ଶୂର୍ପଣଖାହେତୋର୍ଜନସ୍ଥାନଗତଃ ଖରଃ । ୨୩
ଅତିବୃତ୍ତୋ ହତଃ ପୂର୍ବଂ ରାମେଣାକ୍ଲିଷ୍ଟକର୍ମଣା ।
ଅତ୍ର ବ୍ରୂହି ଯଥାତତ୍ତ୍ୱଂ କୋ ରାମସ୍ୟ ବ୍ୟତିକ୍ରମଃ । ୨୪ ।
ଇଦଂ ବଚୋ ବନ୍ଧୁହିତାର୍ଥିନା ମୟା
ଯଥୋଚ୍ୟମାନଂ ଯଦି ନାଭିପତ୍ସ୍ୟସେ ।
ସବାନ୍ଧବସ୍ତ୍ୟକ୍ଷ୍ୟସି ଜୀବିତଂ ରଣେ
ହତୋଽଦ୍ୟ ରାମେଣ ଶରୈରଜିହ୍ମଗୈଃ । ୨୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ ଅରଣ୍ୟକାଣ୍ଡେ ସାହାଯ୍ୟକାନଭ୍ୟୁପଗମୋ ନାମ
ଏକୋନଚତ୍ୱାରିଂଶଃ ସର୍ଗଃ

———— —

ସେହି ମହାତେଜା, ମହାବଳୀ ଏବଂ ମହାପ୍ରାଣ ରାମ ଯଥାର୍ଥରେ ରାକ୍ଷସକୁଳର ଅନ୍ତକାରୀ ଯମସଦୃଶ । ଯଦିବା ଏଥିପୂର୍ବରୁ ଜନସ୍ଥାନବାସୀ ଦୁର୍ବୃତ୍ତ ଖର ଶୂର୍ପଣଖା ଲାଗି ଅକ୍ଲିଷ୍ଟକର୍ମା ରାମଙ୍କକର୍ତ୍ତୃକ ନିହତ ହୋଇଅଛି; ତଥାପି ତୁମେ ଯଥାର୍ଥରେ କହ, ଏଥିରେ ରାମର ଦୋଷ କଅଣ ? ମୁଁ ତୁମ୍ଭର ବନ୍ଧୁଭାବରେ ତୁମ୍ଭର ହିତ କାମନା କରି ଯଥାର୍ଥରୂପେ ଏକଥା କହିଲି । ତୁମେ ଯଦି ଏକଥା ଗ୍ରହଣ ନ କର, ତେବେ ରାମକର୍ତ୍ତୃକ ଅକୁଟିଳଗାମୀ ଶରଦ୍ୱାରା ଯୁଦ୍ଧରେ ନିହତ ହୋଇ ସବାନ୍ଧବରେ ପ୍ରାଣତ୍ୟାଗ କରିବ ।"୨୨-୨୫।

————

# ଚତ୍ୱାରିଂଶଃ ସର୍ଗଃ

## ମାୟାମୃଗରୂପପରିଗ୍ରହନିର୍ବନ୍ଧଃ

ମାରଚେନ ତୁ ତଦ୍ ବାକ୍ୟଂ କ୍ଷମଂ ଯୁକ୍ତଂ ନିଶାଚରଃ ।
ଉକ୍ତୋ ନ ପ୍ରତିଜଗ୍ରାହ ମର୍ତ୍ତୁକାମ ଇବୌଷଧମ୍ । ୧ ।
ତଂ ପଥ୍ୟହିତବକ୍ତାରଂ ମାରୀଚଂ ରାକ୍ଷସାଧିପଃ ।
ଅବ୍ରବୀତ୍ ପରୁଷଂ ବାକ୍ୟମଯୁକ୍ତଂ କାଳଚୋଦିତଃ । ୨ ।
ଦୁଷ୍କୁଳୈତଦଯୁକ୍ତାର୍ଥଂ ମାରୀଚ ମୟି କଥ୍ୟତେ ।
ବାକ୍ୟଂ ନିଷ୍ଫଳମତ୍ୟର୍ଥମ୍ନୁପ୍ତଂ ବୀଜମିବୋଷରେ । ୩ ।
ତ୍ୱଦ୍ବାକ୍ୟୈର୍ନ ତୁ ମାଂ ଶକ୍ୟଂ ଭେତ୍ତୁଂ ରାମସ୍ୟ ସଂଯୁଗେ ।
ପାପଶୀଳସ୍ୟ ମୂର୍ଖସ୍ୟ ମାନୁଷସ୍ୟ ବିଶେଷତଃ । ୪ ।
ଯସ୍ତ୍ୟକ୍ତ୍ୱା ସୁହୃଦୋ ରାଜ୍ୟଂ ମାତରଂ ପିତରଂ ତଥା ।
ସ୍ତ୍ରୀବାକ୍ୟଂ ପ୍ରାକୃତଂ ଶ୍ରୁତ୍ୱା ବନମେକପଦେ ଗତଃ । ୫ ।
ଅବଶ୍ୟଂ ତୁ ମୟା ତସ୍ୟ ସଂଯୁଗେ ଖରଘାତିନଃ ।
ପ୍ରାଣୈଃ ପ୍ରିୟତରା ସୀତା ହର୍ତ୍ତବ୍ୟା ତବ ସନ୍ନିଧୌ । ୬ ।

---

## ୪୦ଶ ସର୍ଗ

### (ମାୟାମୃଗରୂପଗ୍ରହଣ ପ୍ରସ୍ତାବ)

ମରଣୋନ୍ମୁଖ ବ୍ୟକ୍ତି ଯେପରି ଔଷଧ ଗ୍ରହଣ କରେ ନାହିଁ, ସେହିପରି ମାରୀଚକଥିତ ସେହି ଯୁକ୍ତିଯୁକ୍ତ ଏବଂ ହିତକର ପରାମର୍ଶ ରାବଣ ଗ୍ରହଣ କଲା ନାହିଁ । । ୧ । କାଳପ୍ରେରିତ ରାକ୍ଷସାଧିପତି ରାବଣ ହିତ ଏବଂ ସ୍ୱାସ୍ଥ୍ୟକର ପରାମର୍ଶଦାତା ମାରୀଚକୁ ଅଯଥୋଚିତ କଠୋର ବାକ୍ୟରେ କହିଲା । ୨ । "ହେ ଦୁଷ୍କୁଳଜାତ ମାରୀଚ ! ତୁ ମୋ ବିଷୟରେ ଏ ଅଯୌକ୍ତିକ କଥା କାହିଁକି କହୁଛୁ ? ଉଷରଭୂମିରେ ବପନ କରାଯାଇଥିବା ବୀଜ ପରି ମୋନିକଟରେ ତୋର ଏହି କଥା ସମ୍ପୂର୍ଣ୍ଣ ନିଷ୍ଫଳ ଅଟେ । ତୃତୀକଥାରେ ପାପାଚାରୀ ମୂର୍ଖ ବିଶେଷତଃ ମନୁଷ୍ୟ ରାମର ସହିତ ମୁଁ ଯୁଦ୍ଧ କରିବାକୁ କଦାପି ନିବୃତ୍ତ ହେବି ନାହିଁ । ୪ । ଯେଉଁଲୋକ ସାମାନ୍ୟ ସ୍ତ୍ରୀର କଥା ଶୁଣି ମାତା, ପିତା, ରାଜ୍ୟ ଏବଂ ସୁହୃଦବର୍ଗ ପରିତ୍ୟାଗ କରି ଏକମୁହାଁ ହୋଇ ବନକୁ ଚାଲିଆସିଛି, ଯୁଦ୍ଧରେ ଖରର ସଂହାର କରିଥିବା ସେହି ରାମର ପ୍ରାଣରୁ ବଳି ପ୍ରିୟତମା ସୀତାକୁ ମୁଁ ତୋହରି ସମ୍ମୁଖରେ ନିଶ୍ଚୟ ହରଣ କରିବି ।୫-୬।

ଏବଂ ମେ ନିଶ୍ଚିତା ବୁଦ୍ଧିର୍ହୃଦି ମାରୀଚ ବର୍ତ୍ତତେ ।
ନ ବ୍ୟାବର୍ତ୍ତୟିତୁଂ ଶକ୍ୟା ସେନ୍ଦ୍ରୈରପି ସୁରାସୁରୈଃ । ୭ ।
ଦୋଷଂ ଗୁଣଂ ବା ସଂପୃଷ୍ଟସ୍ତ୍ୱମେବଂ ବକ୍ତୁମର୍ହସି ।
ଅପାୟଂ ବାପ୍ୟୁପାୟଂ ବା କାର୍ଯ୍ୟସ୍ୟାସ୍ୟ ବିନିଶ୍ଚୟେ । ୮ ।
ସଂପୃଷ୍ଟେନ ତୁ ବକ୍ତବ୍ୟଂ ସଚିବେନ ବିପଶ୍ଚିତା ।
ଉଦ୍ୟତାଞ୍ଜଳିନା ରାଜ୍ଞୋ ଯ ଇଚ୍ଛେଦ୍‌ଭୂତିମାତ୍ମନଃ । ୯ ।
ବାକ୍ୟମପ୍ରତିକୂଳଂ ତୁ ମୃଦୁପୂର୍ବଂ ହିତଂ ଶୁଭମ୍ ।
ଉପଚାରେଣ ଯୁକ୍ତଂ ଚ ବକ୍ତବ୍ୟୋ ବସୁଧାଧିପଃ । ୧୦ ।
ସାବମର୍ଦ୍ଦଂ ତୁ ଯଦ୍ ବାକ୍ୟଂ ମାରୀଚ ହିତମୁଚ୍ୟତେ ।
ନାଭିନନ୍ଦତି ତଦ୍‌ରାଜା ମାନାର୍ହୋ ମାନବର୍ଜ୍ଜିତମ୍ । ୧୧ ।
ପଞ୍ଚ ରୂପାଣି ରାଜାନୋ ଧାରୟନ୍ତ୍ୟମିତୌଜସଃ ।
ଅଗ୍ନେରିନ୍ଦ୍ରସ୍ୟ ସୋମସ୍ୟ ଯମସ୍ୟ ବରୁଣସ୍ୟ ଚ । ୧୨ ।
ଔଷ୍ଣ୍ୟଂ ତଥା ବିକ୍ରମଂ ଚ ସୌମ୍ୟଂ ଦଣ୍ଡଂ ପ୍ରସନ୍ନତାମ୍ ।
ଧାରୟନ୍ତି ମହାତ୍ମାନୋ ରାଜାନଃ କ୍ଷଣଦାଚର । ୧୩ ।

---

ହେ ମାରୀଚ ! ମୁଁ ଏହି ସଙ୍କଳ୍ପ ହୃଦୟରେ ନିଶ୍ଚୟ କରିଅଛି । ମୋର ଏ ସଂକଳ୍ପକୁ ସୁରାସୁରଙ୍କ ସହିତ ଇନ୍ଦ୍ର ମଧ୍ୟ ଅନ୍ୟଥା କରିପାରିବେ ନାହିଁ । ୭ । ଏ ସମ୍ପର୍କରେ ଗୁଣଦୋଷ ବା ଉପାୟ କିମ୍ବା ଅପାୟ ବିଷୟରେ ଅଥବା କ'ଣ କର୍ତ୍ତବ୍ୟ ବା ଅକର୍ତ୍ତବ୍ୟ ତାହା ସ୍ଥିର କରିବାବେଳେ ତୋତେ ପଚାରିଥିଲେ ତୋହର ଏପରି କହିବା ଉଚିତ ହୋଇଥାନ୍ତା । ନିଜର ମଙ୍ଗଳ ଇଚ୍ଛା କରୁଥିବା ବିଦ୍ୱାନ୍ ମନ୍ତ୍ରୀକୁ କୌଣସି ବିଷୟରେ ପଚାରିଲେ ସେ ରାଜାସମକ୍ଷରେ କୃତାଞ୍ଜଳି ହୋଇ ସେ ବିଷୟ କହିବା ଉଚିତ । ୮-୯ । ରାଜା ସମକ୍ଷରେ ସମ୍ମାନଯୁକ୍ତ, ମନୋହର, ମଙ୍ଗଳଜନକ ଅବିରୁଦ୍ଧ କଥା ମୃଦୁଭାବରେ କହିବା ଉଚିତ । ୧୦ । ମଙ୍ଗଳଜନକ କଥା ଯଦି ଅପମାନ ସହକାରେ କୁହାଯାଏ, ତେବେ ମାନନୀୟ ରାଜା ସେହି ସମ୍ମାନରହିତ ବାକ୍ୟକୁ କଦାପି ଅଭିନନ୍ଦନ କରେ ନାହିଁ । ୧୧ । ଅପରିମିତ ତେଜସମ୍ପନ୍ନ ରାଜାମାନେ ଅଗ୍ନି, ଇନ୍ଦ୍ର, ଚନ୍ଦ୍ର, ଯମ ଓ ବରୁଣ ଏହି ପାଞ୍ଚଗୋଟି ଦେବତାଙ୍କର ରୂପଧାରଣ କରିଥାନ୍ତି । ୧୨ । ହେ ନିଶାଚର ! ମହାତ୍ମା ରାଜାମାନେ ଉଷ୍ଣତା, ବିକ୍ରମ, ସୌନ୍ଦର୍ଯ୍ୟ, ଦଣ୍ଡ ଏବଂ ପ୍ରସନ୍ନତା ଏହି ଗୁଣମାନ ଧାରଣ କରିଥାନ୍ତି । ୧୩ ।

ତସ୍ମାତ୍ ସର୍ବାସ୍ୱବସ୍ଥାସୁ ମାନ୍ୟାଃ ପୂଜ୍ୟାଶ୍ଚ ପାର୍ଥିବାଃ ।
ତ୍ୱଂ ତୁ ଧର୍ମମବଜ୍ଞାୟ କେବଳଂ ମୋହମାସ୍ଥିତଃ । ୧୪।
ଅଭ୍ୟାଗତଂ ମାଂ ଦୌରାତ୍ମ୍ୟାତ୍ପରୁଷଂ ବଦସୀଦୃଶମ୍ ।
ଗୁଣଦୋଷୌ ନ ପୃଚ୍ଛାମି କ୍ଷମଂ ଚାତ୍ମନି ରାକ୍ଷସ । ୧୫ ।
ମୟୋକ୍ତଂ ତବ ଚୈତାବତ୍ସଂପ୍ରତ୍ୟମିତବିକ୍ରମ ।
ଅସ୍ମିଂସ୍ତୁ ତ୍ୱଂ ମହାକୃତ୍ୟେ ସାହାଯ୍ୟଂ କର୍ତୁମର୍ହସି । ୧୬ ।
ଶୃଣୁ ତତ୍କର୍ମ ସାହାଯ୍ୟେ ଯତ୍ କାର୍ଯ୍ୟଂ ବଚନାନ୍ମମ ।
ସୌବର୍ଣ୍ଣସ୍ତ୍ୱଂ ମୃଗୋ ଭୂତ୍ୱା ଚିତ୍ରୋ ରଜତବିନ୍ଦୁଭିଃ । ୧୭ ।
ଆଶ୍ରମେ ତସ୍ୟ ରାମସ୍ୟ ସୀତାୟାଃ ପ୍ରମୁଖେ ଚର ।
ପ୍ରଲୋଭୟିତ୍ୱା ବୈଦେହୀଂ ଯଥେଷ୍ଟଂ ଗନ୍ତୁମର୍ହସି । ୧୮ ।
ତ୍ୱାଂ ତୁ ମାୟାମୃଗଂ ଦୃଷ୍ଟ୍ୱା କାଞ୍ଚନଂ ଜାତବିସ୍ମୟା ।
ଆନୟୈନମିତି କ୍ଷିପ୍ରଂ ରାମଂ ବକ୍ଷ୍ୟତି ମୈଥିଳୀ । ୧୯ ।
ଅପକ୍ରାନ୍ତେ ତୁ କାକୁତ୍ସ୍ଥେ ଦୂରଂ ଗତ୍ୱାପ୍ୟୁଦାହର ।
ହା ସୀତେ ଲକ୍ଷ୍ମଣେତ୍ୟେବଂ ରାମବାକ୍ୟାନୁରୂପକମ୍ । ୨୦ ।

ସୁତରାଂ ରାଜାମାନେ ସବୁ ଅବସ୍ଥାରେ ମାନନୀୟ ଏବଂ ପୂଜ୍ୟ ଅଟନ୍ତି । ମାତ୍ର ତୁ ଧର୍ମ ନ ବୁଝି କେବଳ ମୋହର ବଶୀଭୂତ ହୋଇଅଛୁ । ୧୪ । ହେ ରାକ୍ଷସ ! ତୁ ଦୁର୍ବୁଦ୍ଧି ହେତୁ ତୋର ଅତିଥିରୂପେ ଆସିଥିବା ମୋତେ ଏପରି କଠୋର ବାକ୍ୟ କହୁଅଛୁ । ଏ କାର୍ଯ୍ୟର ଗୁଣଦୋଷ ବା ମୋପକ୍ଷରେ ଏହା ମଙ୍ଗଳକର କି ନୁହେଁ ସେକଥା ମୁଁ ତୋତେ ପଚାରୁ ନାହିଁ । ୧୫ । ହେ ଅମିତବିକ୍ରମ ରାକ୍ଷସ ! ମୁଁ ତୋତେ କେବଳ ଏତିକି କହୁଛି ଯେ ତୁ ଏ ମହତ୍ କାର୍ଯ୍ୟରେ ମୋତେ ସାହାଯ୍ୟ କରିବା ଉଚିତ । ୧୬ । ମୋର କଥାନୁସାରେ ମୋର ସାହାଯ୍ୟନିମନ୍ତେ ତୋତେ ଯେ କାର୍ଯ୍ୟ କରିବାକୁ ହେବ, ତାହା ମୁଁ କହୁଛି ଶୁଣ । ତୁ ରଜତବିନ୍ଦୁରେ ଚିହ୍ନିତ ସୁବର୍ଣ୍ଣ ମୃଗ ହୋଇ ସେହି ରାମର ଆଶ୍ରମଠାରେ ସୀତାସମ୍ମୁଖରେ ବିଚରଣ କରିବୁ । ଏହିପରିଭାବରେ ତୁ ବୈଦେହୀଙ୍କୁ ପ୍ରଲୋଭିତ କରି ଯଥାଭିଳଷିତ ସ୍ଥାନକୁ ଚାଲିଯିବୁ । ୧୭-୧୮ । ମୈଥିଳୀ ତୋତେ ମାୟାମୟ ସ୍ୱର୍ଣ୍ଣମୃଗରୂପରେ ଦେଖି ବିସ୍ମିତ ହୋଇ "ଶୀଘ୍ର ଏହି ମୃଗକୁ ଆଣିଦିଅ" ବୋଲି ରାମଙ୍କୁ କହିବ । ୧୯ । ଅନନ୍ତର କାକୁସ୍ଥ ରାମ ଚାଲିଗଲାଉତ୍ତାରୁ ତୁ ଦୂରକୁ ଯାଇ ରାମର ସ୍ୱର ଅନୁକରଣ କରି, "ହା ସୀତେ ! ହା ଲକ୍ଷ୍ମଣ !" ଏହି ବାକ୍ୟ ଉଚ୍ଚାର କରିବୁ । ୨୦ । ସେହି

ତଚ୍ଛ୍ରୁତ୍ୱା ରାମପଦବୀଂ ସୀତୟା ଚ ପ୍ରଚୋଦିତଃ ।
ଅନୁଗଚ୍ଛତି ସଂଭ୍ରାନ୍ତଃ ସୌମିତ୍ରିରପି ସୌହୃଦାତ୍ । ୨୧ ।
ଅପକ୍ରାନ୍ତେ ଚ କାକୁତ୍‌ସ୍ଥେ ଲକ୍ଷ୍ମଣେ ଚ ଯଥାସୁଖମ୍ ।
ଆହରିଷ୍ୟାମି ବୈଦେହୀଂ ସହସ୍ରାକ୍ଷଃ ଶଚୀମିବ । ୨୨ ।
ଏବଂ କୃତ୍ୱା ତ୍ୱିଦଂ କାର୍ଯ୍ୟଂ ଯଥେଷ୍ଟଂ ଗଚ୍ଛ ରାକ୍ଷସ ।
ରାଜ୍ୟସ୍ୟାର୍ଧଂ ପ୍ରଦାସ୍ୟାମି ମାରୀଚ ତବ ସୁବ୍ରତ । ୨୩ ।
ଗଚ୍ଛ ସୌମ୍ୟ ଶିବଂ ମାର୍ଗଂ କାର୍ଯ୍ୟସ୍ୟାସ୍ୟ ବିବୃଦ୍ଧୟେ ।
ଅହଂ ତ୍ୱାନୁଗମିଷ୍ୟାମି ସରଥୋ ଦଣ୍ଡକାବନମ୍ । ୨୪ ।
ପ୍ରାପ୍ୟ ସୀତାମଯୁଦ୍ଧେନ ବଞ୍ଚୟିତ୍ୱା ତୁ ରାଘବମ୍ ।
ଲଙ୍କାଂ ପ୍ରତିଗମିଷ୍ୟାମି କୃତକାର୍ଯ୍ୟଃ ସହ ତ୍ୱୟା ।୨୫ ।
ନ ଚେତ୍ କରୋଷି ମାରୀଚ ହନ୍ମି ତ୍ୱାମହମଦ୍ୟ ବୈ ।
ଏତତ୍ କାର୍ଯ୍ୟମବଶ୍ୟଂ ମେ ବଳାଦପି କରିଷ୍ୟସି । ୨୬ ।
ରାଜ୍ଞୋ ହି ପ୍ରତିକୂଳସ୍ଥୋ ନ ଜାତୁ ସୁଖମେଧତେ । ୨୭।

---

ଶବ୍ଦଶୁଣି ଲକ୍ଷ୍ମଣ ମଧ୍ୟ ସୀତାଙ୍କ ଆଦେଶରେ ଏବଂ ସୌହାର୍ଦ୍ଦ୍ୟହେତୁ ଉଦ୍‌ବିଗ୍ନ ହୋଇ ରାମଙ୍କ ପଥ ଅନୁସରଣ କରିଯିବ । ୨୧ । ଏହିପରିଭାବରେ ରାମ ଏବଂ ଲକ୍ଷ୍ମଣ ଉଭୟେ ସ୍ଥାନାନ୍ତରିତ ହୋଇଗଲେ ମୁଁ ମହେନ୍ଦ୍ର ଶଚୀଙ୍କୁ ହରଣ କଲାପରି ସୁଖରେ ବିଦେହନନ୍ଦିନୀଙ୍କୁ ନେଇଆସିବି । ୨୨ । ହେ ସୁବ୍ରତ ରାକ୍ଷସ ମାରୀଚ ! ତୁ ଏହିପରି ଏକାର୍ଯ୍ୟ ସମ୍ପାଦନ କରି ଯଥେଚ୍ଛା ଗମନକର । ମୁଁ ତୋତେ ମୋ ରାଜ୍ୟର ଅର୍ଦ୍ଧେକ ଦେବି । ୨୩ । ହେ ସୌମ୍ୟ ! ଏ କାର୍ଯ୍ୟର ସିଦ୍ଧି ନିମନ୍ତେ ତୁମେ ଶୁଭମାର୍ଗରେ ଗମନ କର । ମୁଁ ରଥରେ ବସି ତୁମ ପଛେ ପଛେ ଦଣ୍ଡକାରଣ୍ୟକୁ ଯିବି । ୨୪ । ମୁଁ ବିନା ଯୁଦ୍ଧରେ ସୀତାକୁ ଲାଭକରି ଏବଂ ରାମକୁ ପ୍ରତାରିତ କରି କୃତକାର୍ଯ୍ୟ ହୋଇ ତୁମ ସହିତ ଲଙ୍କାକୁ ପ୍ରତ୍ୟାଗମନ କରିବି । ୨୫ । ହେ ମାରୀଚ ! ତୁ ଯଦି ଏତକ ନକରିବୁ, ତାହାହେଲେ ତୋତେ ମୁଁ ଆଜି ନିଶ୍ଚୟ ବଧ କରିବି । ଏ କାର୍ଯ୍ୟ ଅନିଚ୍ଛା-ସତ୍ତ୍ୱେ ତୋତେ ଅବଶ୍ୟ କରିବାକୁ ହେବ । ରାଜାର ବିରୁଦ୍ଧାଚାରୀ ହୋଇ କେହି କେବେ ସୁଖଲାଭ କରେ ନାହିଁ ।୨୬-୨୭ । ତୁ ରାମ ନିକଟକୁ ଗଲେ ତୋର ଜୀବନ

ଆସାଦ୍ୟ ତଂ ଜୀବିତସଂଶୟସ୍ତେ
ମୃତ୍ୟୁର୍ଧ୍ରୁବୋ ହ୍ୟଦ୍ୟ ମୟା ବିରୁଧ୍ୟ ।
ଏତଦ୍ ଯଥାବତ୍ ପ୍ରତିଗୃହ୍ୟ ବୁଦ୍ଧ୍ୟା
ଯଦତ୍ର ପଥ୍ୟଂ କୁରୁ ତତ୍ତଥା ତ୍ୱମ୍ । ୨୮ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ମାୟାମୃଗରୂପପରିଗ୍ରହନିବନ୍ଧୋ
ନାମ ଚତ୍ୱାରିଂଶଃ ସର୍ଗଃ

---

ସଂଶୟାନ୍ୱିତ ହେବ । କିନ୍ତୁ ମୋ ସହିତ ବିରୁଦ୍ଧାଚରଣ କଲେ ଏହିକ୍ଷଣି ତୋର ମୃତ୍ୟୁ ନିଶ୍ଚୟ ଘଟିବ । ଏହି କଥା ବୁଦ୍ଧିଦ୍ୱାରା ଯଥାଯଥ ବିବେଚନାକରି ଏ ବିଷୟରେ ଯାହା ହିତକର, ତାହାହିଁ ତୁ କର । ୨୮ ।"

---

# ଏକଚତ୍ୱାରିଂଶଃ ସର୍ଗଃ

## ରାବଣନିନ୍ଦା

ଆଜ୍ଞପ୍ତୋ ରାବଣେନେତ୍ଥଂ ପ୍ରତିକୂଳଂ ଚ ରାଜବତ୍ ।
ଅବ୍ରବୀତ୍ ପରୁଷଂ ବାକ୍ୟଂ ନିଃଶଙ୍କୋ ରାକ୍ଷସାଧିପମ୍ । ୧ ।
କେନାୟମୁପଦିଷ୍ଟସ୍ତେ ବିନାଶଃ ପାପକର୍ମଣା ।
ସପୁତ୍ରସ୍ୟ ସରାଷ୍ଟ୍ରସ୍ୟ ସାମାତ୍ୟସ୍ୟ ନିଶାଚର । ୨ ।
କସ୍ତ୍ୱୟା ସୁଖିନା ରାଜନ୍ନାଭିନନ୍ଦତି ପାପକୃତ୍ ।
କେନେଦମୁପଦିଷ୍ଟଂ ତେ ମୃତ୍ୟୁଦ୍ୱାରମୁପାୟତଃ । ୩ ।
ଶତ୍ରବସ୍ତବସୁବ୍ୟକ୍ତଂ ହୀନବୀର୍ଯ୍ୟା ନିଶାଚରାଃ ।
ଇଚ୍ଛନ୍ତି ତ୍ୱାଂ ବିନଶ୍ୟନ୍ତମୁପରୁଦ୍ଧଂ ବଲୀୟସା । ୪ ।
କେନେଦମୁପଦିଷ୍ଟଂ ତେ କ୍ଷୁଦ୍ରେଣାହିତବାଦିନା ।
ଯସ୍ତ୍ୱାମିଚ୍ଛତି ନଶ୍ୟନ୍ତଂ ସ୍ୱକୃତେନ ନିଶାଚର । ୫ ।
ବଧ୍ୟାଃ ଖଲୁ ନ ହନ୍ୟନ୍ତେ ସଚିବାସ୍ତବ ରାବଣ ।
ଯେ ତ୍ୱାମୁତ୍ପଥମାରୂଢ଼ଂ ନ ନିଗୃହ୍ଣନ୍ତି ସର୍ବଶଃ । ୬ ।

---

## ୪୧ଶ ସର୍ଗ

( ମାରୀଚ କର୍ତ୍ତୃକ ରାବଣର ନିନ୍ଦା )

ରାକ୍ଷସରାଜ ରାବଣକର୍ତ୍ତୃକ ରାଜାପରି ଏହିପରିଭାବରେ ଇଚ୍ଛାବିରୁଦ୍ଧ ବିଷୟରେ ଆଦିଷ୍ଟ ହୋଇ ମାରୀଚ ନିଃଶଙ୍କଭାବରେ ତାହାକୁ କଠୋର ବାକ୍ୟରେ କହିଲା । ୧ । ହେ ନିଶାଚର ! କେଉଁ ପାପକର୍ମାବ୍ୟକ୍ତି ତୁମକୁ ରାଜ୍ୟ, ମନ୍ତ୍ରୀ, ପୁତ୍ର ସହିତ ତୁମ ନିଜର ଏହି ବିନାଶର ଉପଦେଶ ଦେଇଅଛି ? । ୨ । ହେ ରାଜନ୍ ! ତୁମେ ସୁଖୀ ହୋଇ ରହିବା କାହାକୁ ଭଲ ଲାଗୁନାହିଁ ? କେଉଁ ବ୍ୟକ୍ତି କୌଶଳକ୍ରମେ ତୁମ୍ଭର ଏହି ମୃତ୍ୟୁର ବାଟ ତୁମକୁ ଉପଦେଶ ଦେଇଅଛି । ୩ । ଏହା ସ୍ପଷ୍ଟ ଜଣାଯାଉଛି ଯେ ତୁମ୍ଭର ଶତ୍ରୁ ଦୁର୍ବଳ ରାକ୍ଷସମାନେ କୌଣସି ବଳବାନ୍ ବ୍ୟକ୍ତିଦ୍ୱାରା ଆକ୍ରାନ୍ତ ହୋଇ 'ତୁମେ ବିନଷ୍ଟ ହୁଅ' ଏହା ଇଚ୍ଛା କରୁଛନ୍ତି । ୪ । ହେ ନିଶାଚର ! କେଉଁ କ୍ଷୁଦ୍ରସ୍ୱଭାବ ଅହିତବାଦୀ ବ୍ୟକ୍ତି ତୁମକୁ ଏ ଉପଦେଶ ଦେଇଅଛି ? ତୁମେ ନିଜକାର୍ଯ୍ୟଦ୍ୱାରା ନିଜେ ବିନଷ୍ଟ ହେବାକୁ ସେ ନିଶ୍ଚୟ ଇଚ୍ଛା କରୁଅଛି । ୫ । ହେ ରାବଣ ! ତୁମେ କୁପଥଗାମୀ ହୋଇଥିଲେ ସୁଦ୍ଧା ଯେଉଁ ମନ୍ତ୍ରୀମାନେ ତୁମକୁ ସର୍ବଥା ସେଥିରୁ ନିବର୍ତ୍ତାଉ ନାହାନ୍ତି, ସେମାନେ ତୁମ୍ଭର ବଧ୍ୟ ।

ଅମାତ୍ୟୈଃ କାମବୃତ୍ତୋ ହି ରାଜା କାପଥମାଶ୍ରିତଃ ।
ନିଗ୍ରାହ୍ୟଃସର୍ବଥା ସଦ୍ଭିର୍ନ ନିଗ୍ରାହ୍ୟୋ ନିଗୃହ୍ୟସେ । ୭ ।
ଧର୍ମମର୍ଥଂ ଚ କାମଂ ଚ ଯଶଶ୍ଚ ଜୟତାଂ ବର ।
ସ୍ୱାମିପ୍ରସାଦାତ୍ସଚିବାଃ ପ୍ରାପ୍ନୁବନ୍ତି ନିଶାଚର । ୮ ।
ବିପର୍ଯ୍ୟେ ତୁ ତତ୍ସର୍ବଂ ବ୍ୟର୍ଥଂ ଭବତି ରାବଣ ।
ବ୍ୟସନଂ ସ୍ୱାମିବୈଗୁଣ୍ୟାତ୍ ପ୍ରାପ୍ନୁବନ୍ତୀତରେ ଜନାଃ । ୯ ।
ରାଜମୂଲୋ ହି ଧର୍ମଶ୍ଚ ଜୟଶ୍ଚ ଜୟତାଂ ବର ।
ତସ୍ମାତ୍ସର୍ବାସ୍ୱବସ୍ଥାସୁ ରକ୍ଷିତବ୍ୟା ନରାଧିପାଃ । ୧୦ ।
ରାଜ୍ୟଂ ପାଲୟିତୁଂ ଶକ୍ୟଂ ନ ତୀକ୍ଷ୍ଣେନ ନିଶାଚର ।
ନ ଚାପି ପ୍ରତିକୂଲେନ ନାବିନୀତେନ ରାକ୍ଷସ । ୧୧ ।
ଯେ ତୀକ୍ଷ୍ଣମନ୍ତ୍ରାଃ ସଚିବା ଭଜ୍ୟନ୍ତେ ସହ ତେନ ବୈ ।
ବିଷମେଷୁ ରଥାଃ ଶୀଘ୍ରା ମନ୍ଦସାରଥୟୋ ଯଥା । ୧୨ ।
ବହବଃ ସାଧବୋ ଲୋକେ ଯୁକ୍ତା ଧର୍ମମନୁଷ୍ଠିତାଃ ।
ପରେଷାମପରାଧେନ ବିନଷ୍ଟାଃ ସପରିଚ୍ଛଦାଃ । ୧୩ ।

---

କିନ୍ତୁ ତୁମେ ସେମାନଙ୍କୁ ହତ୍ୟା କରୁ ନାହଁ । ୭ । ସାଧୁ ମନ୍ତ୍ରୀମାନେ ଅସତ୍ପଥ ଅବଲମ୍ବନ କରିଥିବା ସ୍ୱେଚ୍ଛାଚାରୀ ରାଜାକୁ ସର୍ବଥା ନିବର୍ତ୍ତାଇବା ଉଚିତ । ତୁମକୁ ଏ କ୍ଷେତ୍ରରେ ନିବର୍ତ୍ତାଇବା ଉଚିତ, କିନ୍ତୁ ସେମାନେ ତୁମକୁ ସେଥିରୁ ନିବର୍ତ୍ତାଉ ନାହାନ୍ତି ।୭। ହେ ବିଜୟିଶ୍ରେଷ୍ଠ ରାକ୍ଷସ ! ମନ୍ତ୍ରୀମାନେ ସ୍ୱାମୀଙ୍କ ଅନୁଗ୍ରହରୁହିଁ ଧର୍ମ,ଅର୍ଥ,କାମ ଏବଂ ଯଶ ଲାଭ କରନ୍ତି । ୮ । ହେ ରାବଣ ! ସ୍ୱାମୀର ଦଶାବିପର୍ଯ୍ୟୟ ହେଲେ ସେ ସମସ୍ତ ବ୍ୟର୍ଥହୁଏ । ସ୍ୱାମୀର ଦୁର୍ଗୁଣହେତୁ ଅନ୍ୟ ସାଧାରଣ ଲୋକମାନେ ମଧ୍ୟ ବିପନ୍ନ ହୋଇଥାନ୍ତି । ୯ । ହେ ବିଜୟିଶ୍ରେଷ୍ଠ ! ଧର୍ମ ଓ ଜୟର ମୂଳ ରାଜା; ସୁତରାଂ ସକଳ ଅବସ୍ଥାରେହିଁ ରାଜାକୁ ବିଶେଷଭାବରେ ରକ୍ଷାକରିବା ବିଧେୟ । ୧୦ । ହେ ରାକ୍ଷସ ! ପ୍ରଜାମାନଙ୍କର ବିରୁଦ୍ଧାଚାରୀ ଅବିନୀତ ତୀକ୍ଷ୍ଣ ବ୍ୟକ୍ତି ରାଜ୍ୟପାଳନ କରିବାକୁ ସମର୍ଥ ହୁଏ ନାହଁ । ନତୋନ୍ନତ ପ୍ରଦେଶରେ ଅନୁପଯୁକ୍ତ ସାରଥିଦ୍ୱାରା ଚାଳିତ ବେଗଗାମୀ ରଥ ଯେପରି ସାରଥି ସହିତ ବିନାଶପ୍ରାପ୍ତ ହୁଏ, ସେହିପରି ତୀକ୍ଷ୍ଣ ମନ୍ତ୍ରଣାଦାତା ମନ୍ତ୍ରୀ ସହିତ ରାଜା ବିନଷ୍ଟ ହୋଇଥାଏ ।୧୧-୧୨। ଏ ସଂସାରରେ ଅନେକ ଧର୍ମାନୁଷ୍ଠାନକାରୀ ଉପଯୁକ୍ତ ସାଧୁଲୋକ ଅନ୍ୟର ଅପରାଧହେତୁରୁ ସବାନ୍ଧବେ ବିନଷ୍ଟ ହୋଇଅଛନ୍ତି । ୧୩ । ଶୃଗାଳରକ୍ଷିତ ମେଷଯୂଥ ଯେପରି

ସ୍ୱାମିନା ପ୍ରତିକୂଲେନ ପ୍ରଜାସ୍ତୀକ୍ଷ୍ଣେନ ରାବଣ ।
ରକ୍ଷ୍ୟମାଣା ନ ବର୍ଦ୍ଧନ୍ତେ ମେଷା ଗୋମାୟୁନା ଯଥା । ୧୪ ।
ଅବଶ୍ୟଂ ବିନଶିଷ୍ୟନ୍ତି ସର୍ବେ ରାବଣ ରାକ୍ଷସାଃ ।
ଯେଷାଂ ତ୍ୱଂ କର୍କଶୋ ରାଜା ଦୁର୍ବୁଦ୍ଧିରଜିତେନ୍ଦ୍ରିୟଃ । ୧୫ ।
ତଦିଦଂ କାକତାଲୀୟଂ ଘୋରମାସାଦିତଂ ମୟା ।
ଅତ୍ରୈବ ଶୋଚନୀୟସ୍ତ୍ୱଂ ସସୈନ୍ୟୋ ବିନଶିଷ୍ୟସି । ୧୬ ।
ମାଂ ନିହତ୍ୟ ତୁ ରାମୋଽସାବଚିରାତ୍ତ୍ୱାଂ ବଧିଷ୍ୟତି ।
ଅନେନ କୃତକୃତ୍ୟୋଽସ୍ମି ମ୍ରିୟେ ଯଦରିଣା ହତଃ । ୧୭ ।
ଦର୍ଶନାଦେବ ରାମସ୍ୟ ହତଂ ମାମବଧାରୟ ।
ଆତ୍ମାନଂ ଚ ହତଂ ବିଦ୍ଧି ହୃତ୍ୱା ସୀତାଂ ସବାନ୍ଧବମ୍ । ୧୮ ।
ଆନୟିଷ୍ୟସି ଚେତ୍ସୀତାମାଶ୍ରମାତ୍ସହିତୋ ମୟା ।
ନୈବ ତ୍ୱମସି ନାହଂ ଚ ନୈବ ଲଙ୍କା ନ ରାକ୍ଷସାଃ । ୧୯ ।

---

ଉତ୍ତରୋତ୍ତର ବୃଦ୍ଧି ପାଏ ନାହିଁ ସେହିପରି ହେ ରାବଣ ! ପ୍ରଜାର ପ୍ରତିକୂଳାଚାରୀ ତୀକ୍ଷ୍ଣ ସ୍ୱଭାବ ପ୍ରଭୁକର୍ତ୍ତୃକ ପାଳିତ ପ୍ରଜାର ସମୃଦ୍ଧି ହୁଏ ନାହିଁ । ୧୪ । ସୁତରାଂ ହେ ରାବଣ ! ତୁମ ପରି ନିଷ୍ଠୁର ଦୁର୍ବୁଦ୍ଧି, ଅଜିତେନ୍ଦ୍ରିୟ ବ୍ୟକ୍ତି ଯେଉଁମାନଙ୍କର ରାଜା, ସେହି ରାକ୍ଷସମାନେ ସମସ୍ତେ ବିନାଶ ଭଜିବେ । ୧୫ । ମୁଁ ଅକସ୍ମାତ୍ କାକତାଳୀୟ ନ୍ୟାୟରେ ଏହି ବିପଦରେ ପଡ଼ିଅଛି; ମାତ୍ର ପ୍ରକୃତରେ ତୁମର ବିଷୟରେହିଁ ଶୋଚନା କରିବାର କଥା । କାରଣ ଏହା ଫଳରେ ତୁମେହିଁ ସସୈନ୍ୟରେ ବିନଷ୍ଟ ହେବ । ୧୬ । ରାମ ମୋତେ ମାରି ଅଚିରେ ତୁମକୁ ସଂହାର କରିବେ । ମୁଁ ଯେ ଶତ୍ରୁହାତରେ ନିହତ ହୋଇ ମରିବି, ଏଥିରେହିଁ ମୁଁ କୃତାର୍ଥ ହେବି । ୧୭ । ତୁମେ ନିଶ୍ଚୟ ଜାଣ, ରାମଙ୍କୁ ଦେଖିବାମାତ୍ରେ ମୁଁ ନିଶ୍ଚୟ ନିହତ ହେଲି ଏବଂ ତୁମେ ସୀତାଙ୍କୁ ହରଣ କଲେହିଁ ନିଜେ ସକୁଟୁମ୍ବରେ ନିହତ ହେବ, ଏକଥା ଜାଣିରଖ । ୧୮ । ମୋ ସଙ୍ଗରେ ମିଶି ତୁ ଯଦି ସୀତାଙ୍କୁ ଆଶ୍ରମରୁ ଆଣିବୁ ତାହାହେଲେ ତୁ, ମୁଁ, ଲଙ୍କାପୁରୀ ବା ରାକ୍ଷସଗଣ କାହାରି ସତ୍ତା ରହିବ ନାହିଁ । ୧୯ । ହେ ରାକ୍ଷସ ! ମୁଁ ତୋର

ନବାର୍ଯମାଣସ୍ତୁ ମୟା ହିତୈଷିଣା
ନ ମୃଷ୍ୟସେ ବାକ୍ୟମିଦଂ ନିଶାଚର ।
ପରେତକଳ୍ପା ହି ଗତାୟୁଷୋ ନରା
ହିତଂ ନ ଗୃହ୍ଣନ୍ତି ସୁହୃଦ୍ଭିରୀରିତମ୍ । ୨୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଅରଣ୍ୟକାଣ୍ଡେ ରାବଣନିନ୍ଦା ନାମ ଏକଚତ୍ୱାରିଂଶଃ ସର୍ଗଃ ।

---

ହିତୈଷୀ, ମୁଁ ତୋତେ ବାରଣ କରୁଛି; ମାତ୍ର ମୋର ଏକଥାକୁ ତୁ ମୋଟେ ସହ୍ୟ କରୁନାହୁଁ । ଯେଉଁ ଗତାୟୁ ବ୍ୟକ୍ତିମାନଙ୍କର ଯମପୁରକୁ ଯିବା ନିଶ୍ଚିତ, ସେମାନେ ବନ୍ଧୁମାନଙ୍କଦ୍ୱାରା କଥିତ ହିତ ପରାମର୍ଶ ଗ୍ରହଣ କରନ୍ତି ନାହିଁ” । ୨୦ ।

# ଦ୍ୱିଚତ୍ୱାରିଂଶଃ ସର୍ଗଃ

## ସ୍ୱର୍ଣମୃଗପ୍ରେକ୍ଷଣମ୍

ଏବମୁକ୍ତ୍ୱା ତୁ ବଚନଂ ମାରୀଚୋ ରାବଣଂ ତତଃ ।
ଗଚ୍ଛାବେତ୍ୟବ୍ରବୀଦ୍ଦୀନୋ ଭୟାଦ୍ରାତ୍ରିଂଚରପ୍ରଭୋଃ । ୧ ।
ଦୃଷ୍ଟଃ ସୋଽହଂ ପୁନସ୍ତେନ ଶରଚାପାସିଧାରିଣା ।
ମଦ୍‌ବଧୋଦ୍ୟତଶସ୍ତ୍ରେଣ ବିନଷ୍ଟଂ ଜୀବିତଂ ଚ ମେ । ୨ ।
ନ ହି ରାମଂ ପରାକ୍ରମ୍ୟ ଜୀବନ୍ ପ୍ରତିନିବର୍ତ୍ତତେ ।
ବର୍ତ୍ତତେ ପ୍ରତିରୂପୋଽସୌ ଯମଦଣ୍ଡହତସ୍ୟ ତେ । ୩ ।
କିଂ ନୁ ଶକ୍ୟଂ ମୟା କର୍ତୁମେବଂ ତ୍ୱୟି ଦୁରାତ୍ମନି ।
ଏଷ ଗଚ୍ଛାମ୍ୟହଂ ତାତ ସ୍ୱସ୍ତି ତେଽସ୍ତୁ ନିଶାଚର । ୪ ।
ପ୍ରହୃଷ୍ଟସ୍ତ୍ୱଭବତ୍ତେନ ବଚନେନ ସ ରାବଣଃ ।
ପରିଷ୍ୱଜ୍ୟ ସୁସଂଶ୍ଳିଷ୍ଟମିଦଂ ବଚନମବ୍ରବୀତ୍ । ୫ ।
ଏତଚ୍ଛୌଣ୍ଡୀର୍ୟ୍ୟଯୁକ୍ତଂ ତେ ମଚ୍ଛନ୍ଦାଦିବ ଭାଷିତମ୍ ।
ଇଦାନୀମସି ମାରୀଚଃ ପୂର୍ବମନ୍ୟୋ ନିଶାଚରଃ । ୬ ।

---

## ୪୨ଶ ସର୍ଗ

### ( ସୁବର୍ଣ୍ଣମୃଗଦର୍ଶନ )

ଅନନ୍ତର ମାରୀଚ ରାବଣକୁ ଏହିକଥା କହିସାରି ଦୀନଭାବରେ ଭୟରେ କହିଲା "ହେ ପ୍ରଭୋ ରାକ୍ଷସ ! ହଉ, ତେବେ ଆମେ ଦୁହେଁ ଯିବା । ୧ । ସେହି ଧନୁଃଶର ଓ ଖଡ୍ଗଧାରୀ ଏବଂ ମୋର ବଧନିମନ୍ତେ ଶସ୍ତ୍ର ଉତ୍ତୋଳନ କରୁଥିବା ରାମ ମୋତେ ପୁଣି ଦେଖିବାମାତ୍ରେ ମୋର ଜୀବନ ବିନଷ୍ଟ ହେବ ।୨। ରାମ ସହିତ ପରାକ୍ରମ ଦେଖାଇ ଲୋକ କେବେ ବଞ୍ଚି ଫେରି ଆସେ ନାହିଁ । ତୁ ଯଦ୍ୟପି ଯମଦଣ୍ଡକୁ ବିଫଳ କରିଅଛୁ ତଥାପି ସେ ତୋର ସାକ୍ଷାତ ଯମଦଣ୍ଡରୂପେ ବିରାଜମାନ ହୋଇଅଛୁ । ୩ । ତୋପରି ଏହିରୂପ ଦୁରାତ୍ମା ବ୍ୟକ୍ତି ବିଷୟରେ ମୁଁ ଆଉ କ'ଣ କରିପାରିବି । ହେ ତାତ ରାକ୍ଷସ ! ତୁମ୍ଭର ମଙ୍ଗଳ ହେଉ । ହେଇଟି ମୁଁ ଯାଉଛି" ।୪। ରାବଣ ତାହାର ସେହିକଥା ଶୁଣି ଅତ୍ୟନ୍ତ ଆନନ୍ଦିତ ହେଲା ଏବଂ ତାହାକୁ ଗାଢ଼ଭାବରେ ଆଲିଙ୍ଗନ କରି କହିଲା ।୫। "ତୁ ଯେ ମୋର ମନମୁତାବକ ଏକଥା କହିଲୁ ଏହା ତୋର ବୀରତ୍ୱର ଉପଯୁକ୍ତ । ଏହା ଆଗରୁ ତୁ ଅନ୍ୟ ରାକ୍ଷସ ଥିଲୁ, ଏବେ ପ୍ରକୃତ ମାରୀଚ ବୋଲି ଜଣାଗଲୁ । ୬ ।

ଆରୁହ୍ୟତାମୟଂ ଶୀଘ୍ରଂ ଖଗୋ ରତ୍ନବିଭୂଷିତଃ ।
ମୟା ସହ ତଥା ଯୁକ୍ତଃ ପିଶାଚବଦନୈଃ ଖରୈଃ । ୭ ।
ପ୍ରଲୋଭୟିତ୍ୱା ବୈଦେହୀଂ ଯଥେଷ୍ଟଂ ଗନ୍ତୁମର୍ହସି ।
ତାଂ ଶୂନ୍ୟେ ପ୍ରସଭଂ ସୀତାମାନୟିଷ୍ୟାମି ମୈଥିଲୀମ୍ । ୮ ।
ତତୋ ରାବଣମାରୀଚୌ ବିମାନମିବ ତଂ ରଥମ୍ ।
ଆରୁହ୍ୟ ଯଯତୁଃ ଶୀଘ୍ରଂ ତସ୍ମାଦାଶ୍ରମମଣ୍ଡଳାତ୍ । ୯ ।
ତଥୈବ ତତ୍ର ପଶ୍ୟନ୍ତୌ ପତ୍ତନାନି ବନାନି ଚ ।
ଗିରୀଂଶ୍ଚ ସରିତଃ ସର୍ବା ରାଷ୍ଟ୍ରାଣି ନଗରାଣି ଚ ।୧୦।
ସମେତ୍ୟ ଦଣ୍ଡକାରଣ୍ୟଂ ରାଘବସ୍ୟାଶ୍ରମଂ ତତଃ ।
ଦଦର୍ଶ ସହମାରୀଚୋ ରାବଣୋ ରାକ୍ଷସାଧିପଃ । ୧୧ ।
ଅବତୀର୍ଯ ରଥାତ୍ତସ୍ମାତ୍ତତଃ କାଞ୍ଚନଭୂଷଣାତ୍ ।
ହସ୍ତେ ଗୃହୀତ୍ୱା ମାରୀଚଂ ରାବଣୋ ବାକ୍ୟମବ୍ରବୀତ୍ । ୧୨ ।
ଏତଦ୍ରାମାଶ୍ରମପଦଂ ଦୃଶ୍ୟତେ କଦଳୀବୃତମ୍ ।
କ୍ରିୟତାଂ ତତ୍ସଖେ ଶୀଘ୍ରଂ ଯଦର୍ଥଂ ବୟମାଗତାଃ । ୧୩ ।
ସ ରାବଣବଚଃ ଶ୍ରୁତ୍ୱା ମାରୀଚୋ ରାକ୍ଷସସ୍ତଦା ।
ମୃଗୋ ଭୂତ୍ୱାଶ୍ରମଦ୍ୱାରି ରାମସ୍ୟ ବିଚଚାର ହ । ୧୪ ।

---

ବର୍ତ୍ତମାନ ମୋ ସହିତ ଶୀଘ୍ର ଏହି ପିଶାଚସଦୃଶବଦନବିଶିଷ୍ଟ ଗର୍ଦ୍ଦଭସଂଯୋଜିତ ରତ୍ନବିଭୂଷିତ ଆକାଶଗାମୀ ରଥରେ ଆରୋହଣ କର । ୭ । ତୁ ସୀତାକୁ ପ୍ରଲୋଭିତ କରି ତତ୍ପରେ ତୋର ଯେଉଁଠାକୁ ଇଚ୍ଛା ସେଠାକୁ ଚାଲିଯିବୁ । ମୁଁ ମିଥିଳାରାଜ ଦୁହିତା ସୀତାକୁ ବଳାତ୍କାରେ ଆକାଶମାର୍ଗରେ ଆନୟନ କରିବି" । ୮ । ଅନନ୍ତର ରାବଣ ଓ ମାରୀଚ ଦୁହେଁ ବିମାନସଦୃଶ ସେହି ରଥରେ ଆରୋହଣ କରି ସେ ଆଶ୍ରମପ୍ରଦେଶରୁ ଶୀଘ୍ର ପ୍ରସ୍ଥାନ କଲେ । ୯ । ସେ ଦୁହେଁ ବିବିଧ ପତ୍ତନ, ବନ, ପର୍ବତ, ନଦୀ, ରାଷ୍ଟ୍ର ଓ ନଗରସମୂହ ଦେଖି ଦେଖି ଦଣ୍ଡକାରଣ୍ୟରେ ଉପସ୍ଥିତ ହେଲେ ଏବଂ ତତ୍‌ପରେ ରାକ୍ଷସରାଜ ରାବଣ ମାରୀଚ ସହିତ ରାମଙ୍କର ଆଶ୍ରମକୁ ଦେଖିଲା । ୧୦-୧୧ । ଅନନ୍ତର ରାବଣ ସ୍ୱର୍ଣ୍ଣବିଭୂଷିତ ସେହି ରଥରୁ ଓହ୍ଲାଇ ମାରୀଚର ହାତ ଧରି ତାକୁ କହିଲା । ୧୨ । "ହେ ସଖେ ! ହେଇଟି କଦଳୀ ବୃକ୍ଷ-ପରିବୃତ ରାମର ସେହି ଆଶ୍ରମ ଦେଖାଯାଉଅଛି । ଆମେ ଯେଉଁଥିପାଇଁ ଏଠାକୁ ଆସିଥାଇଁ ବର୍ତ୍ତମାନ ଶୀଘ୍ର ତାହା କର ।୧୩। ରାକ୍ଷସ ମାରୀଚ ରାବଣର କଥା ଶୁଣି ସେତେବେଳେ ମୃଗରୂପ ହୋଇ ରାମଙ୍କ ଆଶ୍ରମଦ୍ୱାରରେ ବିଚରଣ କରିବାକୁ ଲଗିଲା ।

ସ ତୁ ରୂପଂ ସମାସ୍ଥାୟ ମହଦଦ୍ଭୁତଦର୍ଶନମ୍ ।
ମଣିପ୍ରବରଶୃଙ୍ଗାଗ୍ରଃ ସିତାସିତମୁଖାକୃତିଃ । ୧୫ ।
ରକ୍ତପଦ୍ମୋତ୍ପଲମୁଖ ଇନ୍ଦ୍ରନୀଲୋତ୍ପଲଶ୍ରବାଃ ।
କିଂଚିଦଭ୍ୟୁନ୍ନତଗ୍ରୀବ ଇନ୍ଦ୍ରନୀଲଦଳାଧରଃ । ୧୬ ।
କୁନ୍ଦେନ୍ଦୁବଜ୍ରସଂକାଶମୁଦରଂ ଚାସ୍ୟ ଭାସ୍ୱରମ୍ ।
ମଧୂକନିଭପାର୍ଶ୍ୱଶ୍ଚ ପଦ୍ମକିଞ୍ଜଲ୍କସଂନିଭଃ । ୧୭ ।
ବୈଦୂର୍ଯ୍ୟସଂକାଶଖୁରସ୍ତନୁଜଙ୍ଘଃ ସୁସଂହତଃ ।
ଇନ୍ଦ୍ରାୟୁଧସବର୍ଣେନ ପୁଚ୍ଛେନୋର୍ଦ୍ଧ୍ୱଂ ବିରାଜତା । ୧୮ ।
ମନୋହରଃ ସ୍ନିଗ୍ଧବର୍ଣୋ ରତ୍ନୈର୍ନାନାବିଧୈର୍ବୃତଃ ।
କ୍ଷଣେନ ରାକ୍ଷସୋ ଜାତୋ ମୃଗଃ ପରମଶୋଭନଃ । ୧୯ ।
ବନଂ ପ୍ରଜ୍ୱଲୟନ୍ ରମ୍ୟଂ ରାମାଶ୍ରମପଦଂ ଚ ତତ୍ ।
ମନୋହରଂ ଦର୍ଶନୀୟଂ ରୂପଂ କୃତ୍ୱା ସ ରାକ୍ଷସଃ । ୨୦ ।
ପ୍ରଲୋଭନାର୍ଥଂ ବୈଦେହ୍ୟା ନାନାଧାତୁବିଚିତ୍ରିତମ୍ ।
ବିଚରନ୍ ଗଚ୍ଛତେ ତସ୍ମାଚ୍ଛାଦ୍ୱଲାନି ସମନ୍ତତଃ । ୨୧ ।
ରୂପ୍ୟୈର୍ବିନ୍ଦୁଶତୈଶ୍ଚିତ୍ରୋ ଭୂତ୍ୱା ସ ପ୍ରିୟଦର୍ଶନଃ ।
ବିଟପୀନାଂ କିସଲୟାନ୍ ଭଙ୍କ୍ତ୍ୱାଦନ୍ ବିଚଚାର ହ । ୨୨ ।

---

ଏହି ମୃଗର ଶୃଙ୍ଗାଗ୍ର ଉତ୍କୃଷ୍ଟ ଇନ୍ଦ୍ରନୀଳମଣିସଦୃଶ, ମୁଖାକୃତି ଶ୍ୱେତ ଓ କୃଷ୍ଣ ବର୍ଣ୍ଣରେ ବିଚିତ୍ରିତ, ମୁଖମଣ୍ଡଳ ରକ୍ତପଦ୍ମସଦୃଶ, କର୍ଣ୍ଣ ଇନ୍ଦ୍ରନୀଳପଦ୍ମସଦୃଶ, ଗ୍ରୀବାଦେଶ କିଞ୍ଚିତ୍ ଉନ୍ନତ, ଓଷ୍ଠ ଇନ୍ଦ୍ରନୀଳ ପଦ୍ମପାଖୁଡ଼ା ପରି, ଏହାର ଉଦର କୁନ୍ଦପୁଷ୍ପ ଚନ୍ଦ୍ର ଏବଂ ବଜ୍ରସଦୃଶ ଦୀପ୍ତିମାନ୍, ପାର୍ଶ୍ୱଦେଶ ଅଶୋକ ପୁଷ୍ପପରି, ବର୍ଣ୍ଣ ପଦ୍ମପରାଗପରି, ଖୁରା ବୈଦୂର୍ଯ୍ୟମଣିସଦୃଶ, ଜଙ୍ଘ କ୍ଷୀଣ, ସନ୍ଧି ସବୁ ଉତ୍ତମରୂପେ ବନ୍ଧ ଏବଂ ପୁଚ୍ଛଦେଶ ଇନ୍ଦ୍ରଧନୁପରି ଉପରକୁ ଟେକହୋଇ ଶୋଭାପାଉଛି । ତାର ବର୍ଣ୍ଣ ସ୍ନିଗ୍ଧ ଓ ମନୋହର ଏବଂ ଶରୀର ନାନାବିଧ ରତ୍ନରେ ବିଭୂଷିତ ହୋଇଅଛି । ମୁହୂର୍ତ୍ତକମଧ୍ୟରେ ସେହି ରାକ୍ଷସ ଏହିପରି ଅତି ରମଣୀୟ ମୃଗରୂପରେ ପରିଣତ ହୋଇଗଲା । ୧୪-୧୯ । ସେହି ରାକ୍ଷସ ମାରୀଚ ବୈଦେହୀଙ୍କୁ ପ୍ରଲୋଭିତ କରିବାପାଇଁ ଏହିପରି ଧାତୁବିଚିତ୍ରିତ ମନୋହର ଦର୍ଶନୀୟ ରୂପଧାରଣପୂର୍ବକ ରାମଙ୍କ ଆଶ୍ରମ ଏବଂ ସେହି ବନକୁ ଉଦ୍ଭାସିତକରି ସେଠାରେ ତୃଣାଚ୍ଛାଦିତ ଭୂମିଉପରେ ଘାସ ଚରି ଚରି ଏଣେ ତେଣେ ବୁଲିବାକୁ ଲାଗିଲା । ୨୦-୨୧ । ସେ ଶତ ଶତ ରୌପ୍ୟ ବିନ୍ଦୁରେ ଚିତ୍ରିତ ହୋଇ ଅତିଶୟ ସୁନ୍ଦର ଓ ପ୍ରୀତିକର

କଦଳୀଗୃହକଂ ଗତ୍ୱା କର୍ଣିକାରାନିତସ୍ତତଃ ।
ସମାଶ୍ରୟନ୍ ମନ୍ଦଗତିଂ ସୀତାସଂଦର୍ଶନଂ ତଥା । ୨୩ ।
ରାଜୀବଚିତ୍ରପୃଷ୍ଠଃ ସ ବିରରାଜ ମହାମୃଗଃ ।
ରାମାଶ୍ରମପଦାଭ୍ୟାସେ ବିଚଚାର ଯଥାସୁଖମ୍ । ୨୪ ।
ପୁନର୍ଗତ୍ୱା ନିବୃତ୍ତଶ୍ଚ ବିଚଚାର ମୃଗୋତ୍ତମଃ ।
ଗତ୍ୱା ମୁହୂର୍ତ୍ତଂ ତ୍ୱରୟା ପୁନଃ ପ୍ରତିନିବର୍ତ୍ତତେ । ୨୫ ।
ବିକ୍ରୀଡ଼ଂଶ୍ଚ କ୍ୱଚିଦ୍ଭୂମୌ ପୁନରେବ ନିଷୀଦତି ।
ଆଶ୍ରମଦ୍ୱାରମାଗମ୍ୟ ମୃଗଯୂଥାନି ଗଚ୍ଛତି । ୨୬ ।
ମୃଗଯୂଥୈରନୁଗତଃ ପୁନରେବ ନିବର୍ତ୍ତତେ ।
ସୀତାଦର୍ଶନମାକାଙ୍କ୍ଷନ୍ ରାକ୍ଷସୋ ମୃଗତାଂ ଗତଃ । ୨୭ ।
ପରିଭ୍ରମତି ଚିତ୍ରାଣି ମଣ୍ଡଲାନି ବିନିଷ୍ପତନ୍ ।
ସମୁଦ୍ୱୀକ୍ଷ୍ୟ ଚ ତଂ ସର୍ବେ ମୃଗା ହ୍ୟନ୍ୟେ ବନେଚରାଃ । ୨୮ ।
ଉପାଗମ୍ୟ ସମାଘ୍ରାୟ ବିଦ୍ରବନ୍ତି ଦିଶୋ ଦଶ ।
ରାକ୍ଷସଃ ସୋଽପି ତାନ୍ ବନ୍ୟାନ୍ ମୃଗାନ୍ ମୃଗବଧେ ରତଃ ।୨୯

---

ଦେଖାଯାଉଥିଲା । ସେ ବୃକ୍ଷମାନଙ୍କର କୋମଳ ପତ୍ର ସବୁ ଭାଙ୍ଗି ତାହାକୁ ଖାଇ ଖାଇ ଏଣେ ତେଣେ ବୁଲିଲା । ସେ କେବେ କଦଳୀବାଡ଼ ଭିତରକୁ ବା କେତେବେଳେ କନିଅରବଣ ଭିତରକୁ ମନ୍ଦଗତିରେ ଯାଇ ସୀତାଙ୍କର ଦୃଷ୍ଟିପଥରେ ପଡ଼ିଲା । ତାହାର ପୃଷ୍ଠଦେଶ ପଦ୍ମପତ୍ର ଚିହ୍ନିତ ହୋଇଥିବାରୁ ସେ ମହାମୃଗ ଅତିଶୟ ଶୋଭା ପାଉଥିଲା । ରାମଙ୍କ ଆଶ୍ରମ ନିକଟରେ ସେ ମନସୁଖରେ ବିଚରଣ କରିବାକୁ ଲାଗିଲା ।୨୨-୨୪। ସେ ମୃଗଶ୍ରେଷ୍ଠ ଚାଲିଯାଉଥାଏ, ପୁଣି ଫେରି ଆସୁଥାଏ । କ୍ଷଣକପାଇଁ ଶୀଘ୍ରଗତିରେ ଦୌଡ଼ି ଯାଉଥାଏ ଏବଂ ପୁଣି ଫେରି ଆସୁଥାଏ । ୨୫ । ସେ କେତେ-ବେଳେ ଖେଳି ଖେଳି ପୁଣି ଭୂମି ଉପରେ ଶୋଇପଡ଼େ । କେତେବେଳେ ଆଶ୍ରମ-ଦ୍ୱାରକୁ ଆସି ମୃଗପଲ ସାଙ୍ଗରେ ମିଶିଯାଏ । ୨୬ । ମୃଗପଲଙ୍କ ଦ୍ୱାରା ଅନୁସୃତ ହୋଇ ସେ ପୁଣି ଫେରି ଆସେ । ସେହି ମୃଗରୂପଧାରୀ ରାକ୍ଷସ ସୀତାଙ୍କ ଦୃଷ୍ଟିରେ ପଡ଼ିବାପାଇଁ ଇଚ୍ଛାକରି ବିଚିତ୍ର ମଣ୍ଡଳ ଦେଖାଇ ଡେଇଁ ଡେଇଁ ବୁଲିବାକୁ ଲାଗିଲା । ତାହାକୁ ଦେଖି ମୃଗମାନେ ଏବଂ ଅନ୍ୟ ବନଚର ପ୍ରାଣୀମାନେ ତାହା ନିକଟକୁ ଆସି ତାକୁ ଶୁଙ୍ଘି ଦେଇ ଚାରିଆଡ଼େ ଦୌଡ଼ି ପଳାଇଯାଆନ୍ତି । ସେହି ରାକ୍ଷସ ମାରୀଚ ମୃଗହତ୍ୟା କରିବାରେ ସର୍ବଦା ରତଥିଲେ ମଧ୍ୟ ନିଜର ଭାବଗୋପନ କରିବାପାଇଁ କେବଳ ସେମାନଙ୍କୁ ଛୁଇଁ ଦେଉଥାଏ; ମାତ୍ର ଭକ୍ଷଣ କରୁ ନ ଥାଏ ।

ପ୍ରଚ୍ଛାଦନାର୍ଥଂ ଭାବସ୍ୟ ନ ଭକ୍ଷୟତି ସଂସ୍ପୃଶନ୍ ।
ତସ୍ମିନ୍ନେବ ତତଃ କାଲେ ବୈଦେହୀ ଶୁଭଲୋଚନା । ୩୦।
କୁସୁମାପଚୟବ୍ୟଗ୍ରା ପାଦପାନଭ୍ୟବର୍ତ୍ତତ ।
କର୍ଣ୍ଣିକାରାନଶୋକାଂଶ୍ଚ ଚୂତାଂଶ୍ଚ ମଦିରେକ୍ଷଣା । ୩୧ ।
କୁସୁମାନ୍ୟବଚିନ୍ୱନ୍ତୀ ଚଚାର ରୁଚିରାନନା ।
ଅନର୍ହାରଣ୍ୟବାସସ୍ୟ ସା ତଂ ରତ୍ନମୟଂ ମୃଗମ୍ । ୩୨ ।
ମୁକ୍ତାମଣିବିଚିତ୍ରାଙ୍ଗଂ ଦଦର୍ଶ ପରମାଙ୍ଗନା ।
ସା ତଂ ରୁଚିରଦନ୍ତୋଷ୍ଠଂ ରୂପ୍ୟଧାତୁତନୂରୁହମ୍ । ୩୩ ।
ବିସ୍ମୟୋତ୍‌ଫୁଲ୍ଲନୟନା ସସ୍ନେହଂ ସମୁଦୈକ୍ଷତ ।
ସ ଚ ତାଂ ରାମଦୟିତାଂ ପଶ୍ୟନ୍ ମାୟାମୟୋ ମୃଗଃ । ୩୪ ।
ବିଚଚାର ପୁନଶ୍ଚିତ୍ରଂ ଦୀପୟନ୍ନିବ ତଦ୍‌ବନମ୍ ।
ଅଦୃଷ୍ଟପୂର୍ବଂ ତଂ ଦୃଷ୍ଟ୍ୱା ନାନାରତ୍ନମୟଂ ମୃଗମ୍ । ୩୫ ।
ବିସ୍ମୟଂ ପରମଂ ସୀତା ଜଗାମ ଜନକାତ୍ମଜା । ୩୬ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ସ୍ୱର୍ଣ୍ଣମୃଗପ୍ରେକ୍ଷଣମ୍
ନାମ ଦ୍ୱିଚତ୍ୱାରିଂଶଃ ସର୍ଗଃ

---

ଏହି ସମୟରେ ଶୁଭଲୋଚନା ମଦିରେକ୍ଷଣା ବୈଦେହୀ କୁସୁମଚୟନନିମନ୍ତେ ଆଗ୍ରହାନ୍ୱିତ ହୋଇ କନିଅର, ଅଶୋକ ଏବଂ ଆମ୍ରବୃକ୍ଷ ନିକଟକୁ ଗମନ କରୁଥିଲେ । ୨୭-୩୧। ବନବାସର ଅନୁପଯୋଗୀ ସେହି ସୁନ୍ଦରବଦନା ବରାଙ୍ଗନା ସୀତା କୁସୁମଚୟନନିମନ୍ତେ ବିଚରଣ କରୁ କରୁ ସେହି ମୁକ୍ତାମଣିବିଚିତ୍ରାଙ୍ଗ ରତ୍ନମୟ ମୃଗକୁ ଦେଖିଲେ । ଏହି ମୃଗର ଦନ୍ତ ଓ ଓଷ୍ଠ ଅତି ସୁନ୍ଦର ଏବଂ ଲୋମରାଜି ରୌପ୍ୟନିର୍ମିତ । ସେ ବିସ୍ମୟବିସ୍ଫାରିତନୟନରେ ସସ୍ନେହରେ ତାହାକୁ ଦେଖିଲେ । ସେ ମାୟାମୃଗ ମଧ୍ୟ ରାମଙ୍କର ପ୍ରିୟତମାଙ୍କ ଆଡ଼କୁ ଚାହିଁ ଚାହିଁ ସେହି ବନକୁ ଆଲୋକିତ କରି ପୁନର୍ବାର ବିଚିତ୍ରଭାବରେ ଇତସ୍ତତଃ ବିଚରଣ କରିବାକୁ ଲାଗିଲା । ଜନକନନ୍ଦିନୀ ସୀତା ନାନା ରତ୍ନମୟ ସେହି ଅଦୃଷ୍ଟପୂର୍ବ ମୃଗକୁ ଦେଖି ଅତିଶୟ ବିସ୍ମିତ ହେଲେ । ୩୨-୩୬ ।

---

# ତ୍ରିଚତ୍ୱାରିଂଶଃ ସର୍ଗଃ

## ଲକ୍ଷ୍ମଣଶଙ୍କାପ୍ରତିସମାଧାନମ୍

ସା ତଂ ସଂପ୍ରେକ୍ଷ୍ୟ ସୁଶ୍ରୋଣୀ କୁସୁମାନ୍ୟବଚିନ୍ୱତୀ ।
ହୈମରାଜତବର୍ଣାଭ୍ୟାଂ ପାର୍ଶ୍ୱାଭ୍ୟାମୁପଶୋଭିତମ୍ । ୧ ।
ପ୍ରହୃଷ୍ଟାଗ୍ୟନବଦ୍ୟାଙ୍ଗୀ ମୃଷ୍ଟହାଟକବର୍ଣିନୀ ।
ଭର୍ତ୍ତାରମଭିଚକ୍ରନ୍ଦ ଲକ୍ଷ୍ମଣଂ ଚାପି ସାୟୁଧମ୍ । ୨ ।
ତୟାହୂତୌ ନରବ୍ୟାଘ୍ରୌ ବୈଦେହ୍ୟା ରାମଲକ୍ଷ୍ମଣୌ ।
ବୀକ୍ଷମାଣୌ ତୁ ତଂ ଦେଶଂ ତଦା ଦଦୃଶତୁର୍ମୃଗମ୍ । ୩ ।
ଶଙ୍କମାନସ୍ତୁ ତଂ ଦୃଷ୍ଟ୍ୱା ଲକ୍ଷ୍ମଣୋ ରାମମବ୍ରବୀତ୍ ।
ତମେବୈନମହଂ ମନ୍ୟେ ମାରୀଚଂ ରାକ୍ଷସଂ ମୃଗମ୍ । ୪ ।
ଚରନ୍ତୋ ମୃଗୟାଂ ହୃଷ୍ଟାଃ ପାପେନୋପାଧିନା ବନେ ।
ଅନେନ ନିହତା ରାମ ରାଜାନଃ କାମରୂପିଣା । ୫ ।
ଅସ୍ୟ ମାୟାବିଦୋ ମାୟାମୃଗରୂପମିଦଂ କୃତମ୍ ।
ଭାନୁମତ୍ ପୁରୁଷବ୍ୟାଘ୍ର ଗନ୍ଧର୍ବପୁରସଂନିଭମ୍ । ୬ ।

---

## ୪୩ଶ ସର୍ଗ

( ଲକ୍ଷ୍ମଣଙ୍କ ଆଶଙ୍କାଦୂରୀକରଣ )

ସୁମାର୍ଜିତସ୍ୱର୍ଣ୍ଣବର୍ଣ୍ଣବିଶିଷ୍ଟା, ଅନବଦ୍ୟରୂପା ସୁନ୍ଦରମୁହିଁ ସୀତା ଫୁଲ ତୋଳୁ ତୋଳୁ ସ୍ୱର୍ଣ୍ଣ ଏବଂ ରୌପ୍ୟବର୍ଣ୍ଣଶୋଭିତପାର୍ଶ୍ୱବିଶିଷ୍ଟ ସେହି ମୃଗକୁ ଦେଖି ଅତିଶୟ ଆନନ୍ଦିତହୋଇ ସ୍ୱାମୀଙ୍କୁ ଏବଂ ଶସ୍ତ୍ରଧାରୀ ଲକ୍ଷ୍ମଣଙ୍କୁ ଡାକ ପକାଇଲେ ।୧-୨। ପୁରୁଷଶ୍ରେଷ୍ଠ ରାମ ଲକ୍ଷ୍ମଣ ଦୁହେଁ ବୈଦେହୀଙ୍କ ଦ୍ୱାରା ଆହୂତ ହୋଇ ସେଅଞ୍ଚଳକୁ ଚାହିଁଲେ ଏବଂ ସେତେବେଳେ ସେ ମୃଗକୁ ଦେଖିଲେ ।୩। କିନ୍ତୁ ସେହି ମୃଗକୁ ଦେଖି ଲକ୍ଷ୍ମଣଙ୍କ ମନରେ ଶଙ୍କା ଜାତହେଲା ଏବଂ ସେ ରାମଙ୍କୁ କହିଲେ, "ମୋର ମନେହୁଏ, ଏ ମୃଗ ସେହି ମାରୀଚ ରାକ୍ଷସ ।୪। ହେ ରାମ! ଏହି ପାପବୁଦ୍ଧି, କାମରୂପୀ ମାରୀଚ ଏ ବନରେ ଆନନ୍ଦରେ ମୃଗୟା କରୁଥିବା ରାଜାମାନଙ୍କୁ ନିହତ କରିଅଛି । ୫ । ଏହି ମାୟାବୀ ରାକ୍ଷସ ମାୟାରେ ଏ ମୃଗରୂପ ଧରିଅଛି । ହେ ନରଶ୍ରେଷ୍ଠ ! ଦେଖ, ଏହାର ରୂପ ଦୀପ୍ତିଶାଳୀ ଗନ୍ଧର୍ବନଗରସଦୃଶ ହୋଇଅଛି । ୬ । ହେ ଲୋକନାଥ ରାଘବ ! ଏପରି ରତ୍ନବିଚିତ୍ର ମୃଗ

ମୃଗୋ ହ୍ୟେବଂବିଧୋ ରତ୍ନବିଚିତ୍ରୋ ନାସ୍ତି ରାଘବ ।
ଜଗତ୍ୟାଂ ଜଗତୀନାଥ ମାୟୈଷା ହି ନ ସଂଶୟଃ ।୭।
ଏବଂ ବ୍ରୁବାଣଂ ସୌମିତ୍ରିଂ ପ୍ରତିବାର୍ଯ୍ୟ ଶୁଚିସ୍ମିତା ।
ଉବାଚ ସୀତା ସଂହୃଷ୍ଟା ଛଦ୍ମନା ହୃତଚେତନା ।୮।
ଆର୍ଯ୍ୟପୁତ୍ରାଭିରାମୋଽସୌ ମୃଗୋ ହରତି ମେ ମନଃ ।
ଆନୟୈନଂ ମହାବାହୋ କ୍ରୀଡ଼ାର୍ଥଂ ନୋ ଭବିଷ୍ୟତି ।୯।
ଇହାଶ୍ରମପଦେଽସ୍ମାକଂ ବହବଃ ପୁଣ୍ୟଦର୍ଶନାଃ ।
ମୃଗାଶ୍ଚରନ୍ତି ସହିତାଃ ସୃମରାଶ୍ଚମରାସ୍ତଥା ।୧୦।
ଋକ୍ଷାଃ ପୃଷତସଙ୍ଘାଶ୍ଚ ବାନରାଃ କିନ୍ନରାସ୍ତଥା ।
ବିଚରନ୍ତି ମହାବାହୋ ରୂପଶ୍ରେଷ୍ଠା ମନୋହରାଃ ।୧୧।
ନ ଚାସ୍ୟ ସଦୃଶୋ ରାଜନ୍ ଦୃଷ୍ଟପୂର୍ବୋ ମୃଗଃ ପୁରା ।
ତେଜସା କ୍ଷମୟା ଦୀପ୍ତ୍ୟା ଯଥାୟଂ ମୃଗସତ୍ତମଃ ।୧୨।
ନାନାବର୍ଣ୍ଣବିଚିତ୍ରାଙ୍ଗୋ ରତ୍ନବିନ୍ଦୁସମାଚିତଃ ।
ଦ୍ୟୋତୟନ୍ ବନମବ୍ୟଗ୍ରଂ ଶୋଭତେ ଶଶିସଂନିଭଃ ।୧୩।

---

ଏ ଜଗତରେ ନାହିଁ । ଏହା ନିଶ୍ଚୟ ମାୟା, ଏଥିରେ ସନ୍ଦେହ ନାହିଁ” ।୭। ଲକ୍ଷ୍ମଣ ଏହିପରି କହୁଥିବାବେଳେ ପବିତ୍ରହାସ୍ୟଯୁକ୍ତା ସୀତା ରାକ୍ଷସର ଛଦ୍ମବେଶରେ ମୋହାଚ୍ଛନ୍ନ ଏବଂ ଅତିଶୟ ଆନନ୍ଦିତହୋଇ ତାଙ୍କୁ ବାଧାଦେଇ କହିଲେ ।୮। “ହେ ମହାବାହୋ ଆର୍ଯ୍ୟପୁତ୍ର ! ଏହି ଅତିରମଣୀୟ ମୃଗ ମୋର ମନ ହରଣ କରୁଛି । ତୁମେ ଏହାକୁ ଆଣ । ଏ ଆମର କ୍ରୀଡ଼ାସାମଗ୍ରୀ ହେବ ।୯। ଆମମାନଙ୍କର ଏହି ଆଶ୍ରମରେ ସୃମର, ଚମରଜାତୀୟ ବହୁସଂଖ୍ୟକ ପ୍ରିୟଦର୍ଶନ ମୃଗ ଏକତ୍ର ବିଚରଣ କରୁଛନ୍ତି ।୧୦। ହେ ମହାବାହୋ ! ଏଠାରେ ଋକ୍ଷ, ପୃଷତ, ବାନର ଓ କିନ୍ନର ପ୍ରଭୃତି ନାନା ପ୍ରକାର ଉତ୍କୃଷ୍ଟ ରୂପବିଶିଷ୍ଟ ମନୋହର ମୃଗ ବିଚରଣ କରନ୍ତି ।୧୧। ହେ ରାଜନ୍ ! ତେଜ, କ୍ଷମା ଓ ଦୀପ୍ତିରେ ଏ ଉତ୍କୃଷ୍ଟ ମୃଗଟି ଯେପରି ହୋଇଛି, ସେପରି ମୃଗ ମୁଁ ଆଉ କେବେ ଦେଖି ନାହିଁ ।୧୨। ଏହି ମୃଗର ଶରୀର ନାନା ବର୍ଣ୍ଣରେ ଚିତ୍ରିତ ହୋଇଛି ଏବଂ ରତ୍ନବିନ୍ଦୁମାନ ତା’ଦେହରେ ରହିଛି । ଏ ମୃଗଟି ଚନ୍ଦ୍ରସଦୃଶ ସମଗ୍ର ବନକୁ ଶାନ୍ତଭାବରେ ଉଦ୍ଭାସିତ କରି ଶୋଭା ପାଉଅଛି ।୧୩। ଆହା ! ଏହାର କି ସୌନ୍ଦର୍ଯ୍ୟ ! କି ରୂପ ! ଏବଂ ଏହାର

ଅହୋ ରୂପମହୋ ଲକ୍ଷ୍ମୀଃ ସ୍ୱରସମ୍ପଚ୍ଚ ଶୋଭନା ।
ମୃଗୋଽଦ୍ଭୁତୋ ବିଚିତ୍ରାଙ୍ଗୋ ହୃଦୟଂ ହରତୀବ ମେ ।୧୪ ।
ଯଦି ଗ୍ରହଣମଭ୍ୟେତି ଜୀବନ୍ନେବ ମୃଗସ୍ତବ ।
ଆଶ୍ଚର୍ଯ୍ୟଭୂତଂ ଭବତି ବିସ୍ମୟଂ ଜନୟିଷ୍ୟତି । ୧୫ ।
ସମାପ୍ତବନବାସାନାଂ ରାଜ୍ୟସ୍ଥାନାଂ ଚ ନଃ ପୁନଃ ।
ଅନ୍ତଃପୁରବିଭୂଷାର୍ଥୋ ମୃଗ ଏଷ ଭବିଷ୍ୟତି । ୧୬ ।
ଭରତସ୍ୟାର୍ଯ୍ୟପୁତ୍ରସ୍ୟ ଶ୍ୱଶ୍ରୂଣାଂ ମମ ଚ ପ୍ରଭୋ ।
ମୃଗରୂପମିଦଂ ଦିବ୍ୟଂ ବିସ୍ମୟଂ ଜନୟିଷ୍ୟତି । ୧୭ ।
ଜୀବନ୍ନ ଯଦି ତେଽଭ୍ୟେତି ଗ୍ରହଣଂ ମୃଗସତ୍ତମଃ ।
ଅଜିନଂ ନରଶାର୍ଦ୍ଦୂଳ ରୁଚିରଂ ମେ ଭବିଷ୍ୟତି । ୧୮ ।
ନିହତସ୍ୟାସ୍ୟ ସତ୍ତ୍ୱସ୍ୟ ଜାମ୍ବୂନଦମୟତ୍ୱଚି ।
ଶଷ୍ପବୃସ୍ୟାଂ ବିନୀତାୟାମିଚ୍ଛାମ୍ୟହମୁପାସିତୁମ୍ । ୧୯ ।
କାମବୃତ୍ତମିଦଂ ରୌଦ୍ରଂ ସ୍ତ୍ରୀଣାମସଦୃଶଂ ମତମ୍ ।
ବପୁଷା ତ୍ୱସ୍ୟ ସତ୍ତ୍ୱସ୍ୟ ବିସ୍ମୟୋ ଜନିତୋ ମମ । ୨୦ ।
ତେନ କାଞ୍ଚନରୋମ୍ଣା ତୁ ମଣିପ୍ରବରଶୃଙ୍ଗିଣା ।
ତରୁଣାଦିତ୍ୟବର୍ଣ୍ଣେନ ନକ୍ଷତ୍ରପଥବର୍ଚ୍ଚସା । ୨୧ ।

---

ସ୍ୱର କପରି ସୁନ୍ଦର ! ଏହି ବିଚିତ୍ରାଙ୍ଗ ଅଦ୍ଭୁତ ମୃଗ ମୋର ମନକୁ ହରଣ କରି-ପକାଉଛି । ୧୪ । ଏ ମୃଗ ଯଦି ତୁମ ହାତରେ ଜୀଅନ୍ତା ଭାବରେ ଧରାଦିଏ, ତେବେ ସେ କାର୍ଯ୍ୟ ବଡ଼ ଆଶ୍ଚର୍ଯ୍ୟଜନକ ହେବ ଓ ମୋ ମନରେ ଆନନ୍ଦ ଜାତ କରାଇବ । ୧୫ । ଆମେମାନେ ବନବାସ ସମାପ୍ତ କରି ପୁଣି ରାଜ୍ୟରେ ଯାଇ ରହିଲେ ଏହି ମୃଗ ଆମମାନଙ୍କ ଅନ୍ତଃପୁରର ବିଭୂଷଣ ହେବ । ୧୬। ହେ ପ୍ରଭୋ ! ଏହି ରୂପବାନ୍ ମୃଗ ଭରତଙ୍କର, ତୁମ୍ଭର, ଶ୍ୱଶ୍ରୂମାନଙ୍କର ଏବଂ ମୋର ବିସ୍ମୟ ଉତ୍ପାଦନ କରିବ ଏଥିରେ ସନ୍ଦେହ ନାହିଁ । ୧୭ । ହେ ନରଶ୍ରେଷ୍ଠ ! ଏହି ଉତ୍କୃଷ୍ଟ ମୃଗଟି ଯଦି ଜୀବିତ ଅବସ୍ଥାରେ ତୁମ ହାତରେ ଧରା ନ ପଡ଼େ, ତାହାହେଲେ ଏହାର ଚର୍ମଟି ମଧ୍ୟ ଅତି ମନୋହର ହେବ । ୧୮ । ଏହି ମୃତ ମୃଗର ସ୍ୱର୍ଣ୍ଣମୟ ଚର୍ମକୁ କୁଶାସନ ଉପରେ ବିଛାଇ ଉପାସନା କରିବାକୁ ମୋର ଇଚ୍ଛା ହେଉଅଛି ।୧୯। ଏପରି ଆକାଂକ୍ଷା ସ୍ୱେଚ୍ଛାଚାରିତା ସ୍ତ୍ରୀମାନଙ୍କ ପକ୍ଷରେ ଅନୁପଯୁକ୍ତ ବିବେଚିତ ହୋଇଥାଏ; କିନ୍ତୁ ଏ ପ୍ରାଣୀଟି ନିଜର ଦେହକାନ୍ତିଦ୍ୱାରା ମୋ ମନରେ ବିସ୍ମୟ ଜାତ କରାଇଅଛି" । ୨୦ । ସେତେବେଳେ ସେହି ଅଦ୍ଭୁତ ମୃଗର ସ୍ୱର୍ଣ୍ଣସଦୃଶ ରୋମରାଜି, ଉତ୍କୃଷ୍ଟ ମଣିସଦୃଶ ଶୃଙ୍ଗ, ନବୋଦିତ ସୂର୍ଯ୍ୟପରି ବର୍ଣ୍ଣ ଏବଂ ନକ୍ଷତ୍ରପଥ-

ଏବଂ ସୀତାବଚଃ ଶ୍ରୁତ୍ୱା ଦୃଷ୍ଟ୍ୱା ଚ ମୃଗମଦ୍ଭୁତମ୍ ।
ବଭୂବ ରାଘବସ୍ୟାପି ମନୋ ବିସ୍ମୟମାଗତମ୍ ।୨୨ ।
ଲୋଭିତସ୍ତେନ ରୂପେଣ ସୀତୟା ଚ ପ୍ରଚୋଦିତଃ ।
ଉବାଚ ରାଘବୋ ହୃଷ୍ଟୋ ଭ୍ରାତରଂ ଲକ୍ଷ୍ମଣଂ ବଚଃ ।୨୩ ।
ପଶ୍ୟ ଲକ୍ଷ୍ମଣ ବୈଦେହ୍ୟାଃ ସ୍ପୃହାଂ ମୃଗଗତାମିମାମ୍ ।
ରୂପଶ୍ରେଷ୍ଠତୟା ହ୍ୟେଷ ମୃଗୋଽଦ୍ୟ ନ ଭବିଷ୍ୟତି ।୨୪ ।
ନ ବନେ ନନ୍ଦନୋଦ୍ଦେଶେ ନ ଚୈତ୍ରରଥସଂଶ୍ରୟେ ।
କୁତଃ ପୃଥିବ୍ୟାଂ ସୌମିତ୍ରେ ଯୋଽସ୍ୟ କଶ୍ଚିତ୍ସମୋ ମୃଗଃ ।୨୫।
ପ୍ରତିଲୋମାନୁଲୋମାଶ୍ଚ ରୁଚିରା ରୋମରାଜୟଃ ।
ଶୋଭନ୍ତେ ମୃଗମାଶ୍ରିତ୍ୟ ଚିତ୍ରାଃ କନକବିନ୍ଦୁଭିଃ ।୨୬ ।
ପଶ୍ୟାସ୍ୟ ଜୃମ୍ଭମାଣସ୍ୟ ଦୀପ୍ତାମଗ୍ନିଶିଖୋପମାମ୍ ।
ଜିହ୍ୱାଂ ମୁଖାନ୍ନିଃସରନ୍ତୀଂ ମେଘାଦିବ ଶତହ୍ରଦାମ୍ ।୨୭ ।
ମସାରଗଲ୍ଲର୍କମୁଖଃ ଶଙ୍ଖମୁକ୍ତାନିଭୋଦରଃ ।
କସ୍ୟ ନାମାଭିରୂପୋଽସୌ ନ ମନୋ ଲୋଭୟେନ୍ମୃଗଃ ।୨୮ ।

---

ସଦୃଶ ଜ୍ୟୋତି ଦେଖି ଏବଂ ସୀତାଙ୍କ କଥା ଶୁଣି ରାମଙ୍କର ମନ ମଧ୍ୟ ବିସ୍ମୟାବିଷ୍ଟ ହୋଇଗଲା । ୨୧-୨୨ । ତାହାର ରୂପରେ ପ୍ରଲୋଭିତ ହୋଇ ଏବଂ ସୀତାଙ୍କ କଥାରେ ପ୍ରବୋଦିତ ହୋଇ ରାମ ହୃଷ୍ଟଚିତ୍ତରେ ଭ୍ରାତା ଲକ୍ଷ୍ମଣଙ୍କୁ କହିଲେ । ୨୩ । "ହେ ଲକ୍ଷ୍ମଣ ! ଦେଖ, ଏ ମୃଗକୁ ଦେଖି ବୈଦେହୀଙ୍କର କପରି ଅତିଶୟ ସ୍ପୃହା ଜାତହୋଇଅଛି । ଏହାର ରୂପର ଶ୍ରେଷ୍ଠତାହେତୁରୁହିଁ ଏ ମୃଗ ଆଜ ଆଉ ବଞ୍ଚିପାରିବ ନାହିଁ ।୨୪। ହେ ସୌମିତ୍ରେ! କ ବନରେ, କ ନନ୍ଦନକାନନରେ, କ ଚୈତ୍ରରଥ ବନରେ , ପୃଥିବୀର କୌଣସି ସ୍ଥାନରେ ଏପରି କୌଣସି ମୃଗ ନାହିଁ, ଯେ କ ଏହାର ସମାନ ହେବ । ୨୫ । ଦେଖ, ଏହାର ରୋମରାଜ ପ୍ରତିଲୋମ ଏବଂ ଅନୁଲୋମକ୍ରମରେ ସୁବିନ୍ୟସ୍ତ ଏବଂ ଅତି ମନୋହର । ସେହି ରୋମରାଜ କନକବିନ୍ଦୁ ଦ୍ୱାରା ଚିହ୍ନିତ ହୋଇ ମୃଗଦେହରେ ଅତିଶୟ ଶୋଭାପାଉଛି । ୨୬ । ଦେଖ, ମେଘରୁ ବିଦ୍ୟୁତ୍ ନିର୍ଗତ ହେଲାପରି, ଏ ମୃଗ ହାଇ ମାଇଲାବେଳେ ଏହାର ମୁହଁଭିତରୁ ଅଗ୍ନିଶିଖାସଦୃଶ ପ୍ରଦୀପ୍ତଜିହ୍ୱା ବାହାରକୁ ବାହାରିପଡୁଛି । ୨୭ । ଏହାର ମୁଖମଣ୍ଡଳ ଇନ୍ଦ୍ରନୀଳମଣିନିର୍ମିତ ପାନପାତ୍ରପରି ଦେଖାଯାଉଛି ଏବଂ ଉଦର ଶଂଖ ଓ ମୁକ୍ତାପରି ଦିଶୁଛି । ଏହି ସୁନ୍ଦର ରୂପବାନ୍ ମୃଗ କାହାର

କସ୍ୟ ରୂପମିଦଂ ଦୃଷ୍ଟ୍ୱା ଜାମ୍ବୂନଦମୟପ୍ରଭମ୍ ।
ନାନାରତ୍ନମୟଂ ଦିବ୍ୟଂ ନ ମନୋ ବିସ୍ମୟଂ ବ୍ରଜେତ୍ । ୨୯ ।
ମାଂସହେତୋରପି ମୃଗାନ୍ ବିହାରାର୍ଥଂ ଚ ଧନ୍ୱିନଃ ।
ଘ୍ନନ୍ତି ଲକ୍ଷ୍ମଣ ରାଜାନୋ ମୃଗୟାୟାଂ ମହାବନେ । ୩୦ ।
ଧନାନି ବ୍ୟବସାୟେନ ବିଚୀୟନ୍ତେ ମହାବନେ ।
ଧାତବୋ ବିବିଧାଶ୍ଚାପି ମଣିରତ୍ନ ସୁବର୍ଣିନଃ । ୩୧ ।
ତତ୍ସାରମଖିଳଂ ନୃଣାଂ ଧନଂ ନିଚୟବର୍ଧନମ୍ ।
ମନସା ଚିନ୍ତିତଂ ସର୍ବଂ ଯଥା ଶୁକ୍ରସ୍ୟ ଲକ୍ଷ୍ମଣ । ୩୨ ।
ଅର୍ଥୀ* ଯେନାର୍ଥକୃତ୍ୟେନ ସଂବ୍ରଜତ୍ୟବିଚାରୟନ୍ ।
ତମର୍ଥମର୍ଥଶାସ୍ତ୍ରଜ୍ଞାଃ ପ୍ରାହୁରର୍ଥ୍ୟାଶ୍ଚ ଲକ୍ଷ୍ମଣ । ୩୩ ।
ଏତସ୍ୟ ମୃଗରତ୍ନସ୍ୟ ପରାର୍ଧ୍ୟେ କାଞ୍ଚନତ୍ୱଚି ।
ଉପବେକ୍ଷ୍ୟତି ବୈଦେହୀ ମୟା ସହ ସୁମଧ୍ୟମା । ୩୪ ।

---

ମନକୁ ପ୍ରଲୋଭିତ ନ କରିବ ? ।୨୮। ଏହାର ସ୍ୱର୍ଣ୍ଣମୟପ୍ରଭାଯୁକ୍ତ ନାନାରତ୍ନଖଚିତ ଦିବ୍ୟରୂପ ଦେଖି କାହାର ମନ ବିସ୍ମୟାପନ୍ନ ନ ହେବ ? ।୨୯। ହେ ଲକ୍ଷ୍ମଣ ! ଧନୁର୍ଦ୍ଧାରୀ ରାଜାମାନେ ମହାବନରେ ମୃଗୟା କରି ମାଂସ ପାଇଁ କିମ୍ବା ବିହାର ନିମନ୍ତେ ମୃଗମାନଙ୍କୁ ହତ୍ୟା କରିଥାଆନ୍ତି ।୩୦। ମଣି, ରତ୍ନ, ସୁବର୍ଣ୍ଣ ଏବଂ ଅନ୍ୟାନ୍ୟ ବିବିଧ ଧାତୁମାନ ଉଦ୍ୟମଦ୍ୱାରା ଲୋକେ ନାନା ବନରୁ ସଂଗ୍ରହ କରିଥାନ୍ତି ।୩୧। ହେ ଲକ୍ଷ୍ମଣ ! ଅର୍ଥଶାସ୍ତ୍ରଜ୍ଞ ଶୁକ୍ର ମନରେ ଏ ସମସ୍ତ ଚିନ୍ତା କରି ସ୍ଥିର କରିଛନ୍ତି ଯେ, ଏହି ବନ୍ୟଲବ୍ଧ ଧନହିଁ ଲୋକମାନଙ୍କର ସଞ୍ଚୟବୃଦ୍ଧିକାରୀ ଉତ୍କୃଷ୍ଟ ଧନ ଅଟେ । ।୩୨। ହେ ଲକ୍ଷ୍ମଣ ! ଅର୍ଥାଭିଳାଷୀ ବ୍ୟକ୍ତି ଯେଉଁ ଅର୍ଥଗ୍ରହଣ ବିଷୟରେ ବିଚାର ନ କରି ପ୍ରବୃତ୍ତ ହୁଏ, ଅର୍ଥଶାସ୍ତ୍ରଜ୍ଞ ପଣ୍ଡିତମାନେ ତାହାକୁହିଁ ପ୍ରକୃତ ଅର୍ଥ ବୋଲି କହିଥାନ୍ତି । ।୩୩। ଏହି ମୃଗରତ୍ନର ଉତ୍କୃଷ୍ଟ ସ୍ୱର୍ଣ୍ଣମୟ ଚର୍ମରେ ସୁମଧ୍ୟମା ବୈଦେହୀ ମୋ ସହିତ ଉପବେଶନ କରିବେ ।୩୪। କି କଦଳୀ, କି ପ୍ରିୟକମୃଗର ଚର୍ମ, କି ପଶମ

---

* ଅପରର ଅଧିକାରରେ ଥିବା ଅର୍ଥକୁ ବଳାତ୍କାରରେ ଆଣିବାକୁ ଯିବାବେଳେ ଗ୍ରହଣକାରୀର ମନରେ ଏହା ନୈତିକ ନିୟମ ଅନୁସାରେ ନ୍ୟାୟ କି ଅନ୍ୟାୟ, ଏ ଦ୍ୱିଧା ସ୍ୱତଃ ଜାତ ହୋଇଥାଏ । ମାତ୍ର କାହାରି ଅଧିକାରରେ ନଥିବା ବନ୍ୟଲବ୍ଧ ଅର୍ଥ ସଂଗ୍ରହ କରିବାରେ କାହାରି ମନରେ କେବେ ସେ ବିଚାର ଉଠେ ନାହିଁ ।

ନ କାଦଲୀ ନ ପ୍ରିୟକୀ ନ ପ୍ରବେଣୀ ନ ଚାବିକୀ ।
ଭବେଦେତସ୍ୟ ସଦୃଶୀ ସ୍ପର୍ଶନେନେତି ମେ ମତିଃ । ୩୫ ।
ଏଷ ଚୈବ ମୃଗଃ ଶ୍ରୀମାନ୍ ଯଶ୍ଚ ଦିବ୍ୟୋ ନଭଶ୍ଚରଃ ।
ଉଭାବେତୌ ମୃଗୌ ଦିବ୍ୟୌ ତାରାମୃଗମହୀମୃଗୌ । ୩୬।
ଯଦି ବାୟଂ ତଥା ଯନ୍ମାଂ ଭବେଦ୍‌ବଦସି ଲକ୍ଷ୍ମଣ ।
ମାୟୈଷା ରାକ୍ଷସସ୍ୟେତି କର୍ତ୍ତବ୍ୟୋଽସ୍ୟ ବଧୋ ମୟା ।୩୭ ।
ଏତେନ ହି ନୃଶଂସେନ ମାରୀଚେନାକୃତାତ୍ମନା ।
ବନେ ବିଚରତା ପୂର୍ବଂ ହିଂସିତା ମୁନିପୁଙ୍ଗବାଃ । ୩୮ ।
ଉତ୍ଥାୟ ବହବୋ ଯେନ ମୃଗୟାୟାଂ ଜନାଧିପାଃ ।
ନିହତାଃ ପରମେଷ୍ୱାସାସ୍ତସ୍ମାଦ୍ବଧ୍ୟସ୍ତ୍ୱୟଂ ମୃଗଃ ।୩୯ ।
ପୁରସ୍ତାଦିହ ବାତାପିଃ ପରିଭୂୟ ତପସ୍ୱିନଃ ।
ଉଦରସ୍ଥୋ ଦ୍ୱିଜାନ୍ ହନ୍ତି ସ୍ୱଗର୍ଭୋଽଶ୍ୱତରୀମିବ । ୪୦ ।
ସ କଦାଚିଚ୍ଚିରାଲ୍ଲୋଭାଦାସସାଦ ମହାମୁନିମ୍ ।
ଅଗସ୍ତ୍ୟଂ ତେଜସା ଯୁକ୍ତଂ ଭକ୍ଷ୍ୟସ୍ତସ୍ୟ ବଭୂବ ହ । ୪୧ ।

---

ବସ୍ତ୍ର, ବା କି ମେଷଚର୍ମ କେହି ଏହି ମୃଗର ଚର୍ମସଦୃଶ ସ୍ପର୍ଶସୁଖକର ହେବ ବୋଲି ମୋର ମନେ ହେଉ ନାହିଁ । ୩୫ । ଏହି ମୃଗ ଶ୍ରୀମାନ୍ ଏବଂ ଆକାଶରେ ଯେଉଁ ମୃଗ ବିଚରଣ କରେ (ମୃଗଶିର ନକ୍ଷତ୍ର) ସେ ମୃଗ ମଧ୍ୟ ଶ୍ରୀମାନ୍, ସୁତରାଂ ସେହି ତାରାମୃଗ, ଏହି ମହୀମୃଗ ଏ ଉଭୟେହିଁ ଦିବ୍ୟମୃଗ ଅଟନ୍ତି । ୩୬ । ହେ ଲକ୍ଷ୍ମଣ ! ତୁମେ ଯାହା କହୁଛ ତାହାହିଁ ଯଦି ହୋଇଥାଏ ଯେ ଏହା ରାକ୍ଷସର ମାୟା, ତାହାହେଲେ ତାହାକୁ ବଧ କରିବା ମୋର ଅବଶ୍ୟ-କର୍ତ୍ତବ୍ୟ ।୩୭ । ଏହି ଅକୃତାତ୍ମା ନୃଶଂସ ମାରୀଚ ପୂର୍ବେ ବନରେ ବିଚରଣ କରି ମୁନିଶ୍ରେଷ୍ଠମାନଙ୍କୁ ହତ୍ୟାକରିଛି । ୩୮ । ବହୁସଂଖ୍ୟକ ମହାଧନୁର୍ଦ୍ଧାରୀ ରାଜାଙ୍କୁ ଏହି ମାରୀଚ ମୃଗୟାରେ ପ୍ରଲୋଭିତକରି ହତ୍ୟାକରିଛି ; ସୁତରାଂ ଏ ମୃଗକୁ ମୋର ବଧ କରିବା ଉଚିତ । ୩୯ । ସ୍ୱୀୟ ଗର୍ଭ ଯେପରି ଅଶ୍ୱତରୀକୁ ବିନଷ୍ଟ କରେ ସେହିପରି ପୂର୍ବେ ଏହି ବନରେ ରାକ୍ଷସ ବାତାପି ଉଦରସ୍ଥ ହୋଇ ତପସ୍ୱୀ ବ୍ରାହ୍ମଣମାନଙ୍କୁ ପରାଭବ କରି ହତ୍ୟାକରୁଥିଲା । ୪୦ । ଦୀର୍ଘକାଳ ପରେ ସେ ଦିନେ ତେଜସ୍ୱୀ ମହାମୁନି ଅଗସ୍ତ୍ୟଙ୍କୁ ପାଇ ତାଙ୍କର ଭକ୍ଷ୍ୟ ହୋଇଥିଲା । ୪୧ । ଶ୍ରାଦ୍ଧ

ସମୁଥ୍ଥାନେ ଚ ତଦ୍ରୂପଂ କର୍ତୁକାମଂ ସମୀକ୍ଷ୍ୟ ତମ୍ ।
ଉତ୍ସ୍ମୟିତ୍ୱା ତୁ ଭଗବାନ୍ ବାତାପିମିଦମବ୍ରବୀତ୍ । ୪୨ ।
ତ୍ୱୟା ବିଗଣ୍ୟ ବାତପେ ପରିଭୂତାଃ ସ୍ୱତେଜସା ।
ଜୀବଲୋକେ ଦ୍ୱିଜଶ୍ରେଷ୍ଠାସ୍ତସ୍ମାଦସି ଜରାଂ ଗତଃ । ୪୩ ।
ତଦେତନ୍ନ ଭବେଦ୍ରକ୍ଷୋ ବାତାପିରିବ ଲକ୍ଷ୍ମଣ ।
ମଦ୍ୱିଧଂ ଯୋଽତିମନ୍ୟେତ ଧର୍ମନିତ୍ୟଂ ଜିତେନ୍ଦ୍ରିୟମ୍ । ୪୪ ।
ଭବେଦ୍ଧତୋଽୟଂ ବାତାପିରଗସ୍ତ୍ୟେନେବ ମାଂ ଗତଃ ।
ଇହ ତ୍ୱଂ ଭବ ସଂନଦ୍ଧୋ ଯନ୍ତ୍ରିତୋ ରକ୍ଷ ମୈଥିଲୀମ୍ । ୪୫ ।
ଅସ୍ୟାମାୟତ୍ତମସ୍ମାକଂ ଯତ୍କୃତ୍ୟଂ ରଘୁନନ୍ଦନ ।
ଅହମେନଂ ବଧିଷ୍ୟାମି ଗ୍ରହୀଷ୍ୟାମ୍ୟପି ବା ମୃଗମ୍ । ୪୬ ।
ଯାବଦ୍ଗଚ୍ଛାମି ସୌମିତ୍ରେ ମୃଗମାନୟିତୁଂ ଦ୍ରୁତମ୍ ।
ପଶ୍ୟ ଲକ୍ଷ୍ମଣ ବୈଦେହୀଂ ମୃଗତ୍ୱଚି ଗତସ୍ପୃହାମ୍ । ୪୭ ।
ତ୍ୱଚା ପ୍ରଧାନୟା ହ୍ୟେଷ ମୃଗୋଽଦ୍ୟ ନ ଭବିଷ୍ୟତି ।
ଅପ୍ରମତ୍ତେନ ତେ ଭାବ୍ୟମାଶ୍ରମସ୍ଥେନ ସୀତୟା । ୪୮ ।

---

ଶେଷରେ ବାତାପି ସେହିପରିଭାବରେ ରାକ୍ଷସରୂପ ଧରିଉଠିବାକୁ ଇଚ୍ଛା କରୁଥିବାର ଦେଖି ଭଗବାନ୍ ଅଗସ୍ତ୍ୟ ଈଷତ୍ ହାସ୍ୟ କରି ତାକୁ କହିଥିଲେ । ୪୨ । "ତୁ ନିଜ-ତେଜରେ ହତଜ୍ଞାନ ହୋଇ ଏହି ଜୀବଲୋକରେ ଅନେକ ଦ୍ୱିଜଶ୍ରେଷ୍ଠଙ୍କୁ ବଧ କରିଅଛୁ; ସୁତରାଂ ବର୍ତ୍ତମାନ ତୁ ମୋଦ୍ୱାରା ଜୀର୍ଣ୍ଣ ହୋଇଗଲୁ ।"୪୩। ହେ ଲକ୍ଷ୍ମଣ ! ସୁତରାଂ ସେହି ବାତାପିପରି ଏ ରାକ୍ଷସ ଜିତେନ୍ଦ୍ରିୟ ଓ ଧର୍ମନିଷ୍ଠ ମୋତେ ଅବମାନନା କରିବାହେତୁରୁ ଆଉ ବଞ୍ଚି ରହିବ ନାହିଁ । ୪୪ । ଇଏ ମୋ ହାବୁଡ଼କୁ ଆସି ଅଗସ୍ତ୍ୟଙ୍କକର୍ତ୍ତୃକ ବାତାପିପରି ମୋକର୍ତ୍ତୃକ ନିହତ ହେବ । ତୁମେ ଏଠାରେ କବଚ ଧାରଣକରି ଏବଂ ଅପ୍ରମତ୍ତ ହୋଇ ସୀତାଙ୍କୁ ରକ୍ଷାକର । କାରଣ ଆମମାନଙ୍କର କର୍ତ୍ତବ୍ୟ କାର୍ଯ୍ୟ ଏହି ଜାନକୀଙ୍କଠାରେ ଆୟତ୍ତ ରହିଅଛି । ମୁଁ ଏ ମୃଗକୁ ହୁଏତ ସଂହାର କରିବ,ନହେଲେ ଧରି ଆଣିବ । ୪୫-୪୬। ହେ ସୌମିତ୍ରେ! ଏ ମୃଗଚର୍ମରେ ବୈଦେହୀ ବିଶେଷ ସ୍ପୃହାନ୍ୱିତ ହୋଇଛନ୍ତି; ସୁତରାଂ ମୁଁ ସତ୍ୱର ଏ ମୃଗକୁ ଆଣିବାପାଇଁ ଯାଉଅଛି; ତୁମେ ବୈଦେହୀଙ୍କୁ ଦେଖ । ୪୭ । ଏହାର ଚର୍ମର ଉତ୍କୃଷ୍ଟତା ଫଳରେ ଏ ମୃଗ ଆଜି ଆଉ ବଞ୍ଚି ରହିବ ନାହିଁ । ତୁମେ ସୀତାଙ୍କ ସହିତ ଆଶ୍ରମରେ ଖୁବ୍ ସତର୍କଭାବରେ ରହିଥିବ । ୪୮ । ହେ ଲକ୍ଷ୍ମଣ !

ଯାବତ୍ ପୃଷତମେକେନ ସାୟକେନ ନିହନ୍ମ୍ୟହମ୍ ।
ହତ୍ୱୈତଚ୍ଚର୍ମ ଚାଦାୟ ଶୀଘ୍ରମେଷ୍ୟାମି ଲକ୍ଷ୍ମଣ ।୪୯।
ପ୍ରଦକ୍ଷିଣେନାତିବଲେନ ପକ୍ଷିଣା
ଜଟାୟୁଷା ବୁଦ୍ଧିମତା ଚ ଲକ୍ଷ୍ମଣ ।
ଭବାପ୍ରମତ୍ତଃ ପରିଗୃହ୍ୟ ମୈଥିଲୀମ୍
ପ୍ରତିକ୍ଷଣଂ ସର୍ବତ ଏବ ଶଙ୍କିତଃ । ୫୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ଲକ୍ଷ୍ମଣଶଙ୍କାପ୍ରତିସମାଧାନମ୍
ନାମ ତ୍ରିଚତ୍ୱାରିଂଶଃ ସର୍ଗଃ

---

ମୁଁ ଏମଧ୍ୟରେ ଗୋଟିଏ ଶରରେ ଏ ମୃଗକୁ ବଧ କରିବି ଏବଂ ଏହାର ଚର୍ମ ନେଇ ଶୀଘ୍ର ଆସିବି । ୪୯ । ହେ ଲକ୍ଷ୍ମଣ ! ତୁମେ ଅତିବଳବାନ୍ ବୁଦ୍ଧିମାନ୍ ଏବଂ ସତ୍କାର୍ଯ୍ୟଦକ୍ଷ ଜଟାୟୁଙ୍କ ସହିତ ମୈଥିଲୀଙ୍କୁ ଜଗି ସର୍ବତଃ ଶଙ୍କିତ ଏବଂ ସାବଧାନ ହୋଇ ରହ । ୫୦ ।

# ଚତ୍ୱାରିଂଶଃ ସର୍ଗଃ

## ମାରୀଚବଞ୍ଚନା

ତଥା ତୁ ତଂ ସମାଦିଶ୍ୟ ଭ୍ରାତରଂ ରଘୁନନ୍ଦନଃ ।
ବବନ୍ଧାସିଂ ମହାତେଜା ଜାମ୍ବୁନଦମୟତ୍ସରୁମ୍ । ୧ ।
ତତସ୍ତ୍ର୍ୟବନତଂ ଚାପମାଦାୟାତ୍ମବିଭୂଷଣମ୍ ।
ଆବଧ୍ୟ ଚ କଲାପୌ ଦ୍ୱୌ ଜଗାମୋଦଗ୍ରବିକ୍ରମଃ । ୨ ।
ତଂ ବଞ୍ଚୟାନୋ ରାଜେନ୍ଦ୍ରମାପତନ୍ତଂ ନିରୀକ୍ଷ୍ୟ ବୈ ।
ବଭୂବାନ୍ତର୍ହିତସ୍ତ୍ରାସାତ୍ ପୁନଃ ସଂଦର୍ଶନେଽଭବତ୍ । ୩ ।
ବଦ୍ଧାସିର୍ଧନୁରାଦାୟ ପ୍ରଦୁଦ୍ରାବ ଯତୋ ମୃଗଃ ।
ତଂ ସ୍ମ ପଶ୍ୟତି ରୂପେଣ ଦ୍ୟୋତମାନମିବାଗ୍ରତଃ । ୪ ।
ଅବେକ୍ଷ୍ୟାବେକ୍ଷ୍ୟ ଧାବନ୍ତଂ ଧନୁଷ୍ପାଣିଂ ମହାବନେ ।
ଅତିବୃତ୍ତମିଷୋଃ ପାତାଲ୍ଲୋଭୟାନଂ କଦାଚନ । ୫ ।

---

## ୪୪ଶ ସର୍ଗ

( ମାରୀଚର ପ୍ରବଞ୍ଚନା )

ମହାତେଜସ୍ୱୀ ରଘୁନନ୍ଦନ ଭ୍ରାତାଙ୍କୁ ଏହିପ୍ରକାର ଆଦେଶ ଦେଇ ସ୍ୱର୍ଣ୍ଣମୟ ମୁଷ୍ଟିବିଶିଷ୍ଟ ଖଡ୍ଗ ବନ୍ଧନକଲେ । ୧ । ଅନନ୍ତର ଉଗ୍ରବିକ୍ରମୀ ରାମ ନିଜର ଅଳଙ୍କାର ସ୍ୱରୂପ ତିନଭଙ୍ଗିଆ ଧନୁ ଧରି ଏବଂ ଦୁଇଟି ତୂଣୀର ବାନ୍ଧି ପ୍ରସ୍ଥାନକଲେ । ୨ । ରାଜେନ୍ଦ୍ର ରାମ ତାଆଡ଼କୁ ଅଗ୍ରସର ହେଉଥିବାର ଦେଖି ସେହି ପ୍ରତାରଣାପରାୟଣ ମୃଗ ଭୟରେ ଅନ୍ତର୍ହିତ ହୋଇଗଲା ଏବଂ ପୁଣି ଆସି ତାଙ୍କ ଦୃଷ୍ଟିପଥରେ ଅବସ୍ଥାନ କଲା । ୩ । ରାମ ଧନୁ ଓ ଖଡ୍‌ଗ ଧାରଣକରି ଯେଉଁ ଆଡ଼େ ସେ ମୃଗ ଥିଲା ସେହି ଆଡ଼କୁ ଧାବମାନ ହେଲେ ଏବଂ ଦେଖିଲେ ଯେ ମୃଗ ନିଜର ରୂପଦ୍ୱାରା ଜାଜ୍ୱଲ୍ୟମାନ ହୋଇ ତାଙ୍କ ସମ୍ମୁଖରେ ରହିଅଛି । ୪ । ମହାବନରେ ଧନୁର୍ଦ୍ଧାରୀ ରାମଙ୍କୁ ଚାହିଁ ଚାହିଁ ସେ ଏଣେ ତେଣେ ଦଉଡ଼ୁଥିଲା ଏବଂ କେତେବେଳେ ଧନୁରୁ ଶରପାତର ଦୂରରେ ରହି ତାଙ୍କୁ ପ୍ରଲୋଭିତ କରୁଥିଲା ।୫। କେତେବେଳେ ସେ ଶଙ୍କିତ ଏବଂ ଉଦ୍‌ଭ୍ରାନ୍ତ ହୋଇ ଆକାଶରେ ଲମ୍ଫ ପ୍ରଦାନ କରୁଥିଲା । ସେ ବନ-ମଧ୍ୟରେ କେତେବେଳେ ଅଦୃଶ୍ୟ ହୋଇ ଯାଉଥିଲା, କେତେବେଳେ ପୁଣି ଦେଖା

ଶଙ୍କିତଂ ତୁ ସମୁଦ୍‌ଭ୍ରାନ୍ତମୁତ୍ପତନ୍ତମିବାମ୍ବରେ ।
ଦୃଶ୍ୟମାନମଦୃଶ୍ୟଂ ଚ ବନୋଦ୍ଦେଶେଷୁ କେଷୁଚିତ୍ ।୬ ।
ଛିନ୍ନାଭ୍ରୈରିବ ସଂବୀତଂ ଶାରଦଂ ଚନ୍ଦ୍ରମଣ୍ଡଳମ୍ ।
ମୁହୂର୍ତ୍ତାଦେବ ଦଦୃଶେ ମୁହୁର୍ଦୂରାତ୍ ପ୍ରକାଶତେ । ୭ ।
ଦର୍ଶନାଦର୍ଶନାଦେବଂ ସୋଽପାକର୍ଷତ ରାଘବମ୍ ।
ସୁଦୂରମାଶ୍ରମସ୍ୟାସ୍ୟ ମାରୀଚୋ ମୃଗତାଂ ଗତଃ । ୮ ।
ଆସୀତ୍ କ୍ରୁଦ୍ଧସ୍ତୁ କାକୁତ୍ସ୍ଥୋ ବିବଶସ୍ତେନ ମୋହିତଃ ।
ଅଥାବତସ୍ଥେ ସମ୍ଭ୍ରାନ୍ତଶ୍ଛାୟାମାଶ୍ରିତ୍ୟ ଶାଦ୍ୱଲେ । ୯ ।
ସ ତମୁନ୍ମାଦୟାମାସ ମୃଗରୂପୋ ନିଶାଚରଃ ।
ମୃଗୈଃ ପରିବୃତୋ ବନ୍ୟୈରଦୂରାତ୍ ପ୍ରତ୍ୟଦୃଶ୍ୟତ । ୧୦ ।
ଗ୍ରହୀତୁକାମଂ ଦୃଷ୍ଟ୍ୱୈନଂ ପୁନରେବାଭ୍ୟଧାବତ ।
ତତ୍କ୍ଷଣାଦେବ ସନ୍ତ୍ରାସାତ୍ପୁନରନ୍ତର୍ହିତୋଽଭବତ୍ । ୧୧ ।
ପୁନରେବ ତତୋ ଦୂରାଦ୍‌ବୃକ୍ଷଷଣ୍ଡାଦ୍‌ବିନିଃସୃତମ୍ ।
ଦୃଷ୍ଟ୍ୱା ରାମୋ ମହାତେଜାସ୍ତଂ ହନ୍ତୁଂ କୃତନିଶ୍ଚୟଃ । ୧୨ ।

---

ଯାଉଥିଲା । ସେ କେତେବେଳେ ଶଙ୍କିତ ଏବଂ ବ୍ୟଗ୍ର ହୋଇ ଆକାଶରେ ଲମ୍ଫ ଦେଉଅଛି ଏବଂ କେତେବେଳେ ସେ ବନଭୂମିରେ ଅଦୃଶ୍ୟ ହୋଇଯାଉଛି, କେତେବେଳେ ବା ଦୃଶ୍ୟ ହେଉଛି । ୬ । କେତେବେଳେ ସେ ଖଣ୍ଡ ଖଣ୍ଡ ମେଘ-ସମୂହ ଦ୍ୱାରା ପରିବ୍ୟାପ୍ତ ଶରତ୍‌କାଳୀନ ଚନ୍ଦ୍ରମଣ୍ଡଳପରି ମୁହୂର୍ତ୍ତମାତ୍ର ଅଦୃଶ୍ୟ ହୋଇ ଯାଉଛି ଓ ପୁଣି ମୁହୂର୍ତ୍ତମାତ୍ରେହିଁ ଦୂରରେ ପ୍ରକାଶିତ ହେଉଛି । ୭ । ମୃଗରୂପଧାରୀ ମାରୀଚ ଏହିପରି କେବେ ଦୃଷ୍ଟ ବା କେବେ ଅଦୃଷ୍ଟ ହୋଇ ରାମଙ୍କୁ ଆଶ୍ରମଠାରୁ ବହୁ ଦୂରକୁ ଟାଣି ନେଇଗଲା । ୮ । କାକୁତ୍ସ୍ଥ ରାମ ତାର ମାୟାରେ ମୋହିତ ଏବଂ ଅତିଶୟ ବିବଶ ହୋଇ କ୍ରୁଦ୍ଧ ହୋଇ ଉଠିଲେ ଏବଂ ନିତାନ୍ତ ପରିଶ୍ରାନ୍ତ ହୋଇ ଛାୟା ଆଶ୍ରୟ କରି ଏକ ତୃଣାଚ୍ଛାଦିତ ଭୂମିଉପରେ ଠିଆହୋଇ ରହିଲେ । ୯ । ମୃଗରୂପୀ ମାରୀଚ ତାଙ୍କୁ ଉନ୍ମାଦିତ କରିଦେଇଥିଲା । ସେ ପୁନର୍ବାର ଅନ୍ୟାନ୍ୟ ବନ୍ୟ ମୃଗମାନଙ୍କ ଦ୍ୱାରା ପରିବୃତ ହୋଇ ଅଦୂରରେ ତାଙ୍କୁ ଦେଖାଦେଲା । ୧୦ । ରାମ ତାହାକୁ ଧରିବାକୁ ଇଚ୍ଛା କରୁଥିବାର ଦେଖି ସେ ପୁଣି ଦଉଡ଼ ଦଉଡ଼ ଅତିଶୟ ତ୍ରାସ ହେତୁରୁ ତତ୍‌କ୍ଷଣାତ୍ ଅନ୍ତର୍ହିତ ହୋଇଗଲା । ୧୧ । ଅନନ୍ତର ପୁଣି ଦୂରରେ ଯାଇ ବୃକ୍ଷସମୂହର ଅନ୍ତରାଳରୁ ବାହାରିଲା । ମହାତେଜା ରାମ ତାକୁ ଦେଖି ବଧ କରିବାପାଇଁ ନିଶ୍ଚୟ କଲେ । ୧୨ । ଶତ୍ରୁସୂଦନ ବଳବାନ୍ ରାଘବ ପୁଣି ସୂର୍ଯ୍ୟରଶ୍ମି

ଭୂୟସ୍ତୁ ଶରମୁଦ୍ଧୃତ୍ୟ କୁପିତସ୍ତତ୍ର ରାଘବଃ ।
ସୂର୍ଯ୍ୟରଶ୍ମି ପ୍ରତୀକାଶଂ ଜ୍ୱଲନ୍ତମରିମର୍ଦ୍ଦନଃ । ୧୩ ।
ସନ୍ଧାୟ ସୁଦୃଢ଼େ ଚାପେ ବିକୃଷ୍ୟ ବଲବଦ୍ବଲୀ ।
ତମେବ ମୃଗମୁଦ୍ଦିଶ୍ୟ ଶ୍ୱସନ୍ତମିବ ପନ୍ନଗମ୍ । ୧୪ ।
ମୁମୋଚ ଜ୍ୱଲିତଂ ଦୀପ୍ତମସ୍ତ୍ରଂ ବ୍ରହ୍ମବିନିର୍ମିତମ୍ ।
ସ ଭୃଶଂ ମୃଗରୂପସ୍ୟ ବିନିର୍ଭିଦ୍ୟ ଶରୋତ୍ତମଃ । ୧୫ ।
ମାରୀଚସ୍ୟୈବ ହୃଦୟଂ ବିଭେଦାଶନିସଂନିଭଃ ।
ତାଲମାତ୍ରମଥୋତ୍ପ୍ଲୁତ୍ୟ ନ୍ୟପତତ୍ସ ଶରାତୁରଃ । ୧୬ ।
ବିନଦନ୍ ଭୈରବଂ ନାଦଂ ଧରଣ୍ୟାମଲ୍ପଜୀବିତଃ ।
ମ୍ରିୟମାଣସ୍ତୁ ମାରୀଚୋ ଜହୌ ତାଂ କୃତ୍ରିମାଂ ତନୁମ୍ । ୧୭ ।
ସ୍ମୃତ୍ୱା ତଦ୍ବଚନଂ ରକ୍ଷୋ ଦଧ୍ୟୌ କେନ ତୁ ଲକ୍ଷ୍ମଣମ୍ ।
ଇହ ପ୍ରସ୍ଥାପୟେତ୍ ସୀତା ଶୂନ୍ୟେ ତାଂ ରାବଣୋ ହରେତ୍ । ୧୮ ।
ସ ପ୍ରାପ୍ତକାଲମାଜ୍ଞାୟ ଚକାର ଚ ତତଃ ସ୍ୱରମ୍ ।
ସଦୃଶଂ ରାଘବସ୍ୟୈବ ହା ସୀତେ ଲକ୍ଷ୍ମଣେତି ଚ । ୧୯ ।
ତେନ ମର୍ମଣି ନିର୍ବିଦ୍ଧଃ ଶରେଣାନୁପମେନ ଚ ।
ମୃଗରୂପଂ ତୁ ତତ୍ତ୍ୟକ୍ତ୍ୱା ରାକ୍ଷସଂ ରୂପମାସ୍ଥିତଃ । ୨୦ ।

---

ସଦୃଶ ଜ୍ୱଳନ୍ତ ଶର ଆକର୍ଷଣକରି ସୁଦୃଢ଼ ଧନୁରେ ସେହି ସର୍ପସଦୃଶ ଜାଜ୍ୱଲ୍ୟମାନ ଦୀପ୍ତ ଅସ୍ତ୍ର ସଂଯୋଜିତକରି ଖୁବ୍ ଜୋରରେ ଆକର୍ଷଣପୂର୍ବକ ସେହି ମୃଗକୁ ଲକ୍ଷ୍ୟ କରି ନିକ୍ଷେପକଲେ । ସେହି ବଜ୍ରସଦୃଶ ଉତ୍କୃଷ୍ଟ ଶର ମୃଗରୂପୀ ମାରୀଚର ହୃଦୟକୁ ଭେଦ କରିପକାଇଲା । ସେତେବେଳେ ସେ ଶରପୀଡ଼ିତ ହୋଇ ତାଳପରି ଉଲ୍ଲମ୍ଫନକରି ଭୂତଳରେ ପତିତହେଲା । ୧୩-୧୬ । ମାରୀଚ କ୍ଷୀଣପ୍ରାଣ ଓ ମ୍ରିୟମାଣ ହୋଇ ଭୟଙ୍କର ଶବ୍ଦରେ ଚିତ୍କାର କରି ତାହାର ସେହି କୃତ୍ରିମ ଦେହ ପରିତ୍ୟାଗ କଲା । ୧୭ । ସେତେବେଳେ ସେ ରାକ୍ଷସ ରାବଣର କଥା ସ୍ମରଣ କରି କି ଉପାୟରେ ସୀତା ଲକ୍ଷ୍ମଣଙ୍କୁ ଏଠାକୁ ପଠାଇବେ ଏବଂ ଶୂନ୍ୟ ଆଶ୍ରମରେ ରାବଣ ତାହାଙ୍କୁ ହରଣ କରିବ, ଏହି କଥା ମନରେ ଚିନ୍ତା କଲା । ୧୮ । ସେ ମୃତ୍ୟୁକାଳ ଉପସ୍ଥିତ ହେବାର ଜାଣି, "ହା ସୀତେ ! ହା ଲକ୍ଷ୍ମଣ !" ବୋଲି ଠିକ୍ ରାମଙ୍କ ସ୍ୱରରେ ଚିତ୍କାରକଲା । ୧୯ । ସେହି ଅତୁଳନୀୟ ଶରଦ୍ୱାରା ମର୍ମଦେଶରେ ବିଦ୍ଧ ହୋଇ ସେ ମୃଗରୂପ ପରିତ୍ୟାଗ କରି ରାକ୍ଷସରୂପ ଧାରଣକଲା । ୨୦ । ମାରୀଚ

ଚକ୍ରେ ସ ସୁମହାକାୟୋ ମାରୀଚୋ ଜୀବିତଂ ତ୍ୟଜନ୍ ।
ତତୋ ବିଚିତ୍ରକେୟୂରଃ ସର୍ବାଭରଣଭୂଷିତଃ । ୨୧ ।
ହେମମାଲୀ ମହାଦଂଷ୍ଟ୍ରୋ ରାକ୍ଷସୋଽଭୂଚ୍ଛରାହତଃ ।
ତଂ ଦୃଷ୍ଟ୍ୱା ପତିତଂ ଭୂମୌ ରାକ୍ଷସଂ ଘୋରଦର୍ଶନମ୍ । ୨୨ ।
ରାମୋ ରୁଧିରସିକ୍ତାଙ୍ଗଂ ବେଷ୍ଟମାନଂ ମହୀତଳେ ।
ଜଗାମ ମନସା ସୀତାଂ ଲକ୍ଷ୍ମଣସ୍ୟ ବଚଃ ସ୍ମରନ୍ । ୨୩ ।
ମାରୀଚସ୍ୟୈବ ମାୟୈଷା ପୂର୍ବୋକ୍ତଂ ଲକ୍ଷ୍ମଣେନ ତୁ ।
ତତ୍ତଥା ହ୍ୟଭବଚ୍ଚାଦ୍ୟ ମାରୀଚୋଽୟଂ ମୟା ହତଃ । ୨୪ ।
ହା ସୀତେ ଲକ୍ଷ୍ମଣେତ୍ୟେବମାକ୍ରୁଶ୍ୟ ଚ ମହାସ୍ୱନମ୍ ।
ମମାର ରାକ୍ଷସଃ ସୋଽୟଂ ଶ୍ରୁତ୍ୱା ସୀତା କଥଂ ଭବେତ୍ ।୨୫।
ଲକ୍ଷ୍ମଣଶ୍ଚ ମହାବାହୁଃ କାମବସ୍ଥାଂ ଗମିଷ୍ୟତି ।
ଇତି ସଂଚିନ୍ତ୍ୟ ଧର୍ମାତ୍ମା ରାମୋ ହୃଷ୍ଟତନୂରୁହଃ । ୨୬ ।
ତତ୍ର ରାମଂ ଭୟଂ ତୀବ୍ରମାବିବେଶ ବିଷାଦଜମ୍ ।
ରାକ୍ଷସଂ ମୃଗରୂପଂ ତଂ ହତ୍ୱା ଶ୍ରୁତ୍ୱା ଚ ତତ୍ସ୍ୱରମ୍ ।୨୭।

---

ଜୀବନ ଛାଡ଼ିବା ସମୟରେ ନିଜ ଶରୀରକୁ ଅତିଶୟ ବଢ଼ାଇଲା । ତା'ପରେ ସେ ସୁନ୍ଦର କେୟୂରଧାରୀ ସର୍ବାଳଂକାରଭୂଷିତ ହେମମାଳାଧାରୀ ବିଶାଳଦନ୍ତବିଶିଷ୍ଟ ଶରାହତ ରାକ୍ଷସ ହୋଇଗଲା । ଏହି ଭୀମଦର୍ଶନ ରାକ୍ଷସକୁ ରକ୍ତାକ୍ତ କଳେବର ହୋଇ ଭୂମିରେ ପଡ଼ି ଗଡ଼ିବାର ଦେଖି ରାମ ଲକ୍ଷ୍ମଣଙ୍କ କଥା ସ୍ମରଣ କରି ମନେ ମନେ ସୀତାଙ୍କୁ ଚିନ୍ତା କରିବାକୁ ଲାଗିଲେ । ୨୧-୨୩ । ସେ ଭାବିଲେ "ଲକ୍ଷ୍ମଣ ଆଗରୁ ଯାହା କହିଥିଲା ଆଜି ତାହା ଠିକ୍ ସେଇଆ ହେଲା । ଏହା ମାରୀଚର ହିଁ ମାୟା । ଯଥାର୍ଥରେ ମୁଁ ମାରୀଚକୁହିଁ ମାରିଲି । ୨୪ । ବର୍ତ୍ତମାନ ସେହି ରାକ୍ଷସ "ହା ସୀତେ ! ହା ଲକ୍ଷ୍ମଣ !" ବୋଲି ଉଚ୍ଚସ୍ୱରରେ ଚିତ୍କାରକରି ମଲା । ସୀତା ଏ ଶବ୍ଦ ଶୁଣି କ'ଣ ହୋଇଥିବେ ଏବଂ ମହାବାହୁ ଲକ୍ଷ୍ମଣର ବା ଅବସ୍ଥା କ'ଣ ହେବ ?" ଏହି କଥା ଚିନ୍ତାକରି ଧର୍ମାତ୍ମା ରାମଙ୍କର ରୋମ ଟାଙ୍କୁରି ଉଠିଲା । ୨୫-୨୬ । ସେହି ମୃଗରୂପୀ ରାକ୍ଷସକୁ ହତ୍ୟାକରି ଓ ତାହାର ଚିତ୍କାର ଶୁଣି ରାମଙ୍କ ମନରେ ତୀବ୍ର ବିଷାଦଜନିତ ଭୟ ପ୍ରବେଶକଲା । ୨୭ । ଅନନ୍ତର ରାମ ଆଉ ଗୋଟିଏ ପୃଷତ

**ନିହତ୍ୟ ପୃଷତଂ ଚାନ୍ୟଂ ମାଂସମାଦାୟ ରାଘବଃ ।**
**ତ୍ୱରମାଣୋ ଜନସ୍ଥାନଂ ସସାରାଭିମୁଖସ୍ତଦା । ୨୮ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ
ସଂହିତାୟାଂ ଅରଣ୍ୟକାଣ୍ଡେ ମାରୀଚବଞ୍ଚନା
ନାମ ଚତୁଶ୍ଚତ୍ୱାରିଂଶଃ ସର୍ଗଃ

———

ମୃଗକୁ ମାରି ତାହାର ମାଂସକୁ ଧରି ଅତିସତ୍ୱର ଜନସ୍ଥାନ ଅଭିମୁଖରେ ପ୍ରସ୍ଥାନ କଲେ । ୨୮ ।

———

# ପଞ୍ଚଚତ୍ୱାରିଂଶଃ ସର୍ଗଃ

## ସୀତାପାରୁଷ୍ୟମ୍

ଆର୍ତ୍ତସ୍ୱରଂ ତୁ ତଂ ଭର୍ତ୍ତୁର୍ବିଜ୍ଞାୟ ସଦୃଶଂ ବନେ ।
ଉବାଚ ଲକ୍ଷ୍ମଣଂ ସୀତା ଗଚ୍ଛ ଜାନୀହି ରାଘବମ୍ । ୧।
ନ ହି ମେ ହୃଦୟଂ ସ୍ଥାନେ ଜୀବିତଂ ବାବତିଷ୍ଠତେ ।
କ୍ରୋଶତଃ ପରମାର୍ତ୍ତସ୍ୟ ଶ୍ରୁତଃ ଶବ୍ଦୋ ମୟା ଭୃଶମ୍ । ୨ ।
ଆକ୍ରନ୍ଦମାନଂ ତୁ ବନେ ଭ୍ରାତରଂ ତ୍ରାତୁମର୍ହସି ।
ତଂ କ୍ଷିପ୍ରମଭିଧାବ ତ୍ୱଂ ଭ୍ରାତରଂ ଶରଣୈଷିଣମ୍ । ୩।
ରକ୍ଷସାଂ ବଶମାପନ୍ନଂ ସିଂହାନାମିବ ଗୋବୃଷମ୍ ।
ନ ଜଗାମ ତଥୋକ୍ତସ୍ତୁ ଭ୍ରାତୁରାଜ୍ଞାୟ ଶାସନମ୍ । ୪ ।
ତମୁବାଚ ତତସ୍ତତ୍ର କୁପିତା ଜନକାତ୍ମଜା ।
ସୌମିତ୍ରେ ମିତ୍ରରୂପେଣ ଭ୍ରାତୁସ୍ତ୍ୱମସି ଶତ୍ରୁବତ୍ । ୫।
ଯସ୍ତ୍ୱମସ୍ୟାମବସ୍ଥାୟାଂ ଭ୍ରାତରଂ ନାଭିପତ୍ସ୍ୟସେ ।
ଇଚ୍ଛସି ତ୍ୱଂ ବିନଶ୍ୟନ୍ତଂ ରାମଂ ଲକ୍ଷ୍ମଣ ମତ୍କୃତେ । ୬ ।

---

## ୪୫ଶ ସର୍ଗ

(ଲକ୍ଷ୍ମଣଙ୍କୁ ସୀତାଙ୍କର କର୍କଶବାକ୍ୟ ପ୍ରୟୋଗ)

ଏଣେ ବନମଧ୍ୟରେ ସ୍ୱାମୀଙ୍କ ସ୍ୱରସଦୃଶ ସେହି ଆର୍ତ୍ତସ୍ୱର ଶୁଣି ସୀତା ଲକ୍ଷ୍ମଣଙ୍କୁ କହିଲେ, "ତୁମେ ଯାଅ, ରାମଙ୍କର କ'ଣ ହେଲା, ଜାଣି ଆସ । ୧ । ସେ ଅତିଶୟ ଆର୍ତ୍ତସ୍ୱରରେ ଚିତ୍କାର କରିବାର ଶବ୍ଦ ମୁଁ ଶୁଣିଲି । ମୋର ମନ ଏବଂ ପ୍ରାଣ ବର୍ତ୍ତମାନ ନିଜ ସ୍ଥାନରେ ଆଉ ରହିପାରୁ ନାହିଁ । ୨ । ଅରଣ୍ୟ-ମଧ୍ୟରେ ଉଚ୍ଚୈଃସ୍ୱରରେ ଚିତ୍କାର କରୁଥିବା ଭ୍ରାତାଙ୍କୁ ତୁମ୍ଭର ରକ୍ଷା କରିବା ଉଚିତ । ସେହି ଶରଣପ୍ରାର୍ଥୀ ଭ୍ରାତାଙ୍କ ନିକଟକୁ ତୁମେ ଶୀଘ୍ର ଦଉଡ଼ିଯାଅ । ବୃଷଭ ସିଂହଦ୍ୱାରା ଆକ୍ରାନ୍ତ ହେଲା ପରି ସେ ରାକ୍ଷସମାନଙ୍କ କବଳରେ ପଡ଼ିଛନ୍ତି ।" ସୀତା ଏପରି କହିଲେ ମଧ୍ୟ ଲକ୍ଷ୍ମଣ ଭାଇଙ୍କର ଆଦେଶ ସ୍ମରଣକରି ସେଠାରୁ ଗଲେ ନାହିଁ । ୩-୪ । ସେତେବେଳେ ଜନକନନ୍ଦିନୀ ସୀତା ନିତାନ୍ତ କ୍ରୁଦ୍ଧହୋଇ ତାଙ୍କୁ କହିଲେ, "ସୌମିତ୍ରେ ! ତୁମେ ମିତ୍ରରୂପରେ ଭ୍ରାତାଙ୍କର ଶତ୍ରୁ ଅଟ ।୫। ଲକ୍ଷ୍ମଣ ! ତୁମେ ଯେ ଏପରି ଅବସ୍ଥାରେ ମଧ୍ୟ ଭାଇଙ୍କ ପାଖକୁ ଦୌଡ଼ି ଯାଉ ନାହଁ, ସେଥିରୁ ମୁଁ ବୁଝୁଛି ଯେ ମୋ ଲାଗି ତୁମେ ରାମଙ୍କର ବିନାଶ କାମନା କରୁଛ ।୬।

ଲୋଭାନ୍ମମ କୃତେ ନୂନଂ ନାନୁଗଚ୍ଛସି ରାଘବମ୍ ।
ବ୍ୟସନଂ ତେ ପ୍ରିୟଂ ମନ୍ୟେ ସ୍ନେହୋ ଭ୍ରାତରି ନାସ୍ତି ତେ । ୭ ।
ତେନ ତିଷ୍ଠସି ବିସ୍ରବ୍ଧମପଶ୍ୟନ୍ ମହାଦ୍ୟୁତିମ୍ ।
କିଂ ହି ସଂଶୟମାପନ୍ନେ ତସ୍ମିନ୍ନିହ ମୟା ଭବେତ୍ । ୮ ।
କର୍ତ୍ତବ୍ୟମିହ ତିଷ୍ଠନ୍ତ୍ୟା ଯତ୍ ପ୍ରଧାନସ୍ତ୍ୱମାଗତଃ ।
ଇତି ବ୍ରୁବାଣାଂ ବୈଦେହୀଂ ବାଷ୍ପଶୋକପରିପ୍ଳୁତାମ୍ । ୯ ।
ଅବ୍ରବୀଲ୍ଲକ୍ଷ୍ମଣସ୍ତ୍ରସ୍ତାଂ ସୀତାଂ ମୃଗବଧୂମିବ ।
ପନ୍ନଗାସୁରଗନ୍ଧର୍ବଦେବମାନୁଷରାକ୍ଷସୈଃ । ୧୦ ।
ଅଶକ୍ୟସ୍ତବ ବୈଦେହି ଭର୍ତ୍ତା ଜେତୁଂ ନ ସଂଶୟଃ ।
ଦେବି ଦେବମନୁଷ୍ୟେଷୁ ଗନ୍ଧର୍ବେଷୁ ପତତ୍ରିଷୁ । ୧୧ ।
ରାକ୍ଷସେଷୁ ପିଶାଚେଷୁ କିଂନରେଷୁ ମୃଗେଷୁ ଚ ।
ଦାନବେଷୁ ଚ ଘୋରେଷୁ ନ ସ ବିଦ୍ୟେତ ଶୋଭନେ । ୧୨ ।
ଯୋ ରାମଂ ପ୍ରତିଯୁଧ୍ୟେତ ସମରେ ବାସବୋପମମ୍ ।
ଅବଧ୍ୟଃ ସମରେ ରାମୋ ନୈବଂ ତ୍ୱଂ ବକ୍ତୁମର୍ହସି । ୧୩।

---

ନିଶ୍ଚୟ ମୋ ପ୍ରତି ଲୋଭହେତୁରୁ ତୁମେ ରାମଙ୍କର ଅନୁଗମନ କରୁ ନାହଁ, ତାଙ୍କର ଏ ବିପଦ ତୁମ୍ଭକୁ ପ୍ରିୟ ବୋଧହେଉଅଛି । ଭାଇଙ୍କଠାରେ ତୁମ୍ଭର ସ୍ନେହ ନାହିଁ । ୭ । ସେଇଥିଲାଗି ତୁମେ ମହାଦ୍ୟୁତି ସେହି ରାମଙ୍କୁ ନ ଦେଖି ମଧ୍ୟ ନିଶ୍ଚିନ୍ତରେ ବସି ରହିଛ; କିନ୍ତୁ ଯାହାଙ୍କର ଅଧୀନ ହୋଇ ତୁମେ ଏଠାକୁ ଆସିଛ ତାଙ୍କ ଅବସ୍ଥା ବର୍ତ୍ତମାନ ସଂଶୟାପନ୍ନ ହେବାବେଳେ ଏଠାରେ ରହି ମୋଦ୍ୱାରା କ'ଣ ହେବ ?" ବୈଦେହୀ ବାଷ୍ପଶୋକାଭିଭୂତ ହୋଇ ତ୍ରସ୍ତା ମୃଗୀ ସଦୃଶ ଏହିପରି କହିବାରୁ ଲକ୍ଷ୍ମଣ ତାଙ୍କୁ କହିଲେ, "ହେ ବୈଦେହି ! ତୁମ୍ଭର ସ୍ୱାମୀଙ୍କୁ ପନ୍ନଗ, ଅସୁର, ଗନ୍ଧର୍ବ, . ଦେବ, ମନୁଷ୍ୟ ବା ରାକ୍ଷସ କେହି ଜିଣିବାକୁ ସମର୍ଥ ହେବେ ନାହିଁ । ହେ ଶୋଭନେ ଦେବି ! ଦେବତା, ମନୁଷ୍ୟ, ଗନ୍ଧର୍ବ, ପକ୍ଷୀ, ରାକ୍ଷସ, ପିଶାଚ, କିନ୍ନର, ମୃଗ ଏବଂ ଘୋର ଦାନବ ଏମାନଙ୍କ ମଧ୍ୟରେ ଏପରି କେହି ନାହିଁ ଯେ ଇନ୍ଦ୍ରତୁଲ୍ୟ ରାମଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ସମର୍ଥ ହେବ । ରାମ ଯୁଦ୍ଧରେ ଅବଧ୍ୟ ଅଟନ୍ତି, ସୁତରାଂ ତୁମ୍ଭର ଏପରି କହିବା ଉଚିତ ନୁହେ । ୮-୧୩ । ମୁଁ ତୁମକୁ ରାମ ବିନା ଏକାକୀ ଏ ଅରଣ୍ୟମଧ୍ୟରେ ତ୍ୟାଗ

ନ ତ୍ୱାମସ୍ମିନ୍ ବନେ ହାତୁମୁତ୍ସହେ ରାଘବଂ ବିନା ।
ଅନିବାର୍ଯ୍ୟଂ ବଲଂ ତସ୍ୟ ବଲୈର୍ବଲବତାମପି । ୧୪ ।
ତ୍ରିଭିର୍ଲୋକୈଃ ସମୁଦ୍ୟୁକ୍ତୈଃ ସେଶ୍ୱରୈରପି ସାମରୈଃ ।
ହୃଦୟଂ ନିର୍ବୃତଂ ତେଽସ୍ତୁ ସନ୍ତାପସ୍ତ୍ୟଜ୍ୟତାମୟମ୍ । ୧୫ ।
ଆଗମିଷ୍ୟତି ତେ ଭର୍ତ୍ତା ଶୀଘ୍ରଂ ହତ୍ୱା ମୃଗୋତ୍ତମମ୍ ।
ନ ଚ ତସ୍ୟ ସ୍ୱରୋ ବ୍ୟକ୍ତଂ ମାୟୟା କେନଚିତ୍ କୃତଃ । ୧୬ ।
ଗନ୍ଧର୍ବନଗରପ୍ରଖ୍ୟା ମାୟା ସା ତସ୍ୟ ରକ୍ଷସଃ ।
ନ୍ୟାସଭୂତାସି ବୈଦେହି ନ୍ୟସ୍ତା ମୟି ମହାତ୍ମନା । ୧୭ ।
ରାମେଣ ତ୍ୱଂ ବରାରୋହେ ନ ତ୍ୱାଂ ତ୍ୟକ୍ତୁମିହୋତ୍ସହେ ।
କୃତବୈରାଶ୍ଚ କଲ୍ୟାଣି ବୟମେତୈର୍ନିଶାଚରୈଃ । ୧୮ ।
ଖରସ୍ୟ ନିଧନାଦେବ ଜନସ୍ଥାନବଧଂ ପ୍ରତି ।
ରାକ୍ଷସା ବିବିଧା ବାଚୋ ବ୍ୟସୃଜନ୍ତି ମହାବନେ । ୧୯ ।
ହିଂସାବିହାରା ବୈଦେହି ନ ଚିନ୍ତୟିତୁମର୍ହସି ।
ଲକ୍ଷ୍ମଣେନୈବ ମୁକ୍ତା ସା କ୍ରୁଦ୍ଧା ସଂରକ୍ତଲୋଚନା । ୨୦ ।

---

କରି ଯିବାକୁ ସାହସ କରୁ ନାହିଁ । ବଳବାନ୍ ବ୍ୟକ୍ତିମାନେ ମଧ୍ୟ ବଳଦ୍ୱାରା ତାଙ୍କର ବଳକୁ ପ୍ରତିରୋଧ କରିପାରିବେ ନାହିଁ । ୧୪ । ସ୍ୱୟଂ ଈଶ୍ୱର ଏବଂ ଦେବଗଣଙ୍କ ସହିତ ତିନିଲୋକ ଏକତ୍ର ମିଳିତ ହେଲେ ମଧ୍ୟ ରାମଙ୍କୁ ପରାସ୍ତ କରି ପାରିବେ ନାହିଁ । ତୁମେ ମନରେ ନିଶ୍ଚିନ୍ତ ହୁଅ ଏବଂ ଏ ଶୋକ ପରିତ୍ୟାଗ କର । ୧୫ । ତୁମ୍ଭର ସ୍ୱାମୀ ଶୀଘ୍ର ସେହି ଉତ୍କୃଷ୍ଟ ମୃଗକୁ ବଧ କରି ଫେରିଆସିବେ । ତାଙ୍କ ସ୍ୱର ତ ପରିଷ୍କାର ଶୁଣାଗଲା ନାହିଁ, କେହି ମାୟାରେ ଏପରି ସ୍ୱର କରିଛି । ୧୬ । ଗନ୍ଧର୍ବନଗରୀ-ସଦୃଶ ଏହି ମାୟା ନିଶ୍ଚୟ ସେହି ରାକ୍ଷସର । ହେ ବୈଦେହି ! ମହାତ୍ମା ରାମ ମୋ ନିକଟରେ ତୁମଙ୍କୁ ନ୍ୟାସସ୍ୱରୂପ ରଖିଦେଇ ଯାଇଛନ୍ତି । ହେ ବରାରୋହେ ! ମୁଁ ତୁମକୁ ବର୍ତ୍ତମାନ ଛାଡ଼ି ଯିବାକୁ ସାହସ କରୁ ନାହିଁ । ହେ କଲ୍ୟାଣି ! ଏହି ନିଶାଚରମାନେ ସମସ୍ତେ ଆମ ପ୍ରତି ଶତ୍ରୁତା କରି ରହିଛନ୍ତି । ୧୭-୧୮ । ଖରର ମୃତ୍ୟୁ ଦିନଠାରୁ ଜନସ୍ଥାନ ଧ୍ୱଂସ ହେବାରୁ ରାକ୍ଷସମାନେ ଏ ମହାରଣ୍ୟରେ ନାନା ପ୍ରକାର କଥା ସୃଷ୍ଟି କରୁଛନ୍ତି । ସେମାନେ ଅନ୍ୟ ପ୍ରତି ହିଂସା କରିବାରେହିଁ ଆନନ୍ଦ ଉପଭୋଗ କରନ୍ତି, ସୁତରାଂ ହେ ବୈଦେହି ! ତୁମ୍ଭର ଚିନ୍ତା କରିବା ଉଚିତ ନୁହେଁ ।” ଲକ୍ଷ୍ମଣ ଏହିପରି କହିବାରୁ ସୀତା କ୍ରୋଧରେ ରକ୍ତନେତ୍ର ହୋଇ ସତ୍ୟବାଦୀ ଲକ୍ଷ୍ମଣଙ୍କୁ

ଅବ୍ରବୀତ୍ ପରୁଷଂ ବାକ୍ୟଂ ଲକ୍ଷ୍ମଣଂ ସତ୍ୟବାଦିନମ୍ ।
ଅନାର୍ଯ୍ୟାକରୁଣାରମ୍ଭ ନୃଶଂସ କୁଲପାଂସନ । ୨୧ ।
ଅହଂ ତବ ପ୍ରିୟଂ ମନ୍ୟେ ରାମସ୍ୟ ବ୍ୟସନଂ ମହତ୍ ।
ରାମସ୍ୟ ବ୍ୟସନଂ ଦୃଷ୍ଟ୍ୱା ତେନୈତାନି ପ୍ରଭାଷସେ । ୨୨ ।
ନୈତଚ୍ଚିତ୍ରଂ ସପତ୍ନେଷୁ ପାପଂ ଲକ୍ଷ୍ମଣ ଯଦ୍ଭବେତ୍ ।
ତ୍ୱଦ୍ୱିଧେଷୁ ନୃଶଂସେଷୁ ନିତ୍ୟଂ ପ୍ରଚ୍ଛନ୍ନଚାରିଷୁ । ୨୩ ।
ସୁଦୁଷ୍ଟସ୍ତ୍ୱଂ ବନେ ରାମମେକମେକୋଽନୁଗଚ୍ଛସି ।
ମମ ହେତୋଃ ପ୍ରତିଚ୍ଛନ୍ନଃ ପ୍ରଯୁକ୍ତୋ ଭରତେନ ବା । ୨୪।
ତନ୍ନସିଧ୍ୟତି ସୌମିତ୍ରେ ତବ ବା ଭରତସ୍ୟ ବା ।
କଥମିନ୍ଦୀବରଶ୍ୟାମଂ ପଦ୍ମପତ୍ରନିଭେକ୍ଷଣମ୍ । ୨୫ ।
ଉପସଂଶ୍ରିତ୍ୟ ଭର୍ତାରଂ କାମୟେୟଂ ପୃଥଗ୍ଜନମ୍ ।
ସମକ୍ଷଂ ତବ ସୌମିତ୍ରେ ପ୍ରାଣାଂସ୍ତ୍ୟକ୍ଷ୍ୟେ ନ ସଂଶୟଃ । ୨୬ ।
ରାମଂ ବିନା କ୍ଷଣମପି ନ ହି ଜୀବାମି ଭୂତଲେ ।
ଇତ୍ୟୁକ୍ତଃ ପରୁଷଂ ବାକ୍ୟଂ ସୀତୟା ରୋମହର୍ଷଣମ୍ । ୨୭ ।

---

କଠୋର ବାକ୍ୟରେ କହିଲେ । "ହେ ଅନାର୍ଯ୍ୟ ! ନିର୍ଦ୍ଦୟ ! ନୃଶଂସ ! କୁଳକଳଂକ ! ରାମଙ୍କର ମହାବିପଦହିଁ ତୁମ୍ଭର ପ୍ରିୟ ବୋଲି ମୋର ମନେ ହେଉଛି । ସେଇଥିପାଇଁ ତୁମେ ରାମଙ୍କର ଏ ବିପଦ ଦେଖି ଏହି ସବୁ କଥା କହୁଛ । ୧୯-୨୨ । ଲକ୍ଷ୍ମଣ ! ତୁମ୍ଭପରି ସତତ ପ୍ରଚ୍ଛନ୍ନାଚାରୀ ନୃଶଂସ ବୈମାତ୍ରେୟ ଭ୍ରାତାଠାରେ ଯେ ଏହି ପାପାଭିଳାଷ ରହିବ, ଏହା ବିଚିତ୍ର ନୁହେ । ୨୩ । ତୁମେ ନିତାନ୍ତ ଦୁଷ୍ଟପ୍ରକୃତି, ସେଥିପାଇଁ ମୋତେ ପାଇବା ଉଦ୍ଦେଶ୍ୟରେ ବନରେ ରାମଙ୍କୁ ଏକୁଟିଆ ହୋଇ ଅନୁସରଣ କରୁଛ, କିମ୍ବା ଭରତଦ୍ୱାରା ନିଯୁକ୍ତ ହୋଇ ତୁମେ ଏପରି କରୁଛ ।୨୪। ମାତ୍ର ହେ ସୌମିତ୍ରେ ! ତୁମ୍ଭର ବା ଭରତର ସେ ଉଦ୍ଦେଶ୍ୟ କଦାପି ସିଦ୍ଧ ହେବନାହିଁ । ମୁଁ - ପଦ୍ମପଲାଶଲୋଚନ, ନୀଳୋତ୍ପଳଶ୍ୟାମ ରାମଙ୍କୁ ସ୍ୱାମୀରୂପେ ଆଶ୍ରୟ କରି କିପରି ଇତରଲୋକକୁ କାମନା କରିବି ? ହେ ଲକ୍ଷ୍ମଣ ! ତୁମର ଆଗରେହିଁ ମୁଁ ପ୍ରାଣତ୍ୟାଗ କରିବି ଏଥିରେ ସନ୍ଦେହ ନାହିଁ । ୨୫-୨୬ । ମୁଁ ଏ ପୃଥିବୀରେ ରାମଙ୍କ ବିନା ମୁହୂର୍ତ୍ତେ ମଧ୍ୟ ବଞ୍ଚିବି ନାହିଁ ।" ସୀତା ଏହାଦୃଶ ରୋମହର୍ଷଣକାରୀ କର୍କଶ ବାକ୍ୟ ପ୍ରୟୋଗ କରିବାରୁ ଜିତେନ୍ଦ୍ରିୟ ଲକ୍ଷ୍ମଣ କରଯୋଡ଼ି ତାଙ୍କୁ କହିଲେ,

ଅବ୍ରବୀଲ୍ଲକ୍ଷ୍ମଣଃ ସୀତାଂ ପ୍ରାଞ୍ଜଳିର୍ବିଜିତେନ୍ଦ୍ରିୟଃ ।
ଉତ୍ତରଂ ନୋତ୍ସହେ ବକ୍ତୁଂ ଦୈବତଂ ଭବତୀ ମମ । ୨୮ ।
ବାକ୍ୟମପ୍ରତିରୂପଂ ତୁ ନ ଚିତ୍ରଂ ସ୍ତ୍ରୀଷୁ ମୈଥିଲି ।
ସ୍ୱଭାବସ୍ତ୍ୱେଷ ନାରୀଣାମେବଂ ଲୋକେଷୁ ଦୃଶ୍ୟତେ । ୨୯ ।
ବିମୁକ୍ତଧର୍ମାଶ୍ଚପଲାସ୍ତୀକ୍ଷ୍ଣାଃ ଭେଦକରାଃ ସ୍ତ୍ରିୟଃ ।
ନ ସହେ ହୀଦୃଶଂ ବାକ୍ୟଂ ବୈଦେହି ଜନକାତ୍ମଜେ । ୩୦ ।
ଶ୍ରୋତ୍ରୟୋରୁଭୟୋର୍ମଧ୍ୟେ ତପ୍ତନାରାଚସନ୍ନିଭମ୍ ।
ଉପଶୃଣ୍ୱନ୍ତୁ ମେ ସର୍ବେ ସାକ୍ଷୀଭୂତା ବନେଚରାଃ । ୩୧ ।
ନ୍ୟାୟବାଦୀ ଯଥାନ୍ୟାୟମୁକ୍ତୋଽହଂ ପରୁଷଂ ତ୍ୱୟା ।
ଧିକ୍ତ୍ୱାମଦ୍ୟ ପ୍ରଣଶ୍ୟ ତ୍ୱଂ ଯନ୍ମାମେବଂ ବିଶଙ୍କସେ । ୩୨ ।
ସ୍ତ୍ରୀତ୍ୱାଦ୍ ଦୁଷ୍ଟସ୍ୱଭାବେନ ଗୁରୁବାକ୍ୟେ ବ୍ୟବସ୍ଥିତମ୍ ।
ଗମିଷ୍ୟେ ଯତ୍ର କାକୁତ୍ସ୍ଥଃ ସ୍ୱସ୍ତି ତେଽସ୍ତୁ ବରାନନେ । ୩୩ ।
ରକ୍ଷନ୍ତୁ ତ୍ୱାଂ ବିଶାଲାକ୍ଷି ସମଗ୍ରା ବନଦେବତାଃ ।
ନିମିତ୍ତାନି ହି ଘୋରାଣି ଯାନି ପ୍ରାଦୁର୍ଭବନ୍ତି ମେ । ୩୪ ।

---

"ଆପଣ ମୋର ସାକ୍ଷାତ ଦେବତାସଦୃଶ, ସୁତରାଂ ଆପଣଙ୍କୁ ଉତ୍ତର ଦେବାକୁ ମୋର ସାହସ ହେଉ ନାହିଁ ।୨୭-୨୮। କିନ୍ତୁ ହେ ଜାନକି ! ତୁମେ ଯେ ଅଯୋଗ୍ୟ କଥା କହିଲ, ତାହା ସ୍ତ୍ରୀଲୋକଙ୍କ ପକ୍ଷରେ ବିଚିତ୍ର ନୁହେ । ଏ ଜଗତରେ ସ୍ତ୍ରୀମାନଙ୍କର ଏହିପରି ସ୍ୱଭାବହିଁ ଦେଖାଯାଏ ।୨୯। ହେ ଜନକାତ୍ମଜେ, ବୈଦେହି ! ସ୍ତ୍ରୀଜାତି ସ୍ୱଭାବତଃ କ୍ରୂର, ଚଞ୍ଚଳ, ଧର୍ମହୀନ ଏବଂ ପରସ୍ପର ମଧ୍ୟରେ ଭେଦସୃଷ୍ଟିକାରିଣୀ । ମୁଁ ତୁମ୍ଭର ଏପରି କଥା ସହି ପାରିବି ନାହିଁ ।୩୦। ତୁମ୍ଭର ଏ କଥା ମୋର କର୍ଣ୍ଣଦ୍ୱୟ ପ୍ରତି ଉତ୍ତପ୍ତ ଶରସଦୃଶ ଅଟେ । ବନଚରମାନେ ସମସ୍ତେ ମୋର ସାକ୍ଷୀ ହୋଇ ଏ କଥା ଶୁଣନ୍ତୁ ।୩୧। ମୁଁ ନ୍ୟାୟ ଅନୁସାରେ ନ୍ୟାଯ୍ୟ କଥା କହିଲି, କିନ୍ତୁ ତୁମେ ମୋତେ ଏପରି କଠୋର କଥା କହୁଅଛ । ତୁମେ ସ୍ତ୍ରୀସୁଲଭ ଦୁଷ୍ଟ ସ୍ୱଭାବ ହେତୁ ଗୁରୁଙ୍କ କଥା ମାନି ଚଳୁଥିବା ମୋ ପ୍ରତି ଯେ ଏହିପରି ଆଶଙ୍କା କରୁଛ ସୁତରାଂ ତୁମର ବିନାଶ ଅନିବାର୍ଯ୍ୟ । ତୁମକୁ ଧିକ୍ । ହେ ବରାନନେ ! ତୁମ୍ଭର ମଙ୍ଗଳ ହେଉ, ରାମ ଯେଉଁଠାରେ ଅଛନ୍ତି ମୁଁ ସେହିଠାକୁ ଯାଉଛି ।୩୨-୩୩। ହେ ବିଶାଳାକ୍ଷି ! ବନଦେବତାମାନେ ତୁମକୁ ରକ୍ଷା କରନ୍ତୁ । ଘୋର ଅଶୁଭ-ସୂଚକ ଦୁର୍ନିମିତ୍ତମାନ ମୋ ସମ୍ମୁଖରେ ପ୍ରାଦୁର୍ଭୂତ ହେଉଅଛି । ସୁତରାଂ ମୁଁ ପୁଣି

ଅପି ତ୍ୱାଂ ସହ ରାମେଣ ପଶ୍ୟେୟଂ ପୁନରାଗତଃ ।
ଲକ୍ଷ୍ମଣେନୈବ ମୁକ୍ତା ସା ରୁଦନ୍ତୀ ଜନକାତ୍ମଜା । ୩୫ ।
ପ୍ରତ୍ୟୁବାଚ ତତୋ ବାକ୍ୟଂ ତୀବ୍ରଂ ବାଷ୍ପପରିପ୍ଲୁତା ।
ଗୋଦାବରୀଂ ପ୍ରବେକ୍ଷ୍ୟାମି ବିନା ରାମେଣ ଲକ୍ଷ୍ମଣ । ୩୬।
ଆବନ୍ଧିଷ୍ୟେଽଥ ବା ତ୍ୟକ୍ଷ୍ୟେ ବିଷମେ ଦେହମାତ୍ମନଃ ।
ପିବାମ୍ୟହଂ ବିଷଂ ତୀକ୍ଷ୍ଣଂ ପ୍ରବେକ୍ଷ୍ୟାମି ହୁତାଶନମ୍ । ୩୭।
ନ ତ୍ୱହଂ ରାଘବାଦନ୍ୟଂ ପଦାପି ପୁରୁଷଂ ସ୍ପୃଶେ ।
ଇତି ଲକ୍ଷ୍ମଣମାକ୍ରୁଶ୍ୟ ସୀତା ଦୁଃଖସମନ୍ୱିତା । ୩୮ ।
ପାଣିଭ୍ୟାଂ ରୁଦତୀ ଦୁଃଖାଦୁଦରଂ ପ୍ରଜଘାନ ହ । ୩୯ ।

ତାମାର୍ତ୍ତରୂପାଂ ବିମନାଂ ରୁଦନ୍ତୀମ୍
ସୌମିତ୍ରିରାଲୋକ୍ୟ ବିଶାଲନେତ୍ରାମ୍ ।
ଆଶ୍ୱାସୟାମାସ ନ ଚୈବ ଭର୍ତ୍ତୁ-
ସ୍ତଂ ଭ୍ରାତରଂ କିଂଚିଦୁବାଚ ସୀତା । ୪୦ ।

---

ରାମଙ୍କ ସହିତ ଫେରି ଆସି ସତେ କ'ଣ ତୁମକୁ ଦେଖିବାକୁ ପାଇବି ?" ଲକ୍ଷ୍ମଣ ଏହିପରି କହିବାରୁ ସୀତା କାନ୍ଦି କାନ୍ଦି ଅଶ୍ରୁବିଗଳିତହୋଇ ତୀବ୍ରସ୍ୱରରେ ଉତ୍ତର ଦେଲେ । "ହେ ଲକ୍ଷ୍ମଣ ! ମୁଁ ରାମଙ୍କ ବ୍ୟତିରେକେ ଗୋଦାବରୀ ନଦୀରେ ପ୍ରବେଶ କରିବି । ୩୪-୩୬ । ମୁଁ ଦଉଡ଼ି ଦେଇ କିମ୍ବା କୌଣସି ଉଚ୍ଚସ୍ଥାନରୁ ଡେଇଁପଡ଼ି ନିଜର ଦେହ ତ୍ୟାଗ କରିବି ଅଥବା ଉଗ୍ର ବିଷ ପାନକରିବି କିମ୍ବା ଅଗ୍ନିରେ ପ୍ରବେଶ କରିବି ।୩୭ । ତଥାପି ରାମ ଭିନ୍ନ ଅନ୍ୟ କୌଣସି ପୁରୁଷକୁ ମୁଁ ପାଦରେ ମଧ୍ୟ ସ୍ପର୍ଶ କରିବି ନାହିଁ ।" ସୀତା ଶୋକସମନ୍ୱିତା ହୋଇ କାନ୍ଦି କାନ୍ଦି ଲକ୍ଷ୍ମଣ ପ୍ରତି ଏହିପରି ଆକ୍ରୋଶ ପ୍ରକାଶକରି ଦୁଃଖରେ ଉଦରରେ କରାଘାତ କରିବାକୁ ଲାଗିଲେ । ୩୮-୩୯ । ଲକ୍ଷ୍ମଣ ବିଶାଳନୟନା ସୀତାଙ୍କୁ ଆର୍ତ୍ତସ୍ୱରରେ ରୋଦନ କରିବାର ଦେଖି ବିମନା ହୋଇ ଆଶ୍ୱାସନା ଦେବାକୁ ଲାଗିଲେ, କିନ୍ତୁ ସୀତା ସ୍ୱାମୀଙ୍କର ଭାଇକୁ ଆଉ କିଛି କହିଲେ ନାହିଁ । ୪୦ । ଅନନ୍ତର ଶୁଦ୍ଧଚିତ୍ତ ଲକ୍ଷ୍ମଣ

ତତସ୍ତୁ ସୀତାମଭିବାଦ୍ୟ ଲକ୍ଷ୍ମଣଃ
କୃତାଞ୍ଜଳିଃ କିଂଚିଦଭିପ୍ରଣମ୍ୟ ଚ ।
ଅନ୍ୱୀକ୍ଷମାଣୋ ବହୁଶଶ୍ଚ ମୈଥିଲୀମ୍
ଜଗାମ ରାମସ୍ୟ ସମୀପମାତ୍ମବାନ୍ । ୪୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ ଅରଣ୍ୟକାଣ୍ଡେ ସୀତାପାରୁଷ୍ୟମ୍
ନାମ ପଞ୍ଚଚତ୍ୱାରିଂଶଃ ସର୍ଗଃ

---

କୃତାଞ୍ଜଳିହୋଇ ସୀତାଙ୍କୁ ଅଭିବାଦନକରି ଏବଂ ଈଷତ୍ ପ୍ରଣତ ହୋଇ ବାରମ୍ବାର ତାଙ୍କଆଡ଼କୁ ଚାହିଁ ଚାହିଁ ରାମଙ୍କ ନିକଟକୁ ଗମନ କଲେ ।୪୧ ।

# ଷଟ୍‌ଚତ୍ୱାରିଂଶଃ ସର୍ଗଃ

## ରାବଣଭିକ୍ଷୁସତ୍କାରଃ

ତଥା ପରୁଷମୁକ୍ତସ୍ତୁ କୁପିତୋ ରାଘବାନୁଜଃ ।
ସ ବିକାଙ୍‌କ୍ଷନ୍ ଭୃଶଂ ରାମଂ ପ୍ରତସ୍ଥେ ନ ଚିରାଦିବ । ୧ ।
ତଦାସାଦ୍ୟ ଦଶଗ୍ରୀବଃ କ୍ଷିପ୍ରମନ୍ତରମାସ୍ଥିତଃ ।
ଅଭିଚକ୍ରାମ ବୈଦେହୀଂ ପରିବ୍ରାଜକରୂପଧୃତ୍ । ୨ ।
ଶ୍ଲକ୍ଷ୍ଣକାଷାୟସଂବୀତଃ ଶିଖୀ ଛତ୍ରୀ ଉପାନହୀ ।
ବାମେ ଚାଂସେଽବସଜ୍ୟାଥ ଶୁଭେ ଯଷ୍ଟିକମଣ୍ଡଲୂ । ୩ ।
ପରିବ୍ରାଜକରୂପେଣ ବୈଦେହୀମନ୍ୱପଦ୍ୟତ ।
ତାମାସସାଦାତିବଲୋ ଭ୍ରାତୃଭ୍ୟାଂ ରହିତାଂ ବନେ । ୪ ।
ରହିତାଂ ଚନ୍ଦ୍ରସୂର୍ଯ୍ୟାଭ୍ୟାଂ ସନ୍ଧ୍ୟାମିବ ମହତ୍ତମଃ ।
ତାମପଶ୍ୟତ୍ତତୋ ବାଲାଂ ରାମପତ୍ନୀଂ ଯଶସ୍ୱିନୀମ୍ । ୫ ।
ରୋହିଣୀଂ ଶଶିନା ହୀନାଂ ଗ୍ରହବଦ୍ଭୃଶଦାରୁଣଃ ।
ତମୁଗ୍ରତେଜଃକର୍ମାଣଂ ଜନସ୍ଥାନରୁହା ଦ୍ରୁମାଃ । ୬ ।

---

## ୪୬ଶ ସର୍ଗ

( ଭିକ୍ଷୁରୂପୀ ରାବଣର ସତ୍କାର )

ରାମଙ୍କର କନିଷ୍ଠ ଭ୍ରାତା ଲକ୍ଷ୍ମଣ ସୀତାଙ୍କର କଟୂକ୍ତିରେ କ୍ରୁଦ୍ଧହୋଇ ରାମଙ୍କୁ ଦେଖିବାପାଇଁ ଅତିଶୟ ବ୍ୟଗ୍ରଚିତ୍ତରେ ଅବିଳମ୍ବେ ପ୍ରସ୍ଥାନକଲେ ।୧। ଏହି ଅବସର ପାଇ ଅନ୍ତରାଳରେ ଲୁଚିରହିଥିବା ରାବଣ ତତ୍‌କ୍ଷଣାତ୍ ପରିବ୍ରାଜକ ବେଶରେ ସୀତାଙ୍କ ଆଡ଼କୁ ଅଗ୍ରସର ହେଲା । ୨ । ସେ କୋମଳ ପଟ୍ଟବସ୍ତ୍ର ପିନ୍ଧି ଶିଖା, ଛତ୍ର ଏବଂ ଉପାନତ୍ ଧାରଣକରି ଓ ବାମସ୍କନ୍ଧରେ ସୁନ୍ଦର ଯଷ୍ଟି ଏବଂ କମଣ୍ଡଳୁ ପକାଇ ପରିବ୍ରାଜକରୂପରେ ସୀତାଙ୍କ ନିକଟରେ ସମାଗତ ହେଲା । ଚନ୍ଦ୍ର ସୂର୍ଯ୍ୟ-ବିରହିତ ସନ୍ଧ୍ୟାକୁ ଯେପରି ମହା ଅନ୍ଧକାର ଆଚ୍ଛନ୍ନ କରେ, ସେହିପରି ସେହି ଦୁଇ ଭ୍ରାତାଙ୍କଠାରୁ ବିଚ୍ଛିନ୍ନା ସୀତାଙ୍କ ଆଗରେ ବଳବାନ ରାବଣ ଆସି ପହଞ୍ଚିଲା । ଅନନ୍ତର ଚନ୍ଦ୍ରହୀନା ରୋହିଣୀପରି ରାମହୀନା ଯଶସ୍ୱିନୀ ରାମପତ୍ନୀ ସୀତାଙ୍କୁ ଦାରୁଣ

ସମୀକ୍ଷ୍ୟ ନ ପ୍ରକମ୍ପନ୍ତେ ନ ପ୍ରବାତି ଚ ମାରୁତଃ ।
ଶୀଘ୍ରସ୍ରୋତାଶ୍ଚ ତଂ ଦୃଷ୍ଟ୍ୱା ବୀକ୍ଷନ୍ତଂ ରକ୍ତଲୋଚନମ୍ । ୭ ।
ସ୍ତିମିତଂ ଗନ୍ତୁମାରେଭେ ଭୟାଦ୍‌ଗୋଦାବରୀ ନଦୀ ।
ରାମସ୍ୟ ତ୍ୱନ୍ତରଂ ପ୍ରେପ୍ସୁର୍ଦଶଗ୍ରୀବସ୍ତଦନ୍ତରେ । ୮ ।
ଉପତସ୍ଥେ ଚ ବୈଦେହୀଂ ଭିକ୍ଷୁରୂପେଣ ରାବଣଃ ।
ଅଭବ୍ୟୋ ଭବ୍ୟରୂପେଣ ଭର୍ତାରମନୁଶୋଚତୀମ୍ । ୯ ।
ଅଭ୍ୟବର୍ତ୍ତତ ବୈଦେହୀଂ ଚିତ୍ରାମିବ ଶନୈଶ୍ଚରଃ ।
ସ ପାପୋ ଭବ୍ୟରୂପେଣ ତୃଣୈଃ କୂପ ଇବାବୃତଃ । ୧୦ ।
ଅତିଷ୍ଠତ୍ ପ୍ରେକ୍ଷ୍ୟ ବୈଦେହୀଂ ରାମପତ୍ନୀଂ ଯଶସ୍ୱିନୀମ୍ ।
ଶୁଭାଂ ରୁଚିରଦନ୍ତୋଷ୍ଠୀଂ ପୂର୍ଣଚନ୍ଦ୍ରନିଭାନନାମ୍ । ୧୧ ।
ଆସୀନାଂ ପର୍ଣଶାଳାୟାଂ ବାଷ୍ପଶୋକାଭିପୀଡ଼ିତାମ୍ ।
ସ ତାଂ ପଦ୍ମପଲାଶାକ୍ଷୀଂ ପୀତକୌଶେୟବାସିନୀମ୍ । ୧୨ ।
ଅଭ୍ୟଗଚ୍ଛତ ବୈଦେହୀଂ ହୃଷ୍ଟଚେତା ନିଶାଚରଃ ।
ସ ମନ୍ମଥଶରାବିଷ୍ଟୋ ବ୍ରହ୍ମଘୋଷମୁଦୀରୟନ୍ । ୧୩ ।

---

ଗ୍ରହସଦୃଶ ରାବଣ ଦର୍ଶନକଲା । ସେହି ଉଗ୍ରତେଜା ରାବଣକୁ ଦେଖି ଜନସ୍ଥାନର ଦ୍ରୁମମାନେ ସ୍ପନ୍ଦନହୀନ ହୋଇଗଲେ ଏବଂ ବାୟୁ ଆଉ ବହିଲା ନାହିଁ । ଶୀଘ୍ରସ୍ରୋତା ଗୋଦାବରୀ ନଦୀ ମଧ୍ୟ ରକ୍ତଲୋଚନ ରାବଣକୁ ସୀତାଙ୍କ ଆଡ଼କୁ ଦୃଷ୍ଟିପାତ କରୁଥିବାର ଦେଖି ଭୟରେ ଧୀରେ ଧୀରେ ଗତି କରିବାକୁ ଲାଗିଲେ । ଇତିମଧ୍ୟରେ ଦଶାନନ ରାବଣ ରାମଙ୍କ ଅନୁପସ୍ଥିତିର ଅବସର ପାଇ ଭିକ୍ଷୁକବେଶରେ ବୈଦେହୀଙ୍କ ନିକଟରେ ଉପସ୍ଥିତ ହେଲା । ଶନିଗ୍ରହ ଯେପରି ଚିତ୍ରାନକ୍ଷତ୍ରର ସମୀପବର୍ତ୍ତୀ ହୁଏ, ସେହିପରି ଅସାଧୁ ରାବଣ ସାଧୁବେଶରେ ସ୍ୱାମୀଙ୍କଲାଗି ଅନୁଶୋଚନା କରୁଥିବା ସୀତାଙ୍କ ଆଡ଼କୁ ଅଗ୍ରସର ହେଲା । ସେହି ପାପୀ ତୃଣାଚ୍ଛାଦିତ କୂପସଦୃଶ ସାଧୁବେଶ ଧାରଣ କରି ରୁଚିରଦନ୍ତୋଷ୍ଠୀ, ପୂର୍ଣ୍ଣଚନ୍ଦ୍ରବଦନା, ସୁନ୍ଦରୀ, ଯଶସ୍ୱିନୀ, ରାମପତ୍ନୀ ବୈଦେହୀଙ୍କୁ ଚାହିଁ ଠିଆହୋଇ ରହିଲା । ୩-୧୧ । ସୀତା ପୀତବର୍ଣ୍ଣ ବସ୍ତ୍ର ପରିଧାନକରି ବାଷ୍ପ ଏବଂ ଶୋକରେ ପୀଡିତା ହୋଇ ପତ୍ରକୁଡ଼ିଆ ଭିତରେ ବସି ରହିଥିଲେ । ରାକ୍ଷସ ରାବଣ ଆନନ୍ଦମନରେ ସେହି ପଦ୍ମପଲାଶାକ୍ଷୀ ବୈଦେହୀଙ୍କ ଆଡ଼କୁ ଅଗ୍ରସର ହେଲା । ସେ ରକ୍ଷସରାଜ କାମବାଣପୀଡ଼ିତ ହୋଇ ବେଦମନ୍ତ୍ର ଉଚ୍ଚାରଣ ପୂର୍ବକ ଏ କାନନରେ ସ୍ୱୀୟ ଶରୀରକାନ୍ତିରେ ପଦ୍ମହୀନା ଲକ୍ଷ୍ମୀଙ୍କସଦୃଶ ଶୋଭମାନା

ଅବ୍ରବୀତ୍ ପ୍ରଶ୍ରିତଂ ବାକ୍ୟଂ ରହସେ ରାକ୍ଷସାଧିପଃ ।
ତାମୁତ୍ତମାଂ ତ୍ରିଲୋକାନାଂ ପଦ୍ମହୀନାମିବ ଶ୍ରିୟମ୍ । ୧୪ ।
ବିଭ୍ରାଜମାନାଂ ବପୁଷା ରାବଣଃ ପ୍ରଶଶଂସ ହ ।
କା ତ୍ୱଂ କାଞ୍ଚନବର୍ଣାଭେ ପୀତକୌଶେୟବାସିନି ।୧୫ ।
କମଲାନାଂ ଶୁଭାଂ ମାଲାଂ ପଦ୍ମିନୀବ ହି ବିଭ୍ରତୀ ।
ହ୍ରୀଃ ଶ୍ରୀଃ କୀର୍ତ୍ତିଃ ଶୁଭା ଲକ୍ଷ୍ମୀରପ୍ସରା ବା ଶୁଭାନନେ । ୧୬ ।
ଭୂତିର୍ବା ତ୍ୱଂ ବରାରୋହେ ରତିର୍ବା ସ୍ୱୈରଚାରିଣୀ ।
ସମାଃ ଶିଖରିଣଃ ସ୍ନିଗ୍ଧାଃ ପାଣ୍ଡୁରା ଦଶନାସ୍ତବ । ୧୭।
ବିଶାଲେ ବିମଲେ ନେତ୍ରେ ରକ୍ତାନ୍ତେ କୃଷ୍ଣତାରକେ ।
ବିଶାଲଂ ଜଘନଂ ପୀନମୂରୂ କରିକରୋପମୌ । ୧୮ ।
ଏତାବୁପଚିତୌ ବୃତ୍ତୌ ସଂହତୌ ସଂପ୍ରବଲ୍ଗିତୌ ।
ପୀନୋନ୍ନତମୁଖୌ କାନ୍ତୌ ସ୍ନିଗ୍ଧୌ ତାଲଫଲୋପମୌ । ୧୯।
ମଣିପ୍ରବେକାଭରଣୌ ରୁଚିରୌ ତେ ପୟୋଧରୌ ।
ଚାରୁସ୍ମିତେ ଚାରୁଦତି ଚାରୁନେତ୍ରେ ବିଲାସିନି । ୨୦ ।
ମନୋ ହରସି ମେ କାନ୍ତେ ନଦୀକୂଲମିବାମ୍ଭସା ।
କରାନ୍ତମିତମଧ୍ୟାସି ସୁକେଶୀ ସଂହତସ୍ତନୀ । ୨୧ ।

---

ତ୍ରିଭୁବନସୁନ୍ଦରୀ ସୀତାଙ୍କୁ ବିନୀତ ବାକ୍ୟରେ ପ୍ରଶଂସା କରିବାକୁ ଲାଗିଲା । ସେ କହିଲା, "ହେ ଶୁଭାନନେ ! ତୁମ୍ଭର ବର୍ଣ୍ଣ ଉଜ୍ଜ୍ୱଳ ସୁବର୍ଣ୍ଣସଦୃଶ । ତୁମେ ପୀତ ପଟ୍ଟବସ୍ତ୍ର ପରିଧାନ କରିଅଛ ଏବଂ ସାକ୍ଷାତ ଲକ୍ଷ୍ମୀଙ୍କପରି ସୁନ୍ଦର ପଦ୍ମଫୁଲର ମାଳା ଧାରଣ କରିଅଛ । ହେ ବରାରୋହେ ! ତୁମେ କିଏ ? ତୁମେ କ'ଣ ହ୍ରୀ, ଶ୍ରୀ, କୀର୍ତ୍ତି, ଲକ୍ଷ୍ମୀ, ଅପ୍ସରା କମ୍ବା ଭୂତି ଅଥବା ସ୍ୱେଚ୍ଛାବିହାରିଣୀ ସାକ୍ଷାତ୍ ରତି ଅଟ ? ତୁମ୍ଭର ଦନ୍ତପଂକ୍ତି ପରସ୍ପର ସମାନ ଉନ୍ନତ କୋମଳ ଏବଂ ଶୁଭ୍ରବର୍ଣ୍ଣ ହୋଇଅଛି । ୧୨-୧୭ । ତୁମ୍ଭର ନେତ୍ରଯୁଗଳ ବିଶାଳ, ନିର୍ମଳ, କୃଷ୍ଣବର୍ଣ୍ଣ ତାରାବିଶିଷ୍ଟ ଏବଂ ତାହାର ପ୍ରାନ୍ତଭାଗ ରକ୍ତବର୍ଣ୍ଣ ହୋଇଅଛି । ତୁମର ଜଘନ ଅତି ପୃଥୁଳ ଓ ବିସ୍ତୃତ ଏବଂ ଉରୁଦ୍ୱୟ ହସ୍ତିଶୁଣ୍ଢସଦୃଶ ଗୋଲାକାର, ପରିପୁଷ୍ଟ, ସମ୍ବଦ୍ଧ ଏବଂ ସର୍ବତୋଭାବରେ ନୃତ୍ୟପରାୟଣ ହୋଇଅଛି । ତୁମ୍ଭର ସ୍ତନଯୁଗଳ ପୀନ ଏବଂ ଉନ୍ନତାଗ୍ର, ଅତି ମନୋହର, ତାଳଫଳସଦୃଶ ସୁକୋମଳ, କମନୀୟ ଏବଂ ଉତ୍କୃଷ୍ଟ ମଣିମାଳାରେ ଭୂଷିତ ହୋଇଅଛି । ହେ ଚାରୁହାସିନି ! ଚାରୁଦନ୍ତି ! ଚାରୁନେତ୍ରେ !, ବିଳାସିନି ! ନଦୀ ଯେପରି ଜଳବେଗରେ ତାହାର ତଟକୂଳକୁ ହରଣ କରେ ସେହିପରି ତୁମେ

ନୈବ ଦେବୀ ନ ଗନ୍ଧର୍ବୀ ନ ଯକ୍ଷୀ ନ ଚ କିନ୍ନରୀ ।
ନୈବଂରୂପା ମୟା ନାରୀ ଦୃଷ୍ଟପୂର୍ବା ମହୀତଳେ । ୨୨।
ରୂପମଗ୍ର୍ୟଂ ଚ ଲୋକେଷୁ ସୌକୁମାର୍ଯ୍ୟଂ ବୟଶ୍ଚ ତେ ।
ଇହ ବାସଶ୍ଚ କାନ୍ତାରେ ଚିତ୍ତମୁନ୍ମାଦୟନ୍ତି ମେ । ୨୩ ।
ସା ପ୍ରତିକ୍ରାମ ଭଦ୍ରଂ ତେ ନ ତ୍ୱଂ ବସ୍ତୁମିହାର୍ହସି ।
ରାକ୍ଷସାନାମୟଂ ବାସୋ ଘୋରାଣାଂ କାମରୂପିଣାମ୍ । ୨୪ ।
ପ୍ରାସାଦାଗ୍ରାଣି ରମ୍ୟାଣି ନଗରୋପବନାନି ଚ ।
ସଂପନ୍ନାନି ସୁଗନ୍ଧୀନି ଯୁକ୍ତାନ୍ୟାଚରିତୁଂ ତ୍ୱୟା । ୨୫।
ବରଂ ମାଲ୍ୟଂ ବରଂ ଭୋଜ୍ୟଂ ବରଂ ବସ୍ତ୍ରଂ ଚ ଶୋଭନେ ।
ଭର୍ତାରଂ ଚ ବରଂ ମନ୍ୟେ ତ୍ୱଦ୍ୟୁକ୍ତମସିତେକ୍ଷଣେ । ୨୬ ।
କା ତ୍ୱଂ ଭବସି ରୁଦ୍ରାଣାଂ ମରୁତାଂ ବା ବରାନନେ ।
ବସୂନାଂ ବା ବରାରୋହେ ଦେବତା ପ୍ରତିଭାସି ମେ । ୨୭ ।
ନେହାଗଚ୍ଛନ୍ତି ଗନ୍ଧର୍ବା ନ ଦେବା ନ ଚ କିଂନରାଃ ।
ରାକ୍ଷସାନାମୟଂ ବାସଃ କଥଂ ନୁ ତ୍ୱମିହାଗତା । ୨୮।

---

ମୋର ମନକୁ ହରଣ କରୁଅଛ । ତୁମ୍ଭର କେଶରାଜି ଅତି ସୁନ୍ଦର, ସ୍ତନଯୁଗଳ ସୁସମ୍ବଦ୍ଧ ଏବଂ କଟିଦେଶ ଏପରି କୃଶ ଯେ ତାହାକୁ ଅଙ୍ଗୁଳିଦ୍ୱାରା ମାପିହେବ । । ୧୮-୨୧ । ନ ଦେବୀ ନ ଗନ୍ଧର୍ବୀ ନ ଯକ୍ଷୀ ନ କିନ୍ନରୀ କୌଣସି ନାରୀକୁ ଏ ପୃଥିବୀରେ ଏପରି ରୂପବତୀ କେବେ ଏହା ପୂର୍ବରୁ ମୁଁ ଦେଖିନାହିଁ ।୨୨। ସମଗ୍ର ଜଗତରେ ତୁମ୍ଭର ସର୍ବୋତ୍କୃଷ୍ଟ ରୂପ, ତୁମ୍ଭର ସୁକୁମାର ବୟସ ଏବଂ ଅଧୁନା ଏ ଅରଣ୍ୟ-ଭୂମିରେ ବାସ; ଏ ସମସ୍ତ ମୋ ହୃଦୟକୁ ଉନ୍ମାଦିତ କରୁଅଛି । ୨୩ । ସୁତରାଂ ତୁମେ ବାହାରକୁ ବାହାରି ଆସ । ତୁମ୍ଭର ମଙ୍ଗଳ ହେଉ । ଏ ସ୍ଥାନରେ ବାସ କରିବା ତୁମ୍ଭର ଉଚିତ ନୁହେଁ । କାମରୂପୀ ଭୟଙ୍କର ରାକ୍ଷସମାନଙ୍କର ଏ ବାସସ୍ଥଳୀ । ୨୪ । ରମଣୀୟ ଉତ୍କୃଷ୍ଟ ପ୍ରାସାଦ ବା ଅଟ୍ଟାଳିକା ଏବଂ ସୁସମୃଦ୍ଧ ଓ ସୁଗନ୍ଧଯୁକ୍ତ ନଗର ଉପବନ ତୁମ୍ଭର ବିଚରଣ କରିବାର ଉପଯୁକ୍ତ ସ୍ଥାନ । ୨୫ । ହେ କୃଷ୍ଣଲୋଚନେ ! ଉତ୍କୃଷ୍ଟ ମାଲ୍ୟ, ଉତ୍କୃଷ୍ଟ ଖାଦ୍ୟ, ଉତ୍କୃଷ୍ଟ ବସ୍ତ୍ର ଏବଂ ଉତ୍କୃଷ୍ଟ ସ୍ୱାମୀ ଏହାହିଁ ତୁମପକ୍ଷରେ ସମ୍ୟକ୍ ଉପଯୁକ୍ତ ବୋଲି ମୋର ମନେ ହୁଏ । ୨୬ । ହେ ବରାନନେ ! ତୁମେ ରୁଦ୍ର, ମରୁତ ଏବଂ ବସୁଗଣଙ୍କ ମଧ୍ୟରୁ କାହାର ସ୍ତ୍ରୀ ? ହେ ବରାରୋହେ ! ତୁମେ ଦେବତା ବୋଲି ମୋର ସ୍ପଷ୍ଟ ପ୍ରତୀତ ହେଉଅଛି । ୨୭ । ଏଠାକୁ ଗନ୍ଧର୍ବ, ଦେବ କିମ୍ବା କିନ୍ନର କେହି ଆସନ୍ତି ନାହିଁ । ଏହା ରାକ୍ଷସ-

ଇହ ଶାଖାମୃଗାଃ ସିଂହା ଦ୍ୱୀପିବ୍ୟାଘ୍ରମୃଗା ସ୍ତଥା ।
ଋକ୍ଷାସ୍ତରକ୍ଷବଃ କଙ୍କାଃ କଥଂ ତେଭ୍ୟୋ ନ ବିଭ୍ୟସି । ୨୯ ।
ମଦାନ୍ୱିତାନାଂ ଘୋରାଣାଂ କୁଞ୍ଜରାଣାଂ ତରସ୍ୱିନାମ୍ ।
କଥମେକା ମହାରଣ୍ୟେ ନ ବିଭେଷି ବରାନନେ । ୩୦ ।
କାସି କସ୍ୟ କୁତଶ୍ଚ ତ୍ୱଂ କିଂ ନିମିତ୍ତଂ ଚ ଦଣ୍ଡକାନ୍ ।
ଏକା ଚରସି କଲ୍ୟାଣି ଘୋରାନ୍ ରାକ୍ଷସସେବିତାନ୍ । ୩୧ ।
ଇତି ପ୍ରଶସ୍ତା ବୈଦେହୀ ରାବଣେନ ଦୁରାତ୍ମନା ।
ଦ୍ୱିଜାତିବେଷେଣ ହି ତଂ ଦୃଷ୍ଟ୍ୱା ରାବଣମାଗତମ୍ । ୩୨ ।
ସର୍ବୈରତିଥିସତ୍କାରୈଃ ପୂଜୟାମାସ ମୈଥିଳୀ ।
ଉପନୀୟାସନଂ ପୂର୍ବଂ ପାଦ୍ୟେନାଭିନିମନ୍ତ୍ର୍ୟ ଚ । ୩୩ ।
ଅବ୍ରବୀତ୍ସିଦ୍ଧମିତ୍ୟେବ ତଦା ତଂ ସୌମ୍ୟଦର୍ଶନମ୍ । ୩୪ ।

ଦ୍ୱିଜାତିବେଷେଣ ସମୀକ୍ଷ୍ୟ ମୈଥିଳୀ
ସମାଗତଂ ପାତ୍ରକୁସୁମ୍ଭଧାରିଣମ୍ ।
ଅଶକ୍ୟମୁଦ୍ଧେଷ୍ଟୁମୁପାୟଦର୍ଶନା
ନ୍ୟମନ୍ତ୍ରୟଦ୍‌ବ୍ରାହ୍ମଣବତ୍ତଦାଙ୍ଗନା । ୩୫ ।

---

ମାନଙ୍କର ବାସସ୍ଥଳୀ । ତୁମେ କିପରି ଏଠାକୁ ଆସିଲ ? । ୨୮ । ଏଠାରେ ବାନର, ସିଂହ, ଦ୍ୱୀପି, ବ୍ୟାଘ୍ର, ମୃଗ, ଭଲ୍ଲୁକ, ତରକ୍ଷୁ ଏବଂ ଝିଙ୍କମାନେ ବିଚରଣ କରନ୍ତି । ତୁମେ ସେମାନଙ୍କୁ ଭୟ କରୁନାହିଁ କିପରି ? ହେ ବରାନନେ ! ଭୟଙ୍କର, ବେଗଗାମୀ, ମଦମତ୍ତ ହସ୍ତୀମାନେ ଏ ମହାରଣ୍ୟରେ ଥାଆନ୍ତି । ତୁମେ ଏକାକୀ ରହି ସେମାନଙ୍କୁ ଭୟ କରୁନାହିଁ କିପରି ? ।୩୦। ହେ କଲ୍ୟାଣି ! ତୁମେ କିଏ ? କାହାର ସ୍ତ୍ରୀ, ତୁମେ କେଉଁଠାରୁ, କାହିଁକି ଆସି ଏହି ଭୀଷଣ ରାକ୍ଷସସେବିତ ଦଣ୍ଡକାରଣ୍ୟରେ ଏକାକୀ ବିଚରଣ କରୁଛ" ? । ୩୧ । ଦୁରାତ୍ମା ରାବଣ ସୀତାଙ୍କୁ ଏହିପରିଭାବରେ ପ୍ରଶଂସା କରିବାଙ୍କଠାରୁ ବ୍ରାହ୍ମଣବେଶରେ ଆସିଥିବାର ଦେଖି ମୈଥିଳୀ ସକଳପ୍ରକାର ଅତିଥିସତ୍କାରଦ୍ୱାରା ତାହାକୁ ପୂଜା କଲେ । ସେ ପ୍ରଥମେ ଆସନ ଦେଇ ଏବଂ ପାଦ୍ୟଦ୍ୱାରା ଅଭିମନ୍ତ୍ରଣକରି ସେହି ସୌମ୍ୟଦର୍ଶନ ତପସ୍ୱୀଙ୍କୁ କହିଲେ, "ଅନ୍ନ ସିଦ୍ଧହୋଇ ପ୍ରସ୍ତୁତ ହୋଇଅଛି ?" ।୩୨-୩୪। ରାବଣ ବ୍ରାହ୍ମଣ-ବେଶରେ ଭିକ୍ଷାପାତ୍ର ଓ କମଣ୍ଡଳୁହସ୍ତରେ ଆସି ଉପସ୍ଥିତ ହେବାର ଦେଖି ବିଧିଜ୍ଞ ମୈଥିଳୀ ଉପେକ୍ଷା କରି ନ ପାରି ବ୍ରାହ୍ମଣସଦୃଶ ତାକୁ ନିମନ୍ତ୍ରଣ କଲେ ।୩୫।

ଇୟଂ ବୃସୀ ବ୍ରାହ୍ମଣ କାମମାସ୍ୟତା-
ମିଦଂ ଚ ପାଦ୍ୟଂ ପ୍ରତିଗୃହ୍ୟତାମିତି ।
ଇଦଂ ଚ ସିଦ୍ଧଂ ବନଜାତମୁତ୍ତମମ୍
ତ୍ୱଦର୍ଥମବ୍ୟଗ୍ରମିହୋପଭୁଜ୍ୟତାମ୍ । ୩୬ ।
ନିମନ୍ତ୍ର୍ୟମାଣଃ ପ୍ରତିପୂର୍ଣ୍ଣଭାଷିଣୀମ୍
ନରେନ୍ଦ୍ରପତ୍ନୀଂ ପ୍ରସମୀକ୍ଷ୍ୟ ମୈଥିଲୀମ୍ ।
ପ୍ରସହ୍ୟ ତସ୍ୟା ହରଣେ ଧୃତଂ ମନଃ
ସମର୍ପୟତ୍ସ୍ୱାତ୍ମବଧାୟ ରାକ୍ଷସଃ । ୩୭ ।
ତତଃ ସୁବେଷଂ ମୃଗୟାଗତଂ ପତିମ୍
ପ୍ରତୀକ୍ଷମାଣା ସହ ଲକ୍ଷ୍ମଣଂ ତଦା ।
ବିବୀକ୍ଷମାଣା ହରିତଂ ଦଦର୍ଶ ତ-
ନ୍ମହଦ୍ୱନଂ ନୈବ ତୁ ରାମଲକ୍ଷ୍ମଣୌ । ୩୮ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ରାବଣଭିକ୍ଷୁପ୍ରକାରୋ
ନାମ ଷଟ୍‌ଚତ୍ୱାରିଂଶଃ ସର୍ଗଃ ।

---

ସେ କହିଲେ, "ହେ ବ୍ରାହ୍ମଣ ! ଏହି କୁଶାସନରେ ଆପଣ ଯଥାସୁଖରେ ଉପବେଶନ କରନ୍ତୁ, ଏହି ପାଦ୍ୟ ଗ୍ରହଣ କରନ୍ତୁ, ଏହି ଉତ୍କୃଷ୍ଟ ବନ୍ୟ ଦ୍ରବ୍ୟ ସିଦ୍ଧହୋଇ ଆପଣଙ୍କ ନିମନ୍ତେ ରଖାଯାଇଅଛି ; ଏହାକୁ ନିରୁଦ୍‌ବିଗ୍ନଭାବରେ ଭୋଜନ କରନ୍ତୁ" । ୩୬ । ରାଜପତ୍ନୀ ଜାନକୀ ଏହିପରି ନିମନ୍ତ୍ରଣକଲାରୁ ରାବଣ ସେହି ମଧୁରଭାଷିଣୀ ସୀତାଙ୍କୁ ଉତ୍ତମଭାବରେ ନିରୀକ୍ଷଣକରି ଆତ୍ମବଧାର୍ଥେ ବଳପୂର୍ବକ ତାହାଙ୍କୁ ହରଣ କରିବାକୁ ମନରେ କୃତନିଶ୍ଚୟ ହେଲା । ୩୭ । ଅନନ୍ତର ଉତ୍ତମ ବେଶ ପିନ୍ଧି ଲକ୍ଷ୍ମଣଙ୍କ ସହିତ ମୃଗୟାନିମନ୍ତେ ଯାଇଥିବା ପତିଙ୍କୁ ପ୍ରତୀକ୍ଷାକରି ସୀତା ଇତସ୍ତତଃ ଦୃଷ୍ଟିନିକ୍ଷେପ କରିବାକୁ ଲାଗିଲେ , ମାତ୍ର କେବଳ ଶ୍ୟାମଳ ବର୍ଣ୍ଣ ସେହି ବିଶାଳ ବନଭୂମିକୁହିଁ ଦେଖିଲେ; କିନ୍ତୁ ରାମଲକ୍ଷ୍ମଣଙ୍କୁ ଦେଖି-ପାରିଲେ ନାହିଁ । ୩୮ ।

---

# ସପ୍ତଚତ୍ୱାରିଂଶଃ ସର୍ଗଃ

## ରାବଣାଧିକ୍ଷେପଃ

ରାବଣେନ ତୁ ବୈଦେହୀ ତଥା ପୃଷ୍ଟା ଜିହୀର୍ଷତା ।
ପରିବ୍ରାଜକଲିଙ୍ଗେନ ଶଶଂସାତ୍ମାନମଙ୍ଗନା । ୧ ।
ବ୍ରାହ୍ମଣଶ୍ଚାତିଥିଶ୍ଚାୟମନୁକ୍ତୋ ହି ଶପେତ ମାମ୍ ।
ଇତି ଧ୍ୟାତ୍ୱା ମୁହୂର୍ତ୍ତଂ ତୁ ସୀତା ବଚନମବ୍ରବୀତ୍ । ୨ ।
ଦୁହିତା ଜନକସ୍ୟାହଂ ମୈଥିଲସ୍ୟ ମହାତ୍ମନଃ ।
ସୀତା ନାମ୍ନାସ୍ମି ଭଦ୍ରଂ ତେ ରାମସ୍ୟ ମହିଷୀ ପ୍ରିୟା । ୩ ।
ଉଷିତ୍ୱା ଦ୍ୱାଦଶସମା ଇକ୍ଷ୍ୱାକୂଣାଂ ନିବେଶନେ ।
ଭୁଞ୍ଜାନା ମାନୁଷାନ୍ ଭୋଗାନ୍ ସର୍ବକାମସମୃଦ୍ଧିନୀ । ୪ ।
ତତସ୍ତ୍ରୟୋଦଶେ ବର୍ଷେ ରାଜାମନ୍ତ୍ରୟତ ପ୍ରଭୁଃ ।
ଅଭିଷେଚୟିତୁଂ ରାମଂ ସମେତୋ ରାଜମନ୍ତ୍ରିଭିଃ । ୫ ।
ତସ୍ମିନ୍ ସଂଭ୍ରିୟମାଣେ ତୁ ରାଘବସ୍ୟାଭିଷେଚନେ ।
କୈକେୟୀ ନାମ ଭର୍ତ୍ତାରମାର୍ଯା ସା ଯାଚତେ ବରମ୍ । ୬ ।

---

## ୪୭ଶ ସର୍ଗ

(ରାବଣକୁ ସୀତାଙ୍କର ଭର୍ତ୍ସନା)

ପରିବ୍ରାଜକ ବେଶଧାରୀ ଅପହରଣାଭିଳାଷୀ ରାବଣ ସୀତାଙ୍କୁ ଏହିପରି ପଚାରିବାରୁ ସୀତା ନିଜେ ନିଜକଥା କହିଲେ । ୧ । "ଏ ଅତିଥି ଏବଂ ବ୍ରାହ୍ମଣ, ଏହାଙ୍କୁ କଥା ନ କହିଲେ ସେ ମୋତେ ଶାପ ଦେଇପାରନ୍ତି" ଏହି କଥା ମୁହୂର୍ତ୍ତେ ଚିନ୍ତାକରି ସୀତା କହିଲେ । ୨ । ସେ କହିଲେ "ମୁଁ ମିଥିଳାରାଜ ମହାତ୍ମା ଜନକଙ୍କର କନ୍ୟା ଏବଂ ରାମଙ୍କର ପ୍ରିୟରାଣୀ, ମୋର ନାମ ସୀତା । ତୁମ୍ଭର ମଙ୍ଗଳ ହେଉ । ମୁଁ ଇକ୍ଷ୍ୱାକୁରାଜଭବନରେ ବାରବର୍ଷ ବାସ କରି ସର୍ବଥା ପୂର୍ଣ୍ଣମନୋରଥା ହୋଇ ବିବିଧପ୍ରକାର ଅମାନୁଷିକ ଭୋଗ ସଂଭୋଗ କରିଥିଲି । ୪ । ଅନନ୍ତର ତ୍ରୟୋଦଶ ବର୍ଷରେ ରାଜା ଦଶରଥ ମନ୍ତ୍ରୀମାନଙ୍କ ସହିତ ରାମଙ୍କୁ ରାଜ୍ୟରେ ଅଭିଷେକ କରିବା ପାଇଁ ମନ୍ତ୍ରଣା କଲେ । ୫ । ତଦନୁସାରେ ରାମଙ୍କ ଅଭିଷେକନିମନ୍ତେ ସମସ୍ତ ଆୟୋଜନ ଲାଗିଥିବାବେଳେ ଆର୍ଯ୍ୟା କୈକେୟୀ ସ୍ୱାମୀଙ୍କୁ ବର ପ୍ରାର୍ଥନାକଲେ ।୬।

ପ୍ରତିଗୃହ୍ୟ ତୁ କୈକେୟୀ ଶ୍ୱଶୁରଂ ସୁକୃତେନ ମେ ।
ମମ ପ୍ରବ୍ରାଜନଂ ଭର୍ତୁର୍ଭରତସ୍ୟାଭିଷେଚନମ୍ । ୭ ।
ଦ୍ୱାବଯାଚତ ଭର୍ତାରଂ ସତ୍ୟସନ୍ଧଂ ନୃପୋତ୍ତମମ୍ ।
ନାଦ୍ୟ ଭୋକ୍ଷ୍ୟେ ନ ଚ ସ୍ୱପ୍ସ୍ୟେ ନ ଚ ପାସ୍ୟେ କଥଂଚନ । ୮ ।
ଏଷ ମେ ଜୀବିତସ୍ୟାନ୍ତୋ ରାମୋ ଯଦ୍ୟଭିଷିଚ୍ୟତେ ।
ଇତି ବ୍ରୁବାଣାଂ କୈକେୟୀଂ ଶ୍ୱଶୁରୋ ମେ ସ ମାନଦଃ । ୯ ।
ଅଯାଚତାର୍ଥୈରନ୍ୱର୍ଥୈର୍ନ ଚ ଯାଚ୍ଞାଂ ଚକାର ସା ।
ମମ ଭର୍ତା ମହାତେଜା ବୟସା ପଞ୍ଚବିଂଶକଃ । ୧୦ ।
ଅଷ୍ଟାଦଶ ହି ବର୍ଷାଣି ମମ ଜନ୍ମନି ଗଣ୍ୟତେ ।
ରାମେତି ପ୍ରଥିତୋ ଲୋକେ ଗୁଣବାନ୍ ସତ୍ୟବାଞ୍ଛୁଚିଃ ।୧୧।
ବିଶାଳାକ୍ଷୋ ମହାବାହୁଃ ସର୍ବଭୂତହିତେ ରତଃ ।
କାମାର୍ତସ୍ତୁ ମହାତେଜାଃ ପିତା ଦଶରଥଃ ସ୍ୱୟମ୍ । ୧୨ ।
କୈକେୟ୍ୟାଃ ପ୍ରିୟକାମାର୍ଥଂ ତଂ ରାମଂ ନାଭ୍ୟଷେଚୟନ୍ ।
ଅଭିଷେକାୟ ତୁ ପିତୁଃ ସମୀପଂ ରାମମାଗତମ୍ । ୧୩ ।
କୈକେୟୀ ମମ ଭର୍ତାରମିତ୍ୟୁବାଚ ଧୃତଂ ବଚଃ ।
ତବ ପିତ୍ରା ସମାଜ୍ଞପ୍ତଂ ମମେଦଂ ଶୃଣୁ ରାଘବ । ୧୪ ।

---

କୈକେୟୀ ନିଜ ସୁକୃତବଳରେ ଶ୍ୱଶୁରଙ୍କୁ ବଶୀଭୂତ କରି ମୋ ସ୍ୱାମୀଙ୍କର ବନବାସ ଏବଂ ଭରତର ଅଭିଷେକ ଏ ଦୁଇଟି ବର ସତ୍ୟପ୍ରତିଜ୍ଞ ନୃପଶ୍ରେଷ୍ଠ ସ୍ୱାମୀଙ୍କୁ ମାଗିଲେ ଏବଂ କହିଲେ, "ରାମ ଯଦି ଅଭିଷିକ୍ତ ହେବ, ତେବେ ମୁଁ କେବେହେଲେ ଖାଇବି ନାହିଁ କି ପିଇବି ନାହିଁ କିମ୍ବା ଶୋଇବି ନାହିଁ; ଆଜିହିଁ ମୋ ଜୀବନର ଶେଷ ଦିନ ହେବ ।" କୈକେୟୀ ଏପରି କହିବାରୁ ମୋର ମାନଦ ଶ୍ୱଶୁର ତାହାଙ୍କୁ ବିବିଧ ଅର୍ଥଗ୍ରହଣ କରିବାକୁ ପ୍ରାର୍ଥନା କଲେ; କିନ୍ତୁ ସେ ସେହି ପ୍ରାର୍ଥନା ରକ୍ଷାକଲେ ନାହିଁ । ସେତେବେଳେ ମୋର ସ୍ୱାମୀ ମହାତେଜା ରାମଙ୍କର ବୟସ ପଚିଶବର୍ଷ ହୋଇଥିଲା ଏବଂ ମୋର ବୟସ ଜନ୍ମସମୟଠାରୁ ଗଣନା କରି ଅଠରବର୍ଷ ହୋଇଥିଲା । ମୋର ସ୍ୱାମୀ 'ରାମ'ନାମରେ ପୃଥିବୀରେ ବିଖ୍ୟାତ । ସେ ଗୁଣବାନ୍, ସତ୍ୟବାନ୍, ପବିତ୍ରସ୍ୱଭାବ, ବିଶାଳାକ୍ଷ, ମହାବାହୁ ଏବଂ ସବୁ ପ୍ରାଣୀଙ୍କ ହିତରେ ରତ ଅଟନ୍ତି । ମହାତେଜା ପିତା ଦଶରଥ ସ୍ୱୟଂ କାମାର୍ତ୍ତ ହୋଇଥିବାରୁ କୈକେୟୀଙ୍କର ପ୍ରିୟକାମନା ଉଦ୍ଦେଶ୍ୟରେ ରାମଙ୍କୁ ଅଭିଷିକ୍ତ କଲେ ନାହିଁ । ରାମ ଅଭିଷେକ ଉଦ୍ଦେଶ୍ୟରେ ପିତାଙ୍କ ନିକଟକୁ ଆସିବାରୁ, କୈକେୟୀ ତତ୍କ୍ଷଣାତ୍ ମୋର ସ୍ୱାମୀଙ୍କୁ କହିଲେ, "ହେ ରଘୁନନ୍ଦନ ! ତୁମର ପିତା ମୋତେ ଯେ ଆଜ୍ଞାଦେଇଛନ୍ତି, ସେ କଥା

ଭରତାୟ ପ୍ରଦାତବ୍ୟମିଦଂ ରାଜ୍ୟମକଣ୍ଟକମ୍ ।
ତ୍ୱୟା ହି ଖଲୁ ବସ୍ତବ୍ୟଂ ନବ ବର୍ଷାଣି ପଞ୍ଚ ଚ । ୧୫ ।
ବନେ ପ୍ରବ୍ରଜ କାକୁତ୍ସ୍ଥ ପିତରଂ ମୋଚୟାନୃତାତ୍ ।
ତଥେତ୍ୟୁକ୍ତ୍ୱା ଚ ତାଂ ରାମଃ କୈକେୟୀମକୁତୋଭୟଃ ।୧୬ ।
ଚକାର ତଦ୍ବଚସ୍ତସ୍ୟା ମମ ଭର୍ତ୍ତା ଦୃଢ଼ବ୍ରତଃ ।
ଦଦ୍ୟାନ୍ନ ପ୍ରତିଗୃହ୍ଣୀୟାତ୍ସତ୍ୟଂ ବ୍ରୂୟାନ୍ନ ଚାନୃତମ୍ । ୧୭ ।
ଏତଦ୍ବ୍ରାହ୍ମଣ ରାମସ୍ୟ ବ୍ରତଂ ଧ୍ରୁବମନୁତ୍ତମମ୍ ।
ତସ୍ୟ ଭ୍ରାତା ତୁ ବୈମାତ୍ରୋ ଲକ୍ଷ୍ମଣୋ ନାମ ବୀର୍ଯ୍ୟବାନ୍ । ୧୮ ।
ରାମସ୍ୟ ପୁରୁଷବ୍ୟାଘ୍ରଃ ସହାୟଃ ସମରେଽରିହା ।
ସ ଭ୍ରାତା ଲକ୍ଷ୍ମଣୋ ନାମ ଧର୍ମଚାରୀ ଦୃଢ଼ବ୍ରତଃ । ୧୯ ।
ଅନ୍ୱଗଚ୍ଛଦ୍ଧନୁଷ୍ପାଣିଃ ପ୍ରବ୍ରଜନ୍ତଂ ମୟା ସହ ।
ଜଟୀ ତାପସରୂପେଣ ମୟା ସହ ସହାନୁଜଃ । ୨୦ ।
ପ୍ରବିଷ୍ଟୋ ଦଣ୍ଡକାରଣ୍ୟଂ ଧର୍ମନିତ୍ୟୋ ଜିତେନ୍ଦ୍ରିୟଃ ।
ତେ ବୟଂ ପ୍ରଚ୍ୟୁତା ରାଜ୍ୟାତ୍ କୈକେୟ୍ୟାସ୍ତୁ କୃତେ ତ୍ରୟଃ ।୨୧

---

ଶୁଣ ।୧୬-୧୪। ହେ କାକୁତ୍ସ୍ଥ ! ଏହି ନିଷ୍କଣ୍ଟକ ରାଜ୍ୟ ଭରତଙ୍କୁ ଦେବାକୁ ହେବ ଏବଂ ତୁମକୁ ଚଉଦବର୍ଷ ବନବାସ କରିବାକୁ ହେବ, ସୁତରାଂ ତୁମେ ବନଗମନକରି ପିତାଙ୍କୁ ଅସତ୍ୟରୁ ମୁକ୍ତକର ।” ନିର୍ଭୀକ ରାମ “ତାହାହିଁ ହେବ” ବୋଲି ତାଙ୍କୁ କହିଲେ ।୧୫-୧୬। ମୋର ଦୃଢ଼ବ୍ରତ ସ୍ୱାମୀ କୈକେୟୀଙ୍କର ସେ କଥା ପାଳନକଲେ । ହେ ବ୍ରାହ୍ମଣ ! ଅନ୍ୟକୁ ଦାନ କରିବ, ମାତ୍ର ଦାନଗ୍ରହଣକରିବ ନାହିଁ । ସର୍ବଦା ସତ୍ୟ କହିବ, କଦାପି ମିଥ୍ୟା କହିବ ନାହିଁ, ଏହାହିଁ ରାମଙ୍କର ଉତ୍କୃଷ୍ଟ ବ୍ରତ । ତାଙ୍କର ବୈମାତ୍ରେୟ ଭ୍ରାତାଙ୍କର ନାମ ଲକ୍ଷ୍ମଣ, ସେ ଅତି ବୀର୍ଯ୍ୟବାନ୍ । ୧୭-୧୮ । ସେହି ପୁରୁଷଶ୍ରେଷ୍ଠ ରାମଙ୍କର ସହାୟ ଏବଂ ଯୁଦ୍ଧରେ ଶତ୍ରୁସଂହାରକ କରନ୍ତି । ସେ ବ୍ରହ୍ମଚାରୀ ଏବଂ ଦୃଢ଼ବ୍ରତ ଅଟନ୍ତି । ୧୯ । ସେ ଧନୁର୍ଧର ମୋସାଙ୍ଗରେ ବନବାସ କରିବାକୁ ଆସୁଥିବା ରାମଙ୍କର ଅନୁଗମନକଲେ । ଧର୍ମପରାୟଣ ଜିତେନ୍ଦ୍ରିୟ ରାମ ଜଟାଧାରଣ କରି ତପସ୍ୱିବେଶରେ ମୋସହିତ ଓ ସାନ ଭାଇଙ୍କ ସହିତ ଦଣ୍ଡକାରଣ୍ୟରେ ପ୍ରବେଶ କଲେ । ଏହିପରି ଆମେ ତିନିଜଣଯାକ କୈକେୟୀଙ୍କ ଲାଗି ରାଜ୍ୟଚ୍ୟୁତ ହୋଇଅଛୁଁ । । ୨୦-୨୧ । ହେ ଦ୍ୱିଜଶ୍ରେଷ୍ଠ ! ଆମ୍ଭେମାନେ ନିଜର ତେଜପ୍ରଭାବରେ ଏ ଶରୀର

ବିଚରିଷ୍ୟତି ଦ୍ୱିଜଶ୍ରେଷ୍ଠ ବନଂ ଗମ୍ଭୀରମୋଜସା ।
ସମାଶ୍ୱସ ମୁହୂର୍ତ୍ତଂ ତୁ ଶକ୍ୟଂ ବସ୍ତୁମିହ ତ୍ୱୟା ।୨୨।
ଆଗମିଷ୍ୟତି ମେ ଭର୍ତ୍ତା ବନ୍ୟମାଦାୟ ପୁଷ୍କଳମ୍ ।
ରୁରୂନ୍ ଗୋଧାନ୍ ବରାହାଂଶ୍ଚ ହତ୍ୱାଦାୟାମିଷାନ୍ ବହୂନ୍ ।୨୩।
ସ ତ୍ୱଂ ନାମ ଚ ଗୋତ୍ରଂ ଚ କୁଳଂ ଚାଚକ୍ଷ୍ୱ ତତ୍ତ୍ୱତଃ ।
ଏକଶ୍ଚ ଦଣ୍ଡକାରଣ୍ୟେ କିମର୍ଥଂ ଚରସି ଦ୍ୱିଜ ।୨୪।
ଏବଂ ବ୍ରୁବନ୍ତ୍ୟାଂ ସୀତାୟାଂ ରାମପତ୍ନ୍ୟାଂ ମହାବଲଃ ।
ପ୍ରତ୍ୟୁବାଚୋତ୍ତରଂ ତୀବ୍ରଂ ରାବଣୋ ରାକ୍ଷସାଧିପଃ ।୨୫।
ଯେନ ବିତ୍ରାସିତା ଲୋକାଃ ସଦେବାସୁରମାନୁଷାଃ ।
ଅହଂ ସ ରାବଣୋ ନାମ ସୀତେ ରକ୍ଷୋଗଣେଶ୍ୱରଃ ।୨୬।
ତ୍ୱାଂ ତୁ କାଞ୍ଚନବର୍ଣ୍ଣାଭାଂ ଦୃଷ୍ଟ୍ୱା କୌଶେୟବାସିନୀମ୍ ।
ରତିଂ ସ୍ୱକେଷୁ ଦାରେଷୁ ନାଧିଗଚ୍ଛାମ୍ୟନିନ୍ଦିତେ ।୨୭।
ବହ୍ୱୀନାମୁତ୍ତମସ୍ତ୍ରୀଣାମାହୃତାନାମିତସ୍ତତଃ ।
ସର୍ବାସାମେବ ଭଦ୍ରଂ ତେ ମମାଗ୍ରମହିଷୀ ଭବ ।୨୮।
ଲଙ୍କା ନାମ ସମୁଦ୍ରସ୍ୟ ମଧ୍ୟେ ମମ ମହାପୁରୀ ।
ସାଗରେଣ ପରିକ୍ଷିପ୍ତା ନିବିଷ୍ଟା ଗିରିମୂର୍ଦ୍ଧନି ।୨୯।

---

କାନନରେ ବିଚରଣ କରନ୍ତି । ତୁମେ ଆଶ୍ୱସ୍ତ ହୁଅ ଏବଂ ଯଦି ପାର ଏଠାରେ ମୁହୂର୍ତ୍ତେକାଳ ଅବସ୍ଥାନ କର । ୨୨ । ମୋର ସ୍ୱାମୀ ଏହିକ୍ଷଣି ପ୍ରଚୁର ବନ୍ୟ ଦ୍ରବ୍ୟ ଏବଂ ରୁରୁ, ବରାହ ଓ ଗୋଧା ବଧକରି ବହୁତ ମାଂସ ନେଇ ଆସିବେ ।୨୩। ବର୍ତ୍ତମାନ ତୁମେ ଯଥାର୍ଥଭାବରେ ତୁମ୍ଭର ନାମ, ଗୋତ୍ର ଏବଂ ବଂଶ କଣକହ । ହେବ୍ରାହ୍ମଣ ତୁମେ କାହିଁକି ଦଣ୍ଡକାରଣ୍ୟରେ ଏକାକୀ ବିଚରଣ କରୁଅଛ ?” ।୨୪। ରାମପତ୍ନୀ ସୀତା ଏହିପ୍ରକାର କହିବାଉତ୍ତାରୁ ମହାବଳୀ ରାକ୍ଷସରାଜ ରାବଣ ତୀବ୍ରଭାବରେ ଉତ୍ତର ଦେଲା । ୨୫। ହେ ସୀତେ ! ସୁର, ଅସୁର ଓ ମନୁଷ୍ୟ ସହିତ ସମୁଦାୟ ଲୋକ ଯାହା-ଦ୍ୱାରା ଭୟଭୀତ ହୁଅନ୍ତି ମୁଁ ସେହି ରାକ୍ଷସରାଜ ‘ରାବଣ’ ।୨୬। ହେ ଅନିନ୍ଦିତେ ! ତୁମ ବର୍ଣ୍ଣର ଦୀପ୍ତି କାଞ୍ଚନସଦୃଶ ଏବଂ ତୁମେ ପଟ୍ଟବସ୍ତ୍ର ପରିଧାନ କରିଅଛ । ତୁମକୁ ଦେଖି ମୋର ସ୍ୱୀୟ ଭାର୍ଯ୍ୟାମାନଙ୍କ ପ୍ରତି ଆଉ ଲେଶମାତ୍ର ଅନୁରାଗ ନାହିଁ । ୨୭ । ଅତଏବ ତୁମେ ଏହିସବୁ ନାନାସ୍ଥାନରୁ ସଂଗୃହୀତ ଉତ୍ତମ ସ୍ତ୍ରୀମାନଙ୍କ ମଧ୍ୟରେ ମୋର ପ୍ରଧାନ ମହିଷୀ ହୁଅ । ତୁମ୍ଭର ମଙ୍ଗଳ ହେଉ ।୨୮। ସମୁଦ୍ରମଧ୍ୟରେ ମୋର ‘ଲଙ୍କା’ ନାମକ ମହାନଗରୀ ପର୍ବତର ଶିଖରଦେଶରେ ସନ୍ନିବେଶିତ ହୋଇ ସମୁଦ୍ରଦ୍ୱାରା ବେଷ୍ଟିତ

ତତ୍ର ସୀତେ ମୟା ସାର୍ଧଂ ବନେଷୁ ବିହରିଷ୍ୟସି ।
ନ ଚାସ୍ୟ ବନବାସସ୍ୟ ସ୍ପୃହୟିଷ୍ୟସି ଭାମିନି । ୩୦ ।
ପଞ୍ଚ ଦାସ୍ୟଃ ସହସ୍ରାଣି ସର୍ବାଭରଣଭୂଷିତାଃ ।
ସୀତେ ପରିଚରିଷ୍ୟନ୍ତି ଭାର୍ଯା ଭବସି ମେ ଯଦି । ୩୧ ।
ରାବଣେନୈବମୁକ୍ତା ତୁ କୁପିତା ଜନକାତ୍ମଜା ।
ପ୍ରତ୍ୟୁବାଚାନବଦ୍ୟାଙ୍ଗୀ ତମନାଦୃତ୍ୟ ରାକ୍ଷସମ୍ । ୩୨ ।
ମହାଗିରିମିବାକମ୍ପ୍ୟଂ ମହେନ୍ଦ୍ରସଦୃଶଂ ପତିମ୍ ।
ମହୋଦଧିମିବାକ୍ଷୋଭ୍ୟମହଂ ରାମମନୁବ୍ରତା । ୩୩ ।
ସର୍ବଲକ୍ଷଣସଂପନ୍ନଂ ନ୍ୟଗ୍ରୋଧପରିମଣ୍ଡଳମ୍ ।
ସତ୍ୟସନ୍ଧଂ ମହାଭାଗମହଂ ରାମମନୁବ୍ରତା । ୩୪ ।
ମହାବାହୁଂ ମହୋରସ୍କଂ ସିଂହବିକ୍ରାନ୍ତଗାମିନମ୍ ।
ନୃସିଂହଂ ସିଂହସଂକାଶମହଂ ରାମମନୁବ୍ରତା । ୩୫ ।
ପୂର୍ଣଚନ୍ଦ୍ରାନନଂ ରାମଂ ରାଜବତ୍ସଂଜିତେନ୍ଦ୍ରିୟମ୍ ।
ପୃଥୁକୀର୍ତ୍ତିଂ ମହାତ୍ମାନମହଂ ରାମମନୁବ୍ରତା । ୩୬ ।
ତ୍ୱଂ ପୁନର୍ଜମ୍ବୁକଃ ସିଂହୀଂ ମାମିଚ୍ଛସି ସୁଦୁର୍ଲଭାମ୍ ।
ନାହଂ ଶକ୍ୟା ତ୍ୱୟା ସ୍ପ୍ରଷ୍ଟୁମାଦିତ୍ୟସ୍ୟ ପ୍ରଭା ଯଥା । ୩୭ ।

---

ହୋଇରହିଛି । ୨୯ । ହେ ଭାମିନି ସୀତେ ! ତୁମେ ସେଠାରେ ମୋସହିତ ବନରେ ବିହାର କରିବ, ଆଉ ଏ ବନବାସକୁ କଦାପି ଅଭିଳାଷ କରିବ ନାହିଁ । ୩୦ । ହେ ସୀତେ ! ତୁମେ ଯଦି ମୋର ଭାର୍ଯ୍ୟା ହେବ, ତେବେ ସର୍ବାଳଙ୍କାରଭୂଷିତା ପାଞ୍ଚହଜାର ଦାସୀ ତୁମ୍ଭର ସେବାକରିବେ" । ୩୧ । ରାବଣ ଏପରି କହିବାରୁ ଅନିନ୍ଦିତା ଜନକଦୁହିତା କ୍ରୋଧାନ୍ୱିତ ହୋଇ ସେହି ରାକ୍ଷସକୁ ବେଖାତିର କରି ଜବାବ ଦେଲେ । ୩୨ । "ଯେ ମହାପର୍ବତସଦୃଶ ଅକମ୍ପମାନ୍, ମହାସାଗରସଦୃଶ ଅକ୍ଷୋଭଶୂନ୍ୟ, ସେହି ମହେନ୍ଦ୍ରତୁଲ୍ୟ ରାମଙ୍କୁ ମୁଁ ପତିରୂପେ ଗ୍ରହଣ କରିଅଛି । । ୩୩ । ଯେ ସର୍ବଲକ୍ଷଣସମ୍ପନ୍ନ ଏବଂ ବିଶାଳ ବଟବୃକ୍ଷପରି ସବୁ ଲୋକଙ୍କର ଆଶ୍ରୟସ୍ଥଳ ମୁଁ ସେହି ସତ୍ୟପ୍ରତିଜ୍ଞ ମହାଭାଗ ରାମଙ୍କର ଅନୁଗତା ।୩୪। ଯେ ମହାବାହୁ, ବିଶାଳବକ୍ଷ ଏବଂ ଯେ ସିଂହସଦୃଶ ପାଦବିକ୍ଷେପ କରନ୍ତି, ମୁଁ ସେହି ସିଂହସଦୃଶ ନୃସିଂହ ରାମଙ୍କର ଏକମାତ୍ର ଅନୁଗତା ।୩୫। ତାଙ୍କର ମୁଖ ପୂର୍ଣ୍ଣଚନ୍ଦ୍ରସଦୃଶ, କୀର୍ତ୍ତି ଅତି ବିସ୍ତୃତ ଏବଂ ସେ ଜିତେନ୍ଦ୍ରିୟ ଓ ମହାତ୍ମା ଅଟନ୍ତି ; ମୁଁ ସେହି ରାଜକୁମାର ରାମଙ୍କର ଏକମାତ୍ର ଅନୁଗତା ।୩୬। ତୁ ପୁଣି ଶୃଗାଳ ହୋଇ ଏକାନ୍ତ ଦୁର୍ଲ୍ଲଭ ସିଂହୀସଦୃଶ ମୋତେ ଇଚ୍ଛା କରୁଛୁ । ସୂର୍ଯ୍ୟଙ୍କ ପ୍ରଭାପରି ତୁ ମୋତେ ସ୍ପର୍ଶ କରିବାକୁ ମଧ୍ୟ ଅସମର୍ଥ । ୩୭ ।

ପାଦପାନ୍ କାଞ୍ଚନାନ୍ ନୂନଂ ବହୂନ୍ ପଶ୍ୟସି ମନ୍ଦଭାକ୍ ।
ରାଘବସ୍ୟ ପ୍ରିୟାଂ ଭାର୍ଯାଂ ଯସ୍ତ୍ୱମିଚ୍ଛସି ରାବଣ । ୩୮ ।
କ୍ଷୁଧିତସ୍ୟ ହି ସିଂହସ୍ୟ ମୃଗଶତ୍ରୋସ୍ତରସ୍ୱିନଃ ।
ଆଶୀବିଷସ୍ୟ ବଦାନାଦ୍ଦଂଷ୍ଟ୍ରାମାଦାତୁମିଚ୍ଛସି । ୩୯ ।
ମନ୍ଦରଂ ପର୍ବତଶ୍ରେଷ୍ଠଂ ପାଣିନା ହର୍ତୁମିଚ୍ଛସି ।
କାଳକୂଟଂ ବିଷଂ ପୀତ୍ୱା ସ୍ୱସ୍ତିମାନ୍ ଗନ୍ତୁମିଚ୍ଛସି । ୪୦ ।
ଅକ୍ଷି ସୂଚ୍ୟା ପ୍ରମୃଜସି ଜିହ୍ୱୟା ଲେଢ଼ି ଚ କ୍ଷୁରମ୍ ।
ରାଘବସ୍ୟ ପ୍ରିୟାଂ ଭାର୍ଯାଂ ଯୋଽଧିଗନ୍ତୁଂ ତ୍ୱମିଚ୍ଛସି । ୪୧ ।
ଅବସଜ୍ୟ ଶିଳାଂ କଣ୍ଠେ ସମୁଦ୍ରଂ ତର୍ତୁମିଚ୍ଛସି ।
ସୂର୍ଯାଚନ୍ଦ୍ରମସୌ ଚୋଭୌ ପାଣିଭ୍ୟାଂ ହର୍ତୁମିଚ୍ଛସି । ୪୨ ।
ଯୋ ରାମସ୍ୟ ପ୍ରିୟାଂ ଭାର୍ଯାଂ ପ୍ରଧର୍ଷୟିତୁମିଚ୍ଛସି ।
ଅଗ୍ନିଂ ପ୍ରଜ୍ୱଳିତଂ ଦୃଷ୍ଟ୍ୱା ବସ୍ତ୍ରେଣ ହର୍ତୁମିଚ୍ଛସି । ୪୩ ।
କଲ୍ୟାଣବୃତ୍ତାଂ ରାମସ୍ୟ ଯୋ ଭାର୍ଯାଂ ହର୍ତୁମିଚ୍ଛସି ।
ଅୟୋମୁଖାନାଂ ଶୂଳାନାଂ ମଧ୍ୟେ ଚରିତୁମିଚ୍ଛସି । ୪୪ ।
ରାମସ୍ୟ ସଦୃଶୀଂ ଭାର୍ଯାଂ ଯୋଽଧିଗନ୍ତୁଂ ତ୍ୱମିଚ୍ଛସି । ୪୫ ।

---

ଅଭାଗା ରାବଣ ! ତୁ ଯେତେବେଳେ ରଘୁନନ୍ଦନ ରାମଙ୍କର ଭାର୍ଯ୍ୟାକୁ ହରଣ କରିବାକୁ ଇଚ୍ଛା କରୁଛୁ, ସେତେବେଳେ ନିଶ୍ଚୟ ତୁ ବୃକ୍ଷସମୂହକୁ ସୁବର୍ଣ୍ଣମୟ ଦେଖୁଅଛୁ । ୩୮ । ତୁ ମୃଗଶତ୍ରୁ ମହାବଳବାନ୍, କ୍ଷୁଧିତ ସିଂହ ଏବଂ ଉଗ୍ର ବିଷଧର ସର୍ପର ମୁଖରୁ ଦାନ୍ତ ଉପାଡ଼ି ଆଣିବାକୁ ଇଚ୍ଛା କରୁଛୁ ।୩୯ । ତୁ ପର୍ବତଶ୍ରେଷ୍ଠ ମନ୍ଦର ଗିରିକୁ ହାତରେ ଧରି ହରଣକରି ନେବାକୁ ଇଚ୍ଛାକରୁଛୁ । ତୁ କାଳକୂଟ ବିଷ ପାନକରି ସୁଖରେ ଖେଳିବାକୁ ଇଚ୍ଛାକରିଛୁ । ୪୦ । ତୁ ଯେ ରାମଙ୍କର ପ୍ରିୟଭାର୍ଯ୍ୟା ସହିତ ସହବାସ କରିବାକୁ ଇଚ୍ଛାକରିଛୁ, ସୁତରାଂ ତୁ ନିଶ୍ଚୟ ସୂଚୀଦ୍ୱାରା ଚକ୍ଷୁ ମାର୍ଜନା କରୁଛୁ ଏବଂ ଜିହ୍ୱାଦ୍ୱାରା କ୍ଷୁର ଲେହନକରୁଛୁ । ୪୧ ।ତୁ ବେକରେ ପଥର ବାନ୍ଧି ସମୁଦ୍ର ପାରହେବାକୁ ଇଚ୍ଛାକରୁଛୁ ଏବଂ ସୂର୍ଯ୍ୟ, ଚନ୍ଦ୍ର ଉଭୟଙ୍କୁ ଦୁଇହାତରେ ହରଣ କରିବାକୁ ଇଚ୍ଛାକରୁଛୁ । ୪୨ । ତୁ ଯେ ରାମଙ୍କ ପ୍ରିୟ-ଭାର୍ଯ୍ୟାକୁ ଧର୍ଷଣ କରିବାକୁ ଇଚ୍ଛାକରୁଛୁ, ତୁ ନିଶ୍ଚୟ ଅଗ୍ନିକୁ ପ୍ରଜ୍ୱଳିତ ହେବାର ଦେଖି ବସ୍ତ୍ରରେ ବାନ୍ଧିଆଣିବାକୁ ଇଚ୍ଛା କରୁଛୁ । ୪୩ । ତୁ ଯେ କଲ୍ୟାଣଚରିତ୍ର ରାମଙ୍କର ଉପଯୁକ୍ତ ଭାର୍ଯ୍ୟାକୁ ହରଣ କରି ଧର୍ଷଣ କରିବାକୁ ଇଚ୍ଛାକରୁଛୁ, ତୁ ନିଶ୍ଚୟ ଲୌହମୁଖ ଶୂଳମାନଙ୍କମଧ୍ୟରେ ବିଚରଣ କରିବାକୁ ଇଚ୍ଛାକରୁଛୁ ।୪୪-୪୫। ଅରଣ୍ୟ

ଯଦନ୍ତରଂ ସିଂହସୃଗାଲୟୋର୍ବନେ
ଯଦନ୍ତରଂ ସ୍ୟନ୍ଦିନିକାସମୁଦ୍ରୟୋଃ ।
ସୁରାଗ୍ର୍ୟସୌବୀରକୟୋର୍ଯଦନ୍ତରମ୍
ତଦନ୍ତରଂ ବୈ ତବ ରାଘବସ୍ୟ ଚ । ୪୭ ।
ଯଦନ୍ତରଂ କାଞ୍ଚନସୀସଲୋହୟୋ-
ର୍ଯଦନ୍ତରଂ ଚନ୍ଦନବାରିପଙ୍କୟୋଃ ।
ଯଦନ୍ତରଂ ହସ୍ତିବିଡ଼ାଲୟୋର୍ବନେ
ତଦନ୍ତରଂ ଦାଶରଥେସ୍ତବୈବ ଚ । ୪୭ ।
ଯଦନ୍ତରଂ ବାୟସବୈନତେୟୟୋ-
ର୍ଯଦନ୍ତରଂ ମଦ୍ଗୁମୟୂରୟୋରପି ।
ଯଦନ୍ତରଂ ସାରସଗୃଧ୍ରୟୋର୍ବନେ
ତଦନ୍ତରଂ ଦାଶରଥେସ୍ତବୈବ ଚ । ୪୮ ।
ତସ୍ମିନ୍ ସହସ୍ରାକ୍ଷସମପ୍ରଭାବେ
ରାମେ ସ୍ଥିତେ କାର୍ମୁକବାଣପାଣୌ ।
ହୃତାପି ତେଽହଂ ନ ଜରାଂ ଗମିଷ୍ୟେ
ବଜ୍ରଂ ଯଥା ମକ୍ଷିକୟାବଗୀର୍ଣମ୍ । ୪୯ ।

---

ମଧ୍ୟରେ ସିଂହ ଓ ଶୃଗାଳମଧ୍ୟରେ ଯେ ପ୍ରଭେଦ, କ୍ଷୁଦ୍ର ନର୍ଝରିଣୀ ଓ ସମୁଦ୍ରମଧ୍ୟରେ ଯେ ପ୍ରଭେଦ, ଉତ୍କୃଷ୍ଟ ସୁରା ଏବଂ କାଞ୍ଜିମଧ୍ୟରେ ଯେ ପ୍ରଭେଦ ତୋର ଏବଂ ରଘୁନନ୍ଦନ ରାମଙ୍କମଧ୍ୟରେ ଠିକ୍ ସେହି ପ୍ରଭେଦ ।୪୬। ସୁବର୍ଣ୍ଣ ଏବଂ ସୀସା ମଧ୍ୟରେ ଯେ ପ୍ରଭେଦ,ଚନ୍ଦନଜଳ ଏବଂ କର୍ଦ୍ଦମ ମଧ୍ୟରେ ଯେ ପ୍ରଭେଦ, ବନରେ ହସ୍ତୀ ଓ ବିଡ଼ାଳ ମଧ୍ୟରେ ଯେ ପ୍ରଭେଦ, ଦାଶରଥି ଏବଂ ତୋ ମଧ୍ୟରେ ସେହି ପ୍ରଭେଦ ।୪୭। ବାୟସ ଏବଂ ଗରୁଡ଼ମଧ୍ୟରେ ଯେଂ ପ୍ରଭେଦ, ପାଣିକୁଆ ଏବଂ ମୟୂରମଧ୍ୟରେ ଯେ ପ୍ରଭେଦ ଏବଂ ବନରେ ରାଜହଂସ ଓ ଗୃଧ୍ରମଧ୍ୟରେ ଯେ ପ୍ରଭେଦ, ଦାଶରଥି ଏବଂ ତୋମଧ୍ୟରେ ସେହି ପ୍ରଭେଦ । ୪୮ । ସେହି ଇନ୍ଦ୍ରତୁଲ୍ୟ ପ୍ରଭାବଶାଳୀ ରାମ ଧନୁଶର ହାତରେ ଧରି ରହିଥିବାଯାଏଁ ମୁଁ ତୋଦ୍ୱାରା ଅପହୃତହେଲେ ମଧ୍ୟ ବଜ୍ରକୁ ଯେପରି ମକ୍ଷିକା ଜୀର୍ଣ୍ଣକରି ପାରେ ନାହିଁ, ସେହିପରି ତୁ କଦାପି ମୋତେ ଜୀର୍ଣ୍ଣକରି-ପାରିବୁ ନାହିଁ" । ୪୯ । ସତ୍ସ୍ୱଭାବା ତନ୍ୱୀ ସୀତା ଅତି ଉଦ୍ଧତଭାବରେ ସେହି

ଇତୀବ ତଦ୍‌ବାକ୍ୟମଦୁଷ୍ଟଭାବା
ସୁଧୃଷ୍ଟମୁକ୍ତ୍ୱା ରଜନୀଚରଂ ତମ୍ ।
ଗାତ୍ରପ୍ରକମ୍ପାଦ୍‌ବ୍ୟଥିତା ବଭୂବ
ବାତୋଦ୍ଧତା ସା କଦଳୀବ ତନ୍ୱୀ । ୫୦ ।
ତାଂ ବେପମାନାମୁପଲକ୍ଷ୍ୟ ସୀତାମ୍
ସ ରାବଣୋ ମୃତ୍ୟୁସମପ୍ରଭାବଃ ।
କୁଲଂ ବଲଂ ନାମ ଚ କର୍ମ ଚ ସ୍ୱମ୍
ସମାଚଚକ୍ଷେ ଭୟକାରଣାର୍ଥମ୍ । ୫୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ରାବଣାଧିକ୍ଷେପୋ
ନାମ ସପ୍ତଚତ୍ୱାରିଂଶଃ ସର୍ଗଃ ।

---

ସତୀ ସୀତା ରାବଣଙ୍କୁ ଏହିପରି କଥା କହି, ପବନଦ୍ୱାରା ଆନ୍ଦୋଳିତ କଦଳୀବୃକ୍ଷ ପରି ଗାତ୍ରପ୍ରକମ୍ପହେତୁ ବ୍ୟଥିତ ହୋଇପଡ଼ିଲେ । ୫୦ । ମୃତ୍ୟୁସଦୃଶ ପ୍ରଭାବଶାଳୀ ରାବଣ ସୀତାଙ୍କୁ କମ୍ପିବାର ଦେଖି ତାଙ୍କ ମନରେ ଭୟ ଜନ୍ମାଇବା ଉଦ୍ଦେଶ୍ୟରେ ନିଜର କୁଳ, ବଳ ଏବଂ ନିଜ କାର୍ଯ୍ୟମାନ ବର୍ଣ୍ଣନା କରିବାକୁ ଲାଗିଲା । ୫୧ ।

# ଅଷ୍ଟଚତ୍ୱାରିଂଶଃ ସର୍ଗଃ

## ରାବଣବାକ୍ୟଥନମ୍

ଏବଂ ବ୍ରୁବନ୍ତ୍ୟାଂ ସୀତାୟାଂ ସଂରବ୍ଧଃ ପରୁଷଂ ବଚଃ ।
ଲଲାଟେ ଭ୍ରୁକୁଟୀଂ କୃତ୍ୱା ରାବଣଃ ପ୍ରତ୍ୟୁବାଚ ହ । ୧ ।
ଭ୍ରାତା ବୈଶ୍ରବଣସ୍ୟାହଂ ସାପତ୍ନ୍ୟୋ ବରବର୍ଣ୍ଣିନି ।
ରାବଣୋ ନାମ ଭଦ୍ରଂ ତେ ଦଶଗ୍ରୀବଃ ପ୍ରତାପବାନ୍ । ୨ ।
ଯସ୍ୟ ଦେବାଃ ସଗନ୍ଧର୍ବାଃ ପିଶାଚପତଗୋରଗାଃ ।
ବିଦ୍ରବନ୍ତି ଭୟାଦ୍ଭୀତା ମୃତ୍ୟୋରିବ ସଦା ପ୍ରଜାଃ । ୩ ।
ଯେନ ବୈଶ୍ରବଣୋ ଭ୍ରାତା ବୈମାତ୍ରଃ କାରଣାନ୍ତରେ ।
ଦ୍ୱନ୍ଦ୍ୱମାସାଦିତଃ କ୍ରୋଧାଦ୍ରଣେ ବିକ୍ରମ୍ୟ ନିର୍ଜିତଃ । ୪ ।
ଯଦ୍ଭୟାର୍ତ୍ତଃ ପରିତ୍ୟଜ୍ୟ ସ୍ୱମଧିଷ୍ଠାନମୃଦ୍ଧିମତ୍ ।
କୈଳାସଂ ପର୍ବତଶ୍ରେଷ୍ଠମଧ୍ୟାସ୍ତେ ନରବାହନଃ । ୫ ।
ଯସ୍ୟ ତତ୍ ପୁଷ୍ପକଂ ନାମ ବିମାନଂ କାମଗଂ ଶୁଭମ୍ ।
ବୀର୍ଯାଦେବାର୍ଜିତଂ ଭଦ୍ରେ ଯେନ ଯାମି ବିହାୟସମ୍ । ୬ ।

---

## ୪୮-ଶ ସର୍ଗ

(ରାବଣର ଆତ୍ମବଡ଼ିମା)

ସୀତା ଏହିପରି କଠୋର ବାକ୍ୟ କହିବାରୁ ରାବଣ ଅତିଶୟ କ୍ରୋଧରେ ଲଲାଟରେ ଭ୍ରୂକୁଟୀଧାରଣପୂର୍ବକ ପ୍ରତ୍ୟୁତ୍ତର ଦେଲା । ୧ । "ହେ ବରବର୍ଣ୍ଣିନି ! ତୁମ୍ଭର ମଙ୍ଗଳ ହେଉ । ମୁଁ କୁବେରଙ୍କର ବୈମାତ୍ରେୟ ଭାଇ ଓ ମୋର ନାମ ପ୍ରତାପଶାଳୀ ଦଶାନନ ରାବଣ । ୨ । ଲୋକସାଧାରଣ ମୃତ୍ୟୁକୁ ଭୟକରି ତାହା ନିକଟରୁ ପଳାଇବା ଭଳି ମୋଭୟରେ ଭୀତ ହୋଇ ଦେବ, ଗନ୍ଧର୍ବ, ପିଶାଚ, ପନ୍ନଗ ଏବଂ ଉରଗମାନେ ସମସ୍ତେ ପଳାୟନ କରନ୍ତି । ୩ । ମୁଁ କୌଣସି କାରଣରୁ ଥରେ ବୈମାତ୍ରେୟ ଭ୍ରାତା କୁବେରଙ୍କ ସହିତ କ୍ରୋଧରେ କଳହକରି ଯୁଦ୍ଧରେ ବିକ୍ରମ ପ୍ରକାଶପୂର୍ବକ ତାହାଙ୍କୁ ପରାସ୍ତ କରିଥିଲି । ୪ । ମୋର ଭୟରେ ନରବାହନ କୁବେର ନିଜର ସମୃଦ୍ଧିଶାଳୀ ଅଧିଷ୍ଠାନଭୂମି ତ୍ୟାଗକରି ପର୍ବତରାଜ କୈଳାସରେ ବାସ କରୁଅଛନ୍ତି । ୫ । ହେ ଭଦ୍ରେ ! ମୁଁ ବୀର୍ଯ୍ୟପ୍ରଭାବରେ ତାଙ୍କର କାମଗାମୀ ସୁନ୍ଦର ପୁଷ୍ପକ ନାମକ ରଥକୁ ଲାଭ କରିଅଛି ଏବଂ ସେଇଥିରେ ବସି

ମମ ସଂଜାତରୋଷସ୍ୟ ମୁଖଂ ଦୃଷ୍ଟ୍ୱୈବ ମୈଥିଳି ।
ବିଦ୍ରବନ୍ତି ପରିତ୍ରସ୍ତାଃ ସୁରାଃ ଶକ୍ରପୁରୋଗମାଃ । ୭ ।
ଯତ୍ର ତିଷ୍ଠାମ୍ୟହଂ ତତ୍ର ମାରୁତୋ ବାତି ଶଂକିତଃ ।
ତୀବ୍ରାଂଶୁଃ ଶିଶିରାଂଶୁଶ୍ଚ ଭୟାତ୍‌ସଂପଦ୍ୟତେ ରବିଃ । ୮ ।
ନିଷ୍କମ୍ପପତ୍ରାସ୍ତରବୋ ନଦ୍ୟଶ୍ଚ ସ୍ତିମିତୋଦକାଃ ।
ଭବନ୍ତି ଯତ୍ର ଯତ୍ରାହଂ ତିଷ୍ଠାମି ବିଚରାମି ଚ । ୯ ।
ମମ ପାରେ ସମୁଦ୍ରସ୍ୟ ଲଙ୍କା ନାମ ପୁରୀ ଶୁଭା ।
ସଂପୂର୍ଣ୍ଣା ରାକ୍ଷସୈର୍ଘୋରୈର୍ଯଥେନ୍ଦ୍ରସ୍ୟାମରାବତୀ । ୧୦ ।
ପ୍ରାକାରେଣ ପରିକ୍ଷିପ୍ତା ପାଣ୍ଡୁରେଣ ବିରାଜିତା ।
ହେମକକ୍ଷା ପୁରୀ ରମ୍ୟା ବୈଡ଼ୂର୍ଯମୟତୋରଣା । ୧୧ ।
ହସ୍ତ୍ୟଶ୍ୱରଥସଂବାଧା ତୂର୍ଯନାଦବିନାଦିତା ।
ସର୍ବକାଳଫଳୈର୍ବୃକ୍ଷୈଃ ସଂକୁଳୋଦ୍ୟାନଶୋଭିତା । ୧୨ ।
ତତ୍ର ତ୍ୱଂ ବସତୀ ସୀତେ ରାଜପୁତ୍ରି ମୟା ସହ ।
ନ ସ୍ମରିଷ୍ୟସି ନାରୀଣାଂ ମାନୁଷୀଣାଂ ମନସ୍ୱିନି । ୧୩ ।

---

ଆକାଶମାର୍ଗରେ ଗମନ କରୁଅଛୁ । ୬ । ମୋର କ୍ରୋଧ ଜାତହେଲେ ମୋର ମୁଖ ଦେଖିବାମାତ୍ରେ ଇନ୍ଦ୍ରପ୍ରମୁଖ ଦେବତାମାନେ ଅତିଶୟ ଭୀତହୋଇ ଇତସ୍ତତଃ ପଳାୟନ କରନ୍ତି । ୭ । ମୁଁ ଯେଉଁଠାରେ ଅବସ୍ଥାନକରେ ସେଠାରେ ପବନ ଶଙ୍କିତ ହୋଇ ପ୍ରବାହିତ ହୁଏ, ତୀକ୍ଷ୍ଣରଶ୍ମି ସୂର୍ଯ୍ୟ ଭୟରେ ଶୀତଳାଂଶୁ ଚନ୍ଦ୍ରସଦୃଶ ହୋଇଯାଏ । ୮ । ମୁଁ ଯେଉଁ ସ୍ଥାନରେ ଅବସ୍ଥାନକରେ ବା ବିଚରଣ କରେ ସେଠାରେ ବୃକ୍ଷମାନଙ୍କର ପତ୍ରସମୂହ ନିଷ୍କମ୍ପ ହୋଇଯାଏ ଏବଂ ନଦୀଜଳର ବେଗ ମନ୍ଦ ହୋଇଯାଏ । ୯ । ସମୁଦ୍ରର ଅପର ପାରରେ ମୋର ଲଙ୍କା ନାମରେ ଅତି ସୁନ୍ଦର ନଗରୀ ଅଛି । ଏହା ଭୀଷଣାକୃତି ରାକ୍ଷସମାନଙ୍କଦ୍ୱାରା ପରିପୂର୍ଣ୍ଣ ଏବଂ ଇନ୍ଦ୍ରଙ୍କ ଅମରାବତୀସଦୃଶ ଅଟେ । ୧୦ । ଏହା ଶ୍ୱେତବର୍ଣ୍ଣ ପ୍ରାଚୀରବେଷ୍ଟିତ ଏବଂ ଅତିଶୟ ଶୋଭାନ୍ୱିତ, ଏହାର ତୋରଣମାନ ବୈଡ଼ୂର୍ଯ୍ୟମୟ ଏବଂ କକ୍ଷସକଳ ସ୍ୱର୍ଣ୍ଣମୟ ହୋଇଥିବାରୁ ଏ ପୁରୀ ଅତିଶୟ ରମଣୀୟ ।୧୧। ଏହା ହସ୍ତୀ, ଅଶ୍ୱ ଏବଂ ରଥ ସମୂହରେ ସମାକୀର୍ଣ୍ଣ ଓ ତୂରୀ ଧ୍ୱନିରେ ସର୍ବଦା ପ୍ରତିଧ୍ୱନିତ ହେଉଅଛି । ସବୁ ଋତୁରେ ଫଳ ଦେଉଥିବା ବୃକ୍ଷମାନଙ୍କଦ୍ୱାରା ପରିପୂର୍ଣ୍ଣ ଉଦ୍ୟାନମାନଙ୍କରେ ଏହା ସୁଶୋଭିତ ହୋଇଅଛି ।୧୨। ହେ ରାଜକୁମାରି ସୀତେ ! ତୁମେ ସେଠାରେ ମୋ ସହିତ ବାସ କରି ରହିଲେ ଆଉ ମାନବୀ ରମଣୀମାନଙ୍କ କଥା ଆଦୌ ମନେ ପକାଇବ

ଭୁଞ୍ଜାନା ମାନୁଷାନ୍ ଭୋଗାନ୍ ଦିବ୍ୟାଂଶ୍ଚ ବରବର୍ଣ୍ଣିନି ।
ନ ସ୍ମରିଷ୍ୟସି ରାମସ୍ୟ ମାନୁଷସ୍ୟ ଗତାୟୁଷଃ । ୧୪ ।
ସ୍ଥାପୟିତ୍ୱା ପ୍ରିୟଂ ପୁତ୍ରଂ ରାଜ୍ୟେ ଦଶରଥେନ ଯଃ ।
ମନ୍ଦବୀର୍ଯଃ ସୁତୋ ଜ୍ୟେଷ୍ଠସ୍ତତଃ ପ୍ରସ୍ଥାପିତୋ ବନମ୍ । ୧୫ ।
ତେନ କିଂ ଭ୍ରଷ୍ଟରାଜ୍ୟେନ ରାମେଣ ଗତଚେତସା ।
କରିଷ୍ୟସି ବିଶାଲାକ୍ଷି ତାପସେନ ତପସ୍ୱିନା । ୧୬ ।
ସର୍ବରାକ୍ଷସଭର୍ତ୍ତାରଂ କାମୟ ସ୍ୱୟମାଗତମ୍ ।
ନ ମନ୍ମଥଶରାବିଷ୍ଟଂ ପ୍ରତ୍ୟାଖ୍ୟାତୁଂ ତ୍ୱମର୍ହସି । ୧୭ ।
ପ୍ରତ୍ୟାଖ୍ୟାୟ ହି ମାଂ ଭୀରୁ ପରିତାପଂ ଗମିଷ୍ୟସି ।
ଚରଣେନାଭିହତ୍ୟେବ ପୁରୂରବସମୁର୍ବଶୀ । ୧୮ ।
ଅଙ୍ଗୁଲ୍ୟା ନ ସମୋ ରାମୋ ମମ ଯୁଦ୍ଧେ ସ ମାନୁଷଃ ।
ତବ ଭାଗ୍ୟେନ ସଂପ୍ରାପ୍ତଂ ଭଜସ୍ୱ ବରବର୍ଣ୍ଣିନି । ୧୯ ।
ଏବମୁକ୍ତା ତୁ ବୈଦେହୀ କ୍ରୁଦ୍ଧା ସଂରକ୍ତଲୋଚନା ।
ଅବ୍ରବୀତ୍ ପରୁଷଂ ବାକ୍ୟଂ ରହିତେ ରାକ୍ଷସାଧିପମ୍ । ୨୦ ।

---

ନାହିଁ । ୧୩ । ହେ ବରବର୍ଣ୍ଣିନି ! ତୁମେ ସେଠାରେ ଅମାନୁଷିକ ଦ୍ରବ୍ୟ ଭୋଗସମୂହ ଉପଭୋଗକରି ଆଉ କ୍ଷୀଣାୟୁ ମନୁଷ୍ୟ ରାମକୁ ସ୍ମରଣ କରିବ ନାହିଁ ।୧୪। ରାଜା ଦଶରଥ ପ୍ରିୟ ଭରତକୁ ରାଜ୍ୟରେ ପ୍ରତିଷ୍ଠିତ କରି, ଜ୍ୟେଷ୍ଠପୁତ୍ର ରାମ ଅଳ୍ପବୀର୍ଯ୍ୟ ହୋଇଥିବାରୁ ତାହାକୁ ବନକୁ ପ୍ରେରଣ କରିଅଛନ୍ତି । ୧୫ । ହେ ବିଶାଳାକ୍ଷି, ତୁମେ ସେହି ରାଜ୍ୟଭ୍ରଷ୍ଟ ହତବୁଦ୍ଧି ତାପସ ଓ ତପସ୍ୱୀ ରାମକୁ ନେଇ କଣ କରିବ ?।୧୬। ମୁଁ ସମଗ୍ର ରାକ୍ଷସଙ୍କର ପ୍ରଭୁ, କାମଶରବିଦ୍ଧ ହୋଇ ସ୍ୱୟଂ ଆସି ପହଞ୍ଚିଛି, ସୁତରାଂ ମୋତେ କାମନା କର,ପ୍ରତ୍ୟାଖ୍ୟାନ କର ନାହିଁ ।୧୭। ଉର୍ବଶୀ ପୁରୂରବାଙ୍କୁ ପଦାଘାତ କରି ଯେପରି ଅନୁତାପ କରିଥିଲେ, ହେ ଭୀରୁ ! ତୁମେ ମୋତେ ପ୍ରତ୍ୟାଖ୍ୟାନକଲେ ସେହିପରି ପଶ୍ଚାତ୍ତାପ ଭୋଗ କରିବ । ୧୮। ମନୁଷ୍ୟ ରାମ ଯୁଦ୍ଧରେ ମୋର ଅଙ୍ଗୁଳି ସହିତ ମଧ୍ୟ ସମାନ ହେବ ନାହିଁ । ହେ ବରବର୍ଣ୍ଣିନି ! ତୁମ୍ଭର ସୌଭାଗ୍ୟରୁ ମୁଁ ସ୍ୱୟଂ ସମାଗତ ହୋଇଅଛି, ସୁତରାଂ ମୋତେ ଭଜନା କର" । ୧୯ । ସେ ଏହିପରି କହିବାରୁ ବିଦେହନନ୍ଦିନୀ ଅତିଶୟ କ୍ରୋଧାନ୍ୱିତା ହେଲେ ଏବଂ ତାହାଙ୍କର ଚକ୍ଷୁ ରକ୍ତବର୍ଣ୍ଣ ହୋଇଗଲା । ସେ ସେହି ନିର୍ଜନ ପ୍ରଦେଶରେ ରାକ୍ଷସରାଜ ରାବଣଙ୍କୁ କଠୋର ବାକ୍ୟରେ କହିଲେ । ୨୦ । "ସମସ୍ତ ପ୍ରାଣୀଙ୍କର ନମସ୍କରଣୀୟ କୁବେର

କଥଂ ବୈଶ୍ରବଣଂ ଦେବଂ ସର୍ବଭୂତନମସ୍କୃତମ୍ ।
ଭ୍ରାତରଂ ବ୍ୟପଦେଶ୍ୟ ତ୍ୱମଶୁଭଂ କର୍ତୁମିଛସି । ୨୧ ।
ଅବଶ୍ୟଂ ବିନଶିଷ୍ୟନ୍ତି ସର୍ବେ ରାବଣ ରାକ୍ଷସାଃ ।
ଯେଷାଂ ତ୍ୱଂ କର୍କଶୋ ରାଜା ଦୁର୍ବୁଦ୍ଧିରଜିତେନ୍ଦ୍ରିୟଃ । ୨୨ ।
ଅପହୃତ୍ୟ ଶଚୀଂ ଭାର୍ଯାଂ ଶକ୍ୟମିନ୍ଦ୍ରସ୍ୟ ଜୀବିତୁମ୍ ।
ନ ଚ ରାମସ୍ୟ ଭାର୍ଯାଂ ମାମପନୀୟାସ୍ତି ଜୀବିତମ୍ । ୨୩ ।
ଜୀବେଚ୍ଚିରଂ ବଜ୍ରଧରସ୍ୟ ହସ୍ତା-
ଚ୍ଛଚୀଂ ପ୍ରଧୃଷ୍ୟାପ୍ରତିରୂପରୂପାମ୍ ।
ନ ମାଦୃଶଂ ରାକ୍ଷସ ଧର୍ଷୟିତ୍ୱା
ପୀତାମୃତସ୍ୟାପି ତବାସ୍ତି ମୋକ୍ଷଃ । ୨୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ ଅରଣ୍ୟକାଣ୍ଡେ ରାବଣକଥନମ୍
ନାମ ଅଷ୍ଟଚତ୍ୱାରିଂଶଃ ସର୍ଗଃ

———

ଦେବତାଙ୍କୁ ଭ୍ରାତା ବୋଲି ପରିଚୟ ଦେଇ ତୁ କପରି ଏପରି ଅନ୍ୟାୟ କାର୍ଯ୍ୟ କରିବାକୁ ଇଚ୍ଛା କରୁଅଛୁ । ୨୧ । ରାବଣ ! ତୋପରି ଦୁର୍ବୁଦ୍ଧି, କର୍କଶ ଏବଂ ଅଜିତେନ୍ଦ୍ରିୟ ବ୍ୟକ୍ତି ଯେଉଁମାନଙ୍କର ରାଜା ସେହି ରାକ୍ଷସମାନେ ସମସ୍ତେ ଅବଶ୍ୟ ବିନାଶପ୍ରାପ୍ତ ହେବେ । ୨୨ । ଇନ୍ଦ୍ରଙ୍କର ପତ୍ନୀ ଶଚୀଙ୍କୁ ଅପହରଣକରି ଲୋକ ଜୀବିତ ରହିପାରେ; କିନ୍ତୁ ରାମପତ୍ନୀ ମୋତେ ହରଣକଲେ କେହି ଜୀବନ ରହିବ ନାହିଁ । ୨୩ । ରେ ରାକ୍ଷସ ! ବଜ୍ରଧର ଇନ୍ଦ୍ରଙ୍କ ହସ୍ତରୁ ଅନୁପମ ରୂପବତୀ ଶଚୀଙ୍କୁ ଧର୍ଷଣାକରି ବଞ୍ଚି ରହିବା ସମ୍ଭବ ହୋଇପାରେ, କିନ୍ତୁ ମୋପରି ରମଣୀକୁ ଦୂଷିତକରି ତୁ ଅମୃତ ପିଇଥିଲେ ମଧ୍ୟ ତୋର ନିସ୍ତାର ନାହିଁ" । ୨୪ ।

———

# ଏକୋନପଞ୍ଚାଶଃ ସର୍ଗଃ

## ସୀତାପହରଣମ୍

ସୀତାୟାୟା ବଚନଂ ଶ୍ରୁତ୍ୱା ଦଶଗ୍ରୀବଃ ପ୍ରତାପବାନ୍ ।
ହସ୍ତେ ହସ୍ତଂ ସମାହତ୍ୟ ଚକାର ସୁମହଦ୍‌ବପୁଃ । ୧ ।
ସଃ ମୈଥିଲୀଂ ପୁନର୍ବାକ୍ୟଂ ବଭାଷେ ବାକ୍ୟକୋବଦଃ ।
ନୋନ୍ମତ୍ତୟା ଶ୍ରୁତୌ ମନ୍ୟେ ମମ ବୀର୍ଯପରାକ୍ରମୌ । ୨ ।
ଉଦ୍‌ବହେୟଂ ଭୁଜାଭ୍ୟାଂ ତୁ ମେଦିନୀମମ୍ବରେ ସ୍ଥିତଃ ।
ଆପିବେୟଂ ସମୁଦ୍ରଂ ଚ ହନ୍ୟାଂ ମୃତ୍ୟୁଂ ରଣେ ସ୍ଥିତଃ ।୩ ।
ଅର୍କଂ ରୁନ୍ଧ୍ୟାଂ ଶରୈସ୍ତୀକ୍ଷ୍ଣୈର୍ନିର୍ଭିନ୍ଦ୍ୟାଂ ହି ମହୀତଳମ୍ ।
କାମରୂପିଣମୁନ୍ମତ୍ତେ ପଶ୍ୟ ମାଂ କାମଦଂ ପତିମ୍ ।୪ ।
ଏବମୁକ୍ତବତସ୍ତସ୍ୟ ରାବଣସ୍ୟ ଶିଖିପ୍ରଭେ ।
କ୍ରୁଦ୍ଧସ୍ୟ ହରିପର୍ଯନ୍ତେ ରକ୍ତେ ନେତ୍ରେ ବଭୂବତୁଃ । ୫ ।
ସଦ୍ୟଃ ସୌମ୍ୟଂ ପରିତ୍ୟଜ୍ୟ ଭିକ୍ଷୁରୂପଂ ସ ରାବଣଃ ।
ସ୍ୱଂ ରୂପଂ କାଲରୂପାଭଂ ଭେଜେ ବୈଶ୍ରବଣାନୁଜଃ । ୬ ।

---

## ୪୯ଶ ସର୍ଗ

### ( ସୀତାହରଣ )

ପ୍ରତାପଶାଳୀ ଦଶଗ୍ରୀବ ରାବଣ ସୀତାଙ୍କ କଥା ଶୁଣି ହାତରେ ହାତ ବାଡେଇ ସ୍ୱୀୟ ଶରୀରକୁ ଅତି ବିଶାଳ କରିଦେଲା । ୧ । ବାକ୍ୟବିଶାରଦ ରାବଣ ପୁଣି ସୀତାଙ୍କୁ କହିଲା, "ମୁଁ ଭାବୁଛି,ତୁ ଉନ୍ମତ୍ତ ହୋଇଥିବାରୁ ମୋର ବୀର୍ଯ୍ୟ ଓ ପରାକ୍ରମ କଥା ଶୁଣିଲୁ ନାହିଁ । ୨। ମୁଁ ଆକାଶରେ ରହି ଦୁଇ ବାହୁରେ ପୃଥିବୀକୁ ଉତ୍ତୋଳନ କରିପାରେ, ସମୁଦ୍ରକୁ ପାନ କରିଦେଇପାରେ ଏବଂ ଯୁଦ୍ଧଭୂମିରେ ଅବସ୍ଥାନ କଲେ ମୃତ୍ୟୁକୁ ମଧ୍ୟ ନିହତ କରିପାରେ ।୩। ମୁଁ ତୀକ୍ଷ୍ଣ ଶରରାଜିଦ୍ୱାରା ସୂର୍ଯ୍ୟଙ୍କୁ ଅବରୋଧ କରିପାରେ ଓ ମହୀତଳକୁ ଭେଦ କରିପାରେ । ହେ ଉନ୍ମତ୍ତେ ! ମୁଁ କାମରୂପୀ,ମୋତେ କାମପ୍ରଦ ପତିରୂପେ ଦେଖ" ।୪। ଏହିପରି କହୁଁ କହୁଁ କ୍ରୋଧରେ ରାବଣର ଶ୍ୟାମଳ-ପ୍ରାନ୍ତ ନେତ୍ରଦ୍ୱୟ ରକ୍ତବର୍ଣ୍ଣ ହୋଇ ଅଗ୍ନିସଦୃଶ ହୋଇଗଲା ।୫। କୁବେରଙ୍କର କନିଷ୍ଠ ଭ୍ରାତା ରାବଣ ସଙ୍ଗେ ସଙ୍ଗେ ସୁନ୍ଦର ଭିକ୍ଷୁରୂପ ପରିତ୍ୟାଗକରି ଯମରୂପ ସଦୃଶ

ସଂରକ୍ତନୟନଃ ଶ୍ରୀମାଂସ୍ତପ୍ତକାଞ୍ଚନଭୂଷଣଃ ।
କ୍ରୋଧେନ ମହତାବିଷ୍ଟୋ ନୀଲଜୀମୂତସଂନିଭଃ । ୭ ।
ଦଶାସ୍ୟୋ ବିଂଶତିଭୁଜୋ ବଭୂବ କ୍ଷଣଦାଚରଃ ।
ସ ପରିବ୍ରାଜକଚ୍ଛଦ୍ମ ମହାକାୟୋ ବିହାୟ ତତ୍ । ୮ ।
ପ୍ରତିପେଦେ ସ୍ୱକଂ ରୂପଂ ରାବଣୋ ରାକ୍ଷସାଧିପଃ ।
ରକ୍ତାମ୍ବରଧରସ୍ତସ୍ଥୌ ସ୍ତ୍ରୀରତ୍ନଂ ପ୍ରେକ୍ଷ୍ୟ ମୈଥିଲୀମ୍ । ୯ ।
ସୀତାମସିତକେଶାନ୍ତାଂ ଭାସ୍କରସ୍ୟ ପ୍ରଭାମିବ ।
ବସନାଭରଣୋପେତାଂ ମୈଥିଲୀଂ ରାବଣୋଽବ୍ରବୀତ୍ । ୧୦ ।
ତ୍ରିଷୁ ଲୋକେଷୁ ବିଖ୍ୟାତଂ ଯଦି ଭର୍ତାରମିଚ୍ଛସି ।
ମାମାଶ୍ରୟ ବରାରୋହେ ତବାହଂ ସଦୃଶଃ ପତିଃ । ୧୧ ।
ମାଂ ଭଜସ୍ୱ ଚିରାୟ ତ୍ୱମହଂ ଶ୍ଲାଘ୍ୟଃ ପତିସ୍ତବ ।
ନୈବ ଚାହଂ କ୍ୱଚିଦ୍ଭଦ୍ରେ କରିଷ୍ୟେ ତବ ବିପ୍ରିୟମ୍ । ୧୨ ।
ତ୍ୟଜ୍ୟତାଂ ମାନୁଷୋ ଭାବୋ ମୟି ଭାବଃ ପ୍ରଣୀୟତାମ୍ ।
ରାଜ୍ୟାଚ୍ୟୁତମସିଦ୍ଧାର୍ଥଂ ରାମଂ ପରିମିତାୟୁଷମ୍ । ୧୩ ।

---

ନିଜର ରୂପ ଧାରଣକଲା । ୭ । ସେହି ମହାକାୟ ରାକ୍ଷସ ଅତିଶୟ କ୍ରୋଧାବିଷ୍ଟ ହୋଇ ଭିକ୍ଷୁବେଶ ଛାଡ଼ି ଦଶମୁଖ, ବିଂଶବାହୁ, ରକ୍ତନୟନ ଓ ତପ୍ତସ୍ୱର୍ଣ୍ଣ ଭୂଷଣ-ଧାରୀ ହୋଇ ନୀଳମେଘସଦୃଶ ଶୋଭମାନ ହେଲା । ୭-୮ । ରାକ୍ଷସରାଜ ରାବଣ ନିଜର ରୂପ ଧାରଣ କଲା ଏବଂ ରକ୍ତବସ୍ତ୍ରଧାରୀ ହୋଇ ସ୍ତ୍ରୀରତ୍ନ ସୀତାଙ୍କୁ ରହିଁ ଠିଆହୋଇ ରହିଲା । ୯ । ରାବଣ ସୂର୍ଯ୍ୟପ୍ରଭାସଦୃଶ କୃଷ୍ଣକେଶଯୁକ୍ତା ବସ୍ତ୍ରାଭରଣ-ଭୂଷିତା ସୀତାଙ୍କୁ କହିଲା । ୧୦ । "ହେ ବରାରୋହେ ! ତ୍ରିଭୁବନବିଖ୍ୟାତ ସ୍ୱାମୀ ପାଇବା ପାଇଁ ଯଦି ଇଚ୍ଛାକରୁ ତାହାହେଲେ ମୋତେ ଆଶ୍ରୟ କର; ମୁହିଁ ତୋର ସଦୃଶ ପତି ଅଟେ । ୧୧ । ମୁଁ ତୋର ଶ୍ଲାଘ୍ୟପତି । ତୁ ଚିରକାଳନିମନ୍ତେ ମୋତେ ଭଜନାକର । ଭଦ୍ରେ ! ମୁଁ କଦାପି ତୋର ଅପ୍ରିୟ କାର୍ଯ୍ୟ କରିବି ନାହିଁ । ୧୨ । ତୁ ମନୁଷ୍ୟ ପ୍ରତି ପ୍ରୀତି ତ୍ୟାଗକରି ମୋଠାରେ ପ୍ରଣୟ ସ୍ଥାପନକର । ହେ ମୂଢ଼େ, ପଣ୍ଡିତାଭିମାନିନି ! ତୁ କେଉଁ ଗୁଣରେ ରାଜ୍ୟଭ୍ରଷ୍ଟ, ବିଫଳମନୋରଥ ଏବଂ ପରିମିତାୟୁ ରାମ ପ୍ରତି ଅନୁରକ୍ତ ହୋଇଅଛୁ ? ସେ ଦୁର୍ମତି ରାମ ସ୍ତ୍ରୀକଥାରେ ରାଜ୍ୟ

କୈର୍ଗୁଣୈରନୁରକ୍ତାସି ମୃଢ଼େ ପଣ୍ଡିତମାନିନ ।
ଯଃ ସ୍ତ୍ରିୟୋ ବଚନାଦ୍ରାଜ୍ୟଂ ବିହାୟ ସସୁହୃଜ୍ଜନମ୍ । ୧୪।
ଅସ୍ମିନ୍ ବ୍ୟାଲାନୁଚରିତେ ବନେ ବସତି ଦୁର୍ମତିଃ ।
ଇତ୍ୟୁକ୍ତ୍ୱା ମୈଥିଲୀଂ ବାକ୍ୟଂ ପ୍ରିୟାର୍ହାଂ ପ୍ରିୟବାଦିନୀମ୍ ।୧୫।
ଅଭିଗମ୍ୟ ସୁଦୁଷ୍ଟାତ୍ମା ରାକ୍ଷସଃ କାମମୋହିତଃ ।
ଜଗ୍ରାହ ରାବଣଃ ସୀତାଂ ବୁଧଃ ଖେ ରୋହିଣୀମିବ । ୧୬ ।
ବାମେନ ସୀତାଂ ପଦ୍ମାକ୍ଷୀଂ ମୂର୍ଦ୍ଧଜେଷୁ କରେଣ ସଃ ।
ଊର୍ବୋସ୍ତୁ ଦକ୍ଷିଣେନୈବ ପରିଜଗ୍ରାହ ପାଣିନା । ୧୭ ।
ତଂ ଦୃଷ୍ଟ୍ୱା ଗିରିଶୃଙ୍ଗାଭଂ ତୀକ୍ଷ୍ଣଦଂଷ୍ଟ୍ରଂ ମହାଭୁଜମ୍ ।
ପ୍ରାଦ୍ରବନ୍ ଗିରିସଂକାଶଂ ଭୟାର୍ତ୍ତା ବନଦେବତାଃ । ୧୮ ।
ସ ଚ ମାୟାମୟୋ ଦିବ୍ୟଃ ଖରଯୁକ୍ତଃ ଖରସ୍ୱନଃ ।
ପ୍ରତ୍ୟଦୃଶ୍ୟତ ହେମାଙ୍ଗୋ ରାବଣସ୍ୟ ମହାରଥଃ । ୧୯ ।
ତତସ୍ତାଂ ପରୁଷୈର୍ବାକ୍ୟୈର୍ଭର୍ତ୍ସୟନ୍ ସ ମହାସ୍ୱନଃ ।
ଅଙ୍କେନାଦାୟ ବୈଦେହୀଂ ରଥମାରୋପୟତ୍ତଦା । ୨୦ ।
ସା ଗୃହୀତା ବିଚୁକ୍ରୋଶ ରାବଣେନ ଯଶସ୍ୱିନୀ ।
ରାମେତି ସୀତା ଦୁଃଖାର୍ତ୍ତା ରାମଂ ଦୂରଗତଂ ବନେ । ୨୧ ।

---

ଏବଂ ଆତ୍ମୀୟ ସ୍ୱଜନ ତ୍ୟାଗକରି ଏହି ହିଂସ୍ରଜନ୍ତୁସେବିତ ବନରେ ବାସ କରୁଅଛି" । ନିତାନ୍ତ ଦୁଷ୍ଟାତ୍ମା ରାକ୍ଷସ ରାବଣ ପ୍ରିୟବାଦିନୀ ପ୍ରିୟାର୍ହା ମୈଥିଳୀଙ୍କୁ ଏହି କଥା କହି କାମମୋହିତ ହୋଇ ତାହାଙ୍କ ଆଡ଼କୁ ଅଗ୍ରସର ହେଲା ଏବଂ ଆକାଶରେ ବୁଧଗ୍ରହ ରୋହିଣୀ ନକ୍ଷତ୍ରକୁ ଗ୍ରହଣ କଲାପରି ତାହାଙ୍କୁ ଧଇଲା । ୧୩-୧୬ । ସେ ବାମହସ୍ତରେ ପଦ୍ମଲୋଚନା ସୀତାଙ୍କର କେଶ ଏବଂ ଦକ୍ଷିଣହସ୍ତରେ ତାଙ୍କର ଊରୁଦ୍ୱୟ ଧାରଣ କଲା । ୧୭ । ବନଦେବତାମାନେ ସେତେବେଳେ ସେହି ପର୍ବତଶୃଙ୍ଗସଦୃଶ ତୀକ୍ଷ୍ଣଦଂଷ୍ଟ୍ର ମହାଭୁଜ ରାବଣକୁ ଦେଖି ଭୟାର୍ତ୍ତ ହୋଇ ଇତସ୍ତତଃ ପଳାୟନ କଲେ । ୧୮ । ଗୃହୁଁ ଗୃହୁଁ ରାବଣର ସେହି ମାୟାମୟ ସ୍ୱର୍ଣ୍ଣମଣ୍ଡିତ ଗର୍ଦ୍ଦଭଯୁକ୍ତ ଖରଶବ୍ଦକାରୀ ଦିବ୍ୟରଥ ସେଠାରେ ଆବିର୍ଭୂତ ହେଲା । ୧୯ । ଅନନ୍ତର ରାବଣ ଗମ୍ଭୀର ସ୍ୱର ଓ କର୍କଶ ବାକ୍ୟରେ ସୀତାଙ୍କୁ ଭର୍ତ୍ସନାକରି ତାଙ୍କୁ କୋଳରେ ଧରି ନେଇ ରଥ ଉପରେ ବସାଇଦେଲା । ୨୦ । ଯଶସ୍ୱିନୀ ସୀତା ରାବଣଦ୍ୱାରା ଗୃହୀତ ହେବାରୁ ଦୁଃଖରେ କାତରହୋଇ ବନରେ ବହୁଦୂରରେ ଥିବା ରାମଙ୍କୁ ଡାକ ଚିତ୍କାର କରିବାକୁ ଲଗିଲେ ।୨୧। କାମାର୍ତ୍ତ ରାବଣ ତା ପ୍ରତି ଲେଶମାତ୍ର ଅନୁରାଗ ନ ଥିବା

ତାମକାମାଂ ସ କାମାର୍ତ୍ତଃ ପନ୍ନଗେନ୍ଦ୍ରବଧୂମିବ ।
ବିବେଷ୍ଟମାନାମାଦାୟ ଉତ୍ପପାତାଥ ରାବଣଃ । ୨୨ ।
ତତଃ ସା ରାକ୍ଷସେନ୍ଦ୍ରେଣ ହ୍ରିୟମାଣା ବିହାୟସା ।
ଭୃଶଂ ଚୁକ୍ରୋଶ ମତ୍ତେବ ଭ୍ରାନ୍ତଚିତ୍ତା ଯଥାତୁରା । ୨୩ ।
ହା ଲକ୍ଷ୍ମଣ ମହାବାହୋ ଗୁରୁଚିତ୍ତପ୍ରସାଦକ ।
ହ୍ରିୟମାଣାଂ ନ ଜାନୀଷେ ରକ୍ଷସା ମାମମର୍ଷିଣା । ୨୪ ।
ଜୀବିତଂ ସୁଖମର୍ଥାଂଶ୍ଚ ଧର୍ମହେତୋଃ ପରିତ୍ୟଜନ୍ ।
ହ୍ରିୟମାଣା ମଧର୍ମେଣ ମାଂ ରାଘବ ନ ପଶ୍ୟସି । ୨୫ ।
ନନୁ ନାମାବିନୀତାନାଂ ବିନେତାସି ପରଂତପ ।
କଥମେବଂବିଧଂ ପାପଂ ନ ତ୍ୱଂ ଶାଧିହି ରାବଣମ୍ । ୨୬ ।
ନନୁ ସଦ୍ୟୋଽବିନୀତସ୍ୟ ଦୃଶ୍ୟତେ କର୍ମଣଃ ଫଳମ୍ ।
କାଲୋଽପ୍ୟଙ୍ଗୀ ଭବତ୍ୟତ୍ର ସସ୍ୟାନାମିବ ପକ୍ତୟେ । ୨୭ ।
ସ କର୍ମ କୃତବାନେତତ୍ କାଲୋପହତଚେତନଃ ।
ଜୀବିତାନ୍ତକରଂ ଘୋରଂ ରାମାଦ୍ ବ୍ୟସନମାପ୍ନୁହି । ୨୮ ।

---

ସୀତାଙ୍କୁ ଧରି ଉପରକୁ ଉଠିଲା । ସୀତା ସେତେବେଳେ ନାଗବଧୂପରି ଛଟପଟ ହେଉଥିଲେ । ୨୨ । ଏହାପରେ ରାକ୍ଷସରାଜ ରାବଣ ତାଙ୍କୁ ଆକାଶମାର୍ଗରେ ହରଣ କରି ନେଇଯାଉଥିବାବେଳେ ସୀତା ଉନ୍ମତ୍ତ ଭ୍ରାନ୍ତଚିତ୍ତ ଏବଂ ଆତୁରହୋଇ ଉଚ୍ଚୈଃସ୍ୱରରେ କ୍ରନ୍ଦନ କରିବାକୁ ଲାଗିଲେ । ୨୩ । "ହା ! ଗୁରୁଙ୍କର ମନ-ସନ୍ତୋଷକାରୀ ମହାବାହୁ ଲକ୍ଷ୍ମଣ ! ଆମ୍ଭାଭିମାନୀ ରାକ୍ଷସ ମୋତେ ହରଣକରି ନେଇଯାଉଛି, ଏହା ତୁମେ ଜାଣୁ ନାହଁ । ୨୪। ହା ରାଘବ ! ତୁମେ ଧର୍ମଲାଗି ସୁଖ, ପ୍ରାଣ, ଏବଂ ଅର୍ଥ ସମୁଦାୟ ତ୍ୟାଗ କରିଅଛ ; ଏବେ ମୁଁ ଏ ଅଧର୍ମୀ ଦ୍ୱାରା ଅପହୃତ ହେଉଅଛି, ମୋତେ ଦେଖୁ ନାହଁ ।୨୫। ହେ ଶତ୍ରୁସୂଦନ ! ତୁମେ ଅବିନୟୀମାନଙ୍କୁ ଶାସନ କରିଥାଅ; ତେବେ କାହିଁକି ଏହି ପାପୀ ରାବଣକୁ ଶାସନ କରୁ ନାହଁ ? ୨୬ । ଅବିନୀତମାନଙ୍କର କର୍ମଫଳ ସଙ୍ଗେ ସଙ୍ଗେ ଫଳେ ନାହିଁ ଏହା ଠିକ୍ । ଶସ୍ୟ ପକ୍ୱ ହେବାପାଇଁ କାଳର ସହକାରିତାର ପ୍ରୟୋଜନ ହୋଇଥାଏ । ୨୭ । ରାବଣ ! ତୁ କାଳପ୍ରଭାବରେ ହତଜ୍ଞାନହୋଇ ଏହି ଯେ କର୍ମ କଲୁ, ଏଥିପାଇଁ ତୋତେ ରାମଙ୍କ ଠାରୁ ପ୍ରାଣାନ୍ତକର ଘୋର ବିପଦ ଲଭିବାକୁ ହେବ । ୨୮ । ଆହା ! ମୁଁ

ହନ୍ତେଦାନୀଂ ସକାମାସ୍ତୁ କୈକେୟୀ ସହବାନ୍ଧବୈଃ ।
ହ୍ରିୟେ ଯଦ୍ଧର୍ମକାମସ୍ୟ ଧର୍ମପତ୍ନୀ ଯଶସ୍ୱିନଃ । ୨୯ ।
ଆମନ୍ତ୍ରୟେ ଜନସ୍ଥାନେ କର୍ଣିକାରାନ୍ ସୁପୁଷ୍ପିତାନ୍ ।
କ୍ଷିପ୍ରଂ ରାମାୟ ଶଂସଧ୍ୱଂ ସୀତାଂ ହରତି ରାବଣଃ । ୩୦ ।
ମାଲ୍ୟବନ୍ତଂ ଶିଖରିଣଂ ବନ୍ଦେ ପ୍ରସ୍ରବଣଂ ଗିରିମ୍ ।
କ୍ଷିପ୍ରଂ ରାମାୟ ଶଂସ ତ୍ୱଂ ସୀତାଂ ହରତି ରାବଣଃ । ୩୧ ।
ହଂସକାରଣ୍ଡବାକୀର୍ଣାଂ ବନ୍ଦେ ଗୋଦାବରୀଂ ନଦୀମ୍ ।
କ୍ଷିପ୍ରଂ ରାମାୟ ଶଂସ ତ୍ୱଂ ସୀତାଂ ହରତି ରାବଣଃ । ୩୨ ।
ଦୈବତାନି ଚ ଯାନ୍ୟସ୍ମିନ୍ ବନେ ବିବିଧପାଦପେ ।
ନମସ୍କରୋମ୍ୟହଂ ତେଭ୍ୟୋ ଭର୍ତୁଃ ଶଂସତ ମାଂ ହୃତାମ୍ ।୩୩।
ଯାନି କାନିଚଦପ୍ୟତ୍ର ସତ୍ତ୍ୱାନି ନିବସନ୍ତ୍ୟୁତ ।
ସର୍ବାଣି ଶରଣଂ ଯାମି ମୃଗପକ୍ଷିଗଣାନପି । ୩୪ ।
ହ୍ରିୟମାଣାଂ ପ୍ରିୟାଂ ଭର୍ତୁଃ ପ୍ରାଣେଭ୍ୟୋଽପି ଗରୀୟସୀମ୍ ।
ବିବଶାପହୃତା ସୀତା ରାବଣେନେତି ଶଂସତ । ୩୫ ।

---

ଧର୍ମାଭିଳାଷୀ ଯଶସ୍ୱୀ ରାମଙ୍କର ଧର୍ମପତ୍ନୀ ହୋଇ ମଧ୍ୟ ଏବେ ଅପହୃତା ହେଉଅଛୁ । ଏବେ ସବାନ୍ଧବେ କୈକେୟୀଙ୍କର ମନସ୍କାମନା ପୂର୍ଣ୍ଣହେଉ । ୨୯ । ଏହି ଜନସ୍ଥାନରେ ପୁଷ୍ପିତ କର୍ଣ୍ଣିକାର ବୃକ୍ଷମାନଙ୍କୁ ମୁଁ ପ୍ରାର୍ଥନାକରୁଛି, ତୁମେମାନେ ରାମଙ୍କୁ କହିବ, "ସୀତାକୁ ରାବଣ ହରଣକରି ନେଉଅଛି" । ୩୦ । ଶୃଙ୍ଗବିଶିଷ୍ଟ ନିର୍ଝରଣୀ-ପୂର୍ଣ୍ଣ ମାଲ୍ୟବନ୍ତ ଗିରିକୁ ମୁଁ ନମସ୍କାର କରୁଛି, ତୁମେ ଶୀଘ୍ର ରାମଙ୍କୁ କହିବ ଯେ "ରାବଣ ସୀତାକୁ ହରଣ କରୁଅଛି" । ୩୧ । ହଂସ-ସାରସ-ସେବିତ ଗୋଦାବରୀ ନଦୀଙ୍କୁ ମୁଁ ବନ୍ଦନାକରୁଛି । ତୁମେ ଶୀଘ୍ର ରାମଙ୍କୁ କହ ଯେ "ସୀତାକୁ ରାବଣ ହରଣକରି ନେଉଅଛି" । ୩୨ । ଏ ବନରେ ବିବିଧ ବୃକ୍ଷମାନଙ୍କରେ ଯେଉଁସବୁ ଦେବତା ଅଛନ୍ତି, ମୁଁ ସେ ସମସ୍ତଙ୍କୁ ନମସ୍କାର କରୁଅଛି । ମୁଁ ଅପହୃତ ହେଉଥିବା କଥା ମୋର ସ୍ୱାମୀଙ୍କୁ କହ । ୩୩ । ଏ ଅରଣ୍ୟରେ ମୃଗ, ପକ୍ଷୀ ପ୍ରଭୃତି ଯେତେ ଯେ ପ୍ରାଣୀ ବାସକରନ୍ତି, ମୁଁ ସେ ସମସ୍ତଙ୍କର ଶରଣାପନ୍ନ ହେଉଅଛି । ୩୪ । ତୁମେମାନେ ସମସ୍ତେ ରାମଙ୍କୁ ତାଙ୍କର ପ୍ରାଣଠାରୁ ପ୍ରିୟତମା ପ୍ରେୟସୀ ଭାର୍ଯ୍ୟା ସୀତା ବିବଶା ହୋଇ ରାବଣକର୍ତ୍ତୃକ ଅପହୃତ ହୋଇଥିବା କଥା କହ । ୩୫ ।

ବିଦିତ୍ୱା ମାଂ ମହାବାହୁରମୁତ୍ରାପି ମହାବଲଃ ।
ଆନେଷ୍ୟତି ପରାକ୍ରମ୍ୟ ବୈବସ୍ୱତହୃତାମପି । ୩୬ ।
ସା ତଦା କରୁଣା ବାଚୋ ବିଲପନ୍ତୀ ସୁଦୁଃଖିତା ।
ବନସ୍ପତିଗତଂ ଗୃଧ୍ରଂ ଦଦର୍ଶାୟତଲୋଚନା । ୩୭ ।
ସା ତମୁଦ୍‌ବୀକ୍ଷ୍ୟ ସୁଶ୍ରୋଣୀ ରାବଣସ୍ୟ ବଶଂ ଗତା ।
ସମାକ୍ରନ୍ଦଦ୍‌ଭୟପରା ଦୁଃଖୋପହତୟା ଗିରା । ୩୮ ।
ଜଟାୟୋ ପଶ୍ୟ ମାମାର୍ଯ୍ୟ ହ୍ରିୟମାଣାମନାଥବତ୍ ।
ଅନେନ ରାକ୍ଷସେନ୍ଦ୍ରେଣ କରୁଣଂ ପାପକର୍ମଣା । ୩୯ ।
ନୈଷ ବାରୟିତୁଂ ଶକ୍ୟସ୍ତ୍ୱୟା କ୍ରୂରୋ ନିଶାଚରଃ ।
ସତ୍ତ୍ୱବାଞ୍ଜିତକାଶୀ ଚ ସାୟୁଧଶ୍ଚୈବ ଦୁର୍ମତିଃ । ୪୦ ।
ରାମାୟ ତୁ ଯଥାତତ୍ତ୍ୱଂ ଜଟାୟୋ ହରଣଂ ମମ ।
ଲକ୍ଷ୍ମଣାୟ ଚ ତତ୍‌ସର୍ବମାଖ୍ୟାତବ୍ୟମଶେଷତଃ । ୪୧ ।

ଇତ୍ୟାର୍ଷେ ଶ୍ରୀମଦ୍‌ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଅରଣ୍ୟକାଣ୍ଡେ ସୀତାପହରଣଂ ନାମ ଏକୋନପଞ୍ଚାଶଃ ସର୍ଗଃ

---

ମୁଁ ଯଦି ଯମଦ୍ୱାର ମଧ୍ୟ ଅନ୍ତେ ହୁଏ ଏବଂ ମହାବାହୁ ରାମ ଯଦି ତାହା ଜାଣିପାରନ୍ତି, ତାହାହେଲେ ସେ ପରାକ୍ରମ ଦେଖାଇ ମୋତେ ସେଠାରୁ ଫେରି ଆଣିବେ” । ୩୬ । ବିଶାଳଲୋଚନା ସୀତା ଦୁଃଖିତହୋଇ କରୁଣସ୍ୱରରେ ବିଳାପ କରୁ କରୁ ଗୃଧ୍ରରାଜଙ୍କୁ ବୃକ୍ଷ ଉପରେ ବସିଥିବାର ଦେଖିଲେ । ୩୭ । ନିତମ୍ବିନୀ, ରାବଣର ବଶରେ ଥିବା ସୀତା ତାହାଙ୍କୁ ଦେଖି ଦୁଃଖପୂର୍ଣ୍ଣ ବଚନରେ ଉଚ୍ଚସ୍ୱରରେ କାନ୍ଦିବାକୁ ଲାଗିଲେ । ୩୮ । “ହେ ଆର୍ଯ୍ୟ ଜଟାୟୋ ! ଦେଖ, ଏହି ପାପାତ୍ମା ରାକ୍ଷସରାଜ ରାବଣ ମୋତେ ଅନାଥପରି ନିର୍ଦ୍ଦୟଭାବରେ ହରଣ କରୁଅଛି । ୩୯ । ତୁମେ ଏହି ମହାବଳୀ, ବିଜୟଚିହ୍ନଧାରୀ, ଦୁର୍ମତି, କ୍ରୂର, ସଶସ୍ତ୍ର, ରାକ୍ଷସକୁ ଅଟକାଇ ପାରିବ ନାହିଁ । ୪୦ । କିନ୍ତୁ ହେ ଜଟାୟୋ ! ତୁମେ ରାମଙ୍କୁ ଏବଂ ଲକ୍ଷ୍ମଣଙ୍କୁ ଯଥାଯଥଭାବରେ ମୋର ହରଣକଥା ଆନୁପୂର୍ବିକଭାବରେ କହିବ” । ୪୧ ।

# ପଞ୍ଚାଶଃ ସର୍ଗଃ

## ଜଟାୟୁରଭିଯୋଗଃ

ତଂ ଶବ୍ଦମବସୁପ୍ତସ୍ତୁ ଜଟାୟୁରଥ ଶୁଶ୍ରୁବେ ।
ନିରୀକ୍ଷ୍ୟ ରାବଣଂ କ୍ଷିପ୍ରଂ ବୈଦେହୀଂ ଚ ଦଦର୍ଶ ସଃ । ୧ ।
ତତଃ ପର୍ବତକୂଟାଭସ୍ତୀକ୍ଷ୍ଣତୁଣ୍ଡଃ ଖଗୋତ୍ତମଃ ।
ବନସ୍ପତିଗତଃ ଶ୍ରୀମାନ୍ ବ୍ୟାଜହାର ଶୁଭାଂ ଗିରମ୍ । ୨ ।
ଦଶଗ୍ରୀବ ସ୍ଥିତୋ ଧର୍ମେ ପୁରାଣେ ସତ୍ୟସଂଶ୍ରୟଃ ।
ଭ୍ରାତସ୍ତ୍ୱଂ ନିନ୍ଦିତଂ କର୍ମ କର୍ତ୍ତୁଂ ନାର୍ହସି ସାଂପ୍ରତମ୍ । ୩ ।
ଜଟାୟୁର୍ନାମ ନାମ୍ନାହଂ ଗୃଧ୍ରରାଜୋ ମହାବଳଃ ।
ରାଜା ସର୍ବସ୍ୟ ଲୋକସ୍ୟ ମହେନ୍ଦ୍ରବରୁଣୋପମଃ । ୪ ।
ଲୋକାନାଂ ଚ ହିତେ ଯୁକ୍ତୋ ରାମୋ ଦଶରଥାତ୍ମଜଃ ।
ତସ୍ୟୈଷା ଲୋକନାଥସ୍ୟ ଧର୍ମପତ୍ନୀ ଯଶସ୍ୱିନୀ । ୫ ।
ସୀତା ନାମ ବରାରୋହା ଯାଂ ତ୍ୱଂ ହର୍ତ୍ତୁମିହେଚ୍ଛସି ।
କଥଂ ରାଜା ସ୍ଥିତୋ ଧର୍ମେ ପରଦାରାନ୍ ପରାମୃଶେତ୍ । ୬ ।

---

# ୫୦ଂଶ ସର୍ଗ

(ଜଟାୟୁର ଆଗମନ)

ଜଟାୟୁ ନିଦ୍ରିତ ଅବସ୍ଥାରେହିଁ ଏହି ଶବ୍ଦ ଶୁଣିଲେ ଏବଂ ତତ୍‌କ୍ଷଣାତ୍ ଗୃହିଁ ବାମାଙ୍କେ ରାବଣ ଏବଂ ସୀତା ଉଭୟଙ୍କୁ ଦେଖିଲେ । ୧ । ଅନନ୍ତର ପର୍ବତଶୃଙ୍ଗ-ସଦୃଶ ବିଶାଳକାୟ, ତୀକ୍ଷ୍ଣତୁଣ୍ଡ, ବୃକ୍ଷବାସୀ, ଶ୍ରୀମାନ୍, ପକ୍ଷିରାଜ ଜଟାୟୁ ମଧୁର ବାକ୍ୟରେ କହିଲେ । ୨ । "ଭାଇ ଦଶଗ୍ରୀବ ! ତୁମେ ସତ୍ୟକୁ ଆଶ୍ରୟକରି ପ୍ରାଚୀନ ଧର୍ମରେ ରହିଛ, ସୁତରାଂ ବର୍ତ୍ତମାନ ଏପରି ଗର୍ହିତ କାର୍ଯ୍ୟ କରିବା ତୁମ୍ଭର ଉଚିତ ନୁହେଁ । ୩ । ମୁଁ ଜଟାୟୁ ନାମକ ମହାବଳୀ ଗୃଧ୍ରରାଜ । ଦଶରଥନନ୍ଦନ ରାମ ସାକ୍ଷାତ୍ ମହେନ୍ଦ୍ର ଓ ବରୁଣଙ୍କପରି ସମସ୍ତ ଲୋକର ରାଜା । ସେ ସକଳ ଲୋକର ହିତସାଧନରେ ରତ ଅଛନ୍ତି । ଏହି ଯଶସ୍ୱିନୀ ସେହି ଲୋକନାଥ ରାମଙ୍କର ଧର୍ମପତ୍ନୀ ଅଟନ୍ତି । ତୁମେ ଯାହାଙ୍କୁ ହରଣ କରିବାକୁ ଇଚ୍ଛାକରୁଛ, ସେହି ବରାରୋହାଙ୍କର ନାମ ସୀତା । ଧର୍ମରେ ଥିବା ରାଜା କିପରି ପରଦାରମାନଙ୍କୁ ସ୍ପର୍ଶ କରିବ ? । ୪-୬ ।

ରକ୍ଷଣୀୟା ବିଶେଷେଣ ରାଜଦାରା ମହାବଲ ।
ନିବର୍ତ୍ତସ୍ୱ ମତିଂ ନୀଚାଂ ପରଦାରାଭିମର୍ଶନାତ୍ ।୭।
ନ ତତ୍ସମାଚରେଦ୍ଧୀରୋ ଯତ୍ପରୋଽସ୍ୟ ବିଗର୍ହୟେତ୍ ।
ଯଥାତ୍ମନସ୍ତଥାନ୍ୟେଷାଂ ଦାରା ରକ୍ଷ୍ୟା ବିପଶ୍ଚିତା ।୮।
ଧର୍ମମର୍ଥଂ ଚ କାମଂ ଚ ଶିଷ୍ଟାଃ ଶାସ୍ତ୍ରେଷ୍ୱନାଗତମ୍ ।
ବ୍ୟବସ୍ୟନ୍ତି ନ ରାଜାନଃ ପୌଲସ୍ତ୍ୟକୁଲନନ୍ଦନ ।୯।
ରାଜା ଧର୍ମଶ୍ଚ କାମଶ୍ଚ ଦ୍ରବ୍ୟାଣାଂ ଚୋତ୍ତମୋ ନିଧିଃ ।
ଧର୍ମଃ ଶୁଭଂ ବା ପାପଂ ବା ରାଜମୂଳଂ ପ୍ରବର୍ତ୍ତତେ ।୧୦।
ପାପସ୍ୱଭାବଶ୍ଚପଲଃ କଥଂ ତ୍ୱଂ ରକ୍ଷସାଂ ବର ।
ଐଶ୍ୱର୍ଯ୍ୟମଭିସଂପ୍ରାପ୍ତୋ ବିମାନମିବ ଦୁଷ୍କୃତୀ ।୧୧।
କାମଂ ସ୍ୱଭାବୋ ଯୋ ଯସ୍ୟ ନ ଶକ୍ୟଃ ପରିମାର୍ଜିତୁମ୍ ।
ନ ହି ଦୁଷ୍ଟାତ୍ମନାମାର୍ଯ୍ୟମାବସତ୍ୟାଲୟେ ଚିରମ୍ ।୧୨।
ବିଷୟେ ବା ପୁରେ ବା ତେ ଯଦା ରାମୋ ମହାବଲଃ ।
ନାପରାଧ୍ୟତି ଧର୍ମାତ୍ମା କଥଂ ତସ୍ୟାପରାଧ୍ୟସି ।୧୩।

---

ହେ ମହାବଳ ! ବିଶେଷତଃ ରାଜପତ୍ନୀମାନେ ସର୍ବଥା ରକ୍ଷଣୀୟା । ଅତଏବ ତୁମେ ପରଦାରଧର୍ଷଣରୂପ ଏହି ନୀଚ-ପ୍ରବୃତ୍ତିରୁ ନିବୃତ୍ତହୁଅ । ୭ । ଶତ୍ରୁ ଯାହାକୁ ନିନ୍ଦା କରିବ, ସେପରି କାର୍ଯ୍ୟ ପଣ୍ଡିତ ଲୋକ କେବେ ଆଚରଣ କରେ ନାହିଁ । ବିଦ୍ୱାନ୍ ବ୍ୟକ୍ତି ନିଜର ପତ୍ନୀପରି ଅନ୍ୟର ପତ୍ନୀମାନଙ୍କୁ ମଧ୍ୟ ରକ୍ଷା କରିବା ଉଚିତ ।୮। ହେ ପୌଲସ୍ତ୍ୟନନ୍ଦନ ! ଶିଷ୍ଟ ରାଜାମାନେ ଶାସ୍ତ୍ରଦ୍ୱାରା ଅନନୁମୋଦିତ ଧର୍ମ, ଅର୍ଥ ବା କାମ ଲାଭ କରିବାକୁ ଚେଷ୍ଟା କରନ୍ତି ନାହିଁ । ୯ । ରାଜାହିଁ ଧର୍ମ, କାମ, ଏବଂ ରାଜାହିଁ ସମସ୍ତ ଦ୍ରବ୍ୟର ଉତ୍ତମ ରତ୍ନସ୍ୱରୂପ । ଧର୍ମ ରାଜାଙ୍କୁହିଁ ମୂଳକରି ଶୁଭଭାବରେ ବା ମନ୍ଦଭାବରେ ପ୍ରବର୍ତ୍ତିତ ହୋଇଥାଏ ।୧୦। ହେ ରାକ୍ଷସଶ୍ରେଷ୍ଠ ! ତୁ ଏପରି ପାପସ୍ୱଭାବ, ଚପଳ ଏବଂ ଦୁଷ୍କର୍ମକାରୀ ହୋଇ କିପରି ଉଚ୍ଚ ବିମାନସଦୃଶ ଏ ଐଶ୍ୱର୍ଯ୍ୟ ପାଇଅଛୁ । ୧୧ । ଏ କଥା ନିଶ୍ଚୟ ଯେ ଯାହାର ଯେ ସ୍ୱଭାବ ସେ ତାହାକୁ ପରିମାର୍ଜନା କରିବାକୁ ସମର୍ଥ ହୁଏ ନାହିଁ । ଦୁରାତ୍ମା ଲୋକଙ୍କ ଘରେ ଆର୍ଯ୍ୟ-ସ୍ୱଭାବ କଦାପି ଚିରକାଳ ରହିପାରେ ନାହିଁ । ୧୨ । ମହାବଳୀ ଧର୍ମାତ୍ମା ରାମ ତୋର ରାଜଧାନୀରେ ବା ତୋର ରାଜ୍ୟରେ ତ କୌଣସି ଅପରାଧ କରି ନାହାନ୍ତି, ତେବେ ତୁ କାହିଁକି ତାଙ୍କଠାରେ ଅପରାଧୀ ହେଉଛୁ ?।୧୩। ଜନସ୍ଥାନବାସୀ ଖର

ଯଦ ଶୂର୍ପଣଖାହେତୋର୍ଜନସ୍ଥାନଗତଃ ଖରଃ ।
ଅତିବୃତ୍ତୋ ହତଃ ପୂର୍ବଂ ରାମେଣାକ୍ଲିଷ୍ଟକର୍ମଣା ।୧୪ ।
ଅତ୍ର ବ୍ରୂହି ଯଥାତତ୍ତ୍ୱଂ କୋ ରାମସ୍ୟ ବ୍ୟତିକ୍ରମଃ ।
ଯସ୍ୟ ତ୍ୱଂ ଲୋକନାଥସ୍ୟ ଭାର୍ଯାଂ ହୃତ୍ୱା ଗମିଷ୍ୟସି । ୧୫ ।
କ୍ଷିପ୍ରଂ ବିସୃଜ ବୈଦେହୀଂ ମା ତ୍ୱା ଘୋରେଣ ଚକ୍ଷୁଷା ।
ଦହେଦ୍ଦହନଭୂତେନ ବୃତ୍ରମିନ୍ଦ୍ରାଶନିର୍ଯଥା । ୧୬ ।
ସର୍ପମାଶୀବିଷଂ ବଦ୍ଧ୍ୱା ବସ୍ତ୍ରାନ୍ତେ ନାବବୁଧ୍ୟସେ ।
ଗ୍ରୀବାୟାଂ ପ୍ରତିମୁକ୍ତଂ ଚ କାଲପାଶଂ ନ ପଶ୍ୟସି । ୧୭ ।
ସ ଭାରଃ ସୌମ୍ୟ ଭର୍ତ୍ତବ୍ୟୋ ଯୋ ନରଂ ନାବସାଦୟେତ୍ ।
ତଦନ୍ନମପି ଭୋକ୍ତବ୍ୟଂ ଜୀର୍ଯତେ ଯଦନାମୟମ୍ । ୧୮ ।
ଯତ୍ କୃତ୍ୱା ନ ଭବେଦ୍ଧର୍ମୋ ନ କୀର୍ତ୍ତିର୍ନ ଯଶୋ ଭୁବି ।
ଶରୀରସ୍ୟ ଭବେତ୍ ଖେଦଃ କସ୍ତତ୍ କର୍ମ ସମାଚରେତ୍ ।୧୯।
ଷଷ୍ଟିର୍ବର୍ଷସହସ୍ରାଣି ମମ ଜାତସ୍ୟ ରାବଣ ।
ପିତୃପୈତାମହଂ ରାଜ୍ୟଂ ଯଥାବଦନୁତିଷ୍ଠତଃ ।୨୦ ।

---

ଶୂର୍ପଣଖା ଲାଗି ଦୁର୍ବୃତ୍ତ ଆଚରଣକର ପୂର୍ବରୁ ଅକ୍ଲିଷ୍ଟକର୍ମା ରାମଙ୍କଦ୍ୱାରା ନିହତ ହୋଇଅଛି । ତୁ ଯଥାର୍ଥରେ କହ ଦେଖି ଏଥିରେ ରାମଙ୍କର କି ଦୋଷ ଅଛି ଯେ ସେହି ଲୋକନାଥ ରାମଙ୍କର ଭାର୍ଯ୍ୟାକୁ ତୁ ହରଣକରି ନେଇଯାଉଛୁ । ୧୪-୧୫ । ତୁ ଶୀଘ୍ର ବୈଦେହୀଙ୍କୁ ଛାଡ଼ି ଦେ । ଇନ୍ଦ୍ରଙ୍କର ବଜ୍ର ଯେପରି ବୃତ୍ରାସୁରକୁ ଦଗ୍ଧ କରିଥିଲା, ସେହିପରି ରାମ ଯେପରି ଅଗ୍ନିତୁଲ୍ୟ ଭୀଷଣ ଦୃଷ୍ଟିପାତରେ ତୋତେ ଭସ୍ମୀଭୂତ ନ କରନ୍ତି ।୧୬। ଖବ୍ର ବିଷଧର ସର୍ପକୁ ନିଜ ଲୁଗାକାନିରେ ବାନ୍ଧିଛୁ, ତାହା ତୁ ଜାଣି ପାରୁନାହୁଁ । ତୋ ବେକରେ ଯେ କାଳପାଶ ନିକ୍ଷିପ୍ତ ହୋଇଛି ତାହା ତୁ ଦେଖିପାରୁ ନାହୁଁ ।୧୭। ହେ ସୌମ୍ୟ ! ଯେଉଁ ଭାର ଲୋକକୁ ଅବସନ୍ନ ନ କରେ, ସେହିପରି ଭାର ବହନ କରିବା ଉଚିତ ଏବଂ ଯେଉଁ ଅନ୍ନ କୌଣସି ରୋଗ ଉତ୍ପନ୍ନ ନ କରି ଜୀର୍ଣ୍ଣ ହୋଇଯାଏ, ସେହିପରି ଅନ୍ନହିଁ ଭକ୍ଷଣ କରିବା ଉଚିତ ।୧୮। ଯେଉଁ କାର୍ଯ୍ୟ କରିବାଦ୍ୱାରା ପୃଥିବୀରେ ଧର୍ମ, ଯଶ ଓ କୀର୍ତ୍ତି ରକ୍ଷିତ ହୁଏ ନାହିଁ ଏବଂ ଶରୀରର କ୍ଲେଶ ହୁଏ, ସେପରି କର୍ମ କିଏ ଆଚରଣ କରେ ? ୧୯ । ରାବଣ ! ଷାଠିଏ ହଜାର ବର୍ଷ ହେଲା ମୁଁ ଜନ୍ମହୋଇ ଯଥାବିଧାନରେ ପିତୃପୈତାମହ ରାଜ୍ୟପାଳନ କରୁଅଛି । ।୨୦।

ବୃଦ୍ଧୋଽହଂ ତ୍ୱଂ ଯୁବା ଧନ୍ୱୀ ସଶରଃ କବଚୀ ରଥୀ ।
ତଥାପ୍ୟାଦାୟ ବୈଦେହୀଂ କୁଶଳୀ ନ ଗମିଷ୍ୟସି । ୨୧ ।
ନ ଶକ୍ତସ୍ତ୍ୱଂ ବଳାଦ୍ଧର୍ତ୍ତୁଂ ବୈଦେହୀଂ ମମ ପଶ୍ୟତଃ ।
ହେତୁଭିର୍ନ୍ୟାୟସଂଯୁକ୍ତୈର୍ଧ୍ରୁବାଂ ବେଦଶ୍ରୁତୀମିବ । ୨୨ ।
ଯୁଧ୍ୟସ୍ୱ ଯଦି ଶୂରୋଽସି ମୁହୂର୍ତ୍ତଂ ତିଷ୍ଠ ରାବଣ ।
ଶୟିଷ୍ୟସେ ହତୋ ଭୂମୌ ଯଥାପୂର୍ବଂ ଖରସ୍ତଥା । ୨୩ ।
ଅସକୃତ୍ ସଂଯୁଗେ ଯେନ ନିହତା ଦୈତ୍ୟଦାନବାଃ ।
ନ ଚିରାଚ୍ଚୀରବାସାସ୍ତ୍ୱାଂ ରାମୋ ଯୁଧି ବଧିଷ୍ୟତି । ୨୪ ।
କିଂ ନୁ ଶକ୍ୟଂ ମୟା କର୍ତ୍ତୁଂ ଗତୌ ଦୂରଂ ନୃପାତ୍ମଜୌ ।
କ୍ଷିପ୍ରଂ ତ୍ୱଂ ନଶ୍ୟସେ ନୀଚ ତୟୋର୍ଭୀତୋ ନ ସଂଶୟଃ । ୨୫ ।
ନ ହି ମେ ଜୀବମାନସ୍ୟ ନୟିଷ୍ୟସି ଶୁଭାମିମାମ୍ ।
ସୀତାଂ କମଳପତ୍ରାକ୍ଷୀଂ ରାମସ୍ୟ ମହିଷୀଂ ପ୍ରିୟାମ୍ । ୨୬ ।
ଅବଶ୍ୟଂ ତୁ ମୟା କାର୍ଯ୍ୟଂ ପ୍ରିୟଂ ତସ୍ୟ ମହାତ୍ମନଃ ।
ଜୀବିତେନାପି ରାମସ୍ୟ ତଥା ଦଶରଥସ୍ୟ ଚ । ୨୭ ।

---

ମୁଁ ବୃଦ୍ଧ ଏବଂ ତୁ ଯୁବକ, ଧନୁଃଶରଧାରୀ, କବଚସମ୍ପନ୍ନ ତଥା ରଥାରୋହୀ ହୋଇ ମଧ୍ୟ ମୋ ଆଗରେ ଜାନକୀଙ୍କୁ ନେଇ ନିରାପଦରେ କଦାପି ଯାଇ ପାରିବୁ ନାହିଁ । ୨୧ । ନ୍ୟାୟସଂଯୁକ୍ତ ହେତୁବାଦଦ୍ୱାରା ଯେପରି ଶାଶ୍ୱତ ବେଦଶ୍ରୁତି ବଳାତ୍କାରରେ ନିରସ୍ତ ହୋଇପାରେ ନାହିଁ, ସେହିପରି ମୁଁ ଦେଖୁ ଦେଖୁ ମୋ-ଆଗରୁ ବୈଦେହୀଙ୍କୁ ତୁ କଦାପି ବଳାତ୍କାରରେ ହରିନେଇ ପାରିବୁ ନାହିଁ । ୨୨ । ରାବଣ ! ତୁ ଯଦି ବୀର, ତେବେ ମୁହୂର୍ତ୍ତେ ରହ, ଯୁଦ୍ଧକର । ଆଗରୁ ଖର ଯେପରି ମୃତ୍ୟୁବରଣ କରି ଭୂମିରେ ଶୋଇଥିଲା, ତୁ ସେହିପରି ନିହତ ହୋଇ ଭୂମିରେ ଶୟନ କରିବୁ । ୨୩ । ବହୁବାର ଯୁଦ୍ଧରେ ଯେ ଦୈତ୍ୟଦାନବମାନଙ୍କୁ ଯୁଦ୍ଧରେ ନିହତ କରିଅଛନ୍ତି, ସେହି ବଲ୍‌କଲଧାରୀ ରାମ ଅବିଳମ୍ବେ ତୋତେ ଯୁଦ୍ଧରେ ସଂହାର କରିବେ । ୨୪ । ଆହା ! ରାଜକୁମାର ଦୁହେଁ ତ ଦୂରକୁ ଚାଲିଯାଇଛନ୍ତି ! ମୋ ଦ୍ୱାରା କ'ଣ କରିହେବ ! ରେ ନୀଚ ! ତୁ ଶୀଘ୍ର ସେମାନଙ୍କ ଭୟରେ ଭୀତହୋଇ ବିନଷ୍ଟ ହେବୁ, ଏଥିରେ ସନ୍ଦେହ ନାହିଁ । ୨୫ । ମୁଁ ବଞ୍ଚି ଥାଉଁ ଥାଉଁ ତୁ ରାମଙ୍କର ପ୍ରିୟ ମହିଷୀ, ପଦ୍ମଲୋଚନା ଏବଂ ମଙ୍ଗଳମୟୀ ସୀତାଙ୍କୁ କଦାପି ନେଇଯାଇ ପାରିବୁ ନାହିଁ । ୨୬ । ଜୀବନ ଦେଇ ମଧ୍ୟ ମହାତ୍ମା ରାମ ତଥା ଦଶରଥଙ୍କର ପ୍ରିୟକାର୍ଯ୍ୟ ସମ୍ପାଦନ କରିବା ମୋର ଅବଶ୍ୟ କର୍ତ୍ତବ୍ୟ । ୨୭ । ରେ ଦଶଗ୍ରୀବ, ରାବଣ !

ତିଷ୍ଠ ତିଷ୍ଠ ଦଶଗ୍ରୀବ ମୁହୂର୍ତ୍ତଂ ପଶ୍ୟ ରାବଣ ।
ଯୁଦ୍ଧାତିଥ୍ୟଂ ପ୍ରଦାସ୍ୟାମି ଯଥାପ୍ରାଣଂ ନିଶାଚର । ୨୮ ।
ବୃନ୍ତାଦିବ ଫଲଂ ତ୍ୱାଂ ତୁ ପାତୟେୟଂ ରଥୋତ୍ତମାତ୍ । ୨୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତ୍ସହସ୍ରିକାୟାଂ ସଂହିତାୟାଂ ଅରଣ୍ୟକାଣ୍ଡେ ଜଟାୟୁରଭିଯୋଗୋ ନାମ
ପଞ୍ଚାଶଃ ସର୍ଗଃ

---

ରହ, ମୁହୂର୍ତ୍ତେ ରହ, ମୁଁ ବୃନ୍ତରୁ ଫଳ ଖସାଇ ପକାଇଲାପରି ତୋତେ ଏହି ଉତ୍କୃଷ୍ଟ ରଥରୁ ତଳକୁ ପକାଇଦେବି । ରାକ୍ଷସ ! ମୁଁ ପ୍ରାଣପଣେ, ତୋତେ ଯୁଦ୍ଧରୂପ ଆତିଥ୍ୟ ପ୍ରଦାନ କରିବି । ୨୮-୨୯ ।

ବୃଦ୍ଧୋଽହଂ ତ୍ୱଂ ଯୁବା ଧନ୍ୱୀ ସଶରଃ କବଚୀ ରଥୀ ।
ତଥାପ୍ୟାଦାୟ ବୈଦେହୀଂ କୁଶଳୀ ନ ଗମିଷ୍ୟସି । ୨୧ ।
ନ ଶକ୍ତସ୍ତ୍ୱଂ ବଳାଦ୍ଧର୍ତ୍ତୁଂ ବୈଦେହୀଂ ମମ ପଶ୍ୟତଃ ।
ହେତୁଭିର୍ନ୍ୟାୟସଂଯୁକ୍ତୈର୍ଧ୍ରୁବାଂ ବେଦଶ୍ରୁତୀମିବ । ୨୨ ।
ଯୁଧ୍ୟସ୍ୱ ଯଦି ଶୂରୋଽସି ମୁହୂର୍ତ୍ତଂ ତିଷ୍ଠ ରାବଣ ।
ଶୟିଷ୍ୟସେ ହତୋ ଭୂମୌ ଯଥାପୂର୍ବଂ ଖରସ୍ତଥା । ୨୩ ।
ଅସକୃତ୍ ସଂଯୁଗେ ଯେନ ନିହତା ଦୈତ୍ୟଦାନବାଃ ।
ନ ଚିରାଚ୍ଚୀରବାସାସ୍ତ୍ୱାଂ ରାମୋ ଯୁଦ୍ଧେ ବଧିଷ୍ୟତି । ୨୪ ।
କିଂ ନୁ ଶକ୍ୟଂ ମୟା କର୍ତ୍ତୁଂ ଗତୌ ଦୂରଂ ନୃପାତ୍ମଜୌ ।
କ୍ଷିପ୍ରଂ ତ୍ୱଂ ନଶ୍ୟସେ ନୀଚ ତୟୋର୍ଭୀତୋ ନ ସଂଶୟଃ । ୨୫ ।
ନ ହି ମେ ଜୀବମାନସ୍ୟ ନୟିଷ୍ୟସି ଶୁଭାମିମାମ୍ ।
ସୀତାଂ କମଲପତ୍ରାକ୍ଷୀଂ ରାମସ୍ୟ ମହିଷୀଂ ପ୍ରିୟାମ୍ । ୨୬ ।
ଅବଶ୍ୟଂ ତୁ ମୟା କାର୍ଯ୍ୟଂ ପ୍ରିୟଂ ତସ୍ୟ ମହାତ୍ମନଃ ।
ଜୀବିତେନାପି ରାମସ୍ୟ ତଥା ଦଶରଥସ୍ୟ ଚ । ୨୭ ।

---

ମୁଁ ବୃଦ୍ଧ ଏବଂ ତୁ ଯୁବକ, ଧନୁଃଶରଧାରୀ, କବଚସମ୍ପନ୍ନ ତଥା ରଥାରୋହୀ ହୋଇ ମଧ୍ୟ ମୋ ଆଗରେ ଜାନକୀଙ୍କୁ ନେଇ ନିରାପଦରେ କଦାପି ଯାଇ ପାରିବୁ ନାହିଁ । ୨୧ । ନ୍ୟାୟସଂଯୁକ୍ତ ହେତୁବାଦଦ୍ୱାରା ଯେପରି ଶାଶ୍ୱତୀ ବେଦଶ୍ରୁତି ବଳାତ୍କାରରେ ନିରସ୍ତ ହୋଇପାରେ ନାହିଁ, ସେହିପରି ମୁଁ ଦେଖୁ ଦେଖୁ ମୋ-ଆଗରୁ ବୈଦେହୀଙ୍କୁ ତୁ କଦାପି ବଳାତ୍କାରରେ ହରିନେଇ ପାରିବୁ ନାହିଁ । ୨୨ । ରାବଣ ! ତୁ ଯଦି ବୀର, ତେବେ ମୁହୂର୍ତ୍ତେ ରହ, ଯୁଦ୍ଧ କର । ଆଗରୁ ଖର ଯେପରି ମୃତ୍ୟୁବରଣ କରି ଭୂମିରେ ଶୋଇଥିଲା, ତୁ ସେହିପରି ନିହତ ହୋଇ ଭୂମିରେ ଶୟନ କରିବୁ । ୨୩ । ବହୁବାର ଯୁଦ୍ଧରେ ଯେ ଦୈତ୍ୟଦାନବମାନଙ୍କୁ ଯୁଦ୍ଧରେ ନିହତ କରିଅଛନ୍ତି, ସେହି ବଲ୍କଳଧାରୀ ରାମ ଅବିଳମ୍ବେ ତୋତେ ଯୁଦ୍ଧରେ ସଂହାର କରିବେ । ୨୪ । ଆହା ! ରାଜକୁମାର ଦୁହେଁ ତ ଦୂରକୁ ଚାଲିଯାଇଛନ୍ତି ! ମୋ ଦ୍ୱାରା କ'ଣ କରିହେବ ! ରେ ନୀଚ ! ତୁ ଶୀଘ୍ର ସେମାନଙ୍କ ଉପରେ ଭୀତହୋଇ ବିନଷ୍ଟ ହେବୁ, ଏଥିରେ ସନ୍ଦେହ ନାହିଁ । ୨୫ । ମୁଁ ବଞ୍ଚି ଥାଉଁ ଥାଉଁ ତୁ ରାମଙ୍କର ପ୍ରିୟ ମହିଷୀ, ପଦ୍ମଲୋଚନା ଏହି ମଙ୍ଗଳମୟୀ ସୀତାଙ୍କୁ କଦାପି ନେଇଯାଇ ପାରିବୁ ନାହିଁ । ୨୬ । ଜୀବନ ଦେଇ ମଧ୍ୟ ମହାତ୍ମା ରାମ ତଥା ଦଶରଥଙ୍କର ପ୍ରିୟକାର୍ଯ୍ୟ ସମ୍ପାଦନ କରିବା ମୋର ଅବଶ୍ୟ କର୍ତ୍ତବ୍ୟ । ୨୭ । ରେ ଦଶଗ୍ରୀବ, ରାବଣ !

ତିଷ୍ଠ ତିଷ୍ଠ ଦଶଗ୍ରୀବ ମୁହୂର୍ତ୍ତଂ ପଶ୍ୟ ରାବଣ ।
ଯୁଦ୍ଧାତିଥ୍ୟଂ ପ୍ରଦାସ୍ୟାମି ଯଥାପ୍ରାଣଂ ନିଶାଚର । ୨୮ ।
ବୃନ୍ତାଦିବ ଫଳଂ ତ୍ୱାଂ ତୁ ପାତୟେୟଂ ରଥୋତ୍ତମାତ୍ । ୨୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ଜଟାୟୁରଭିଯୋଗୋ ନାମ
ପଞ୍ଚାଶଃ ସର୍ଗଃ

---

ରହ, ମୁହୂର୍ତ୍ତେ ରହ, ମୁଁ ବୃନ୍ତରୁ ଫଳ ଖସାଇ ପକାଇଲାପରି ତୋତେ ଏହି ଉତ୍କୃଷ୍ଟ ରଥରୁ ତଳକୁ ପକାଇଦେବି । ରାକ୍ଷସ ! ମୁଁ ପ୍ରାଣପଣେ, ତୋତେ ଯୁଦ୍ଧରୂପ ଆତିଥ୍ୟ ପ୍ରଦାନ କରିବି । ୨୮-୨୯ ।

# ଏକପଞ୍ଚାଶଃ ସର୍ଗଃ

## ଜଟାୟୁରାବଣଯୁଦ୍ଧମ୍

ଇତ୍ୟୁକ୍ତସ୍ୟ ଯଥାନ୍ୟାୟ୍ୟଂ ରାବଣସ୍ୟ ଜଟାୟୁଷା ।
କ୍ରୁଦ୍ଧସ୍ୟାଗ୍ନିନିଭାଃ ସର୍ବା ରେଜୁର୍ବିଂଶତିଦୃଷ୍ଟୟଃ । ୧ ।
ସଂରକ୍ତନୟନଃ କୋପାତ୍ ତପ୍ତକାଞ୍ଚନକୁଣ୍ଡଳଃ ।
ରାକ୍ଷସେନ୍ଦ୍ରୋଽଭିଦୁଦ୍ରାବ ପତଗେନ୍ଦ୍ରମମର୍ଷଣଃ । ୨ ।
ସ ସଂପ୍ରହାରସ୍ତୁମୁଲସ୍ତୟୋସ୍ତସ୍ମିନ୍ ମହାବନେ ।
ବଭୂବ ବାତୋଦ୍ଧତୟୋର୍ମେଘୟୋର୍ଗଗନେ ଯଥା । ୩ ।
ତଦ୍ବଭୂବାଦ୍ଭୁତଂ ଯୁଦ୍ଧଂ ଗୃଧ୍ରରାକ୍ଷସୟୋସ୍ତଦା ।
ସପକ୍ଷୟୋର୍ମାଲ୍ୟବତୋର୍ମହାପର୍ବତୟୋରିବ । ୪ ।
ତତୋ ନାଲୀକନାରାଚୈସ୍ତୀକ୍ଷାଗ୍ରୈଶ୍ଚ ବିକର୍ଣ୍ଣିଭିଃ ।
ଅଭ୍ୟବର୍ଷନ୍ମହାଘୋରୈ ର୍ଗୃଧ୍ରରାଜଂ ମହାବଲଃ । ୫ ।
ସ ତାନି ଶରଜାଲାନି ଗୃଧ୍ରଃ ପତ୍ରରଥେଶ୍ୱରଃ ।
ଜଟାୟୁଃ ପ୍ରତିଜଗ୍ରାହ ରାବଣାସ୍ତ୍ରାଣି ସଂଯୁଗେ । ୬ ।

---

## ୫୧ଶ ସର୍ଗ

(ଜଟାୟୁ ରାବଣ ଯୁଦ୍ଧ)

ଜଟାୟୁ ନ୍ୟାଯ୍ୟାନୁମୋଦିତଭାବରେ ଏହିପରି କହିବାଉତ୍ତାରୁ କ୍ରୋଧରେ ରାବଣର କୋଡ଼ିଏଟିଯାକ ଚକ୍ଷୁ ଅଗ୍ନିସଦୃଶ ଜଳିଉଠିଲା ।୧। ତପ୍ତକାଞ୍ଚନକୁଣ୍ଡଳଧାରୀ ଅଭିମାନୀ ରାକ୍ଷସରାଜ ରାବଣ କ୍ରୋଧରେ ରକ୍ତଚକ୍ଷୁ ହୋଇ ସେହି ପକ୍ଷିରାଜ ଆଡ଼କୁ ଦ୍ରୁତଗତିରେ ଦୌଡ଼ିଗଲା । ୨ । ଆକାଶରେ ବାୟୁଚାଳିତ ଦୁଇଟି ମେଘଖଣ୍ଡର ସଂଘର୍ଷପରି ସେହି ମହାରଣ୍ୟରେ ସେ ଦୁହିଁଙ୍କର ସଂଗ୍ରାମ ଅତି ତୁମୁଳ ହେଲା । ୩ । ପକ୍ଷବିଶିଷ୍ଟ ଦୁଇଟି ବିଶାଳ ମାଲ୍ୟବନ୍ତ ଗିରିମଧ୍ୟରେ ସଂଘର୍ଷ ହେଲାପରି ସେହି ଗୃଧ୍ର ଏବଂ ରାକ୍ଷସମଧ୍ୟରେ ସେତେବେଳେ ଅତି ଅଦ୍ଭୁତ ଯୁଦ୍ଧ ହେଲା । ୪ । ଅନନ୍ତର ମହାବଳୀ ରାବଣ ଗୃଧ୍ରରାଜ ପ୍ରତି ମହାଭୟଙ୍କର ତୀକ୍ଷ୍ଣାଗ୍ର ନାଲୀକ, ନାରାଚ ଏବଂ ବିକର୍ଣ୍ଣିସମୂହ ବର୍ଷଣ କରିବାକୁ ଲାଗିଲା । ୫ । ପକ୍ଷିରାଜ ଜଟାୟୁ ଯୁଦ୍ଧରେ ରାବଣର ନିକ୍ଷିପ୍ତ ସେହିସବୁ ଅସ୍ତ୍ର ଏବଂ ଶରରାଜି ସହିନେଲା ।୬। ପକ୍ଷିଶ୍ରେଷ୍ଠ ମହାବଳବାନ୍ ଜଟାୟୁ

ତସ୍ୟ ତୀକ୍ଷ୍ଣନଖାଭ୍ୟାଂ ତୁ ଚରଣାଭ୍ୟାଂ ମହାବଲଃ ।
ଚକାର ବହୁଧା ଗାତ୍ରେ ବ୍ରଣାନ୍ ପତଗସତ୍ତମଃ । ୭ ।
ଅଥ କ୍ରୋଧାଦ୍ଦଶଗ୍ରୀବୋ ଜଗ୍ରାହ ଦଶମାର୍ଗଣାନ୍ ।
ମୃତ୍ୟୁଦଣ୍ଡନିଭାନ୍ ଘୋରାନ୍ ଶତ୍ରୋର୍ନିଧନକାଙ୍କ୍ଷୟା । ୮ ।
ସ ତୈର୍ବାଣୈର୍ମହାବୀର୍ଯ୍ୟଃ ପୂର୍ଣ୍ଣମୁକ୍ତୈରଜିହ୍ମଗୈଃ ।
ବିଭେଦ ନିଶିତୈସ୍ତୀକ୍ଷ୍ଣୈର୍ଗୃଧ୍ରଂ ଘୋରୈଃ ଶିଲୀମୁଖୈଃ । ୯
ସ ରାକ୍ଷସରଥେ ପଶ୍ୟଞ୍ଜାନକୀଂ ବାଷ୍ପଲୋଚନାମ୍ ।
ଅଚିନ୍ତୟିତ୍ୱା ତାନ୍ ବାଣାନ୍ ରାକ୍ଷସଂ ସମଭିଦ୍ରବତ୍ । ୧୦।
ତତୋଽସ୍ୟ ସଶରଂ ଚାପଂ ମୁକ୍ତାମଣିବିଭୂଷିତମ୍ ।
ଚରଣାଭ୍ୟାଂ ମହାତେଜା ବଭଞ୍ଜ ପତଗେଶ୍ୱରଃ । ୧୧ ।
ତତୋଽନ୍ୟଦ୍ଧନୁରାଦାୟ ରାବଣଃ କ୍ରୋଧମୂର୍ଚ୍ଛିତଃ ।
ବବର୍ଷ ଶରବର୍ଷାଣି ଶତଶୋଽଥ ସହସ୍ରଶଃ । ୧୨ ।
ଶରୈରାବାରିତସ୍ତସ୍ୟ ସଂଯୁଗେ ପତଗେଶ୍ୱରଃ ।
କୁଲାୟମୁପସଂପ୍ରାପ୍ତଃ ପକ୍ଷୀବ ପ୍ରବଭୌ ତଦା । ୧୩ ।
ସ ତାନି ଶରବର୍ଷାଣି ପକ୍ଷାଭ୍ୟାଂ ଚ ବିଧୂୟ ଚ ।
ଚରଣାଭ୍ୟାଂ ମହାତେଜା ବଭଞ୍ଜାସ୍ୟ ମହଦ୍ଧନୁଃ । ୧୪ ।

---

ତୀକ୍ଷ୍ଣ ନଖବିଶିଷ୍ଟ ଚରଣଦ୍ୱୟଦ୍ୱାରା ରାବଣର ଦେହକୁ ନାନା ସ୍ଥାନରେ କ୍ଷତବିକ୍ଷତ କରିପକାଇଲା । ୭ । ଅନନ୍ତର ଦଶାନନ ଶତ୍ରୁକୁ ବଧ କରିବା ଅଭିଳାଷରେ କ୍ରୋଧରେ ମୃତ୍ୟୁଦଣ୍ଡସଦୃଶ ଦଶଗୋଟି ଭୟଙ୍କର ଶର ଧରିଲା । ୮ । ମହାବୀର୍ଯ୍ୟ-ଶାଳୀ ରାବଣ ସେହି ଅବକ୍ରଗାମୀ ତୀକ୍ଷ୍ଣ ଶାଣିତ ଶରଗୁଡ଼ିକ ପୂର୍ଣ୍ଣବଳରେ ସହିତ ମୋଚନକରି ଜଟାୟୁଙ୍କୁ ବିଦ୍ଧକଲା । ୯ । ଜଟାୟୁ ରାବଣର ରଥ ଉପରେ ଲୋତକପୂର୍ଣ୍ଣଲୋଚନା ଜାନକୀଙ୍କୁ ଦେଖି ସେହି ସମସ୍ତ ଶରକୁ ଖାତିର ନ କରି ସେହି ରାକ୍ଷସ ଅଭିମୁଖରେ ଧାବିତ ହେଲା । ୧୦ । ଅନନ୍ତର ମହାତେଜା ପକ୍ଷିରାଜ ନିଜର ଚରଣଦ୍ୱୟଦ୍ୱାରା ତାହାର ମୁକ୍ତାମଣିଭୂଷିତ ଓ ଶରଯୁକ୍ତ ଧନୁକୁ ଭାଙ୍ଗି-ପକାଇଲା । ୧୧ । ତଦନନ୍ତର ରାବଣ କ୍ରୋଧରେ ହତଜ୍ଞାନ ହୋଇ ଅନ୍ୟ ଗୋଟିଏ ଧନୁ ଧରି ଶତ ଶତ ସହସ୍ର ସହସ୍ର ସଂଖ୍ୟାରେ ଶରବୃଷ୍ଟି କରିବାକୁ ଲାଗିଲା । ୧୨ । ସେତେବେଳେ ଯୁଦ୍ଧରେ ତାହାର ଶରଦ୍ୱାରା ସମାଚ୍ଛାଦିତ ହୋଇ ନୀଡ଼ମଧ୍ୟରେ ବସି-ଥିବା ପକ୍ଷୀପରି ଜଟାୟୁ ଶୋଭାପାଇଲା । ୧୩ । ଅନନ୍ତର ମହାତେଜା ଜଟାୟୁ ପକ୍ଷଦ୍ୱୟଦ୍ୱାରା ସେହି ସବୁ ଶରକୁ ଝାଡ଼ିଝୁଡ଼ି ଦେଇ ଚରଣଦ୍ୱୟଦ୍ୱାରା ପୁନର୍ବାର

ତତାଗ୍ନିସଦୃଶଂ ଦୀପ୍ତଂ ରାବଣସ୍ୟ ଶରାବରମ୍ ।
ପକ୍ଷାଭ୍ୟାଂ ସ ମହାବୀର୍ଯ୍ୟୋ ବ୍ୟାଧୁନୋତ୍ପତଗେଶ୍ୱରଃ । ୧୫ ।
କାଞ୍ଚନୋରଶ୍ଛଦାନ୍ ଦିବ୍ୟାନ୍ ପିଶାଚବଦନାନ୍ ଖରାନ୍ ।
ତାଂଶ୍ଚାସ୍ୟ ଜବସଂପନ୍ନାଞ୍ଜଘାନ ସମରେ ବଲୀ । ୧୬ ।
ବରଂ ତ୍ରିବେଣୁସଂପନ୍ନଂ କାମଗଂ ପାବକାର୍ଚ୍ଚିଷମ୍ ।
ମଣିହେମବିଚିତ୍ରାଙ୍ଗଂ ବଭଞ୍ଜ ଚ ମହାରଥମ୍ । ୧୭ ।
ପୂର୍ଣ୍ଣଚନ୍ଦ୍ରପ୍ରତୀକାଶଂ ଛତ୍ରଂ ଚ ବ୍ୟଜନୈଃ ସହ ।
ପାତୟାମାସ ବେଗେନ ଗ୍ରାହିଭୀ ରାକ୍ଷସୈଃ ସହ । ୧୮ ।
ସାରଥେଶ୍ଚାସ୍ୟ ବେଗେନ ତୁଣ୍ଡେନୈବ ମହଚ୍ଛିରଃ ।
ପୁନର୍ବ୍ୟପାହରଚ୍ଛ୍ରୀମାନ୍ ପକ୍ଷିରାଜୋ ମହାବଲଃ । ୧୯ ।
ସ ଭଗ୍ନଧନ୍ୱା ବିରଥୋ ହତାଶ୍ୱୋ ହତସାରଥିଃ ।
ଅଙ୍କେନାଦାୟ ବୈଦେହୀଂ ପପାତ ଭୁବି ରାବଣଃ । ୨୦ ।
ଦୃଷ୍ଟ୍ୱା ନିପତିତଂ ଭୂମୌ ରାବଣଂ ଭଗ୍ନବାହନମ୍ ।
ସାଧୁ ସାଧ୍ୱିତି ଭୂତାନି ଗୃଧ୍ରରାଜମପୂଜୟନ୍ । ୨୧ ।
ପରିଶ୍ରାନ୍ତଂ ତୁ ତଂ ଦୃଷ୍ଟ୍ୱା ଜରୟା ପକ୍ଷିୟୂଥପମ୍ ।
ଉତ୍ପପାତ ପୁନର୍ହୃଷ୍ଟୋ ମୈଥିଲୀଂ ଗୃହ୍ୟ ରାବଣଃ । ୨୨ ।

---

ତାହାର ବିଶାଳ ଧନୁକୁ ଭାଙ୍ଗିଦେଲା ।୧୪। ମହାବୀର୍ଯ୍ୟବାନ୍ ପକ୍ଷିରାଜ ପକ୍ଷପ୍ରହାର ଦ୍ୱାରା ରାବଣର ଅଗ୍ନିସଦୃଶ ପ୍ରଦୀପ୍ତ କବଚକୁ ମଧ୍ୟ ଖସାଇ ପକାଇଲା ।୧୫। ବଳବାନ୍ ଜଟାୟୁ ରାବଣର ସ୍ୱର୍ଣ୍ଣମୟ ବକ୍ଷାବରଣଯୁକ୍ତ ପିଶାଚମୁଖା ବେଗଶାଳୀ ଦିବ୍ୟ ଗର୍ଦ୍ଦଭମାନଙ୍କୁ ଯୁଦ୍ଧରେ ସଂହାରକଲା ।୧୬। ସେ ରାବଣର କାମଗାମୀ, ଅଗ୍ନିସଦୃଶ ଦୀପ୍ତିଶାଳୀ, ମଣି ଓ ସୁବର୍ଣ୍ଣଖଚିତ, ତ୍ରିବେଣୁଯୁକ୍ତ, ଉତ୍କୃଷ୍ଟ ରଥକୁ ଭାଙ୍ଗି ପକାଇଲା ।୧୭। ସେ ଛତ୍ରଚାମରଧାରୀ ରାକ୍ଷସମାନଙ୍କ ସହିତ ତାହାର ପୂର୍ଣ୍ଣଚନ୍ଦ୍ରସଦୃଶ ଛତ୍ର ଏବଂ ବ୍ୟଜନକୁ ଜୋରରେ ତଳେ ପକାଇଦେଲା ।୧୮। ଶ୍ରୀମାନ୍ ମହାବଳୀ ପକ୍ଷିରାଜ ଜଟାୟୁ ତୁଣ୍ଡପ୍ରହାରଦ୍ୱାରା ତାହାର ସାରଥିର ପ୍ରକାଣ୍ଡ ମସ୍ତକକୁ ବିଦୀର୍ଣ୍ଣ କରି ପକାଇଲା । ୧୯ । ଏହିରୂପେ ଧନୁ ଓ ରଥ ଭଗ୍ନହେବାରୁ ଏବଂ ଅଶ୍ୱ ଓ ସାରଥି ନିହତ ହେବାରୁ ରାବଣ ସୀତାଙ୍କୁ କୋଡ଼ରେ ଧରି ଭୂତଳରେ ପତିତ ହେଲା । ୨୦ । ରାବଣର ରଥ ଭାଙ୍ଗିଯାଇ ଭୂତଳରେ ନିପତିତ ହେବାର ଦେଖି ସମସ୍ତ ପ୍ରାଣୀ ସାଧୁ ସାଧୁ ବୋଲି କହି ପକ୍ଷିରାଜକୁ ଅଭିବାଦନକଲେ । ୨୧ । ବାର୍ଦ୍ଧକ୍ୟ-ହେତୁ ପକ୍ଷିରାଜ ପରିଶ୍ରାନ୍ତ ହୋଇଥିବାର ଦେଖି ରାବଣ ହୃଷ୍ଟଚିତ୍ତରେ ସୀତାଙ୍କୁ ଧରି ରଥ ଉପରକୁ ଉଠିଲା । ୨୨ ।

ତଂ ପ୍ରହୃଷ୍ଟଂ ନିଧାୟାଙ୍କେ ଗଚ୍ଛନ୍ତଂ ଜନକାତ୍ମଜାମ୍ ।
ଗୃଧ୍ରରାଜଃ ସମୁତ୍ପତ୍ୟ ସମଭିଦ୍ରୁତ୍ୟ ରାବଣମ୍ । ୨୩ ।
ସମାବାର୍ଯ ମହାତେଜା ଜଟାୟୁରିଦମବ୍ରବୀତ୍ ।
ବଜ୍ରସଂସ୍ପର୍ଶବାଣସ୍ୟ ଭାର୍ଯାଂ ରାମସ୍ୟ ରାବଣ । ୨୪ ।
ଅଲ୍ପବୁଦ୍ଧେ ହରସ୍ୟେନାଂ ବଧାୟ ଖଲୁରକ୍ଷସାମ୍ ।
ସମିତ୍ରବନ୍ଧୁଃସାମାତ୍ୟଃ ସବଲଃ ସପରିଚ୍ଛଦଃ । ୨୫ ।
ବିଷପାନଂ ପିବସ୍ୟେତତ୍ପିପାସିତ ଇବୋଦକମ୍ ।
ଅନୁବନ୍ଧମଜାନନ୍ତଃ କର୍ମଣାମବିଚକ୍ଷଣାଃ । ୨୬ ।
ଶୀଘ୍ରମେବ ବିନଶ୍ୟନ୍ତି ଯଥା ତ୍ୱଂ ବିନଶିଷ୍ୟସି ।
ବଦ୍ଧସ୍ତ୍ୱଂ କାଲପାଶେନ କ୍ୱ ଗତସ୍ତସ୍ୟ ମୋକ୍ଷ୍ୟସେ । ୨୭ ।
ବଧାୟ ବଡ଼ିଶଂ ଗୃହ୍ୟ ସାମିଷଂ ଜଲଜୋ ଯଥା ।
ନ ହି ଜାତୁ ଦୁରାଧର୍ଷୌ କାକୁତ୍ସ୍ଥୌ ତବ ରାବଣ ।୨୮।
ଧର୍ଷଣଂ ଚାଶ୍ରମସ୍ୟାସ୍ୟ କ୍ଷମିଷ୍ୟେତେ ତୁ ରାଘବୌ ।
ଯଥା ତ୍ୱୟା କୃତଂ କର୍ମ ଭୀରୁଣା ଲୋକଗର୍ହିତମ୍ । ୨୯ ।
ତସ୍କରାଚରିତୋ ମାର୍ଗୋ ନୈଷ ବୀରନିଷେବିତଃ ।
ଯୁଧ୍ୟସ୍ୱ ଯଦି ଶୂରୋଽସି ମୁହୂର୍ତ୍ତଂ ତିଷ୍ଠ ରାବଣ । ୩୦ ।

---

ରାବଣ ଅତଃପର ହୃଷ୍ଟଚିତ୍ତରେ ସୀତାଙ୍କୁ କୋଡ଼ରେ ବସାଇ ଯାଉଥିବାବେଳେ ମହାତେଜା ଜଟାୟୁ ସମୁତ୍ପତିତ ହୋଇ ତାହା ଅଭିମୁଖରେ ପ୍ରଧାବିତ ହେଲେ ଏବଂ ତାହାକୁ ସମ୍ୟକ୍‌ରୂପେ ଅବରୋଧକରି କହିଲେ, "ହେ ଅଳ୍ପବୁଦ୍ଧି ରାବଣ ! ତୁ ସମସ୍ତ ରାକ୍ଷସକୁଳର ବିନାଶନିମନ୍ତେହିଁ ବଜ୍ରସଦୃଶସ୍ପର୍ଶସମ୍ପନ୍ନ ବାଣଧାରୀ ରାମଙ୍କର ଏହି ଭାର୍ଯ୍ୟାକୁ ହରଣ କରୁଅଛୁ । ତୃଷାର୍ତ୍ତ ବ୍ୟକ୍ତି ଜଳପାନ କଲାପରି ତୁ ମିତ୍ର, ବନ୍ଧୁ, ଅମାତ୍ୟ, ସୈନ୍ୟ ଏବଂ ପରିଜନସହିତ ଏହି ବିଷପାନ କରୁଅଛୁ । ଅବିଚକ୍ଷଣ ଲୋକମାନେ ନିଜକୃତ କର୍ମର ପରିଣାମ ନ ଜାଣି ଯେପରି ଶୀଘ୍ର ନଷ୍ଟ ହୋଇଥାନ୍ତି, ତୁ ମଧ୍ୟ ସେହିପରି ବିନଷ୍ଟ ହେବୁ । ତୁ କାଳପାଶରେ ଆବଦ୍ଧ ହୋଇଅଛୁ; କେଉଁଆଡ଼କୁ ଯାଇ ସେଥିରୁ ମୁକ୍ତ ପାଇବୁ ? । ୨୩-୨୭ । ମତ୍ସ୍ୟ ଯେପରି ନିଜର ମୃତ୍ୟୁ ନିମନ୍ତେ ଥୋପ ସହିତ ବନିଶକୁ ଧରି ଯାଏ, ତୋର ଅବସ୍ଥା ସେହିପରି ହୋଇଛି । ହେ ରାବଣ ! ତୁ ଯେ ଏ ଆଶ୍ରମର ଅବମାନନା କଲୁ, ଦୁର୍ଜୟ କାକୁତ୍ସ୍ଥନନ୍ଦନ ରାମ ଲକ୍ଷ୍ମଣ ଦୁହେଁ ତାହାକୁ କଦାପି କ୍ଷମା କରିବେ ନାହିଁ । ତୁ ଭୀରୁ ଏହି ଯେଉଁ ଲୋକନିନ୍ଦିତ କାର୍ଯ୍ୟ କଲୁ ଏହା ତସ୍କରଆଚରିତ ପନ୍ଥା, ଏହା

ଶୟିଷ୍ୟସେ ହତୋ ଭୂମୌ ଯଥା ଭ୍ରାତା ଖରସ୍ତଥା ।
ପରେତକାଳେ ପୁରୁଷୋ ଯତ୍କର୍ମ ପ୍ରତିପଦ୍ୟତେ । ୩୧ ।
ବିନାଶାୟାତ୍ମନୋଽଧର୍ମ୍ୟଂ ପ୍ରତିପନ୍ନୋଽସି କର୍ମ ତତ୍ ।
ପାପାନୁବନ୍ଧୋ ବୈ ଯସ୍ୟ କର୍ମଣଃ କର୍ମ କୋ ନୁ ତତ୍ । ୩୨ ।
କୁର୍ବୀତ ଲୋକାଧିପତିଃ ସ୍ୱୟଂଭୂର୍ଭଗବାନପି ।
ଏବମୁକ୍ତ୍ୱା ଶୁଭଂ ବାକ୍ୟଂ ଜଟାୟୁସ୍ତସ୍ୟ ରକ୍ଷସଃ । ୩୩ ।
ନିପପାତ ଭୃଶଂ ପୃଷ୍ଠେ ଦଶଗ୍ରୀବସ୍ୟ ବୀର୍ଯ୍ୟବାନ୍ ।
ତଂ ଗୃହୀତ୍ୱା ନଖୈସ୍ତୀକ୍ଷ୍ଣୈର୍ବିଦଦାର ସମନ୍ତତଃ । ୩୪ ।
ଅଧିରୂଢୋ ଗଜାରୋହୋ ଯଥା ସ୍ୟାଦ୍ଦୁଷ୍ଟବାରଣମ୍ ।
ବିଦଦାର ନଖୈରସ୍ୟ ତୁଣ୍ଡଂ ପୃଷ୍ଠେ ସମର୍ପୟନ୍ । ୩୫ ।
କେଶାଂଶ୍ଚୋତ୍ପାଟୟାମାସ ନଖପକ୍ଷମୁଖାୟୁଧଃ ।
ସ ତଥା ଗୃଧ୍ରରାଜେନ କ୍ଲିଶ୍ୟମାନୋ ମୁହୁର୍ମୁହୁଃ । ୩୬ ।
ଅମର୍ଷସ୍ଫୁରିତୋଷ୍ଠଃ ସନ୍ ପ୍ରାକମ୍ପତ ସ ରାବଣଃ ।
ସମ୍ପରିଷ୍ୱଜ୍ୟ ବୈଦେହୀଂ ବାମେନାଙ୍କେନ ରାବଣଃ । ୩୭ ।

---

କଦାପି ବୀରର ପନ୍ଥା ନୁହେଁ । ହେ ରାବଣ ! ତୁ ଯଦି ବୀର ହୋଇଥାଉ ତେବେ ଯୁଦ୍ଧକର, ମୁହୂର୍ତ୍ତେ ରହ । ତୋର ଭାଇ ଖରପରି ତୁ ମଧ୍ୟ ମରି ଭୂମିରେ ଶୋଇବୁ । ଆସନ୍ନମୃତ୍ୟୁ ଲୋକ ଯେଉଁପରି କାର୍ଯ୍ୟକରେ ତୁ ନିଜର ବିନାଶ ନିମନ୍ତେ ସେହିପରି କାର୍ଯ୍ୟ କଲୁ । ଯେ କାର୍ଯ୍ୟ କରିବାଦ୍ୱାରା ଶେଷରେ ପାପହିଁ ଜାତହୁଏ, କେଉଁ ବ୍ୟକ୍ତି ସେପରି କାର୍ଯ୍ୟକରିବ ? ଲୋକାଧିପତି ଭଗବାନ୍ ବ୍ରହ୍ମା ମଧ୍ୟ ତାହା କରିବେ ନାହିଁ ।" ବୀର୍ଯ୍ୟବାନ୍ ଜଟାୟୁ ଏହିପ୍ରକାର ସୁସଙ୍ଗତ କଥା କହି ଦଶାନନ ରାବଣର ପୃଷ୍ଠଦେଶରେ ଖୁବ୍ ଜୋରରେ ଯାଇ ପଡ଼ିଲା ଏବଂ ତୀକ୍ଷ୍ଣ ନଖଦ୍ୱାରା ତାହାକୁ ଅତିଶୟ ବିଦୀର୍ଣ୍ଣ କରିପକାଇଲା । ୨୯-୩୪ । ଗଜାରୋହୀ ଯେପରି ଦୁଷ୍ଟ ଗଜ ଉପରେ ଆରୋହଣକରି ଅଙ୍କୁଶଦ୍ୱାରା ତାହାକୁ ବିଦୀର୍ଣ୍ଣ କରେ ସେହିପରି ଜଟାୟୁ ରାବଣର ପିଠିରେ ଥଣ୍ଟ ବସାଇଦେଇ ନଖଦ୍ୱାରା ତାହାକୁ ବିଦୀର୍ଣ୍ଣ କରିପକାଇଲା । ୩୫ । ନଖ, ପକ୍ଷ ଏବଂ ମୁଖକୁ ଅସ୍ତ୍ରସ୍ୱରୂପ ବ୍ୟବହାର କରି ସେ ତାହାର ମୁଣ୍ଡର ବାଳ ସବୁ ଉପାଡ଼ି ପକାଇଲା । ରାବଣ ଗୃଧ୍ରରାଜ ଜଟାୟୁଦ୍ୱାରା ଏହିପରି ବାରମ୍ବାର ପ୍ରପୀଡ଼ିତ ହେବାରୁ ତାହାର ଓଠ କ୍ରୋଧରେ କମ୍ପିତ ହେଲା ଏବଂ ସେ ଗୋଟାସୁଦ୍ଧା ଥରିବାକୁ ଲାଗିଲା । ରାବଣ ବାମକୋଡ଼ରେ ବୈଦେହୀଙ୍କୁ ଜାକିଧରି

ତଳେନାଭିଜଘାନାଶୁ ଜଟାୟୁଂ କ୍ରୋଧମୂର୍ଚ୍ଛିତଃ ।
ଜଟାୟୁସ୍ତମଭିକ୍ରମ୍ୟ ତୁଣ୍ଡେନାସ୍ୟ ଖଗାଧିପଃ । ୩୮ ।
ବାମବାହୂନ୍ ଦଶ ତଦା ବ୍ୟପାହରଦରିନ୍ଦମଃ ।
ସଂଛିନ୍ନବାହୋଃ ସଦ୍ୟୈବ ବାହବଃ ସହସାଭବନ୍ । ୩୯ ।
ବିଷଜ୍ୱାଲାବଲୀଯୁକ୍ତା ବଲ୍ମୀକାଦିବ ପନ୍ନଗାଃ ।
ତତଃ କ୍ରୋଧାଦ୍ଦଶଗ୍ରୀବଃ ସୀତାମୁତ୍ସୃଜ୍ୟ ରାବଣଃ । ୪୦ ।
ମୁଷ୍ଟିଭ୍ୟାଂ ଚରଣାଭ୍ୟାଂ ଚ ଗୃଧ୍ରରାଜମପୋଥୟତ୍ ।
ତତୋ ମୁହୂର୍ତ୍ତଂ ସଂଗ୍ରାମୋ ବଭୂବାତୁଲବୀର୍ଯ୍ୟୟୋଃ । ୪୧ ।
ରାକ୍ଷସାନାଂ ଚ ମୁଖ୍ୟସ୍ୟ ପକ୍ଷିଣାଂ ପ୍ରବରସ୍ୟ ଚ ।
ତସ୍ୟ ବ୍ୟାୟଚ୍ଛମାନସ୍ୟ ରାମସ୍ୟାର୍ଥେ ସ ରାବଣଃ । ୪୨ ।
ପକ୍ଷୌ ପାର୍ଶ୍ୱୌ ଚ ପାଦୌ ଚ ଖଡ୍ଗମୁଦ୍ଧୃତ୍ୟ ସୋଽଚ୍ଛିନତ୍ ।
ସ ଛିନ୍ନପକ୍ଷଃ ସହସା ରକ୍ଷସା ରୌଦ୍ରକର୍ମଣା । ୪୩ ।
ନିପପାତ ହତୋ ଗୃଧ୍ରୋ ଧରଣ୍ୟାମଲ୍ପଜୀବିତଃ ।
ତଂ ଦୃଷ୍ଟ୍ୱା ପତିତଂ ଭୂମୌ କ୍ଷତଜାର୍ଦ୍ରଂ ଜଟାୟୁଷମ୍ । ୪୪ ।
ଅଭ୍ୟଧାବତ ବୈଦେହୀ ସ୍ୱବନ୍ଧୁମିବ ଦୁଃଖିତା । ୪୫ ।

---

କ୍ରୋଧରେ ହତଜ୍ଞାନ ହୋଇ ଜଟାୟୁକୁ ହାତତଳପାଦ୍ୱାରା ଆଘାତ କଲା । ଶତ୍ରୁସୂଦନ, ପକ୍ଷିରାଜ ଜଟାୟୁ ସେ ପ୍ରହାର ସହିଯାଇ ତୁଣ୍ଡଆଘାତରେ ରାବଣର ଦଶଟିଯାକ ବାମ-ବାହୁକୁ ଛିନ୍ନକରି ପକାଇଲା । ବିଷଜ୍ୱାଳାରେ ଉତ୍ତେଜିତ ହୋଇ ସର୍ପମାନେ ଯେପରି ବଲ୍ମୀକମଧ୍ୟରୁ ବହିର୍ଗତ ହୁଅନ୍ତି, ସେହିପରି ରାବଣର ବାହୁ ଛିନ୍ନ ହୋଇଯିବା ସଙ୍ଗେ ସଙ୍ଗେ ତା'ଦେହରୁ ଅନ୍ୟ ବାହୁମାନ ବାହାରିପଡ଼ିଲା । ଅନନ୍ତର ରାବଣ କ୍ରୋଧରେ ସୀତାଙ୍କୁ ଛାଡ଼ିଦେଇ ଜଟାୟୁକୁ ମୁଷ୍ଟିଦ୍ୱୟ ଏବଂ ଚରଣଦ୍ୱୟଦ୍ୱାରା ପ୍ରପୀଡ଼ିତ କରିବାକୁ ଲାଗିଲା । ଅନନ୍ତର ଅତୁଳପରାକ୍ରମୀ ଗୃଧ୍ରରାଜ ଓ ରାକ୍ଷସରାଜମଧ୍ୟରେ ମୁହୂର୍ତ୍ତେଯାଏ ତୁମୁଳ ଯୁଦ୍ଧ ଚାଲିଲା । ଜଟାୟୁ ରାମଙ୍କ ଲାଗି ବିକ୍ରମପ୍ରକାଶ କରିବାକୁ ପ୍ରବୃତ୍ତ ହେବାରୁ ରାବଣ ଖଡ୍ଗ ଉତ୍ତୋଳନ କରି ତାହାର ଦୁଇ ପକ୍ଷ, ଦୁଇ ପାଦ ଓ ଦୁଇପାର୍ଶ୍ୱ ଛେଦନ କରିପକାଇଲା । ରୌଦ୍ରକର୍ମା ରାକ୍ଷସ ତାହାର ପକ୍ଷଚ୍ଛେଦନ କରିବାରୁ ଗୃଧ୍ରରାଜ ତତ୍‌କ୍ଷଣାତ୍ ଭୂମିରେ ପଡ଼ିଗଲା । ତାର ପ୍ରାଣ ସାମାନ୍ୟ ଧୁକୁ ଧୁକୁ ହେଉଥାଏ । ଜଟାୟୁକୁ ରକ୍ତାକ୍ତଦେହରେ ଭୂତଳରେ ପତିତ ହେବାର ଦେଖି ସୀତାଦୁଃଖିତହୋଇ ନିଜ ବନ୍ଧୁପରି ତା' ଆଡ଼କୁ ଦ୍ରୁତବେଗରେ ଗମନକଲେ । ୩୭-୪୫ ।

ତଂ ନୀଳଜୀମୂତନିକାଶକଳ୍ପମ୍
ସୁପାଣ୍ଡୁରୋରସ୍କମୁଦାରବୀର୍ଯ୍ୟମ୍ ।
ଦଦର୍ଶ ଲଙ୍କାଧିପତିଃ ପୃଥିବ୍ୟାମ୍
ଜଟାୟୁଷଂ ଶାନ୍ତମିବାଗ୍ନିଦାବମ୍ । ୪୭ ।
ତତସ୍ତୁ ତଂ ପତ୍ରରଥଂ ମହୀତଳେ
ନିପାତିତଂ ରାବଣବେଗମର୍ଦ୍ଦିତମ୍ ।
ପୁନଃ ପରିଷ୍ୱଜ୍ୟ ଶଶିପ୍ରଭାନନା
ରୁରୋଦ ସୀତା ଜନକାତ୍ମଜା ତଦା । ୪୭ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ଜଟାୟୁରାବଣଯୁଦ୍ଧମ୍
ନାମ ଏକପଞ୍ଚାଶଃ ୫୧ ଃ

---

ଲଙ୍କାଧିପତି ରାବଣ ନୀଳମେଘସଦୃଶ ମହାବୀର୍ଯ୍ୟଶାଳୀ ଶୁକ୍ଳବକ୍ଷ-ବିଶିଷ୍ଟ ଜଟାୟୁକୁ ନିଭିଯାଇଥିବା ବନାଗ୍ନିସଦୃଶ ଭୂତଳରେ ପତିତ ହେବାର ଦେଖିଲା । ୪୭ । ଅନନ୍ତର ଚନ୍ଦ୍ରବଦନା ଜନକନନ୍ଦିନୀ ସୀତା ରାବଣର ବେଗରେ ବିମର୍ଦ୍ଦିତ ଏବଂ ଭୂପତିତ ଜଟାୟୁକୁ ଆଲିଙ୍ଗନକରି ପୁନଃପୁନଃ ରୋଦନ କରିବାକୁ ଲାଗିଲେ । ୪୭ ।

# ଦ୍ୱିପଞ୍ଚାଶଃ ସର୍ଗଃ

## ସୀତାବିକ୍ରୋଶଃ

ତମଲ୍ପଜୀବିତଂ ଗୃଧ୍ରଂ ସ୍ଫୁରନ୍ତଂ ରାକ୍ଷସାଧିପଃ ।
ଦଦର୍ଶ ଭୂମୌ ପତିତଂ ସମୀପେ ରାଘବାଶ୍ରମାତ୍ । ୧ ।
ସା ତୁ ତାରାଧିପମୁଖୀ ରାବଣେନ ସମୀକ୍ଷ୍ୟ ତମ୍ ।
ଗୃଧ୍ରରାଜଂ ବିନିହତଂ ବିଲଲାପ ସୁଦୁଃଖିତା । ୨ ।
ଆଲିଙ୍ଗ୍ୟ ଗୃଧ୍ରଂ ନିହତଂ ରାବଣେନ ବଲୀୟସା ।
ବିଲଲାପ ସୁଦୁଃଖାର୍ତ୍ତା ସୀତା ଶଶିନିଭାନନା । ୩ ।
ନିମିତ୍ତଂ ଲକ୍ଷଣଂ ସ୍ୱପ୍ନଂ ଶକୁନିସ୍ୱରଦର୍ଶନମ୍ ।
ଅବଶ୍ୟଂ ସୁଖଦୁଃଖେଷୁ ନରାଣାଂ ପ୍ରତିଦୃଶ୍ୟତେ । ୪ ।
ନୂନଂ ରାମ ନ ଜାନାସି ମହଦ୍ ବ୍ୟସନମାତ୍ମନଃ ।
ଧାବନ୍ତି ନୂନଂ କାକୁତ୍ସ୍ଥ ମଦର୍ଥଂ ମୃଗପକ୍ଷିଣଃ । ୫ ।
ଅୟଂ ହି କୃପୟା ରାମ ମାଂ ତ୍ରାତୁମଭିସଂଗତଃ ।
ଶେତେ ବିନିହତୋ ଭୂମୌ ମମାଭାଗ୍ୟାଦ୍ ବିହଙ୍ଗମଃ । ୬ ।

---

## ୫୨ ସର୍ଗ

### ( ସୀତାଙ୍କର ଉଚ୍ଚୈଃସ୍ୱରରେ ରୋଦନ )

ରାକ୍ଷସରାଜ ରାବଣ ସେହି ଗୃଧ୍ରକୁ ସାମାନ୍ୟ ଜୀବ ଅବଶିଷ୍ଟ ଥାଇ, ରାମଙ୍କ ଆଶ୍ରମ ନିକଟରେ ଭୂତଳରେ ପଡ଼ି ଦୁକୁ ଦୁକୁ ହେଉଥିବା ଦେଖିଲା । ୧ । ଗୃଧ୍ରରାଜ ଜଟାୟୁ ରାବଣଦ୍ୱାରା ନିହତହେବାର ଦେଖି ଚନ୍ଦ୍ରାନନା ସୀତା ଅତିଶୟ ଦୁଃଖିତହୋଇ ବିଳାପ କରିବାକୁ ଲାଗିଲେ । ୨ । ଚନ୍ଦ୍ରାନନା ସୀତା ବଳବାନ୍ ରାବଣଦ୍ୱାରା ନିହତ ହୋଇଥିବା ଗୃଧ୍ରକୁ ଆଲିଙ୍ଗନକରି ଦୁଃଖରେ ନିତାନ୍ତ କାତର ହୋଇ ବିଳାପ କରିବାକୁ ଲାଗିଲେ । ୩ । "ମନୁଷ୍ୟମାନଙ୍କର ସୁଖ ଦୁଃଖହେଲେ ନାନା ନିମିତ୍ତ, ଲକ୍ଷଣ, ସ୍ୱପ୍ନ ଏବଂ ପକ୍ଷୀମାନଙ୍କର ସ୍ୱର ନିଶ୍ଚୟ ଦେଖା ଯାଇଥାଏ । ।୪। ହେ ରାମ ! ତୁମ ନିଜର ଯେ ଘୋର ବିପଦ ଉପସ୍ଥିତ ହୋଇଅଛି, ତାହା ତୁମେ ଜାଣିପାରୁ ନାହଁ । ମୋଲାଗି ମୃଗପକ୍ଷୀମାନେ ନିଶ୍ଚୟ ରାମଙ୍କ ଆଡ଼କୁ ପ୍ରଧାବିତ ହେଉ ଅଛନ୍ତି । ହେ ରାମ ! ମୋତେ ତ୍ରାଣ କରିବା ପାଇଁ ଏହି ପକ୍ଷିରାଜ ଦୟାପରବଶ ହୋଇ ଏଠାକୁ ଆସି ଶେଷରେ ମୋର ଦୁର୍ଭାଗ୍ୟବଶରୁ ନିହତହୋଇ ଭୂମିରେ

ତ୍ରାହି ମାମଦ୍ୟ କାକୁତ୍‌ସ୍ଥ ଲକ୍ଷ୍ମଣେତି ବରାଙ୍ଗନା ।
ସୁସଂତ୍ରସ୍ତା ସମାକ୍ରନ୍ଦଚ୍ଛୃଣ୍ୱତାଂ ତୁ ଯଥାନ୍ତିକେ । ୭ ।
ତାଂ କ୍ଲିଷ୍ଟମାଲ୍ୟାଭରଣାଂ ବିଲପନ୍ତୀମନାଥବତ୍ ।
ଅଭ୍ୟଧାବତ ବୈଦେହୀଂ ରାବଣୋ ରାକ୍ଷସାଧିପଃ । ୮ ।
ତାଂ ଲତାମିବ ବେଷ୍ଟନ୍ତୀମାଲିଙ୍ଗନ୍ତୀଂ ମହାଦ୍ରୁମାନ୍ ।
ମୁଞ୍ଚ ମୁଞ୍ଚେତି ବହୁଶଃ ପ୍ରବଦନ୍ ରାକ୍ଷସାଧିପଃ । ୯ ।
କ୍ରୋଶନ୍ତୀଂ ରାମ ରାମେତି ରାମେଣ ରହିତାଂ ବନେ ।
ଜୀବିତାନ୍ତାୟ କେଶେଷୁ ଜଗ୍ରାହାନ୍ତକସଂନିଭଃ । ୧୦ ।
ପ୍ରଧର୍ଷିତାୟାଂ ସୀତାୟାଂ ବଭୂବ ସଚରାଚରମ୍ ।
ଜଗଦ୍‌ସର୍ବମମର୍ଯାଦଂ ତମସାନ୍ଧେନ ସଂବୃତମ୍ । ୧୧ ।
ନ ବାତି ମାରୁତସ୍ତତ୍ର ନିଷ୍ପ୍ରଭୋଽଭୂଦ୍ଦିବାକରଃ ।
ଦୃଷ୍ଟ୍ୱା ସୀତାଂ ପରାମୃଷ୍ଟାଂ ଦୀନାଂ ଦିବ୍ୟେନ ଚକ୍ଷୁଷା । ୧୨ ।
କୃତଂ କାର୍ଯମିତି ଶ୍ରୀମାନ୍ ବ୍ୟାଜହାର ପିତାମହଃ ।
ପ୍ରହୃଷ୍ଟା ବ୍ୟଥିତାଶ୍ଚାସନ୍ ସର୍ବେ ତେ ପରମର୍ଷୟଃ । ୧୩ ।

---

ଶୋଇଛନ୍ତି । ୫-୬ । ହେ ରାମ ! ଲକ୍ଷ୍ମଣ ! ତୁମେମାନେ ଏବେ ମୋତେ ରକ୍ଷାକର ।” ଏହା କହି ରମଣୀଶ୍ରେଷ୍ଠା ସୀତା ଅତିଶୟ ଭୀତହୋଇ ଉଚ୍ଚୈସ୍ୱରରେ କ୍ରନ୍ଦନ କରିବାକୁ ଲଗିଲେ ଏବଂ ପାର୍ଶ୍ୱବର୍ତ୍ତୀ ପ୍ରାଣୀମାନେ ତାହା ଶୁଣିବାକୁ ଲାଗିଲେ । ୭ । ତାଙ୍କର ମାଳ୍ୟ ଓ ଆଭରଣମାନ ମ୍ଳାନହୋଇ ଯାଇଥିଲା ଏବଂ ସେ ଅନାଥ ପରି ବିଳାପ କରୁଥିଲେ । ଏହି ସମୟରେ ରାକ୍ଷସରାଜ ରାବଣ ସୀତାଙ୍କ ଆଡ଼କୁ ଧାଇଁଲା । ୮ । ସୀତା ଲତାସଦୃଶ ମହାଦ୍ରୁମମାନଙ୍କୁ କୁଣ୍ଢାଇ ଧରିଥିବାବେଳେ ଏବଂ ବନରେ ରାମଙ୍କ ବିହୁନରେ “ରାମ ! ରାମ !” ବୋଲି ଚିତ୍କାର କରୁଥିବା-ବେଳେ ଯମତୁଲ୍ୟ ରାକ୍ଷସରାଜ ରାବଣ, “ଛାଡ଼, ଛାଡ଼” ବୋଲି ବାରମ୍ବାର କହି ନିଜର ବିନାଶନିମନ୍ତେ ତାଙ୍କର କେଶ ଧାରଣକଲା । ୯-୧୦ । ସୀତା ଏହିପରି ଅପମାନିତ ହେବାରୁ ସଚରାଚର ଜଗତ୍ ମର୍ଯ୍ୟାଦାଶୂନ୍ୟ ଏବଂ ନିବିଡ଼ ଅନ୍ଧକାରରେ ଆବୃତ ହୋଇଗଲା । ୧୧ । ସେଠାରେ ବାୟୁ ପ୍ରବାହିତ ହେଲା ନାହିଁ ଏବଂ ସୂର୍ଯ୍ୟ ପ୍ରଭାଶୂନ୍ୟ ହୋଇଗଲେ । ଶ୍ରୀମାନ୍ ପିତାମହ ବ୍ରହ୍ମା ଦିବ୍ୟଦୃଷ୍ଟିରେ ସୀତାଙ୍କୁ ଏହିପରି ଦୀନଭାବରେ ଅତିଶୟ ଅପମାନିତ ହେବାର ଦେଖି କହିଲେ, “ବର୍ତ୍ତମାନ କାର୍ଯ୍ୟ ସିଦ୍ଧହେଲା ।” ଦଣ୍ଡକାରଣ୍ୟବାସୀ ମହର୍ଷିମାନେ ସମସ୍ତେ ସୀତାଙ୍କୁ ଧର୍ଷିତା-

ଦୃଷ୍ଟ୍ୱା ସୀତାଂ ପରାମୃଷ୍ଟାଂ ଦଣ୍ଡକାରଣ୍ୟବାସିନଃ ।
ରାବଣସ୍ୟ ବିନାଶଂ ଚ ପ୍ରାପ୍ତଂ ବୁଦ୍ଧ୍ୱା ଯଦୃଚ୍ଛୟା । ୧୪ ।
ସ ତୁ ତାଂ ରାମ ରାମେତି ରୁଦନ୍ତୀଂ ଲକ୍ଷ୍ମଣେତି ଚ ।
ଜଗାମାଦାୟ ଚାକାଶଂ ରାବଣୋ ରାକ୍ଷସେଶ୍ୱରଃ । ୧୫ ।
ତପ୍ତାଭରଣବର୍ଣ୍ଣାଙ୍ଗୀ ପୀତକୌଶେୟବାସିନୀ ।
ରରାଜ ରାଜପୁତ୍ରୀ ତୁ ବିଦ୍ୟୁତ୍ ସୌଦାମିନୀ ଯଥା । ୧୬ ।
ଉଦ୍ଧୂତେନ ଚ ବସ୍ତ୍ରେଣ ତସ୍ୟାଃ ପୀତେନ ରାବଣଃ ।
ଅଧିକଂ ପ୍ରତିବଭ୍ରାଜ ଗିରିର୍ଦୀପ୍ତ ଇବାଗ୍ନିନା । ୧୭ ।
ତସ୍ୟାଃ ପରମକଲ୍ୟାଣ୍ୟାସ୍ତାମ୍ରାଣି ସୁରଭୀଣି ଚ ।
ପଦ୍ମପତ୍ରାଣି ବୈଦେହ୍ୟା ଅଭ୍ୟକୀର୍ଯନ୍ତ ରାବଣମ୍ । ୧୮ ।
ତସ୍ୟାଃ କୌଶେୟମୁଦ୍ଧୂତମାକାଶେ କନକପ୍ରଭମ୍ ।
ବଭୌ ଚାଦିତ୍ୟରାଗେଣ ତାମ୍ରମଭ୍ରମିବାତପେ । ୧୯ ।
ତସ୍ୟାସ୍ତଦ୍ୱିମଲଂ ବକ୍ତ୍ରମାକାଶେ ରାବଣାଙ୍କଗମ୍ ।
ନ ରରାଜ ବିନା ରାମଂ ବିନାଳମିବ ପଙ୍କଜମ୍ । ୨୦ ।

---

ହେବାର ଦେଖି ବ୍ୟଥିତହେଲେ ଏବଂ ଦୈବଯୋଗେ ରାବଣର ବିନାଶ ଉପସ୍ଥିତହେଲା ବୋଲି ଜାଣି ଅତଏବ ଆନନ୍ଦିତହେଲେ ।୧୨-୧୪। ଏଣେ ସୀତା ବାରମ୍ବାର ରାମ ଓ ଲକ୍ଷ୍ମଣଙ୍କ ନାମ ଉଚ୍ଚାରଣକରି ରୋଦନ କରୁଥାନ୍ତି । ଏପରି ଅବସ୍ଥାରେ ରାକ୍ଷସରାଜ ରାବଣ ତାଙ୍କୁ ଧରି ଆକାଶମାର୍ଗରେ ଗମନ କରିବାକୁ ଲାଗିଲା ।୧୫। ତପ୍ତକାଞ୍ଚନବର୍ଣ୍ଣା ପୀତକୌଶେୟବାସନା ରାଜ-ନନ୍ଦିନୀ ସୀତା ସେତେବେଳେ ସୌଦାମିନୀପ୍ରାୟ ଦୀପ୍ତି ଧାରଣକଲେ । ୧୬ । ସେତେବେଳେ ତାଙ୍କର ପୀତବସ୍ତ୍ର ଉଡ଼ିଯିବାରୁ ରାବଣ ମଧ୍ୟ ଅଗ୍ନିଦ୍ୱାରା ପ୍ରଦୀପ୍ତ ପର୍ବତସଦୃଶ ଅଧିକ ଶୋଭମାନ ହେଲା । ୧୭ । ପରମକଲ୍ୟାଣୀ ସୀତାଙ୍କ ଦେହରେ ଥିବା ସୁଗନ୍ଧଯୁକ୍ତ ତାମ୍ରବର୍ଣ୍ଣ ପଦ୍ମପାଖୁଡ଼ାମାନ ରାବଣର ଦେହଯାକ ବିକ୍ଷିପ୍ତ ହୋଇପଡ଼ିଲା । ୧୮ । ସୀତାଙ୍କର ସ୍ୱର୍ଣ୍ଣସଦୃଶ ଦୀପ୍ତିମନ୍ତ ପଟ୍ଟବସ୍ତ୍ର ଆକାଶରେ ଉଡ଼ି ଗ୍ରୀଷ୍ମକାଳରେ ସୂର୍ଯ୍ୟରଶ୍ମିରଞ୍ଜିତ ତାମ୍ରବର୍ଣ୍ଣ ମେଘପରି ଶୋଭା ପାଇଲା । ୧୯ । ମାତ୍ର ତାଙ୍କର ନିର୍ମଳ ମୁଖମଣ୍ଡଳ ରାବଣର କୋଳରେ ନ୍ୟସ୍ତ ହୋଇ ରାମଙ୍କ ବିହୁନରେ ମୃଣାଳହୀନ ପଦ୍ମପୁଷ୍ପପରି ଆଦୌ ସୁନ୍ଦର ଦେଖାଗଲା

ବଭୂବ ଜଲଦଂ ନୀଲଂ ଭିତ୍ତ୍ୱା ଚନ୍ଦ୍ର ଇବୋଦିତଃ ।
ସୁଲଲାଟଂ ସୁକେଶାନ୍ତଂ ପଦ୍ମଗର୍ଭାଭମବ୍ରଣମ୍ । ୨୧ ।
ଶୁକ୍ଳୈଃ ସୁବିମଲୈର୍ଦନ୍ତୈଃ ପ୍ରଭାବଦ୍ଭିରଲଂକୃତମ୍ ।
ତସ୍ୟାଃ ସୁନୟନଂ ବକ୍ତ୍ରମାକାଶେ ରାବଣାଙ୍କଗମ୍ । ୨୨ ।
ରୁଦିତଂ ବ୍ୟପମୃଷ୍ଟାସ୍ରଂ ଚନ୍ଦ୍ରବତ୍ ପ୍ରିୟଦର୍ଶନମ୍ ।
ସୁନାସଂ ଚାରୁ ତାମ୍ରୋଷ୍ଠମାକାଶେ ହାଟକପ୍ରଭମ୍ । ୨୩ ।
ରାକ୍ଷସେନ୍ଦ୍ରସମାଧୂତଂ ତସ୍ୟାସ୍ତଦ୍‌ବଦନଂ ଶୁଭମ୍ ।
ଶୁଶୁଭେ ନ ବିନା ରାମଂ ଦିବା ଚନ୍ଦ୍ର ଇବୋଦିତଃ । ୨୪ ।
ସା ହେମବର୍ଣା ନୀଲାଙ୍ଗଂ ମୈଥିଲୀ ରାକ୍ଷସାଧିପମ୍ ।
ଶୁଶୁଭେ କାଞ୍ଚନୀ କାଞ୍ଚୀ ନୀଲଂ ଗଜମିବାଶ୍ରିତା । ୨୫ ।
ସା ପଦ୍ମଗୌରୀ ହେମାଭା ରାବଣଂ ଜନକାତ୍ମଜା ।
ବିଦ୍ୟୁଦ୍‌ଘନମିବାବିଶ୍ୟ ଶୁଶୁଭେ ତପ୍ତଭୂଷଣା । ୨୬ ।
ତସ୍ୟା ଭୂଷଣଘୋଷେଣ ବୈଦେହ୍ୟା ରାକ୍ଷସାଧିପଃ ।
ବଭୌ ସଚପଲୋ ନୀଲଃ ସଘୋଷ ଇବ ତୋୟଦଃ ।୨୭ ।

---

ନାହିଁ । ୨୦ । ତାଙ୍କର ଉତ୍ତମ ଲଲାଟ ଓ କେଶଯୁକ୍ତ ପଦ୍ମକେଶରସଦୃଶ ଅକ୍ଷତ-ମୁଖମଣ୍ଡଳ ନୀଳମେଘକୁ ଭେଦକରି ଉଦିତ ହେଉଥିବା ଚନ୍ଦ୍ରପରି ଦେଖାଗଲା । ୨୧ । ଆକାଶରେ ରାବଣର କୋଡ଼ରେ ଵିନ୍ୟସ୍ତ ହୋଇଥିବା ତାହାଙ୍କର ସ୍ୱର୍ଣ୍ଣବର୍ଣ୍ଣ ମୁଖମଣ୍ଡଳ ସୁନ୍ଦର ନୟନଯୁକ୍ତ ଏବଂ ଶୁକ୍ଳ ନିର୍ମଳ ଦୀପ୍ତିମାନ୍ ଦନ୍ତପଂକ୍ତିଦ୍ୱାରା ଏବଂ ସୁନ୍ଦର ନାସିକା ଓ ତାମ୍ରବର୍ଣ୍ଣ ଓଷ୍ଠଦ୍ୱାରା ଶୋଭିତହୋଇ ଚନ୍ଦ୍ରସଦୃଶ ସୁନ୍ଦର ଦେଖାଯାଉଥିଲେ ମଧ୍ୟ ରୋଦନଦ୍ୱାରା ତାହା ଅଶ୍ରୁସିକ୍ତ ହୋଇଥିଲା । । ୨୨-୨୩ । ରାବଣକର୍ତ୍ତୃକ ସମାକୃଷ୍ଟହୋଇ ରାମଙ୍କ ବିରହରେ ଦିବସରେ ଉଦିତ ହୋଇଥିବା ଚନ୍ଦ୍ରପରି ସେହି ସୁନ୍ଦର ମୁଖମଣ୍ଡଳ ଶୋଭାହୀନ ହୋଇଥିଲା । ୨୪ । ସ୍ୱର୍ଣ୍ଣନିର୍ମିତ କାଞ୍ଚୀ ନୀଳବର୍ଣ୍ଣ ହସ୍ତୀର ଦେହରେ ଲଗ୍ନହୋଇ ଯେପରି ଶୋଭାପାଏ, ସ୍ୱର୍ଣ୍ଣବର୍ଣ୍ଣା ଜାନକୀ ରାକ୍ଷସରାଜ ରାବଣର ନୀଳବର୍ଣ୍ଣ ଶରୀରରେ ସେହିପରି ଶୋଭାପାଉଥିଲେ । ୨୫ । ସ୍ୱର୍ଣ୍ଣବର୍ଣ୍ଣା ପଦ୍ମଗୌରୀ ତପ୍ତକାଞ୍ଚନଭୂଷଣା ଜନକନନ୍ଦିନୀ ରାବଣର ଦେହରେ ମେଘମଧ୍ୟରେ ପ୍ରବେଶ କରିଥିବା ବିଦ୍ୟୁତ୍‌ପରି ଶୋଭାପାଇଲେ ।୨୬। ରାକ୍ଷସରାଜ ସୀତାଙ୍କର ଅଳଂକାରର ଶବ୍ଦଦ୍ୱାରା ବିଦ୍ୟୁତ୍‌ଯୁକ୍ତ ଶବ୍ଦାୟମାନ ନୀଳମେଘ ପରି ଶୋଭାପାଇଲା । ୨୭ । ସୀତା ଏହିପରି ଅପହୃତହେଉଥିବାବେଳେ ତାଙ୍କର

ଉତ୍ତମାଙ୍ଗଚ୍ୟୁତା ତସ୍ୟାଃ ପୁଷ୍ପବୃଷ୍ଟିଃ ସମନ୍ତତଃ ।
ସୀତାୟା ହ୍ରିୟମାଣାୟାଃ ପପାତ ଧରଣୀତଳେ । ୨୮ ।
ସା ତୁ ରାବଣବେଗେନ ପୁଷ୍ପବୃଷ୍ଟିଃ ସମନ୍ତତଃ ।
ସମାଧୂତା ଦଶଗ୍ରୀବଂ ପୁନରେବାଭ୍ୟବର୍ତ୍ତତ । ୨୯ ।
ଅଭ୍ୟବର୍ତ୍ତତ ପୁଷ୍ପାଣାଂ ଧାରା ବୈଶ୍ରବଣାନୁଜମ୍ ।
ନକ୍ଷତ୍ରମାଲା ବିମଲା ମେରୁଂ ନଗମିବୋନ୍ନତମ୍ । ୩୦ ।
ଚରଣାନ୍ନୂପୁରଂ ଭ୍ରଷ୍ଟଂ ବୈଦେହ୍ୟା ରତ୍ନଭୂଷିତମ୍ ।
ବିଦ୍ୟୁନ୍ମଣ୍ଡଳସଂକାଶଂ ପପାତ ମଧୁରସ୍ୱନମ୍ । ୩୧ ।
ତରୁପ୍ରବାଳରକ୍ତା ସା ନୀଲାଙ୍ଗଂ ରାକ୍ଷସେଶ୍ୱରମ୍ ।
ପ୍ରାଶୋଭୟତ ବୈଦେହୀ ଗଜଂ କକ୍ଷ୍ୟେବ କାଞ୍ଚନୀ । ୩୨ ।
ତାଂ ମହୋଲ୍କାମିବାକାଶେ ଦୀପ୍ୟମାନାଂ ସ୍ୱତେଜସା ।
ଜହାରାକାଶମାବିଶ୍ୟ ସୀତାଂ ବୈଶ୍ରବଣାନୁଜଃ । ୩୩ ।
ତସ୍ୟାସ୍ତାନ୍ୟଗ୍ନିବର୍ଣ୍ଣାନି ଭୂଷଣାନି ମହୀତଳେ ।
ସଘୋଷାଣ୍ୟବଶୀର୍ଯନ୍ତ କ୍ଷୀଣାସ୍ତାରା ଇବାମ୍ବରାତ୍ । ୩୪ ।
ତସ୍ୟାଃ ସ୍ତନାନ୍ତରାଦ୍ଭ୍ରଷ୍ଟୋ ହାରସ୍ତାରାଧିପଦ୍ୟୁତିଃ ।
ବୈଦେହ୍ୟା ନିପତନ୍ ଭାତି ଗଙ୍ଗେବ ଗଗନାଚ୍ୟୁତା । ୩୫ ।

---

ମସ୍ତକରୁ ସ୍ଖଳିତହୋଇ ପୁଷ୍ପରାଜି ଚୃତଆଡ଼େ ଭୂତଳରେ ପତିତହେଲା । ୨୮ । କିନ୍ତୁ ସେହି ପୁଷ୍ପରାଶି ରାବଣର ଗମନବେଗହେତୁରୁ ବାୟୁଦ୍ୱାରା ଆନ୍ଦୋଳିତ ହୋଇ ଉଡ଼ିଆସି ପୁଣି ସେହି ରାବଣଦେହରେ ପଡ଼ିଲା । ୨୯ । ନିର୍ମଳ ନକ୍ଷତ୍ରମାଳା ସମୁନ୍ନତ ମେରୁ ପର୍ବତରେ ପତିତହେଲାପରି ଏହି ପୁଷ୍ପରାଜି କୁବେରର କନିଷ୍ଠ ଭ୍ରାତା ରାବଣଦେହରେ ଆସି ପଡ଼ିଲା । ୩୦ । ଏହି ସମୟରେ ବୈଦେହୀଙ୍କ ଚରଣରୁ ରତ୍ନଭୂଷିତ ନୂପୁର ଭ୍ରଷ୍ଟହୋଇ ବିଦ୍ୟୁନ୍ମଣ୍ଡଳସଦୃଶ ମଧୁର ଶବ୍ଦକରି ଭୂତଳରେ ପତିତହେଲା । ୩୧ । ବୃକ୍ଷର ନବପଲ୍ଲବସଦୃଶ ଆରକ୍ତବର୍ଣ୍ଣା ସୀତା ରାକ୍ଷସରାଜର ନୀଳଶରୀରକୁ ସୁନାପେଟି ହାତୀକୁ ସୁନ୍ଦର ଦିଶିଲାପରି ସୁଶୋଭିତକଲେ । ୩୨ । ସୀତା ପ୍ରକାଣ୍ଡ ଉଲ୍କାସଦୃଶ ନିଜତେଜରେ ଆକାଶମଧ୍ୟରେ ଦୀପ୍ୟମାନ ହେଉଥିଲେ । ଏହିପରି ଅବସ୍ଥାରେ କୁବେରାନୁଜ ରାବଣ ତାହାଙ୍କୁ ଆକାଶମାର୍ଗରେ ହରଣକରି ଯିବାକୁ ଲାଗିଲା । ୩୩ । ସୀତାଙ୍କର ଅଗ୍ନିବର୍ଣ୍ଣ ଶୋଭାୟମାନ ଅଳଂକାର-ସମୂହ ଶବ୍ଦକରି ଭୂତଳରେ ପତିତହେବାକୁ ଲାଗିଲା । ବୋଧହେଲା, ଯେତେ ସେପରି କ୍ଷୁଦ୍ର ତାରକାରାଜି ଆକାଶରୁ ଖସିପଡ଼ୁଛନ୍ତି । ୩୪ । ଚନ୍ଦ୍ରପରି ଦ୍ୟୁତିଶାଳୀ ତାଙ୍କର ହାର ସ୍ତନଯୁଗଳମଧ୍ୟରୁ ଭ୍ରଷ୍ଟହୋଇ ପଡ଼ିଯିବାବେଳେ ଆକାଶରୁ ଖସିପଡ଼ୁଥିବା

ଉତ୍ପାତବାତାଭିହତା ନାନାଦ୍ୱିଜଗଣାୟୁତାଃ ।
ମା ଭୈରିତି ବିଧୂତାଗ୍ରା ବ୍ୟାଜହ୍ରୁରିବ ପାଦପାଃ ।୩୬।
ନଳିନ୍ୟୋ ଧ୍ୱସ୍ତକମଲା ସ୍ତ୍ରସ୍ତମୀନଜଲେଚରାଃ ।
ସଖୀମିବ ଗତୋତ୍ସାହାମନ୍ୱଶୋଚନ୍ତ ମୈଥିଲୀମ୍ ।୩୭।
ସମନ୍ତାଦଭିସଂପତ୍ୟ ସିଂହବ୍ୟାଘ୍ରମୃଗଦ୍ୱିଜାଃ ।
ଅନ୍ୱଧାବଂସ୍ତଦା ରୋଷାତ୍ସୀତାଂ ଛାୟାନୁଗାମିନଃ ।୩୮।
ଜଲପ୍ରପାତାସ୍ରମୁଖାଃ ଶୃଙ୍ଗୈରୁଚ୍ଛ୍ରିତବାହବଃ ।
ସୀତାୟାଂ ହ୍ରିୟମାଣାୟାଂ ବିକ୍ରୋଶନ୍ତୀବ ପର୍ବତାଃ ।୩୯।
ହ୍ରିୟମାଣାଂ ତୁ ବୈଦେହୀଂ ଦୃଷ୍ଟ୍ୱା ଦୀନୋ ଦିବାକରଃ ।
ପ୍ରତିଧ୍ୱସ୍ତପ୍ରଭଃ ଶ୍ରୀମାନାସୀତ୍ ପାଣ୍ଡୁରମଣ୍ଡଳଃ ।୪୦।
ନାସ୍ତି ଧର୍ମଃ କୁତଃ ସତ୍ୟଂ ନାର୍ଜବଂ ନାନୃଶଂସତା ।
ଯତ୍ର ରାମସ୍ୟ ବୈଦେହୀଂ ଭାର୍ଯ୍ୟାଂ ହରତି ରାବଣଃ ।୪୧।
ଇତି ସର୍ବାଣି ଭୂତାନି ଗଣଶଃ ପର୍ଯ୍ୟଦେବୟନ୍ ।
ବିତ୍ରସ୍ତକା ଦୀନମୁଖା ରୁରୁଦୁର୍ମୃଗପୋତକାଃ ।୪୨।

---

ଗଙ୍ଗାଙ୍କପରି ଶୋଭାପାଇଲା ।୩୫। ଊର୍ଦ୍ଧ୍ୱଗତ ବାୟୁ-ସଞ୍ଚାରହେତୁରୁ ଅଗ୍ରଭାଗ ବିକମ୍ପିତହେଉଥିବାରୁ ବିବିଧ ବିହଙ୍ଗମପୂର୍ଣ୍ଣ ବୃକ୍ଷରାଜି ସତେ ଯେପରି କହୁଥିଲେ, "ଭୟ କର ନାହିଁ ।" ।୩୬। ପଦ୍ମପୁଷ୍ପରାଜି ବିଧ୍ୱସ୍ତ ଏବଂ ମତ୍ସ୍ୟପ୍ରଭୃତି ଜଳଚରମାନେ ସନ୍ତ୍ରସ୍ତ ହୋଇପଡ଼ିଥିବାରୁ ବୋଧ ହେଉଥିଲା ଯେପରିକି ସରୋବରମାନେ ସଖୀଙ୍କପରି ଉତ୍ସାହହୀନା ହୋଇ ଜାନକୀଙ୍କ ଲାଗି ଶୋକ କରୁଥିଲେ ।୩୭। ସିଂହ, ବ୍ୟାଘ୍ର, ମୃଗ ଏବଂ ପକ୍ଷୀମାନେ କ୍ରୋଧରେ ସୀତାଙ୍କର ଛାୟା ଅନୁସରଣ କରି ଚାରିଆଡ଼ୁ ଆସି ସେତେବେଳେ ତାଙ୍କ ପଛେ ପଛେ ଦୌଡ଼ିଲେ ।୩୮। ସୀତା ଅପହୃତହେଉଥିବାରୁ ପର୍ବତମାନେ ଯେପରିକି ଜଳପ୍ରପାତ ଆକାରରେ ଅଶ୍ରୁ-ବିସର୍ଜନକରି ଶୃଙ୍ଗରୂପ ବାହୁ ଉତ୍ତୋଳନପୂର୍ବକ ଉଚ୍ଚୈଃସ୍ୱରରେ ରୋଦନ କରୁଥିଲେ ।୩୯। ସୀତା ଅପହୃତହେବାର ଦେଖି ଶ୍ରୀମାନ୍ ସୂର୍ଯ୍ୟଦେବ ମଧ୍ୟ ଦୀନ ଏବଂ ପ୍ରଭାହୀନ ହୋଇଗଲେ ଓ ତାଙ୍କର ମଣ୍ଡଳ ପାଣ୍ଡୁରବର୍ଣ୍ଣ ହୋଇଗଲା ।୪୦। "ଯେତେବେଳେ ରାବଣ ରାମପତ୍ନୀ ବୈଦେହୀଙ୍କୁ ହରଣ କରି ନେଉଅଛି, ସେତେବେଳେ ଆଉ ଧର୍ମ ରହିଲା ନାହିଁ, ସୁତରାଂ ସତ୍ୟ, ଦୟା, ଋଜୁତା ବା ଅନୃଶଂସତା ଆଉ କୁଆଡ଼ୁ ଆସିବ ?" ।୪୧। ଏହା କହି ପ୍ରାଣୀମାନେ ଦଳ ଦଳ ହୋଇ ବିଳାପ କରିବାକୁ

ଉଦ୍‌ବୀକ୍ଷ୍ୟୋଦ୍‌ବୀକ୍ଷ୍ୟ ନୟନୈରସ୍ରପାତାବଲେକ୍ଷଣାଃ ।
ସୁପ୍ରବେପିତଗାତ୍ରାଶ୍ଚ ବଭୂବୁର୍ବନଦେବତାଃ । ୪୩ ।
ବିକ୍ରୋଶନ୍ତୀଂ ଦୃଢ଼ଂ ସୀତାଂ ଦୃଷ୍ଟ୍ୱା ଦୁଃଖଂ ତଥାଗତାମ୍ ।
ତାଂ ତୁ ଲକ୍ଷ୍ମଣ ରାମେତି କ୍ରୋଶନ୍ତୀଂ ମଧୁରସ୍ୱରମ୍ । ୪୪ ।
ଅବେକ୍ଷମାଣାଂ ବହୁଶୋ ବୈଦେହୀଂ ଧରଣୀତଲମ୍ ।
ସ ତାମାକୁଲକେଶାନ୍ତାଂ ବିପ୍ରମୃଷ୍ଟବିଶେଷକାମ୍ । ୪୫ ।
ଜହାରାତ୍ମବିନାଶାୟ ଦଶଗ୍ରୀବୋ ମନସ୍ୱିନୀମ୍ । ୪୬।

ତତସ୍ତୁ ସା ଚାରୁଦତୀ ଶୁଚିସ୍ମିତା
ବିନାକୃତା ବନ୍ଧୁଜନେନ ମୈଥିଲୀ ।
ଅପଶ୍ୟତୀ ରାଘବଲକ୍ଷ୍ମଣାବୁଭୌ
ବିବର୍ଣ୍ଣବକ୍ତ୍ରା ଭୟଭାରପୀଡ଼ିତା । ୪୭ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ ଅରଣ୍ୟକାଣ୍ଡେ ସୀତାବିକ୍ରୋଶୋ ନାମ
ଦ୍ୱିପଞ୍ଚାଶଃ ସର୍ଗଃ

---

---

ଲାଗିଲେ । ମୃଗ ଶାବକମାନେ ଅତିଶୟ ତ୍ରସ୍ତହୋଇ ଲୋତକପୂର୍ଣ୍ଣ ନୟନରେ ବାରମ୍ବାର ଉପରକୁ ଚାହିଁ ଚାହିଁ ଦୀନମୁଖରେ ରୋଦନ କରିବାକୁ ଲାଗିଲେ । ବନଦେବତାମାନଙ୍କ ଶରୀର ଅତିଶୟ କମ୍ପିବାକୁ ଲାଗିଲା । ୪୨-୪୩ । ସୀତା, ତାଦୃଶ ଦୁର୍ଦ୍ଦଶାଗ୍ରସ୍ତହୋଇ ରାମ ଓ ଲକ୍ଷ୍ମଣଙ୍କ ଉଦ୍ଦେଶ୍ୟରେ ମଧୁର ସ୍ୱରରେ କ୍ରନ୍ଦନ ଏବଂ ଉଚ୍ଚୈଃସ୍ୱରରେ ବିଳାପକରି ବାରମ୍ବାର ଧରାତଳକୁ ଚାହିଁଥିଲେ । ତାଙ୍କର କେଶପାଶ ଇତସ୍ତତଃ ବିସ୍ରସ୍ତହୋଇଥିଲା ଏବଂ ସଧବାର ବିଶେଷ ଚିହ୍ନ ତିଳକବିନ୍ଦୁ ପୋଛିହୋଇ ଯାଇଥିଲା । ଦଶାନନ ଆତ୍ମବିନାଶାର୍ଥେ ସେହି ମନସ୍ୱିନୀଙ୍କୁ ଏହି ଅବସ୍ଥାରେ ହରଣକଲା । ୪୪-୪୬ । ଅନନ୍ତର ଚାରୁଦନ୍ତୀ ବିଶୁଦ୍ଧହାସ୍ୟମୟୀ ମୈଥିଳୀ ରାମ ଓ ଲକ୍ଷ୍ମଣ ଉଭୟଙ୍କୁ ନ ଦେଖିପାରି, ବନ୍ଧୁଜନବିରହରେ ତାଙ୍କର ମୁଖ ମଳିନ ହୋଇଗଲା ଏବଂ ସେ ଅତିଶୟ ଭୟଗ୍ରସ୍ତ ହୋଇପଡ଼ିଲେ । ୪୭।

---

# ତ୍ରିପଞ୍ଚାଶଃ ସର୍ଗଃ

## ରାବଣଭର୍ତ୍ସନମ୍

ସମୁତ୍ପତନ୍ତଂ ତଂ ଦୃଷ୍ଟ୍ୱା ମୈଥିଲୀ ଜନକାତ୍ମଜା ।
ଦୁଃଖିତା ପରମୋଦ୍‌ବିଗ୍ନା ଭୟେ ମହତି ବର୍ତ୍ତିନୀ । ୧ ।
ରୋଷରୋଦନତାମ୍ରାକ୍ଷୀ ଭୀମାକ୍ଷଂ ରାକ୍ଷସାଧିପମ୍ ।
ରୁଦତୀ କରୁଣଂ ସୀତା ହ୍ରିୟମାଣେଦମବ୍ରବୀତ୍ । ୨ ।
ନ ବ୍ୟପତ୍ରପସେ ନୀଚ କର୍ମଣାନେନ ରାବଣ ।
ଜ୍ଞାତ୍ୱା ବିରହିତାଂ ଯନ୍ମାଂ ଚୋରୟିତ୍ୱା ପଲାୟସେ । ୩ ।
ତ୍ୱୟୈବ ନୂନଂ ଦୁଷ୍ଟାତ୍ମନ୍ ଭୀରୁଣା ହର୍ତୁମିଚ୍ଛତା ।
ମମାପବାହିତୋ ଭର୍ତ୍ତା ମୃଗରୂପେଣ ମାୟୟା । ୪ ।
ଯୋ ହି ମାମୁଦ୍ୟତସ୍ତ୍ରାତୁଂ ସୋଽପ୍ୟୟଂ ବିନିପାତିତଃ ।
ଗୃଧ୍ରରାଜଃ ପୁରାଣୋଽସୌ ଶ୍ୱଶୁରସ୍ୟ ସଖା ମମ । ୫ ।
ପରମଂ ଖଲୁ ତେ ବୀର୍ଯ୍ୟଂ ଦୃଶ୍ୟତେ ରାକ୍ଷସାଧମ ।
ବିଶ୍ରାବ୍ୟ ନାମଧେୟଂ ହି ଯୁଦ୍ଧେ ନାସ୍ମି ଜିତା ତ୍ୱୟା । ୬ ।

---

## ତେପନଶ ସର୍ଗ

( ସୀତାଙ୍କର ରାବଣଙ୍କୁ ଭର୍ତ୍ସନା )

ଜନକନନ୍ଦନୀ ସୀତା ରାବଣଙ୍କୁ ଆକାଶରେ ଉତ୍ପତିତହେବାର ଦେଖି ଦୁଃଖିତ ଏବଂ ଅତିଶୟ ଉଦ୍‌ବିଗ୍ନ ହେଲେ; ତାଙ୍କ ମନରେ ମହାଭୟ ଜାତ ହେଲା । ୧ । ଅତ୍ୟନ୍ତଭୀତହୋଇଥିବା ସୀତାଙ୍କର ଚକ୍ଷୁ କ୍ରୋଧ ଏବଂ ରୋଦନହେତୁରୁ ତାମ୍ରବର୍ଣ୍ଣ ହୋଇଯାଇଥିଲା ଏବଂ ସେ କରୁଣଭାବରେ ରୋଦନ କରି ଭୟଙ୍କରନେତ୍ରବିଶିଷ୍ଟ ରାକ୍ଷସରାଜ ରାବଣଙ୍କୁ କହିଲେ । ୨ । "ରେ ନୀଚ ରାବଣ ! ତୁ ଯେ ମୋତେ ଏକାକୀ ଜାଣି ଏପରି ଚୋରିକରି ନେଇ ପଳାଇଯାଉଛୁ, ଏଥିରେ ତୋତେ ଲଜ୍ଜା ଲାଗୁ ନାହିଁ ? । ୩ । ତୁ ଦୁରାତ୍ମା, ତୁ ଭୀରୁ ହିଁ ନିଶ୍ଚୟ ମୋତେ ହରଣ କରିବାକୁ ଇଚ୍ଛାକରି ମାୟାରେ ମୃଗରୂପଧର ମୋର ସ୍ୱାମୀଙ୍କୁ ଅପସାରିତ କରିନେଇଛୁ । ୪ । ବର୍ତ୍ତମାନ ଯେ ମୋତେ ରକ୍ଷା କରିବାକୁ ଉଦ୍ୟତ ହୋଇଥିଲେ, ମୋର ଶ୍ୱଶୁରଙ୍କର ସଖା ସେହି ବୃଦ୍ଧ ଗୃଧ୍ରରାଜଙ୍କୁ ତୁ ନିପାତିତ କରିଅଛୁ । ୫ । ରେ ରାକ୍ଷସାଧମ ! ତୋର ଭାରି ବୀର୍ଯ୍ୟ ଦେଖାଗଲା । ତୁ ତ ନିଜର ନାମ ଶୁଣାଇ ମୋତେ ଯୁଦ୍ଧରେ ଜୟ କରି ନାହୁଁ ? । ୬ । ରେ ନୀଚ,

ଈଦୃଶଂ ଗର୍ହିତଂ କର୍ମ କଥଂ କୃତ୍ୱା ନ ଲଜ୍ଜସେ ।
ସ୍ତ୍ରିୟାଶ୍ଚ ହରଣଂ ନୀଚ ରହିତେ ତୁ ପରସ୍ୟ ଚ । ୭ ।
କଥୟିଷ୍ୟନ୍ତି ଲୋକେଷୁ ପୁରୁଷାଃ କର୍ମକୁତ୍ସିତମ୍ ।
ସୁନୃଶଂସମଧର୍ମିଷ୍ଠଂ ତବ ଶୌଣ୍ଡୀର୍ଯ୍ୟମାନିନଃ । ୮ ।
ଧିକ୍ ତେ ଶୌର୍ଯ୍ୟଂ ଚ ସତ୍ତ୍ୱଂ ଚ ଯତ୍ତ୍ୱଂ କଥିତବାଂସ୍ତଦା ।
କୁଲାକ୍ରୋଶକରଂ ଲୋକେ ଧିକ୍ ତେ ଚାରିତ୍ରମୀଦୃଶମ୍ । ୯ ।
କିଂ କର୍ତୁଂ ଶକ୍ୟମେବଂ ହି ଯଜ୍ଜବେନୈବ ଧାବସି ।
ମୁହୂର୍ତ୍ତମପି ତିଷ୍ଠ ତ୍ୱଂ ନ ଜୀବନ୍ ପ୍ରତିଯାସ୍ୟସି । ୧୦ ।
ନ ହି ଚକ୍ଷୁଷ୍ପଥଂ ପ୍ରାପ୍ୟ ତୟୋଃ ପାର୍ଥିବପୁତ୍ରୟୋଃ ।
ସସୈନ୍ୟୋଽପି ସମର୍ଥସ୍ତ୍ୱଂ ମୁହୂର୍ତ୍ତମପି ଜୀବିତୁମ୍ । ୧୧ ।
ନ ତ୍ୱଂ ତୟୋଃ ଶରସ୍ପର୍ଶଂ ଶକ୍ତଃ ସୋଢୁଂ କଥଞ୍ଚନ ।
ବନେ ପ୍ରଜ୍ୱଳିତସ୍ୟେବ ସ୍ପର୍ଶମଗ୍ନେର୍ବିହଙ୍ଗମଃ । ୧୨ ।
ସାଧୁ କୃତ୍ୱାତ୍ମନଃ ପଥ୍ୟଂ ସାଧୁ ମାଂ ମୁଞ୍ଚ ରାବଣ ।
ମତ୍ପ୍ରଧର୍ଷଣରୁଷ୍ଟୋ ହି ଭ୍ରାତ୍ରା ସହ ପତିର୍ମମ । ୧୩ ।

---

ତୁ ଏକାନ୍ତରେ ପରର ସ୍ତ୍ରୀହରଣରୂପ ଏପରି ଗର୍ହିତ କାର୍ଯ୍ୟକରି କିପରି ଲଜ୍ଜିତ ନ ହେଉଛୁ ? ୭ । ବୀର୍ଯ୍ୟାଭିମାନୀ ତୋର ଏହି ନୃଶଂସ ଅଧର୍ମ କାର୍ଯ୍ୟକୁ ଜଗତରେ ଲୋକେ କୁତ୍ସିତ କାର୍ଯ୍ୟ ବୋଲି କହିବେ । ୮ । ତୁ ଯେ ନିଜଶୌର୍ଯ୍ୟ ଏବଂ ବଳ କଥା ସେତେବେଳେ କହୁଥିଲୁ, ତୋର ସେ ଶୌର୍ଯ୍ୟ ଏବଂ ବଳକୁ ଧିକ୍; ତୋର ଏତାଦୃଶ କୁଳକଳଙ୍କକାରୀ ଚରିତକୁ ମଧ୍ୟ ଧିକ୍ । ୯ । ତୁ ତ ଏପରି ବେଗରେ ପଳାଇ ଯାଉଛୁ, ସୁତରାଂ ଏପରି ଅବସ୍ଥାରେ କ'ଣ କରାଯାଇପାରେ ? ତୁ ମୁହୂର୍ତ୍ତେ ମାତ୍ର ରହି ଦେଖିବୁ ତେବେ ତୁ ବଞ୍ଚିକରି କେବେ ଏଠାରୁ ଫେରି ଯିବୁ ନାହିଁ । ୧୦ । ସେ ରାଜକୁମାର ଦୁହିଁଙ୍କ ଆଖି ଆଗରେ ପଡ଼ିଗଲେ ତୁ ସସୈନ୍ୟରେ ମଧ୍ୟ ମୁହୂର୍ତ୍ତେ ହେଲେ ଜୀବିତ ରହିପାରିବୁ ନାହିଁ । ୧୧ । ବନରେ ପ୍ରଜ୍ୱଳିତ ହୋଇଥିବା ଅଗ୍ନିର ସ୍ପର୍ଶକୁ ଯେପରି ବିହଙ୍ଗମ ସହ୍ୟ କରି ପାରେ ନାହିଁ, ସେହିପରି ତୁ ସେ ଦୁହିଁଙ୍କର ଶରସ୍ପର୍ଶକୁ କଦାପି ସହିପାରିବୁ ନାହିଁ । ୧୨ । ରେ ରାବଣ ! ତୁ ଭଲ ନିଜର ମଙ୍ଗଳକରି ଭଲେ ଭଲେ ମୋତେ ଛାଡ଼ିଦେ; ତୁ ଯଦି ମୋତେ ନ ଛାଡ଼ିବୁ ତେବେ ମୋର ସ୍ୱାମୀ ନିଜ ଭ୍ରାତା ସହିତ ମୋର ଏହି ଧର୍ଷଣାହେତୁରୁ ଅତିଶୟ କ୍ରୁଦ୍ଧହୋଇ ନିଶ୍ଚୟ ତୋର ବିନାଶ ବିଧାନ କରିବେ । ରେ ନୀଚ ! ତୁ ଯେଉଁ

ବିଧାସ୍ୟନ୍ତି ବିନାଶାୟ ତ୍ୱଂ ମାଂ ଯଦି ନ ମୁଞ୍ଚସି ।
ଯେନ ତ୍ୱଂ ବ୍ୟବସାୟେନ ବଲାନ୍ମାଂ ହର୍ତୁମିଚ୍ଛସି ।୧୪।
ବ୍ୟବସାୟଃ ସ ତେ ନୀଚ ଭବିଷ୍ୟତି ନିରର୍ଥକଃ ।
ନ ହ୍ୟହଂ ତମପଶ୍ୟନ୍ତୀ ଭର୍ତାରଂ ବିବୁଧୋପମମ୍ ।୧୫।
ଉତ୍ସହେ ଶତ୍ରୁବଶଗା ପ୍ରାଣାନ୍ ଧାରୟିତୁଂ ଚିରମ୍ ।
ନ ନୂନଂ ଚାତ୍ମନଃ ଶ୍ରେୟଃ ପଥ୍ୟଂ ବା ସମବେକ୍ଷସେ ।୧୬।
ମୃତ୍ୟୁକାଲେ ଯଥା ମର୍ତ୍ତ୍ୟା ବିପରୀତାନି ସେବତେ ।
ମୁମୂର୍ଷୂଣାଂ ହି ସର୍ବେଷାଂ ଯତ୍ପଥ୍ୟଂ ତନ୍ନ ରୋଚତେ ।୧୭।
ପଶ୍ୟାମ୍ୟଦ୍ୟ ହି କଣ୍ଠେ ତ୍ୱାଂ କାଲପାଶାବପାଶିତମ୍ ।
ଯଥା ଚାସ୍ମିନ୍ ଭୟସ୍ଥାନେ ନ ବିଭେଷି ଦଶାନନ ।୧୮।
ବ୍ୟକ୍ତଂ ହିରଣ୍ମୟାନ୍ ହି ତ୍ୱଂ ସଂପଶ୍ୟସି ମହୀରୁହାନ୍ । *
ନଦୀଂ ବୈତରଣୀଂ ଘୋରାଂ ରୁଧିରୌଘପ୍ରବାହିନୀମ୍ ।୧୯।
ଅସିପତ୍ରବନଂ ଚୈବ ଭୀମଂ ପଶ୍ୟସି ରାବଣ ।
ତପ୍ତକାଞ୍ଚନପୁଷ୍ପାଂ ଚ ବୈଦୂର୍ଯପ୍ରବରଚ୍ଛଦାମ୍ ।୨୦।

---

ଅଭିପ୍ରାୟରେ ମୋତେ ବଳାତ୍କାରରେ ହରଣକରିବାକୁ ଇଚ୍ଛାକରିଅଛୁ; ତୋର ସେ ଅଭିପ୍ରାୟ ନିଶ୍ଚୟ ବିଫଳ ହେବ । ମୁଁ ସେହି ଦେବୋପମ ସ୍ୱାମୀଙ୍କୁ ନ ଦେଖି ଶତ୍ରୁର ବଶବର୍ତ୍ତିନୀ ହୋଇ କଦାପି ଦୀର୍ଘକାଳ ପ୍ରାଣଧାରଣ କରିପାରିବି ନାହିଁ । ମୃତ୍ୟୁସମୟରେ ମନୁଷ୍ୟ ଯେପରି ବିପରୀତ ବାଟଧରେ, ସେହିପରି ତୁ ନିଜର ହିତକାରୀ ଶ୍ରେୟପନ୍ଥା ଦେଖିପାରୁ ନାହୁଁ । ମୁମୂର୍ଷୁ ଲୋକମାନଙ୍କର ଯାହା ପଥ୍ୟ ସେଥିରେ ସେମାନଙ୍କର କେବେ ରୁଚି ହୁଏ ନାହିଁ । ୧୩-୧୭ । ରେ ଦଶାନନ ! ତୁ ଯେ ଏ ଭୟବିଷୟରେ ମଧ୍ୟ ଭୟ କରୁ ନାହୁଁ, ସେଥିରୁ ମୁଁ ଦେଖିପାରୁଛି ଯେ ଆଜି ତୋର ଗଳାରେ କାଳପାଶ ବନ୍ଧାହୋଇଅଛି । ୧୮ । ସ୍ପଷ୍ଟ ଜଣାଯାଉଛି ଯେ ତୁ ବୃକ୍ଷମାନଙ୍କୁ ସ୍ୱର୍ଣ୍ଣବର୍ଣ୍ଣ ଦେଖୁଅଛୁ ଏବଂ ବୈତରଣୀ ନଦୀକୁ ଅତି ଭୟଙ୍କର ରକ୍ତସ୍ରୋତପ୍ରବାହିନୀ ଦେଖୁଅଛୁ । ୧୯ । ରେ ରାବଣ ! ତୁ ସମଗ୍ର ବନକୁ ଭୟଙ୍କର ଖଡ଼୍‌ଗରୂପ ପତ୍ରଯୁକ୍ତ ଦେଖୁଅଛୁ । ତୁ ଶାଳ୍ମଳୀ ବୃକ୍ଷକୁ ତପ୍ତକାଞ୍ଚନନିର୍ମିତ ପୁଷ୍ପଯୁକ୍ତ, ଉତ୍କୃଷ୍ଟ ବୈଦୂର୍ଯ୍ୟମୟ ପତ୍ରଯୁକ୍ତ ଏବଂ ତୀକ୍ଷ୍ଣ ଲୌହମୟ କଣ୍ଟକାକୀର୍ଣ୍ଣ

---

* ଏ ସମସ୍ତ ଦୁର୍ଲକ୍ଷଣ ଆସନ୍ନମୃତ୍ୟୁର ସୂଚନା ଦେଇଥାଏ ।

ଦ୍ରକ୍ଷ୍ୟସେ ଶାଲ୍ମଳୀଂ ତୀକ୍ଷ୍ଣାମାୟସୈଃ କଣ୍ଟକୈଶ୍ଚିତାମ୍ ।
ନ ହି ତ୍ୱମୀଦୃଶଂ କୃତ୍ୱା ତସ୍ୟାଲୀକଂ ମହାତ୍ମନଃ । ୨୧ ।
ଧାରିତୁଂ ଶକ୍ଷ୍ୟସି ଚିରଂ ବିଷଂ ପୀତ୍ୱେବ ନିର୍ଘୃଣ ।
ବଦ୍ଧସ୍ତ୍ୱଂ କାଲପାଶେନ ଦୁର୍ନିବାରେଣ ରାବଣ । ୨୨ ।
କ୍ୱ ଗତୋ ଲପ୍ସ୍ୟସେ ଶର୍ମ ଭର୍ତୁର୍ମମ ମହାତ୍ମନଃ ।
ନିମେଷାନ୍ତରମାତ୍ରେଣ ବିନା ଭ୍ରାତରମାହବେ । ୨୩ ।
ରାକ୍ଷସା ନିହତା ଯେନ ସହସ୍ରାଣି ଚତୁର୍ଦଶ ।
ସ କଥଂ ରାଘବୋ ବୀରଃ ସର୍ବାସ୍ତ୍ରକୁଶଲୋ ବଲୀ । ୨୪ ।
ନ ତ୍ୱାଂ ହନ୍ୟାଚ୍ଛରୈସ୍ତୀକ୍ଷ୍ଣୈରିଷ୍ଟଭାର୍ଯାପହାରିଣମ୍ ।
ଏତଚ୍ଚାନ୍ୟଚ୍ଚ ପରୁଷଂ ବୈଦେହୀ ରାବଣାଙ୍କଗା । ୨୫ ।
ଭୟଶୋକସମାବିଷ୍ଟା କରୁଣଂ ବିଲଲାପ ହ । ୨୬ ।

ତଥା ଭୃଶାର୍ତାଂ ବହୁ ଚୈବ ଭାଷିଣୀମ୍
ବିଲାପପୂର୍ବଂ କରୁଣଂ ଚ ଭାମିନୀମ୍ ।
ଜହାର ପାପଃ କରୁଣଂ ବିବେଷ୍ଟତୀମ୍
ନୃପାତ୍ମଜାମାଗତଗାତ୍ରବେପଥୁମ୍ । ୨୭ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାମ
ସଂହିତାୟାଂ ଅରଣ୍ୟକାଣ୍ଡେ ରାବଣଭର୍ତ୍ସନମ୍
ନାମ ଦ୍ୱିପଞ୍ଚାଶଃ ସର୍ଗଃ ।

---

ଦେଖୁଅଛୁ । ରେ ନିଷ୍ଠୁର ! ତୁ ସେହି ମହାତ୍ମା ରାମଙ୍କପ୍ରତି ଏପରି ଅନ୍ୟାୟ ଆଚରଣ କରି ବିଷପାନକାରୀ ବ୍ୟକ୍ତିପରି କଦାପି ଦୀର୍ଘକାଳ ଜୀବନଧାରଣ କରିବାକୁ ସମର୍ଥ ହେବୁ ନାହିଁ । ରେ ରାବଣ ! ତୁ ଅନିବାର୍ଯ୍ୟ କାଳପାଶରେ ଆବଦ୍ଧ ହୋଇଅଛୁ । ତୁ ମୋର ମହାତ୍ମା ସ୍ୱାମୀଙ୍କ ନିକଟରୁ ଖସିକେଉଁଠାକୁ ଯାଇ ସୁଖ ଶାନ୍ତିପାଇବୁ ? । ଯେ ଏକାକୀ ଭାଇର ବିନା ସାହାଯ୍ୟରେ ଯୁଦ୍ଧରେ ମୁହୂର୍ତ୍ତକମଧ୍ୟରେ ଚତୁର୍ଦ୍ଦଶ ସହସ୍ର ରାକ୍ଷସଙ୍କୁ ନିହତ କରିଅଛନ୍ତି, ସେହି ସର୍ବାସ୍ତ୍ରନିପୁଣ ବୀର ରାଘବ ସୁତୀକ୍ଷ୍ଣ ଶରରାଜି ଦ୍ୱାରା ତାଙ୍କର ପ୍ରିୟଭାର୍ଯ୍ୟା-ଅପହରଣକାରୀ ତୋତେ କି କେବେ ସଂହାର ନ କରିବେ ?" ରାବଣର କ୍ରୋଡ଼ଗତା ବୈଦେହୀ ଭୟ ଏବଂ ଶୋକାଭିଭୂତହୋଇ ଏହିପରି ଏବଂ ଆହୁରି ଅନେକ କର୍କଶ ବାକ୍ୟ ପ୍ରୟୋଗକରି କରୁଣଭାବରେ ବିଳାପ କରିବାକୁ ଲାଗିଲେ । ୨୦-୨୬ । ରାଜନନ୍ଦିନୀ ସୀତା ଅତିଶୟ ବ୍ୟାକୁଳ ହୋଇ ଏହିପରି ବହୁ କରୁଣଭାବରେ ବିଳାପକରି ଅନେକ କଥା କହି ବିକଳରେ ଛଟ ପଟ ହେବାକୁ ଲାଗିଲେ ଏବଂ ତାଙ୍କ ଦେହ ଥରିବାକୁ ଲାଗିଲା । ପାପାତ୍ମା ରାବଣ ଏହି ଅବସ୍ଥାରେ ତାଙ୍କୁ ହରଣକରି ନେଇଗଲା । ୨୭।

# ଚତୁଃପଞ୍ଚାଶଃ ସର୍ଗଃ

## ଲଙ୍କାପ୍ରାପଣମ୍

ହ୍ରିୟମାଣା ତୁ ବୈଦେହୀ କଂଚନ୍ନାଥମପଶ୍ୟତୀ ।
ଦଦର୍ଶ ଗିରିଶୃଙ୍ଗସ୍ଥାନ୍ ପଞ୍ଚ ବାନରପୁଙ୍ଗବାନ୍ । ୧ ।
ତେଷାଂ ମଧ୍ୟେ ବିଶାଳାକ୍ଷୀ କୌଶେୟଂ କନକପ୍ରଭମ୍ ।
ଉତ୍ତରୀୟଂ ବରାରୋହା ଶୁଭାନ୍ୟାଭରଣାନି ଚ । ୨ ।
ମୁମୋଚ ଯଦି ରାମାୟ ଶଂସେୟୁରିତି ମୈଥିଳୀ ।
ବସ୍ତ୍ରମୁତ୍ସୃଜ୍ୟ ତନ୍ମଧ୍ୟେ ନିକ୍ଷିପ୍ତଂ ସହଭୂଷଣମ୍ । ୩ ।
ସଂଭ୍ରମାତ୍ତୁ ଦଶଗ୍ରୀବସ୍ତତ୍କର୍ମ ନ ସ ବୁଦ୍ଧବାନ୍ ।
ପିଙ୍ଗାକ୍ଷାସ୍ତାଂ ବିଶାଳାକ୍ଷୀଂ ନେତ୍ରୈ ରନିମିଷୈରିବ । ୪ ।
ବିକ୍ରୋଶନ୍ତୀଂ ତଥା ସୀତାଂ ଦଦୃଶୁର୍ବାନରର୍ଷଭାଃ ।
ସ ଚ ପମ୍ପାମତିକ୍ରମ୍ୟ ଲଙ୍କାମଭିମୁଖଃ ପୁରୀମ୍ । ୫ ।
ଜଗାମ ରୁଦତୀଂ ଗୃହ୍ୟ ବୈଦେହୀଂ ରାକ୍ଷସେଶ୍ୱରଃ ।
ତାଂ ଜହାର ସୁସଂହୃଷ୍ଟୋ ରାବଣୋ ମୃତ୍ୟୁମାତ୍ମନଃ ।୬ ।

---

## ୫୪ଶ ସର୍ଗ

### ( ଲଙ୍କାରେ ପ୍ରବେଶ )

ଏହିପରିଭାବରେ ଅପହୃତା ସୀତା ଆଉ କାହାରିକୁ ରକ୍ଷାକର୍ତ୍ତାରୂପେ ନ ଦେଖି, ଯାଉଁ ଯାଉଁ ପାଞ୍ଚୋଟି ପ୍ରଧାନ ବାନରଙ୍କୁ ଗିରିଶୃଙ୍ଗଉପରେ ବସିଥିବାର ଦେଖିଲେ । ୧ । ସେମାନେ 'ରାମଙ୍କୁ ଏ ସମ୍ବାଦ ଦେଇ ପାରନ୍ତି' ଏହି ଆଶାରେ ବିଶାଳଲୋଚନା ସୀତା ସେମାନଙ୍କ ମଝିକୁ ନିଜର ସ୍ୱର୍ଣ୍ଣବର୍ଣ୍ଣ କୌଶେୟ ଉତ୍ତରୀୟବସ୍ତ୍ର ଏବଂ ସୁନ୍ଦର ଅଳଙ୍କାରସମୂହ ନିକ୍ଷେପ କରିଦେଲେ । ଦଶାନନ ମନର ଉଦ୍‌ବେଗ ହେତୁରୁ ବାନରମାନଙ୍କମଧ୍ୟରେ ଏହି ବସ୍ତ୍ର ଏବଂ ଅଳଙ୍କାରନିକ୍ଷେପ ବ୍ୟାପାର ଜାଣି-ପାରିଲା ନାହିଁ । ପିଙ୍ଗଳାକ୍ଷ ବାନରଶ୍ରେଷ୍ଠମାନେ ସେତେବେଳେ ଅନିମିଷଲୋଚନରେ ଏତାଦୃଶ ରୋଦନପରାୟଣା ବିଶାଳାକ୍ଷୀ ସୀତାଙ୍କୁ ଦେଖିବାକୁ ଲାଗିଲେ । ରାକ୍ଷସରାଜ ରାବଣ କ୍ରନ୍ଦନପରାୟଣା ସୀତାଙ୍କୁ ଧରି ପମ୍ପାସରୋବର ଅତିକ୍ରମପୂର୍ବକ ଲଙ୍କାନଗରୀକୁ ଯିବାକୁ ଲାଗିଲା । ରାବଣ ନିଜର ମୃତ୍ୟୁରୂପିଣୀ ସୀତାଙ୍କୁ ହରଣକରି ପରମ ଆନନ୍ଦିତ ହେଲା । ୨-୬ । ସେ ଉଗ୍ରବିଷା ସର୍ପୀ ସଦୃଶ ସୀତାଙ୍କୁ କୋଡ଼ରେ ଧରି

ଉଗ୍ରଙ୍ଗେନେବ ଭୁଜଙ୍ଗୀଂ ତୀକ୍ଷ୍ଣଦଂଷ୍ଟ୍ରାଂ ମହାବିଷାମ୍ ।
ବନାନି ସରିତଃ ଶୈଳାନ୍ ସରାଂସି ଚ ବିହାୟସା । ୭ ।
ସ କ୍ଷିପ୍ରଂ ସମତୀୟାୟ ଶରଶ୍ଚାପାଦିବ ଚ୍ୟୁତଃ ।
ତିମିନକ୍ରନିକେତଂ ତୁ ବରୁଣାଲୟମକ୍ଷୟମ୍ । ୮ ।
ସରିତାଂ ଶରଣଂ ଗତ୍ୱା ସମତୀୟାୟ ସାଗରମ୍ ।
ସଂଭ୍ରମାତ୍ ପରିବୃତ୍ତୋର୍ମୀ ରୁଦ୍ଧମୀନମହୋରଗଃ । ୯।
ବୈଦେହ୍ୟାଂ ହ୍ରିୟମାଣାୟାଂ ବଭୂବ ବରୁଣାଲୟଃ ।
ଅନ୍ତରିକ୍ଷଗତା ବାଚଃ ସସୃଜୁଶ୍ଚାରଣାସ୍ତଦା । ୧୦ ।
ଏତଦନ୍ତୋ ଦଶଗ୍ରୀବ ଇତି ସିଦ୍ଧାସ୍ତଦାବ୍ରୁବନ୍ ।
ସ ତୁ ସୀତାଂ ବିବେଷ୍ଟନ୍ତୀମଙ୍କେନାଦାୟ ରାବଣଃ । ୧୧ ।
ପ୍ରବିବେଶ ପୁରୀଂ ଲଙ୍କାଂ ରୂପିଣୀଂ ମୃତ୍ୟୁମାତ୍ମନଃ ।
ସୋଽଭିଗମ୍ୟ ପୁରୀଂ ଲଙ୍କାଂ ସୁବିଭକ୍ତମହାପଥାମ୍ ।୧୨।
ସଂରୂଢ଼କକ୍ଷ୍ୟାବହୁଲଂ ସ୍ୱମନ୍ତଃପୁରମାବିଶତ୍ ।
ତତ୍ର ତାମସିତାପାଙ୍ଗୀଂ ଶୋକମୋହପରାୟଣାମ୍ । ୧୩ ।
ନିଦଧେ ରାବଣଃ ସୀତାଂ ମୟୋ ମାୟା ମିବ ସ୍ତ୍ରିୟମ୍ ।
ଅବ୍ରବୀଚ୍ଚ ଦଶଗ୍ରୀବଃ ପିଶାଚୀର୍ଘୋରଦର୍ଶନାଃ । ୧୪ ।

---

ଧନୁର୍ମୁକ୍ତ ବାଣସଦୃଶ କ୍ଷିପ୍ରବେଗରେ ଆକାଶମାର୍ଗରେ ସରିତ୍, ସରୋବର, ବନ, ପର୍ବତ ଅତିକ୍ରମକଲା ଏବଂ ନଦୀମାନଙ୍କର ଆଶ୍ରୟ, ତିମି ଓ କୁମ୍ଭୀରପ୍ରଭୃତିଙ୍କର ଆବାସସ୍ଥାନ ବରୁଣାଳୟ ସମୁଦ୍ର ନିକଟରେ ଯାଇ ପହଞ୍ଚି ତାହାକୁ ମଧ୍ୟ ଅତିକ୍ରମ କରିଗଲା । ସୀତା ଅପହୃତହେଉଥିବାରୁ କ୍ଷୋଭବଶତଃ ବରୁଣାଳୟ ସମୁଦ୍ର ତରଙ୍ଗହୀନ ହୋଇଗଲା ଏବଂ ସେଥିରେ ଥିବା ମୀନ ଓ ବୃହତ୍ ସର୍ପମାନେ ସ୍ତବ୍ଧ ହୋଇଗଲେ । ସେତେବେଳେ ଅନ୍ତରୀକ୍ଷସ୍ଥିତଚାରଣମାନେ କହିବାକୁ ଲାଗିଲେ । ୭-୧୦ । ସିଦ୍ଧମାନେ ସେତେବେଳେ କହିଲେ, "ଏହାହିଁ ରାବଣର ଶେଷ କାଳ ଉପସ୍ଥିତ ହେଲା"। ରାବଣ ନିଜର ମୃତ୍ୟୁରୂପିଣୀ ବିଚେଷ୍ଟମାନା ସୀତାଙ୍କୁ କୋଳରେ ଧରି ଲଙ୍କାପୁରୀରେ ପ୍ରବେଶକଲା । ସେ ସମ୍ୟକରୂପେ ବିଭକ୍ତ ରାଜପଥ-ପୂର୍ଣ୍ଣ ଲଙ୍କା ନଗରୀରେ ପହଞ୍ଚି ବହୁକକ୍ଷବିଶିଷ୍ଟ ନିଜ ଅନ୍ତଃପୁରମଧ୍ୟରେ ପ୍ରବେଶ କଲା । ମୟ ରାକ୍ଷସ ନିଜ ସ୍ତ୍ରୀ ମାୟାଙ୍କୁ ସନ୍ନିବେଶିତ କଲାପରି ରାବଣ ସେଠାରେ କୃଷ୍ଣନୟନା ଶୋକମୋହାଭିଭୂତା ସୀତାଙ୍କୁ ଥୋଇଦେଲା । ଦଶାନନ ଘୋରଦର୍ଶନା

ଯଥା ନେମାଂ ପୁମାନ୍ ସ୍ତ୍ରୀ ବା ସୀତାଂ ପଶ୍ୟତ୍ୟସଂମତଃ ।
ମୁକ୍ତାମଣିସୁବର୍ଣାନି ବସ୍ତ୍ରାଣ୍ୟାଭରଣାନି ଚ ।୧୫ ।
ଯଦ୍ୟଦଚ୍ଛେତ୍ତଦେବାସ୍ୟା ଦେୟଂ ମଚ୍ଛନ୍ଦତୋ ଯଥା ।
ଯା ଚ ବକ୍ଷ୍ୟତ ବୈଦେହୀଂ ବଚନଂ କିଞ୍ଚିଦପ୍ରିୟମ୍ । ୧୬ ।
ଅଜ୍ଞାନାଦ୍ୟଦି ବା ଜ୍ଞାନାନ୍ନ ତସ୍ୟା ଜୀବିତଂ ପ୍ରିୟମ୍ ।
ତଥୋକ୍ତ୍ୱା ରାକ୍ଷସୀସ୍ତାସ୍ତୁ ରାକ୍ଷସେନ୍ଦ୍ରଃ ପ୍ରତାପବାନ୍ । ୧୭ ।
ନିଷ୍କ୍ରମ୍ୟାନ୍ତଃପୁରାତ୍ତସ୍ମାତ୍ କିଂ କୃତ୍ୟମିତି ଚିନ୍ତୟନ୍ ।
ଦଦର୍ଶାଷ୍ଟୌ ମହାବୀର୍ଯାନ୍ ରାକ୍ଷସାନ୍ ପିଶିତାଶନାନ୍ । ୧୮ ।
ସ ତାନ୍ ଦୃଷ୍ଟ୍ୱା ମହାବୀର୍ଯୋ ବରଦାନେନ ମୋହିତଃ ।
ଉବାଚୈତାନିଦଂ ବାକ୍ୟଂ ପ୍ରଶସ୍ୟ ବଲବୀର୍ଯତଃ । ୧୯ ।
ନାନାପ୍ରହରଣାଃ କ୍ଷିପ୍ରମିତୋ ଗଚ୍ଛତ ସତ୍ୱରାଃ ।
ଜନସ୍ଥାନଂ ହତସ୍ଥାନଂ ଭୂତପୂର୍ବଂ ଖରାଲୟମ୍ । ୨୦ ।
ତତ୍ରୋଷ୍ୟତାଂ ଜନସ୍ଥାନେ ଶୂନ୍ୟେ ନିହତରାକ୍ଷସେ ।
ପୌରୁଷଂ ବଲମାଶ୍ରିତ୍ୟ ତ୍ରାସମୁତ୍ସୃଜ୍ୟ ଦୂରତଃ । ୨୧।
ବଲଂ ହି ସୁମହଦ୍ୟନ୍ମେ ଜନସ୍ଥାନେ ନିବେଶିତମ୍ ।
ସଦୂଷଣଖରଂ ଯୁଦ୍ଧେ ହତଂ ରାମେଣ ସାୟକୈଃ । ୨୨ ।

ପିଶାଚୀମାନଙ୍କୁ କହିଲା "ମୋ ଅନୁମୋଦନବ୍ୟତୀତ କୌଣସି ସ୍ତ୍ରୀ ବା ପୁରୁଷ ସୀତାଙ୍କୁ ଯେପରି ଦେଖି ନ ପାରନ୍ତି । ମୁକ୍ତା, ମଣି, ସୁବର୍ଣ୍ଣ, ବସ୍ତ୍ର ଓ ଅଳଙ୍କାରାଦି ଯେଉଁ ଯେଉଁ ଦ୍ରବ୍ୟ ସେ ଇଚ୍ଛା କରିବେ, ମୋର ଆଜ୍ଞାନୁସାରେ ସେସମସ୍ତ ତାଙ୍କୁ ଦେବ । ଯଦି କେହି ଜ୍ଞାତସାରରେ ହେଉ ବା ଅଜ୍ଞାତରେ ହେଉ ତାଙ୍କୁ କୌଣସି ଅପ୍ରିୟ କଥା କହେ; ତେବେ 'ଜୀବନ ତା'ର ପ୍ରିୟ ନୁହେଁ' ବୋଲି ବୁଝିବାକୁ ହେବ ।" ସେହି ରାକ୍ଷସୀମାନଙ୍କୁ ଏହି କଥା କହି ପ୍ରତାପୀ ରାକ୍ଷସରାଜ ରାବଣ 'ଏବେ କ'ଣ କରିବାକୁ ହେବ' ଏହି କଥା ଚିନ୍ତାକରି ଅନ୍ତଃପୁରରୁ ବାହାରକୁ ଯାଇ ଆଠଗୋଟି ମହାପରାକ୍ରମଶାଳୀ ମାଂସଭୋଜୀ ରାକ୍ଷସଙ୍କୁ ଦେଖିଲା । ୧୧-୧୮ । ବରଦାନମୋହିତ ମହାପରାକ୍ରମବାନ୍ ରାବଣ ସେମାନଙ୍କୁ ଦେଖି ସେମାନଙ୍କ ବଳବୀର୍ଯ୍ୟର ପ୍ରଶଂସାପୂର୍ବକ ଏହି କଥା କହିଲା ।୧୯। "ତୁମ୍ଭେମାନେ ବିବିଧ ଅସ୍ତ୍ରଧାରଣକରି ଏଠାରୁ ଅତି ସତ୍ୱର ଖରର ପୂର୍ବ ଆବାସଭୂମି ଧ୍ୱସ୍ତବିଧ୍ୱସ୍ତ ଜନସ୍ଥାନକୁ ଗମନକର ।୨୦। ସେହି ରାକ୍ଷସହୀନ ଶୂନ୍ୟ ଜନସ୍ଥାନରେ ବଳ ଏବଂ ପୌରୁଷ ଅବଲମ୍ବନପୂର୍ବକ ଭୟକୁ ଦୂରକୁ ନିକ୍ଷେପକରି ବାସକରିବ । ୨୧ । ମୁଁ ଯେଉଁ ମହାବିପୁଳ ସୈନ୍ୟବାହିନୀ ଜନସ୍ଥାନରେ ରଖାଇଥିଲି ତାହା ଖର ଓ ଦୂଷଣଙ୍କ ସହିତ ଯୁଦ୍ଧରେ ରାମଚନ୍ଦ୍ରଙ୍କ ଶରରାଜିଦ୍ୱାରା

ତତ୍ର କ୍ରୋଧୋ ମମାମର୍ଷାଦ୍ଧୈର୍ଯସ୍ୟୋପରି ବର୍ତ୍ତତେ ।
ବୈରଂ ଚ ସୁମହଜ୍ଜାତଂ ରାମଂ ପ୍ରତି ସୁଦାରୁଣମ୍ । ୨୩ ।
ନିର୍ଯାତୟିତୁମିଚ୍ଛାମି ତଚ୍ଚ ବୈରମହଂ ରିପୋଃ ।
ନ ହି ଲପ୍ସ୍ୟାମ୍ୟହଂ ନିଦ୍ରାମହତ୍ୱା ସଂଯୁଗେ ରିପୁମ୍ । ୨୪ ।
ତଂ ତ୍ୱିଦାନୀମହଂ ହତ୍ୱା ଖରଦୂଷଣଘାତିନମ୍ ।
ରାମଂ ଶର୍ମୋପଲପ୍ସ୍ୟାମି ଧନଂ ଲବ୍ଧ୍ୱେବ ନିର୍ଧନଃ । ୨୫ ।
ଜନସ୍ଥାନେ ବସଦ୍ଭିସ୍ତୁ ଭବଦ୍ଭୀ ରାମମାଶ୍ରିତା ।
ପ୍ରବୃତ୍ତିରୁପନେତବ୍ୟା କିଂ କରୋତୀତି ତତ୍ତ୍ୱତଃ । ୨୬ ।
ଅପ୍ରମାଦାଚ୍ଚ ଗନ୍ତବ୍ୟଂ ସର୍ବୈରପି ନିଶାଚରୈଃ ।
କର୍ତ୍ତବ୍ୟଶ୍ଚ ସଦା ଯତ୍ନୋ ରାଘବସ୍ୟ ବଧଂ ପ୍ରତି । ୨୭ ।
ଯୁଷ୍ମାକଂ ଚ ବଲଜ୍ଞୋଽହଂ ବହୁଶୋ ରଣମୂର୍ଧନି ।
ଅତଶ୍ଚାସ୍ମିଞ୍ଜନସ୍ଥାନେ ମୟା ଯୂୟଂ ନିୟୋଜିତାଃ । ୨୮ ।
ତତଃ ପ୍ରିୟଂ ବାକ୍ୟମୁପେତ୍ୟ ରାକ୍ଷସା-
ମହାର୍ଥମଷ୍ଟାବଭିବାଦ୍ୟ ରାବଣମ୍ ।
ବିହାୟ ଲଙ୍କାଂ ସହିତାଃ ପ୍ରତସ୍ଥିରେ
ଯତୋ ଜନସ୍ଥାନମଲକ୍ଷ୍ୟଦର୍ଶନାଃ । ୨୯ ।

---

ନିହତ ହୋଇଅଛି । ୨୨ । ସେ ସମ୍ପର୍କରେ ଆମ୍ଭମାନଙ୍କହେତୁ ମୋର କ୍ରୋଧ ଧୈର୍ଯ୍ୟକୁ ଲଙ୍ଘନକରିଯାଇଛି ଏବଂ ରାମ ପ୍ରତି ଅତି ନିଷ୍ଠୁର ଓ ପ୍ରବଳ ବୈରଭାବ ଜାତ ହୋଇଅଛି । ୨୩ । ମୁଁ ଶତ୍ରୁ ପ୍ରତି ସେହି ବୈରସାଧନ କରିବା ପାଇଁ ଇଚ୍ଛା କରୁଅଛି । ମୁଁ ଯୁଦ୍ଧରେ ସେ ଶତ୍ରୁକୁ ହତ୍ୟା ନ କରିବାଯାଏଁ ମୋର ନିଦ୍ରା ହେବ ନାହିଁ । ୨୪ । ନିର୍ଦ୍ଧନ ଲୋକ ଧନ ପାଇ ଯେପରି ଶାନ୍ତିଲାଭକରେ, ସେହିପରି ବର୍ତ୍ତମାନ ସେହି ଖରଦୂଷଣଘାତି ରାମକୁ ହତ୍ୟାକରି ମୁଁ ଶାନ୍ତି ଲାଭକରିବ । ୨୫ । ତୁମେମାନେ ଜନସ୍ଥାନରେ ବାସକରି, ରାମ କେତେବେଳେ କ'ଣ କରୁଛି ତା'ର ସମସ୍ତ କାର୍ଯ୍ୟକଳାପ ଯଥାଯଥଭାବରେ ଲକ୍ଷ୍ୟକରି ବୁଝୁଥିବ । ୨୬ । ତୁମେମାନେ ସମସ୍ତେ ଅପ୍ରମତ୍ତଭାବରେ ଗମନକରିବ ଏବଂ ସର୍ବଦା ରାମର ବଧନିମନ୍ତେ ଯତ୍ନ କରିବ । ୨୭ । ମୁଁ ଆଗରୁ ଯୁଦ୍ଧସ୍ଥଳରେ ବହୁବାର ତୁମମାନଙ୍କ ବଳର ପରିଚୟ ପାଇଛି । ସେଥିପାଇଁ ତୁମମାନଙ୍କୁ ଜନସ୍ଥାନରେ ନିଯୁକ୍ତ କରୁଅଛି" । ୨୮ । ସେହି ଆଠଜଣ ରାକ୍ଷସ ଏହି ଅର୍ଥବିଶିଷ୍ଟ ପ୍ରିୟବାକ୍ୟ ଅବଧାରଣକରି ରାବଣକୁ ଅଭିବାଦନପୂର୍ବକ ଲଙ୍କା ପରିତ୍ୟାଗକରି ଅଲକ୍ଷିତଭାବରେ ଜନସ୍ଥାନ

ତତସ୍ତୁ ସୀତାମୁପଲଭ୍ୟ ରାବଣଃ
ସୁସଂପ୍ରହୃଷ୍ଟଃ ପରିଗୃହ୍ୟ ମୈଥିଲୀମ୍ ।
ପ୍ରସଜ୍ୟ ରାମେଣ ଚ ବୈରମୁତ୍ତମମ୍
ବଭୂବ ମୋହାନ୍ମୁଦିତଃ ସ ରାବଣଃ । ୩୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ଲଙ୍କାପ୍ରାପଣମ୍
ନାମ ଚତୁଃପଞ୍ଚାଶଃ ସର୍ଗଃ

---

ଅଭିମୁଖରେ ଏକସଙ୍ଗ ପ୍ରସ୍ଥାନ କଲେ । ୨୯ । ଏହିରୂପେ ରାବଣ ଅତ୍ୟନ୍ତ ହୃଷ୍ଟଚିତ୍ତରେ ସୀତାଙ୍କୁ ଆଣି ରଖିଦେଇ ରାମଙ୍କ ସହିତ ବୈରସାଧନପୂର୍ବକ ମୋହବଶତଃ ଅତଣସ୍ତୁ ଆନନ୍ଦିତ ହେଲା । ୩୦ ।

# ପଞ୍ଚପଞ୍ଚାଶଃ ସର୍ଗଃ

## ସୀତାବଲୋଭନୋଦ୍ୟମଃ

ସଂଦିଶ୍ୟ ରାକ୍ଷସାନ୍ ଘୋରାନ୍ ରାବଣୋଽଷ୍ଟୌ ମହାବଲାନ୍ ।
ଆତ୍ମାନଂ ବୁଦ୍ଧିବୈକ୍ଲବ୍ୟାତ୍ କୃତକୃତ୍ୟମମନ୍ୟତ । ୧ ।
ସ ଚିନ୍ତୟାନୋ ବୈଦେହୀଂ କାମବାଣପ୍ରପୀଡ଼ିତଃ ।
ପ୍ରବିବେଶ ଗୃହଂ ରମ୍ୟଂ ସୀତାଂ ଦ୍ରଷ୍ଟୁମଭିତ୍ୱରନ୍ । ୨ ।
ସ ପ୍ରବିଶ୍ୟ ତୁ ତଦ୍‌ବେଶ୍ମ ରାବଣୋ ରାକ୍ଷସାଧିପଃ ।
ଅପଶ୍ୟଦ୍ରାକ୍ଷସୀମଧ୍ୟେ ସୀତାଂ ଶୋକପରାୟଣାମ୍ । ୩ ।
ଅଶ୍ରୁପୂର୍ଣ୍ଣମୁଖୀଂ ଦୀନାଂ ଶୋକଭାରାଭିପୀଡ଼ିତାମ୍ ।
ବାୟୁବେଗୈରିବାକ୍ରାନ୍ତାଂ ମଜ୍ଜନ୍ତୀଂ ନାବମର୍ଣ୍ଣବେ । ୪ ।
ମୃଗଯୂଥପରିଭ୍ରଷ୍ଟାଂ ମୃଗୀଂ ଶ୍ୱଭିରିବାବୃତାମ୍ ।
ଅଧୋମୁଖମୁଖୀଂ ସୀତାମଭ୍ୟେତ୍ୟ ଚ ନିଶାଚରଃ । ୫ ।
ତାଂ ତୁ ଶୋକପରାଂ ଦୀନାମବଶାଂ ରାକ୍ଷସାଧିପଃ ।
ସ ବଲାଦ୍ଦର୍ଶୟାମାସ ଗୃହଂ ଦେବଗୃହୋପମମ୍ । ୬ ।

---

# ୫୫ଶ ସର୍ଗ

## (ସୀତାଙ୍କୁ ପ୍ରଲୋଭିତ କରିବା ଉଦ୍ୟମ)

ରାବଣ ମତିଭ୍ରମହେତୁରୁ ସେହି ଆଠଜଣ ଭୀଷଣପ୍ରକୃତି ମହାବଳ ରାକ୍ଷସଙ୍କୁ ଏହିପ୍ରକାର ଆଦେଶ ଦେଇ ନିଜକୁ କୃତକୃତ୍ୟ ମନେକଲା । ୧ । ଅନନ୍ତର ସେ ବୈଦେହୀଙ୍କୁ ଚିନ୍ତା କରି କରି କାମବାଣରେ ପ୍ରପୀଡ଼ିତ ହୋଇ ତାଙ୍କୁ ଦେଖିବା ପାଇଁ ଅତି ଶୀଘ୍ର ସେହି ରମଣୀୟ ଗୃହରେ ପ୍ରବେଶକଲା । ୨ । ରାକ୍ଷସରାଜ ରାବଣ ସେହି ଗୃହରେ ପ୍ରବେଶକରି ଶୋକପରାୟଣା ସୀତାଙ୍କୁ ରାକ୍ଷସୀମାନଙ୍କମଧ୍ୟରେ ଦେଖିଲା । ୩ । ସୀତା ଶୋକଭାରରେ ପ୍ରପୀଡ଼ିତହୋଇ ଅତିଶୟ ଦୀନଭାବରେ ଅଶ୍ରୁପୂର୍ଣ୍ଣମୁଖ ହୋଇ ରହିଥିଲେ । ପବନବେଗରେ ଆନ୍ଦୋଳିତହୋଇ ସମୁଦ୍ରରେ ବୁଡ଼ିଯାଉଥିବା ନୌକାପରି ତାଙ୍କର ଅବସ୍ଥା ହୋଇଥିଲା । ୪ । ଯୂଥଭ୍ରଷ୍ଟା ମୃଗୀକୁ କୁକୁରମାନେ ବେଢ଼ି ରହିଥିଲାପରି ସୀତାଙ୍କ ଅବସ୍ଥା ହୋଇଥିଲା । ରାକ୍ଷସରାଜ ରାବଣ, ମୁହଁକୁ ତଳକୁ ପୋତି ବସି ରହିଥିବା ସୀତାଙ୍କ ନିକଟକୁ ଯାଇ,ସେହି ଦୁଃଖିନୀ ଶୋକପରାୟଣା ଅବଶା ଜାନକୀଙ୍କୁ ବଳାତ୍କାରରେ ଦେବଭବନ ସଦୃଶ ନିଜର ଗୃହ

ହର୍ମ୍ୟପ୍ରାସାଦସଂବାଧଂ ସ୍ତ୍ରୀସହସ୍ରନିଷେବିତମ୍ ।
ନାନାପକ୍ଷିଗଣୈର୍ଜୁଷ୍ଟଂ ନାନାରତ୍ନସମନ୍ୱିତମ୍ । ୭ ।
ଦାନ୍ତକୈସ୍ତାପନୀୟୈଶ୍ଚ ସ୍ଫାଟିକୈରାଜତୈରପି ।
ବଜ୍ରବୈଡ଼ୂର୍ଯ୍ୟଚିତ୍ରୈଶ୍ଚ ସ୍ତମ୍ଭୈଦୃଷ୍ଟିମନୋହରୈଃ । ୮ ।
ଦିବ୍ୟଦୁନ୍ଦୁଭିନିର୍ହ୍ରାଦଂ ତପ୍ତକାଞ୍ଚନତୋରଣମ୍ ।
ସୋପାନଂ କାଞ୍ଚନଂ ଚିତ୍ରମାରୁରୋହ ତୟା ସହ । ୯ ।
ଦାନ୍ତକା ରାଜତାଶ୍ଚୈବ ଗବାକ୍ଷାଃ ପ୍ରିୟଦର୍ଶନାଃ ।
ହେମଜାଲାବୃତାଶ୍ଚାସଂସ୍ତତ୍ର ପ୍ରାସାଦପଂକ୍ତୟଃ । ୧୦ ।
ସୁଧାମଣିବିଚିତ୍ରାଣି ଭୂମିଭାଗାନି ସର୍ବଶଃ ।
ଦଶଗ୍ରୀବଃ ସ୍ୱଭବନେ ପ୍ରାଦର୍ଶୟତ ମୈଥିଲୀମ୍ । ୧୧ ।
ଦୀର୍ଘିକା ପୁଷ୍କରିଣ୍ୟଶ୍ଚ ନାନାବୃକ୍ଷସମନ୍ୱିତାଃ ।
ରାବଣୋ ଦର୍ଶୟାମାସ ସୀତାଂ ଶୋକପରାୟଣାମ୍ । ୧୨ ।
ଦର୍ଶୟିତ୍ୱା ତୁ ବୈଦେହ୍ୟାଃ କୃତ୍ସ୍ନଂ ତଦ୍ଭବନୋତ୍ତମମ୍ ।
ଉବାଚ ବାକ୍ୟଂ ପାପାତ୍ମା ସୀତାଂ ଲୋଭିତୁମିଚ୍ଛୟା । ୧୩ ।

---

ଦେଖାଇବାକୁ ଲଗିଲ । ୫-୬ । ସେହି ଗୃହ ହର୍ମ୍ୟ ଓ ପ୍ରାସାଦମାନଙ୍କରେ ପରିପୂର୍ଣ୍ଣ, ସହସ୍ର ସହସ୍ର ସ୍ତ୍ରୀଗଣସମାକୀର୍ଣ୍ଣ, ନାନା ପକ୍ଷୀମାନଙ୍କଦ୍ୱାରା ମୁଖରିତ ଏବଂ ବିବିଧ-ରତ୍ନସମନ୍ୱିତ ହୋଇଥିଲା । ୭ । ଏହାର ସ୍ତମ୍ଭସମୂହ ହସ୍ତିଦନ୍ତ, ସ୍ୱର୍ଣ୍ଣ, ସ୍ଫଟିକ, ଲୌହ ଏବଂ ବୈଡ଼ୂର୍ଯ୍ୟନିର୍ମିତ, ଅତିଶୟ ଚିତ୍ରିତ ଏବଂ ରମଣୀୟ ହୋଇଥିଲା । ୮ । ସେହି ଗୃହରେ ଦିବ୍ୟ ଦୁନ୍ଦୁଭିମାନ ବାଜୁଥିଲା ଏବଂ ତାହାର ତୋରଣମାନ ତପ୍ତ ସୁବର୍ଣ୍ଣରେ ନିର୍ମିତ ହୋଇଥିଲା । ରାବଣ ସୀତାଙ୍କ ସହିତ ସେହି ଗୃହର କାଞ୍ଚନମୟ ବିଚିତ୍ର ସୋପାନରେ ଆରୋହଣ କଲା । ୯ । ସେଠାରେ ଝରକାଗୁଡ଼ିକ ହାତୀଦାନ୍ତ ଓ ରୂପାରେ ତିଆରି ହୋଇ ଦେଖିବାକୁ ଅତି ସୁନ୍ଦର ହୋଇଥିଲା ଏବଂ ପ୍ରାସାଦରାଜି ସୁବର୍ଣ୍ଣର ଜାଲଦ୍ୱାରା ଆବୃତ ହୋଇଥିଲା । ୧୦ । ସେ ସ୍ଥାନର ଚଟାଣଗୁଡ଼ିକ ଚୂନ ଏବଂ ମଣିଦ୍ୱାରା ଚିତ୍ରିତ ହୋଇଥିଲା । ଦଶାନନ ସୀତାଙ୍କୁ ନିଜ ଗୃହମଧ୍ୟରେ ଏ ସମସ୍ତ ଦେଖାଇଲା ।୧୧। ରାବଣ, ଶୋକପରାୟଣା ସୀତାଙ୍କୁ ବିବିଧ ବୃକ୍ଷପରିବେଷ୍ଟିତ ପୁଷ୍କରିଣୀ ଏବଂ ବାପୀମାନ ଦେଖାଇଲା । ୧୨ । ସେ ପାପାତ୍ମା ଜାନକୀଙ୍କୁ ସେହି ଉତ୍ତମଗୃହ ସମଗ୍ରଭାବରେ ଦେଖାଇ ତାଙ୍କୁ ପ୍ରଲୋଭିତ କରିବା ଅଭିପ୍ରାୟରେ କହିଲା ।୧୩ । "ହେ ସୀତେ ! ମୁଁ ଦଶକୋଟି ଭୀମକର୍ମା ରାକ୍ଷସ ଏବଂ

ଦଶ ରାକ୍ଷସକୋଟ୍ୟଶ୍ଚ ଦ୍ୱାବିଂଶତିରଥାପରାଃ ।
ତେଷାଂ ପ୍ରଭୁରହଂ ସୀତେ ସର୍ବେଷାଂ ଭୀମକର୍ମଣାମ୍ ॥ ୧୪ ॥
ବର୍ଜୟିତ୍ୱା ଜରାବୃଦ୍ଧାନ୍ ବାଲାଂଶ୍ଚ ରଜନୀଚରାନ୍ ।
ସହସ୍ରମେକମେକସ୍ୟ ମମକାର୍ଯ୍ୟପୁରଃସରମ୍ ॥ ୧୫ ॥
ଯଦିଦଂ ରାଜତନ୍ତ୍ରଂ ମେ ତ୍ୱୟି ସର୍ବଂ ପ୍ରତିଷ୍ଠିତମ୍ ।
ଜୀବିତଂ ଚ ବିଶାଲାକ୍ଷି ତ୍ୱଂ ମେ ପ୍ରାଣୈର୍ଗରୀୟସୀ ॥ ୧୬ ॥
ବହୂନାଂ ସ୍ତ୍ରୀସହସ୍ରାଣାଂ ମମ ଯୋଽସୌ ପରିଗ୍ରହଃ ।
ତାସାଂ ତ୍ୱମୀଶ୍ୱରୀ ସୀତେ ମମ ଭାର୍ଯ୍ୟା ଭବ ପ୍ରିୟେ ॥ ୧୭ ॥
ସାଧୁ କିଂ ତେଽନ୍ୟଥା ବୁଦ୍ଧ୍ୟା ରୋଚୟସ୍ୱ ବଚୋ ମମ ।
ଭଜସ୍ୱ ମାଭିତପ୍ତସ୍ୟ ପ୍ରସାଦଂ କର୍ତୁମର୍ହସି ॥ ୧୮ ॥
ପରିକ୍ଷିପ୍ତା ସମୁଦ୍ରେଣ ଲଙ୍କେୟଂ ଶତଯୋଜନା ।
ନେୟଂ ଧର୍ଷୟିତୁଂ ଶକ୍ୟା ସେନ୍ଦ୍ରୈରପି ସୁରାସୁରୈଃ ॥ ୧୯ ॥
ନ ଦେବେଷୁ ନ ଯକ୍ଷେଷୁ ନ ଗନ୍ଧର୍ବେଷୁ ନର୍ଷିଷୁ ।
ଅହଂ ପଶ୍ୟାମି ଲୋକେଷୁ ଯୋ ମେ ବୀର୍ଯ୍ୟସମୋ ଭବେତ୍ ॥ ୨୦ ॥
ରାଜ୍ୟଭ୍ରଷ୍ଟେନ ଦୀନେନ ତାପସେନ ପଦାତିନା ।
କିଂ କରିଷ୍ୟସି ରାମେଣ ମାନୁଷେଣାଲ୍ପତେଜସା ॥ ୨୧ ॥

---

ବାଇଶି କୋଟି ଅନ୍ୟ ଶ୍ରେଣୀ ଲୋକ, ଏ ସମସ୍ତଙ୍କର ପ୍ରଭୁ ଅଟେ ।୧୪। ବାଳକ ଏବଂ ବୃଦ୍ଧ ରାକ୍ଷସମାନଙ୍କୁ ଛାଡ଼ି ଏକସହସ୍ର ରାକ୍ଷସ କେବଳ ମୋର ଜଣକ କାର୍ଯ୍ୟରେ ନିଯୁକ୍ତ ରହିଥାନ୍ତି ।୧୫। ଏ ସମସ୍ତ ରାଜତନ୍ତ୍ର ବର୍ତ୍ତମାନ ତୁମ୍ଭର ଅଧୀନ । ହେ ବିଶାଳାକ୍ଷି ! ତୁମେ ମୋର ପ୍ରାଣରୁ ବଳି ପ୍ରିୟତରା, ସୁତରାଂ ମୋର ଜୀବନ ମଧ୍ୟ ତୁମ୍ଭର; ଅଧୀନ ।୧୬। ହେ ସୀତେ ! ମୋର ଅନ୍ତଃପୁରରେ ଏହି ଯେଉଁ ବହୁ ସହସ୍ରସ୍ତ୍ରୀ ରହିଛନ୍ତି ତୁମେ ମୋର ଭାର୍ଯ୍ୟା ହୋଇ ଏହି ସମସ୍ତଙ୍କର ଅଧିକାରିଣୀ ହୁଅ । ୧୭ । ତୁମେ ଅନ୍ୟ ଚିନ୍ତାକଲେ କ'ଣ ହେବ ? ମୋ କଥା ତୁମ ମନକୁ ଆସୁ । ମୋତେ ତୁମେ ଭଜ । ମୁଁ ଅତିଶୟ କାମପୀଡ଼ିତ ହୋଇଅଛି । ମୋ ପ୍ରତି ପ୍ରସନ୍ନ ହୁଅ । ୧୮ । ମୋର ଏହି ଶତଯୋଜନବିସ୍ତୃତ ଲଙ୍କାନଗରୀ ଚାରିଆଡ଼େ ସମୁଦ୍ରଦ୍ୱାରା ବେଷ୍ଟିତ ହୋଇ ରହିଅଛି । ଇନ୍ଦ୍ରଙ୍କ ସହିତ ଦେବ ଓ ଦାନବ ସମସ୍ତେ ମିଶିଲେ ମଧ୍ୟ ଏହାର କୌଣସି ଅନିଷ୍ଟ କରିପାରିବେ ନାହିଁ ।୧୯। କି ଦେବ, କି ଗନ୍ଧର୍ବ, କି ଯକ୍ଷ, କି ଋଷି ଏ ଜଗତରେ ଏମାନଙ୍କ ମଧ୍ୟରେ ମୁଁ କାହାରିକୁ ମୋର ବଳସମାନ ଲୋକ ଦେଖୁନାହିଁ ।୨୦। ଦୀନ, ତପସ୍ୱୀ, ରାଜ୍ୟଭ୍ରଷ୍ଟ, ପାଦଚାରୀ, କ୍ଷୁଦ୍ରପ୍ରାଣ, ମନୁଷ୍ୟ

ଭଜସ୍ୱ ସୀତେ ମାମେବ ଭର୍ତ୍ତାହଂ ସଦୃଶସ୍ତବ ।
ଯୌବନଂ ହ୍ୟଧ୍ରୁବଂ ଭୀରୁ ରମସ୍ୱେହ ମୟା ସହ ।୨୨।
ଦର୍ଶନେ ମା କୃଥା ବୁଦ୍ଧିଂ ରାଘବସ୍ୟ ବରାନନେ ।
କାସ୍ୟ ଶକ୍ତିରିହାଗନ୍ତୁମପି ସୀତେ ମନୋରଥୈଃ ।୨୩।
ନ ଶକ୍ୟୋ ବାୟୁରାକାଶେ ପାଶୈର୍ବଦ୍ଧୁଂ ମହାଜବଃ ।
ଦୀପ୍ୟମାନସ୍ୟ ଚାପ୍ୟଗ୍ନେର୍ଗ୍ରହୀତୁଂ ବିମଳା ଶିଖା ।୨୪।
ତ୍ରୟାଣାମପି ଲୋକାନାଂ ନ ତଂ ପଶ୍ୟାମି ଶୋଭନେ ।
ବିକ୍ରମେଣ ନୟେଦ୍ୟସ୍ତ୍ୱାଂ ମଦ୍ବାହୁପରିପାଳିତାମ୍ ।୨୫।
ଲଙ୍କାୟାଂ ସୁମହଦ୍ରାଜ୍ୟମିଦଂ ତ୍ୱମନୁପାଳୟ ।
ତ୍ୱତ୍ପ୍ରେଷ୍ୟା ମଦ୍ବିଧାଶ୍ଚୈବ ଦେବାଶ୍ଚାପି ଚରାଚରାଃ ।୨୬।
ଅଭିଷେକୋଦକକ୍ଳିନ୍ନା ତୁଷ୍ଟା ଚ ରମୟସ୍ୱ ମାମ୍ ।
ଦୁଷ୍କୃତଂ ଯତ୍ ପୁରା କର୍ମ ବନବାସେନ ତଦ୍ଗତମ୍ ।୨୭।
ଯଶ୍ଚ ତେ ସୁକୃତୋ ଧର୍ମସ୍ତସ୍ୟେହ ଫଲମାପ୍ନୁହି ।
ଇହ ମାଲ୍ୟାନି ସର୍ବାଣି ଦିବ୍ୟଗନ୍ଧାନି ମୈଥିଳି ।୨୮।

---

ରାମଙ୍କୁ ନେଇ ତୁମେ କ'ଣ କରିବ ? ।୨୧। ହେ ସୀତେ ! ମୁଁ ତୁମ୍ଭର ଉପଯୁକ୍ତ ପତି, ସୁତରାଂ ମୋତେ ଆଶ୍ରୟ କର । ହେ ଭୀରୁ ! ଯୌବନ କ୍ଷଣସ୍ଥାୟୀ ଅଟେ, ସୁତରାଂ ମୋ ସାଙ୍ଗରେ ଆନନ୍ଦ ଉପଭୋଗକର । ୨୨। ହେ ବରାନନେ ସୀତେ ! ରାମଙ୍କୁ ଦେଖିବାକୁ ମନ କରନାହିଁ; ମନେ ମନେ ମଧ୍ୟ ଏଠାକୁ ଆସିବା ପାଇଁ ତା'ର କି ଶକ୍ତି ଅଛି ? । ୨୩ । ମହାବେଗଶାଳୀ ପବନକୁ ଆକାଶରେ ପାଶଦ୍ୱାରା ବନ୍ଧନକରି ହୁଏ ନାହିଁ କିମ୍ବା ପ୍ରଜ୍ୱଳିତ ଅଗ୍ନିର ନିର୍ମଳ ଶିଖାକୁ ମଧ୍ୟ କେହି ଧରିପାରେ ନାହିଁ ।୨୪। ହେ ସୁନ୍ଦରି ! ମୁଁ ତିନିଭୁବନରେ ଏପରି ଲୋକ ଦେଖୁ ନାହିଁ, ଯେ କି ମୋ ବାହୁଦ୍ୱାରା ପରିପାଳିତ ତୋତେ ଏଠାରୁ ବିକ୍ରମଦ୍ୱାରା ନେଇ ଯାଇପାରିବ । ୨୫ । ଲଙ୍କାରେ ଏହି ବିଶାଳ ରାଜ୍ୟ ତୁମେହିଁ ପାଳନକର । ମୋପରି ଲୋକ ଏବଂ ଚରାଚର ଓ ଦେବତାମାନେ ମଧ୍ୟ ତୁମ୍ଭର ଭୃତ୍ୟ ହୋଇ ରହିବେ । ୨୬ । ତୁମେ ପୂର୍ବେ ଯେଉଁ ଦୁଷ୍କୃତ ସବୁ କରିଥିଲ, ବନବାସଦ୍ୱାରା ସେ ସମସ୍ତ ଧୋଇହୋଇ ଯାଇଅଛି । ଏବେ ତୁମେ ଅଭିଷେକ ଜଳରେ ଶରୀର ଧୌତକରି ସନ୍ତୁଷ୍ଟଚିତ୍ତରେ ମୋତେ ଆପ୍ୟାୟିତକର । ୨୭ । ତୁମେ ଯେଉଁ ସୁକୃତ ଓ ଧର୍ମ କରିଅଛ, ବର୍ତ୍ତମାନ ସେଥିର ଫଳ ଲାଭକର । ହେ ମୈଥିଳି ! ତୁମେ ଏହିଠାରେ ରହି ଉତ୍କୃଷ୍ଟ ମାଲ୍ୟ,

ଭୂଷଣାନି ଚ ମୁଖ୍ୟାନି ସେବସ୍ୱ ଚ ମୟା ସହ ।
ପୁଷ୍ପକଂ ନାମ ସୁଶ୍ରୋଣି ଭ୍ରାତୁର୍ବୈଶ୍ରବଣସ୍ୟ ମେ । ୨୯ ।
ବିମାନଂ ସୂର୍ଯ୍ୟସଂକାଶଂ ତରସା ନିର୍ଜିତଂ ମୟା ।
ବିଶାଳଂ ରମଣୀୟଂ ଚ ତଦ୍ୱିମାନଂ ମନୋଜବମ୍ । ୩୦ ।
ତତ୍ର ସୀତେ ମୟା ସାର୍ଦ୍ଧଂ ବିହରସ୍ୱ ଯଥାସୁଖମ୍ ।
ବଦନଂ ପଦ୍ମସଂକାଶଂ ବିମଳଂ ଚାରୁଦର୍ଶନମ୍ । ୩୧ ।
ଶୋକାର୍ତ୍ତଂ ତୁ ବରାରୋହେ ନ ଭ୍ରାଜତି ବରାନନେ ।
ଏବଂ ବଦତି ତସ୍ମିନ୍ ସା ବସ୍ତ୍ରାନ୍ତେନ ବରାଙ୍ଗନା । ୩୨ ।
ପିଧାୟେନ୍ଦୁନିଭଂ ସୀତା ମୁଖମଶ୍ରୂଣ୍ୟବର୍ତ୍ତୟତ୍ ।
ଧ୍ୟାୟନ୍ତୀଂ ତାମିବାସ୍ୱସ୍ଥାଂ ଦୀନାଂ ଚିନ୍ତାହତପ୍ରଭାମ୍ । ୩୩ ।
ଉବାଚ ବଚନଂ ପାପୋ ରାବଣୋ ରାକ୍ଷସେଶ୍ୱରଃ ।
ଅଲଂ ବ୍ରୀଡେନ ବୈଦେହି ଧର୍ମଲୋପକୃତେନ ଚ । ୩୪ ।
ଆର୍ଷୋଽୟଂ ଦୈବନିଷ୍ୟନ୍ଦୋ ଯସ୍ତ୍ୱାମଭିଗମିଷ୍ୟତି ।
ଏତୌ ପାଦୌ ମୟା ସ୍ନିଗ୍ଧୌ ଶିରୋଭିଃ ପରିପୀଡ଼ିତୌ । ୩୫
ପ୍ରସାଦଂ କୁରୁ ମେ କ୍ଷିପ୍ରଂ ବଶ୍ୟୋ ଦାସୋଽହମସ୍ମି ତେ ।
ଇମାଃ ଶୂନ୍ୟା ମୟା ବାଚଃ ଶୁଷ୍ୟମାଣେନ ଭାଷିତାଃ ।୩୬।

---

ଦିବ୍ୟଗନ୍ଧ ଓ ଅଳଙ୍କାରମାନ ମୋ ସହିତ ଉପଭୋଗକର । ହେ ସୁଶ୍ରୋଣି ! ମୋର ଭାଇ କୁବେରଙ୍କର ପୁଷ୍ପକ ନାମକ ଏହି ଯେଉଁ ସୂର୍ଯ୍ୟସଦୃଶ ଦୀପ୍ତିମନ୍ତ ବିମାନ ଅଛି ଏହାକୁ ମୁଁ ନିଜବଳରେ ଅର୍ଜନକରି ଆଣିଅଛି । ହେ ସୀତେ ! ସେହି ମନସଦୃଶ ବେଗଶାଳୀ ରମଣୀୟ ବିଶାଳ ବିମାନରେ ତୁମେ ମନସୁଖରେ ମୋସହିତ ବିହାରକର । ହେ ବରାନନେ ! ପଦ୍ମସଦୃଶ ଏହି ନିର୍ମଳ ସୁନ୍ଦର ମୁଖ ଶୋକାର୍ତ୍ତହେତୁ ଶୋଭାପାଉ ନାହିଁ ।" ରାବଣ ଏହିପରି କହିବାରୁ ବରାଙ୍ଗନା ସୀତା ବସ୍ତ୍ରାଞ୍ଚଳରେ ନିଜର ଚନ୍ଦ୍ରମୁଖକୁ ଆଚ୍ଛାଦିତକରି ଅଶ୍ରୁବିସର୍ଜନ କରିବାକୁ ଲାଗିଲେ । ଏହିପରି ଅଶାନ୍ତିରେ ଓ ଦୁଃଖିତଭାବରେ ଚିନ୍ତା କରିବାଦ୍ୱାରା ସୀତାଙ୍କର ଦୀପ୍ତି ମଳିନହୋଇ ଯାଇଥିଲା । ପାପାତ୍ମା ରାକ୍ଷସରାଜ ରାବଣ ତାଙ୍କୁ କହିଲା, "ହେ ବୈଦେହି ! ଧର୍ମଲୋପ ଆଶଙ୍କାରେ ଆଉ ଲଜ୍ଜିତ ହୁଅ ନାହିଁ । ୨୮-୩୪ । ମୁଁ ଯେ ତୁମସହିତ ରମଣକରିବି, ମୁଁ ଦେବତାଙ୍କଠାରୁ ଉତ୍ପନ୍ନ ଋଷିବ୍ୟକ୍ତ । ମୁଁ ତୁମର ଏହି ସୁକୋମଳ ଚରଣଦ୍ୱୟକୁ ମସ୍ତକଦ୍ୱାରା ପୀଡ଼ିତକରୁଅଛି । ୩୫ । ମୋତେ ଶୀଘ୍ର ଅନୁଗ୍ରହକର । ମୁଁ ତୁମର ବଶୀଭୂତ ଦାସ ଅଟେଁ । ମୁଁ କାମରେ ଦହ୍ୟମାନହୋଇ ଏହି ଯେଉଁସବୁ କଥା

ନ ଚାପି ରାବଣଃ କାଞ୍ଚିଦ୍‌ମୂର୍ଦ୍ଧ୍ନା ସ୍ତ୍ରୀଂ ପ୍ରଣମେତ ହ ।
ଏବମୁକ୍ତ୍ୱା ଦଶଗ୍ରୀବୋ ମୈଥିଲୀଂ ଜନକାତ୍ମଜାମ୍ । ୩୭ ।
କୃତାନ୍ତବଶମାପନ୍ନୋ ମମେୟମିତି ମନ୍ୟତେ । ୩୮ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ସୀତାବଲୋଭନୋଦ୍ୟମୋ ନାମ
ପଞ୍ଚପଞ୍ଚାଶଃ ସର୍ଗଃ

———

କହିଲ, ତାହା ସେପରି ନିରର୍ଥକ ନ ହେଉ । ୩୬ । ରାବଣ କେବେ କୌଣସି ସ୍ତ୍ରୀ-ଲୋକକୁ ମୁଣ୍ଡିଆମାରି ପ୍ରଣାମ କରିନାହିଁ ।” ଦଶଗ୍ରୀବ ମୈଥିଳୀ ଜନକନନ୍ଦିନୀଙ୍କୁ ଏହିପରି କହି ମୃତ୍ୟୁର ବଶୀଭୂତ ହୋଇ ‘ଏ ନିଶ୍ଚୟ ମୋର’ ବୋଲି ମନେ ମନେ ସ୍ଥିରକଲା । ୩୭-୩୮ ।

———

# ଷଟ୍‌ପଞ୍ଚାଶଃ ସର୍ଗଃ

## ବସ୍ତ୍ରାବଧିକରଣମ୍

ସା ତଥୋକ୍ତା ତୁ ବୈଦେହୀ ନିର୍ଭୟା ଶୋକକର୍ଶିତା ।
*ତୃଣମନ୍ତରତଃ କୃତ୍ୱା ରାବଣଂ ପ୍ରତ୍ୟଭାଷତ ।୧।
ରାଜା ଦଶରଥୋ ନାମ ଧର୍ମସେତୁରିବାଚଲଃ ।
ସତ୍ୟସନ୍ଧଃ ପରିଜ୍ଞାତୋ ଯସ୍ୟ ପୁତ୍ର ସ ରାଘବଃ ।୨।
ରାମୋ ନାମ ସ ଧର୍ମାତ୍ମା ତ୍ରିଷୁ ଲୋକେଷୁ ବିଶ୍ରୁତଃ ।
ଦୀର୍ଘବାହୁର୍ବିଶାଳାକ୍ଷୋ ଦୈବତଂ ସ ପତିର୍ମମ ।୩।
ଇକ୍ଷ୍ୱାକୂଣାଂ କୁଲେ ଜାତଃ ସିଂହସ୍କନ୍ଧୋ ମହାଦ୍ୟୁତିଃ ।
ଲକ୍ଷ୍ମଣେନ ସହ ଭ୍ରାତ୍ରା ଯସ୍ତେ ପ୍ରାଣାନ୍ ହରିଷ୍ୟତି ।୪।
ପ୍ରତ୍ୟକ୍ଷଂ ଯଦ୍ୟହଂ ତସ୍ୟ ତ୍ୱୟା ସ୍ୟାଂ ଧର୍ଷିତା ବଲାତ୍ ।
ଶୟିତା ତ୍ୱଂ ହତଃ ସଂଖ୍ୟେ ଜନସ୍ଥାନେ ଯଥା ଖରଃ ।୫।

---

## ୫୬ଶ ସର୍ଗ

( ରାବଣର ସୀତାଙ୍କୁ ଏକବର୍ଷ କାଳ ଦେବା )

ଶୋକପୀଡ଼ିତା ଜାନକୀ ଏହି କଥା ଶୁଣି ଲେଶମାତ୍ର ଭୟ ନ କରି ମଝିରେ ଗୋଟିଏ ତୃଣ ବ୍ୟବଧାନ ରଖି ରାବଣକୁ ଜବାବ ଦେଲେ ।୧। "ରାଜା ଦଶରଥ ଧର୍ମର ଅଚଳ ସେତୁସ୍ୱରୂପ ଏବଂ ସତ୍ୟପ୍ରତିଜ୍ଞ ବୋଲି ପରିଚିତ । ରାମ ତାହାଙ୍କରହିଁ ପୁତ୍ର ଅଟନ୍ତି ।୨। ସେ 'ଧର୍ମାତ୍ମା ରାମ' ନାମରେ ତ୍ରିଭୁବନରେ ବିଖ୍ୟାତ । ସେହି ଦୀର୍ଘବାହୁ ବିଶାଳଲୋଚନ ରାମ ମୋର ସ୍ୱାମୀ ଏବଂ ସାକ୍ଷାତ୍ ଦେବତା ।୩। ସେ ସିଂହସ୍କନ୍ଧ, ମହାଦୀପ୍ତିଶାଳୀ ଏବଂ ଇକ୍ଷ୍ୱାକୁବଂଶରେ ଜନ୍ମହୋଇଛନ୍ତି । ସେ ଭ୍ରାତା ଲକ୍ଷ୍ମଣଙ୍କ ସହିତ ନିଶ୍ଚୟ ତୋର ପ୍ରାଣସଂହାର କରିବେ ।୪। ମୁଁ ଯଦି ତାଙ୍କ ସମକ୍ଷରେ ତୋଦ୍ୱାରା ବଳ ପ୍ରକାରରେ ଧର୍ଷିତ ହୋଇଥାନ୍ତି, ତେବେ ଯୁଦ୍ଧରେ ଜନସ୍ଥାନରେ

---

* ପତିବ୍ରତା ରମଣୀମାନେ କେବେ ପରପୁରୁଷ ସହିତ ସାକ୍ଷାତ୍ ଆଳାପ କରନ୍ତି ନାହିଁ । ସେଥିପାଇଁ ସୀତା ରାବଣ ଏବଂ ତାଙ୍କମଧ୍ୟରେ ଗୋଟିଏ ତୃଣ ବ୍ୟବଧାନ ରଖି ତାହାକୁ ଉତ୍ତର ଦେଇଥିଲେ ।

ଯ ଏତେ ରାକ୍ଷସାଃ ପ୍ରୋକ୍ତା ଘୋରରୂପା ମହାବଲାଃ ।
ରାଘବେ ନିର୍ବିଷାଃ ସର୍ବେ ସୁପର୍ଣେ ପନ୍ନଗା ଯଥା । ୬ ।
ତସ୍ୟ ଜ୍ୟାବିପ୍ରମୁକ୍ତାସ୍ତେ ଶରାଃ କାଞ୍ଚନଭୂଷଣାଃ ।
ଶରୀରଂ ବିଧମିଷ୍ୟନ୍ତି ଗଙ୍ଗାକୂଳମିବୋର୍ମୟଃ । ୭ ।
ଅସୁରୈର୍ବା ସୁରୈର୍ବା ତ୍ୱଂ ଯଦ୍ୟବଧ୍ୟୋଽସି ରାବଣ ।
ଉତ୍ପାଦ୍ୟ ସୁମହଦ୍‌ବୈରଂ ଜୀବଂସ୍ତସ୍ୟ ନ ମୋକ୍ଷ୍ୟସେ । ୮ ।
ସ ତେ ଜୀବିତଶେଷସ୍ୟ ରାଘବୋଽନ୍ତକରୋ ବଲୀ ।
ପଶୋର୍ୟୂପଗତସ୍ୟେବ ଜୀବିତଂ ତବ ଦୁର୍ଲଭମ୍ । ୯ ।
ଯଦି ପଶ୍ୟେତ୍ସ ରାମସ୍ତ୍ୱାଂ ରୋଷଦୀପ୍ତେନ ଚକ୍ଷୁଷା ।
ରକ୍ଷସ୍ତ୍ୱମଦ୍ୟ ନିର୍ଦଗ୍ଧୋ ଯଥା ରୁଦ୍ରେଣ ମନ୍ମଥଃ । ୧୦ ।
ଯଶ୍ଚନ୍ଦ୍ରଂ ନଭସୋ ଭୂମୌ ପାତୟେନ୍ନାଶୟେତ ବା ।
ସାଗରଂ ଶୋଷୟେଦ୍‌ବାପି ସ ସୀତାଂ ମୋଚୟେଦିହ । ୧୧ ।
ଗତାୟୁସ୍ତ୍ୱଂ ଗତଶ୍ରୀକୋ ଗତସତ୍ତ୍ୱୋ ଗତେନ୍ଦ୍ରିୟଃ ।
ଲଙ୍କା ବୈଧବ୍ୟସଂଯୁକ୍ତା ତ୍ୱତ୍କୃତେ ନ ଭବିଷ୍ୟତି । ୧୨ ।

---

ଖରପରି ତୁ ମଧ୍ୟ ମରି ଶୋଇଥାନ୍ତୁ । ୫ । ତୁ ଏହି ଯେଉଁ ମହାବଳୀ ଭୀଷଣ ରାକ୍ଷସମାନଙ୍କ କଥା କହିଲୁ, ଗରୁଡ଼ ନିକଟରେ ସର୍ପମାନଙ୍କପରି ରାମଙ୍କ ନିକଟରେ ସେମାନେ ସମସ୍ତେ ବିଷହୀନ ହେବେ । ୬ । ତରଙ୍ଗରାଜି ଯେପରି ଗଙ୍ଗାର କୂଳକୁ ଭାଙ୍ଗି ଦିଅନ୍ତି ସେହିପରି ତାଙ୍କର ଧନୁର୍ମୁକ୍ତ ସ୍ୱର୍ଣ୍ଣଭୂଷିତ ଶରରାଜି ସେମାନଙ୍କ ଶରୀରକୁ ବିଦୀର୍ଣ୍ଣ କରିଦେବ । ୭ । ରାବଣ ! ତୁ ଯେ ଦେବ ଓ ଦାନବମାନଙ୍କର ଅବଧ୍ୟ ବୋଲି କହୁଛୁ, କିନ୍ତୁ ରାମଙ୍କ ସହିତ ଘୋର ଶତ୍ରୁତା କରି ତୁ କଦାପି ତାଙ୍କଠାରୁ ବଞ୍ଚିରହି ମୁକ୍ତି ପାଇବୁ ନାହିଁ । ୮ । ସେହି ବଳବାନ୍ ରାମ ତୋର ଅବଶିଷ୍ଟ ଜୀବନକାଳ ନିଃଶେଷ କରିବେ । ଯୂପକାଠରେ ବନ୍ଧା ହୋଇଥିବା ବଳିପଶୁପରି ତୋର ଜୀବନ ଏବେ ଦୁର୍ଲ୍ଲଭ ହୋଇ ପଡ଼ିଲାଣି । ୯ । ରେ ରାକ୍ଷସ ! ରାମ ଯଦି ରୋଷଦୀପ୍ତ ଚକ୍ଷୁରେ ତୋତେ ଚାହିଁବେ ତେବେ ରୁଦ୍ରଙ୍କଦ୍ୱାରା କନ୍ଦର୍ପ ଦଗ୍ଧ ହେଲାପରି ତୁ ଆଜି ଭସ୍ମୀଭୂତ ହୋଇଯିବୁ ।୧୦। ଯେଉଁ ରାମ ଚନ୍ଦ୍ରଙ୍କୁ ମଧ୍ୟ ଆକାଶରୁ ଭୂତଳରେ ନିପାତିତ ବା ବିନଷ୍ଟ କରିପାରନ୍ତି, ଏବଂ ସମୁଦ୍ରକୁ ଶୋଷଣ କରିପାରନ୍ତି ସେ ନିଶ୍ଚୟ ସୀତାଙ୍କୁ ମଧ୍ୟ ଏଠାରୁ ଉଦ୍ଧାର କରିବେ ।୧୧। ତୋର ଆୟୁ ଶେଷ ହୋଇଛି, ଶ୍ରୀଲୋପ ହୋଇଛି ଓ ବୀର୍ଯ୍ୟ ତଥା ଇନ୍ଦ୍ରିୟ ନଷ୍ଟ ହୋଇଛି । ତୋ ଲାଗି ଲଙ୍କାନଗରୀ ନିଶ୍ଚୟ ବିଧବା ହେବ ଏବଂ ତାହାର ସତ୍ତା ରହିବ ନାହିଁ ।୧୨। ତୋର ଏହି ପାପକର୍ମର

ନ ତେ ପାପମିଦଂ କର୍ମ ସୁଖୋଦର୍କଂ ଭବିଷ୍ୟତି ।
ଯାହଂ ନୀତା ବିନାଭୂତଂ ପତିପାର୍ଶ୍ୱାତ୍ତ୍ୱୟା ବଲାତ୍ । ୧୩ ।
ସ ହି ଦେବରସଂଯୁକ୍ତୋ ମମ ଭର୍ତ୍ତା ମହାଦ୍ୟୁତିଃ ।
ନିର୍ଭୟୋ ବୀର୍ଯ୍ୟମାଶ୍ରିତ୍ୟ ଶୂନ୍ୟେ ବସତି ଦଣ୍ଡକେ । ୧୪ ।
ସ ତେ ଦର୍ପଂ ବଳଂ ବୀର୍ଯ୍ୟମୁତ୍ସେକଂ ଚ ତଥାବିଧମ୍ ।
ଅପନେଷ୍ୟତି ଗାତ୍ରେଭ୍ୟଃ ଶରବର୍ଷେଣ ସଂଯୁଗେ । ୧୫ ।
ଯଦା ବିନାଶୋ ଭୂତାନାଂ ଦୃଶ୍ୟତେ କାଲଚୋଦିତଃ ।
ତଦା କାର୍ଯ୍ୟେ ପ୍ରମାଦ୍ୟନ୍ତି ନରାଃ କାଲବଶଂ ଗତାଃ । ୧୬ ।
ମାଂ ପ୍ରଧୃଷ୍ୟ ସ ତେ କାଲଃ ପ୍ରାପ୍ତୋଽୟଂ ରକ୍ଷସାଧମ ।
ଆତ୍ମନୋ ରାକ୍ଷସାନାଂ ଚ ବଧାୟାନ୍ତଃପୁରସ୍ୟ ଚ । ୧୭ ।
ନ ଶକ୍ୟା ଯଜ୍ଞମଧ୍ୟସ୍ଥା ବେଦିଃ ସ୍ରୁଗ୍ଭାଣ୍ଡମଣ୍ଡିତା ।
ଦ୍ୱିଜାତିମନ୍ତ୍ରସଂପୂତା ଚଣ୍ଡାଲେନାବମର୍ଦ୍ଦିତୁମ୍ । ୧୮ ।
ତଥାହଂ ଧର୍ମନିତ୍ୟସ୍ୟ ଧର୍ମପତ୍ନୀ ପତିବ୍ରତା ।
ତ୍ୱୟା ସ୍ପ୍ରଷ୍ଟୁଂ ନ ଶକ୍ୟାସ୍ମି ରାକ୍ଷସାଧମ ପାପିନା ।୧୯ ।
କ୍ରୀଡ଼ନ୍ତୀ ରାଜହଂସେନ ପଦ୍ମଷଣ୍ଡେଷୁ ନିତ୍ୟଦା ।
ହଂସୀ ସା ତୃଣଷଣ୍ଡସ୍ଥଂ କଥଂ ଦ୍ରକ୍ଷେତ ମଦ୍ଗୁକମ୍ । ୨୦।

---

ଫଳ କଦାପି ସୁଖକର ହେବ ନାହିଁ, କାରଣ ତୁ ମୋତେ ବଳପୂର୍ବକ ମୋ ପତିଙ୍କ ପାଖରୁ ବିଛିନ୍ନ କରିଅଛୁ । ୧୩ । ଏବେ ମୋର ସେହି ମହାଦୀପ୍ତିଶାଳୀ ସ୍ୱାମୀ ମୋଦେବରଙ୍କ ସହିତ ନିଜର ବଳକୁ ଆଶ୍ରୟକରି ନିର୍ଭୟରେ ନିର୍ଜନ ଦଣ୍ଡକାରଣ୍ୟରେ ବାସ କରୁଅଛନ୍ତି । ୧୪ । ସେ ଯୁଦ୍ଧରେ ଶରବୃଷ୍ଟି କରି ତୋଦେହରୁ ବଳ, ବୀର୍ଯ୍ୟ, ଦର୍ପ ଏବଂ ଏତାଦୃଶ ଔଦ୍ଧତ୍ୟ ଅପସାରିତ କରିବେ । ୧୫ । ପ୍ରାଣୀମାନଙ୍କର ଯେତେବେଳେ କାଳପ୍ରେରିତ ବିନାଶ ଉପସ୍ଥିତ ହୁଏ, ସେତେବେଳେ ସେମାନେ କାଳର ବଶୀଭୂତ ହୋଇ କର୍ତ୍ତବ୍ୟାକର୍ତ୍ତବ୍ୟ ବିଷୟରେ ପ୍ରମାଦ କରିଥାନ୍ତି । ୧୬ । ରେ ରାକ୍ଷସାଧମ ! ମୋତେ ଅବମାନନାକରି ତୋର ନିଜର, ସମସ୍ତ ରାକ୍ଷସଙ୍କର ଏବଂ ତୋର ସମସ୍ତ ଅନ୍ତଃପୁରର ସେହି ବିନାଶକାଳ ଏବେ ଉପସ୍ଥିତ ହୋଇଅଛି ।୧୭। ବ୍ରାହ୍ମଣମାନଙ୍କକର୍ତ୍ତୃକ ମନ୍ତ୍ରପୂତ ସ୍ରୁଗ୍‌ଭାଣ୍ଡାଦିଶୋଭିତ ଯଜ୍ଞବେଦୀକୁ ଚଣ୍ଡାଳ କଦାପି ପାଦରେ ମାଡ଼ିବାକୁ ସମର୍ଥ ହୁଏ ନାହିଁ, ସେହିପରି ରେ ରାକ୍ଷସାଧମ ! ଧର୍ମନିତ୍ୟ ରାମଙ୍କର ପତିବ୍ରତା ଧର୍ମପତ୍ନୀ ମୋତେ ତୁ ପାପୀ କେବେ ସ୍ପର୍ଶ କରିବାକୁ ସମର୍ଥ ହେବୁ ନାହିଁ । ୧୮-୧୯ । ଯେଉଁ ହଂସୀ ସର୍ବଦା ପଦ୍ମସମୂହମଧ୍ୟରେ ରାଜହଂସ ସହିତ କ୍ରୀଡ଼ା କରୁଥାଏ, ସେ କାହିଁକି ତୃଣମଧ୍ୟରେ ବସିଥିବା ପାଣିକୁଆ ଅଡ଼ିକୁ

ଇଦଂ ଶରୀରଂ ନିଃସଂଜ୍ଞଂ ବନ୍ଧ ବା ଖାଦୟସ୍ୱ ବା ।
ନେଦଂ ଶରୀରଂ ରକ୍ଷ୍ୟଂ ମେ ଜୀବିତଂ ବାପି ରାକ୍ଷସ ।୨୧।
ନ ତୁ ଶକ୍ଷ୍ୟାମ୍ୟୁପକ୍ରୋଶଂ ପୃଥିବ୍ୟାଂ ଦାତୁମାତ୍ମନଃ ।
ଏବମୁକ୍ତ୍ୱା ତୁ ବୈଦେହୀ କ୍ରୋଧାତ୍ସୁପରୁଷଂ ବଚଃ ।୨୨।
ରାବଣଂ ମୈଥିଲୀ ତତ୍ର ପୁନର୍ନୋବାଚ କିଂଚନ ।
ସୀତାୟା ବଚନଂ ଶ୍ରୁତ୍ୱା ପରୁଷଂ ରୋମହର୍ଷଣମ୍ ।୨୩।
ପ୍ରତ୍ୟୁବାଚ ତତଃ ସୀତାଂ ଭୟସଂଦର୍ଶନଂ ବଚଃ ।
ଶୃଣୁ ମୈଥିଲି ମଦ୍ୱାକ୍ୟଂ ମାସାନ୍ ଦ୍ୱାଦଶ ଭାମିନି ।୨୪।
କାଲେନାନେନ ନାଭ୍ୟେଷି ଯଦି ମାଂ ଚାରୁହାସିନି ।
ତତସ୍ତ୍ୱାଂ ପ୍ରାତରାଶାର୍ଥଂ ସୂଦାଶ୍ଛେତ୍ସ୍ୟନ୍ତି ଲେଶଶଃ ।୨୫।
ଇତ୍ୟୁକ୍ତ୍ୱା ପରୁଷଂ ବାକ୍ୟଂ ରାବଣଃ ଶତ୍ରୁରାବଣଃ ।
ରାକ୍ଷସୀଶ୍ଚ ତତଃ କ୍ରୁଦ୍ଧ ଇଦଂ ବଚନମବ୍ରବୀତ୍ ।୨୬।
ଶୀଘ୍ରମେବ ହି ରାକ୍ଷସ୍ୟୋ ବିକୃତା ଘୋରଦର୍ଶନାଃ ।
ଦର୍ପମସ୍ୟା ବିନେଷ୍ୟଧ୍ୱଂ ମାଂସଶୋଣିତଭୋଜନାଃ ।୨୭।
ବଚନାଦେବ ତାସ୍ତସ୍ୟ ସୁଘୋରା ରାକ୍ଷସୀଗଣାଃ ।
କୃତପ୍ରାଞ୍ଜଳୟୋ ଭୂତ୍ୱା ମୈଥିଲୀଂ ପର୍ଯ୍ୟବାରୟନ୍ ।୨୮।

---

ରୁହିବ ? ।୨୦। ରେ ରାକ୍ଷସ ! ମୋର ଏ ଶରୀର ବର୍ତ୍ତମାନ ସଂଜ୍ଞାହୀନ । ଏହାକୁ ତୁ ବନ୍ଧନକର ବା ଭକ୍ଷଣକର ମୋର ଚିନ୍ତା ନାହିଁ । ମୁଁ ଏ ଶରୀରକୁ ବା ଏ ପ୍ରାଣକୁ କଦାପି ରକ୍ଷା କରିବି ନାହିଁ ।୨୧। ମୁଁ ପୃଥିବୀରେ କଦାପି ମୋ ନିଜର କଳଙ୍କ ବିସ୍ତାର କରିପାରିବି ନାହିଁ ।" ବୈଦେହୀ କ୍ରୋଧରେ ଏହିପରି ଅତି କର୍କଶ ବାକ୍ୟ ପ୍ରୟୋଗକରି ରାବଣକୁ ଆଉ ସେଠାରେ କିଛି କହିଲେ ନାହିଁ । ସୀତାଙ୍କର ଏହି ଲୋମହର୍ଷଣକାରୀ କର୍କଶ ବାକ୍ୟ ଶ୍ରବଣକରି ରାବଣ ତାଙ୍କୁ ଭୟ ଦେଖାଇ କହିଲା । "ହେ ମୈଥିଳି ! ମୋର କଥା ଶୁଣ । ମୁଁ ତୋତେ ବାରମାସ ସମୟ ଦେଲି । ହେ ଚାରୁହାସିନି, ଏହି ସମୟମଧ୍ୟରେ ତୁ ଯଦି ମୋର ଅନୁଗତା ନ ହେଉ, ତାହାହେଲେ ସୂପକାରମାନେ ତୋତେ ମୋର ପ୍ରାତର୍ଭୋଜନ ନିମନ୍ତେ ଖଣ୍ଡ ଖଣ୍ଡ କରି ଛେଦନକରିବେ" ।୨୨-୨୫। ଅନନ୍ତର ଶତ୍ରୁମାନଙ୍କର ଭୟ ଉତ୍ପାଦନକାରୀ ରାବଣ ଏହି କଠୋର କଥା କହି କ୍ରୋଧରେ ରାକ୍ଷସୀମାନଙ୍କୁ କହିଲା ।୨୬। "ହେ ବିକଟରୂପା ଘୋରଦର୍ଶନା ରକ୍ତମାଂସଭୋଜୀ ରାକ୍ଷସୀଗଣ ; ତୁମେମାନେ ଅତିଶୀଘ୍ର ଏହାର ଦର୍ପ ଧ୍ୱଂସକର" ।୨୭। ସେହି ଘୋରଦର୍ଶନା ରାକ୍ଷସୀଗଣ ରାବଣକଥା ଶୁଣି ଅଞ୍ଜଳିବନ୍ଧକରି ସୀତାଙ୍କୁ ବେଢ଼ିଗଲେ ।୨୮।

ସ ତାଃ ପ୍ରୋବାଚ ରାଜାସୌ ରାବଣୋ ଘୋରଦର୍ଶନଃ ।
ପ୍ରଚାଲ୍ୟ ଚରଣୋତ୍କର୍ଷୈର୍ଦାରୟନ୍ନିବ ମେଦିନୀମ୍ । ୨୯ ।
ଅଶୋକବନିକାମଧ୍ୟେ ମୈଥିଲୀ ନୀୟତାମିୟମ୍ ।
ତତ୍ରେୟଂ ରକ୍ଷ୍ୟତାଂ ଗୂଢ଼ଂ ଯୁଷ୍ମାଭିଃ ପରିବାରିତା । ୩୦ ।
ତତ୍ରୈନାଂ ତର୍ଜନୈର୍ଘୋରୈଃ ପୁନଃ ସାନ୍ତ୍ୱୈଶ୍ଚ ମୈଥିଲୀମ୍ ।
ଆନୟଧ୍ୱଂ ବଶଂ ସର୍ବା ବନ୍ୟାଂ ଗଜବଧୂମିବ । ୩୧ ।
ଇତି ପ୍ରତିସମାଦିଷ୍ଟା ରାକ୍ଷସ୍ୟୋ ରାବଣେନ ତାଃ ।
ଅଶୋକବନିକାଂ ଜଗ୍ମୁର୍ମୈଥିଲୀଂ ପ୍ରତିଗୃହ୍ୟ ତୁ । ୩୨ ।
ସର୍ବକାଲଫଳୈର୍ବୃକ୍ଷୈର୍ନାନାପୁଷ୍ପଫଳୈର୍ବୃତାମ୍ ।
ସର୍ବକାଲମଦୈଶ୍ଚାପି ଦ୍ୱିଜୈଃ ସମୁପସେବିତାମ୍ । ୩୩ ।
ସା ତୁ ଶୋକପରୀତାଙ୍ଗୀ ମୈଥିଲୀ ଜନକାତ୍ମଜା ।
ରାକ୍ଷସୀବଶମାପନ୍ନା ବ୍ୟାଘ୍ରୀଣାଂ ହରିଣୀ ଯଥା । ୩୪ ।
ଶୋକେନ ମହତା ଗ୍ରସ୍ତା ମୈଥିଲୀ ଜନକାତ୍ମଜା ।
ନ ଶର୍ମ ଲଭତେ ଭୀରୁଃ ପାଶବଦ୍ଧା ମୃଗୀ ଯଥା । ୩୫ ।

---

ଘୋରଦର୍ଶନ ରାଜା ରାବଣ ପାଦଭାରରେ ପୃଥିବୀକୁ ବିଦୀର୍ଣ୍ଣ କରିଦେଲାପରି କମ୍ପାଇ ଦେଇ ସେମାନଙ୍କୁ ପୁଣି କହିଲା । ୨୯ । "ତୁମେମାନେ ଏ ମୈଥିଳୀକୁ ଅଶୋକବନ ଭିତରକୁ ନେଇଯାଅ ଏବଂ ସେଠାରେ ଏହାକୁ ପରିବେଷ୍ଟନକରି ଗୂଢ଼ଭାବରେ ଜଗିରହ । ୩୦ । ବନ୍ୟହସ୍ତିନୀକୁ ଯେପରି ବଶୀଭୂତ କରାଯାଏ, ତୁମେମାନେ ସେହିପରି କେତେବେଳେ ଘୋର ତର୍ଜନଦ୍ୱାରା, ପୁଣି କେତେବେଳେ ସାନ୍ତ୍ୱନାବାକ୍ୟ ପ୍ରୟୋଗଦ୍ୱାରା ଏହାକୁ ବଶକୁ ଆଣ" । ୩୧ । ରାବଣକର୍ତ୍ତୃକ ଏହିପ୍ରକାର ଆଦିଷ୍ଟ ହୋଇ ସେହି ରାକ୍ଷସୀମାନେ ସୀତାଙ୍କୁ ଧରି ଅଶୋକବନକୁ ଗଲେ । ୩୨ । ସେହି ଅଶୋକବନ ସବୁ ଋତୁରେ ଫଳ ଦେଉଥିଲା ଏବଂ ନାନାବିଧ ପୁଷ୍ପଫଳଯୁକ୍ତ ବୃକ୍ଷମାନଙ୍କରେ ପୂର୍ଣ୍ଣ ହୋଇଥିଲା ଏବଂ ସବୁ ସମୟରେ ନାନାଜାତୀୟ ପ୍ରମତ୍ତ ପକ୍ଷୀମାନେ ତାହାକୁ ଆଶ୍ରୟକରି ରହିଥିଲେ । ୩୩ । ଶୋକାଭିଭୂତା ଜନକନନ୍ଦିନୀ ମୈଥିଳୀ ସେଠାରେ ବ୍ୟାଘ୍ରୀମାନଙ୍କମଧ୍ୟରେ ହରିଣୀପରି ରାକ୍ଷସୀମାନଙ୍କର ଅଧୀନରେ ରହିଲେ । ୩୪ । ଜନକନନ୍ଦିନୀ ସୀତା ପାଶବଦ୍ଧା ଭୀରୁ ମୃଗୀପରି ଘୋର-ଶୋକଗ୍ରସ୍ତା ହୋଇ ଲେଶମାତ୍ର ଶାନ୍ତି ପାଇଲେ ନାହିଁ । ୩୫ । ବିରୂପନୟନା

ନ ବିନ୍ଦତେ ତତ୍ର ତୁ ଶର୍ମ ମୈଥିଳୀ
ବିରୂପନେତ୍ରାଭିରତୀବ ତର୍ଜିତା ।
ପତିଂ ସ୍ମରନ୍ତୀ ଦୟିତଂ ଚ ଦେବରମ୍
ବିଚେତନାଭୂଦ୍ଭୟଶୋକପୀଡ଼ିତା । ୩୭ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ ଅରଣ୍ୟକାଣ୍ଡେ ବୈଦେହୀବଧୀକରଣମ୍
ନାମ ଷଟ୍ପଞ୍ଚାଶଃ ସର୍ଗଃ

---

ରାକ୍ଷସୀମାନଙ୍କଦ୍ୱାରା ଅତିଶୟ ତର୍ଜିତହୋଇ, ନିଜର ପ୍ରିୟ ସ୍ୱାମୀ ଦେବରଙ୍କୁ ସ୍ମରଣ କରି କରି ସୀତା ଭୟ ଏବଂ ଶୋକରେ ପ୍ରପୀଡ଼ିତ ଓ ଅଚେତନହୋଇ ସେଠାରେ ଲେଶମାତ୍ର ଶାନ୍ତି ପାଇଲେ ନାହିଁ । ୩୭ ।

# ସପ୍ତପଞ୍ଚାଶଃ ସର୍ଗଃ

## ଅନମିତ୍ତଦର୍ଶନମ୍

ରାକ୍ଷସଂ ମୃଗରୂପେଣ ଚରନ୍ତଂ କାମରୂପିଣମ୍ ।
ନିହତ୍ୟ ରାମୋ ମାରୀଚଂ ତୂର୍ଣଂ ପଥି ନ୍ୟବର୍ତ୍ତତେ । ୧ ।
ତସ୍ୟ ସଂତ୍ୱରମାଣସ୍ୟ ଦ୍ରଷ୍ଟୁକାମସ୍ୟ ମୈଥିଳୀମ୍ ।
କ୍ରୂରସ୍ୱନୋଽଥ ଗୋମାୟୁର୍ବିନନାଦାସ୍ୟ ପୃଷ୍ଠତଃ । ୨ ।
ସ ତସ୍ୟ ସ୍ୱରମାଜ୍ଞାୟ ଦାରୁଣଂ ଲୋମହର୍ଷଣମ୍ ।
ଚିନ୍ତୟାମାସ ଗୋମାୟୋଃ ସ୍ୱରେଣ ପରିଶଙ୍କିତଃ । ୩ ।
ଅଶୁଭଂ ବତ ମନ୍ୟେଽହଂ ଗୋମାୟୁର୍ବାଶତେ ଯଥା ।
ସ୍ୱସ୍ତି ସ୍ୟାଦପି ବୈଦେହ୍ୟା ରାକ୍ଷସୈର୍ଭକ୍ଷଣଂ ବିନା । ୪ ।
ମାରୀଚେନ ତୁ ବିଜ୍ଞାୟ ସ୍ୱରମାଲକ୍ଷ୍ୟ ମାମକମ୍ ।
ଆକ୍ରୁଷ୍ଟଂ ମୃଗରୂପେଣ ଲକ୍ଷ୍ମଣଃ ଶୃଣୁୟାଦ୍ ଯଦି । ୫ ।
ସ ସୌମିତ୍ରିଃ ସ୍ୱରଂ ଶ୍ରୁତ୍ୱା ତାଂ ଚ ହିତ୍ୱା ଚ ମୈଥିଳୀମ୍ ।
ତୟୈବ ପ୍ରହିତଃ କ୍ଷିପ୍ରଂ ମତ୍ସକାଶମିହୈଷ୍ୟତି । ୬ ।

---

## ୫୭ଶ ସର୍ଗ

( ରାମଙ୍କର ଅଶୁଭ ଲକ୍ଷଣଦର୍ଶନ )

ରାମ ମୃଗରୂପରେ ବିଚରଣ କରୁଥିବା କାମରୂପୀ ମାରୀଚକୁ ନିହତକରି ଶୀଘ୍ର ବାଟରେ ଫେରିଲେ । ୧ । ସେ ସୀତାଙ୍କୁ ଦେଖିବା ପାଇଁ ତର ତର ହୋଇ ଆସୁଥିବାବେଳେ ତାଙ୍କର ପଛଆଡ଼େ ଶୃଗାଳ କ୍ରୂରସ୍ୱରରେ ଶବ୍ଦକଲା । ୨ । ସେ ଶୃଗାଳର ଏହି ରୋମାଞ୍ଚକାରୀ ଦାରୁଣ ସ୍ୱର ଶୁଣି ଏବଂ ସେଥିରେ ଅତିଶୟ ଶଙ୍କିତ ହୋଇ ଚିନ୍ତା କରିବାକୁ ଲାଗିଲେ । ୩ । "ଏ ଶୃଗାଳ ଯେପରି ଶବ୍ଦ କରୁଛି, ସେଥିରୁ ବୋଧହେଉଛି, ନିଶ୍ଚୟ କୌଣସି ଅଶୁଭ ଘଟିଛି । ରାକ୍ଷସମାନଙ୍କଦ୍ୱାରା ଭକ୍ଷିତ ନ ହୋଇ ସୀତା କୁଶଳରେ ଥିଲେହିଁ ଭଲ । ୪ । ମୃଗରୂପୀ ମାରୀଚ ଜାଣି ଶୁଣି ମୋର ସ୍ୱର ଅନୁକରଣ କରି ଚିତ୍କାର କରିଥିଲା । ଲକ୍ଷ୍ମଣ କାଳେ ତାହା ଶୁଣିଥିବେ ! ।୫। ଲକ୍ଷ୍ମଣ ସେ ଶବ୍ଦ ଶୁଣି ଏବଂ ସୀତାଙ୍କଦ୍ୱାରା ପ୍ରେରିତହୋଇ, ତାଙ୍କୁ ଛାଡ଼ିଦେଇ ହୁଏତ ଶୀଘ୍ର ମୋ ପାଖକୁ ଏଠାକୁ ଚାଲିଆସିବେ ।୬। ନିଶ୍ଚୟ ରାକ୍ଷସମାନେ ଏକତ୍ର

ରାକ୍ଷସୈଃ ସହିତୈର୍ନୂନଂ ସୀତାୟା ଈପ୍ସିତୋ ବଧଃ ।
କାଞ୍ଚନଶ୍ଚ ମୃଗୋ ଭୂତ୍ୱା ବ୍ୟପନୀୟାଶ୍ରମାତ୍ତୁ ମାମ୍ । ୭ ।
ଦୂରଂ ନୀତ୍ୱା ତୁ ମାରୀଚୋ ରାକ୍ଷସୋଽଭୂଚ୍ଛରାହତଃ ।
ହା ଲକ୍ଷ୍ମଣ ହତୋଽସ୍ମୀତି ଯଦ୍‌ବାକ୍ୟଂ ବ୍ୟାଜହାର ହ । ୮ ।
ଅପି ସ୍ୱସ୍ତି ଭବେଦ୍ଦ୍ୱାଭ୍ୟାଂ ରହିତାଭ୍ୟାଂ ମୟା ବନେ ।
ଜନସ୍ଥାନନିମିତ୍ତଂ ହି କୃତବୈରୋଽସ୍ମି ରାକ୍ଷସୈଃ । ୯ ।
ନିମିତ୍ତାନି ଚ ଘୋରାଣି ଦୃଶ୍ୟନ୍ତେଽଦ୍ୟ ବହୂନି ଚ ।
ଇତ୍ୟେବଂ ଚିନ୍ତୟନ୍ ରାମଃ ଶ୍ରୁତ୍ୱା ଗୋମାୟୁନିଃସ୍ୱନମ୍ । ୧୦ ।
ଆତ୍ମନଶ୍ଚାପନୟନାନ୍ମୃଗରୂପେଣ ରକ୍ଷସା ।
ଆଜଗାମ ଜନସ୍ଥାନଂ ରାଘବଃ ପରିଶଙ୍କିତଃ । ୧୧ ।
ତଂ ଦୀନମାନସଂ ଦୀନମାସେଦୁର୍ମୃଗପକ୍ଷିଣଃ ।
ସବ୍ୟଂ କୃତ୍ୱା ମହାତ୍ମାନଂ ଘୋରାଂଶ୍ଚ ସସୃଜୁଃ ସ୍ୱରାନ୍ । ୧୨ ।
ତାନି ଦୃଷ୍ଟ୍ୱା ନିମିତ୍ତାନି ମହାଘୋରାଣି ରାଘବଃ ।
ନ୍ୟବର୍ତ୍ତତାଥ ତ୍ୱରିତୋ ଜବେନାଶ୍ରମମାତ୍ମନଃ । ୧୩ ।
ସ ତୁ ସୀତାଂ ବରାରୋହାଂ ଲକ୍ଷ୍ମଣଂ ଚ ମହାବଲମ୍ ।
ଆଜଗାମ ଜନସ୍ଥାନଂ ଚିନ୍ତୟନ୍ନେବ ରାଘବଃ । ୧୪ ।

---

ହୋଇ ସୀତାଙ୍କୁ ବଧ କରିବାକୁ ଅଭିଳାଷ କରିଛନ୍ତି । ସେଇଥିପାଇଁ ମାରୀଚ ସୁବର୍ଣ୍ଣମୃଗ ହୋଇ ମୋତେ ଆଶ୍ରମରୁ ଦୂରକୁ ଅପସାରିତ କରିନେଇ ଶେଷରେ ମୋର ଶରଦ୍ୱାରା ଆହତ ହୋଇ 'ହା ଲକ୍ଷ୍ମଣ ! ମୁଁ ମଲି' ବୋଲି ଯେଉଁ ସ୍ୱର ଉଚ୍ଚାରଣ କଲା, ସେଥିରେ ମୋର ଆଶଙ୍କା ହୁଏ ଯେ, ବନରେ ମୋଠାରୁ ବିଚ୍ଛିନ୍ନ ହୋଇ ସେ ଦୁହେଁ କୁଶଳରେ ଅଛନ୍ତି ତ ! ଏହି ଜନସ୍ଥାନ ଲାଗି ରାକ୍ଷସମାନଙ୍କ ସହିତ ମୋର ଶତ୍ରୁତା ହୋଇଅଛି । ୭-୯ । ବର୍ତ୍ତମାନ ବହୁତ ଘୋର ଦୁର୍ନିମିତ୍ତ ଦେଖାଯାଉଅଛି ।" ରାମ ଶୃଗାଳରବ ଶୁଣି ମୃଗରୂପୀ ରାକ୍ଷସ ଯେ ତାଙ୍କୁ ଦୂରକୁ ଅପସାରିତ କରି ନେଇଯାଇଥିଲା, ସେହିହେତୁରୁ ନାନା ଚିନ୍ତା କରି କରି ଅତିଶୟ ଶଙ୍କିତ ହୋଇ ଜନସ୍ଥାନକୁ ଫେରି ଆସିଲେ । ୧୦-୧୧ । ମନଦୁଃଖରେ ସେ ଅତିଶୟ ଦୁଃଖଗ୍ରସ୍ତ ହୋଇଥିଲେ । ମୃଗ ଏବଂ ପକ୍ଷୀମାନେ ସେତେବେଳେ ତାଙ୍କୁ ବାଆଡ଼େ ରଖି ତାଙ୍କ ନିକଟକୁ ଆସିଲେ ଏବଂ କଠୋର ସ୍ୱର କରିବାକୁ ଲାଗିଲେ । ୧୨ । ରାମ ଏହି ସମସ୍ତ ଭୟଙ୍କର ଦୁର୍ନିମିତ୍ତ ଦେଖି ସତ୍ୱର ଅତି-ବେଗରେ ନିଜ ଆଶ୍ରମକୁ ଫେରିଲେ । ୧୩ । ସେ ମହାବଳୀ ଲକ୍ଷ୍ମଣ ଏବଂ ବରାରୋହା ସୀତାଙ୍କ କଥାହିଁ ଚିନ୍ତା କରି କରି ଜନସ୍ଥାନ ଆଡ଼କୁ ଆସିଲେ । ୧୪ । ଅନନ୍ତର

ତତୋ ଲକ୍ଷ୍ମଣମାୟାନ୍ତଂ ଦଦର୍ଶ ବିଗତପ୍ରଭମ୍ ।
ତତୋଽବିଦୂରେ ରାମେଣ ସମୀୟାୟ ସ ଲକ୍ଷ୍ମଣଃ । ୧୫ ।
ବିଷଣ୍ଣଃ ସୁବିଷଣ୍ଣେନ ଦୁଃଖିତୋ ଦୁଃଖଭାଗିନା ।
ସଂଜଗର୍ହେଽଥ ତଂ ଭ୍ରାତା ଦୃଷ୍ଟ୍ୱା ଲକ୍ଷ୍ମଣମାଗତମ୍ । ୧୬ ।
ବିହାୟ ସୀତାଂ ବିଜନେ ବନେ ରାକ୍ଷସସେବିତେ ।
ଗୃହୀତ୍ୱା ଚ କରଂ ସବ୍ୟଂ ଲକ୍ଷ୍ମଣଂ ରଘୁନନ୍ଦନଃ । ୧୭ ।
ଉବାଚ ମଧୁରୋଦର୍କମିଦଂ ବଚନମାର୍ତ୍ତବତ୍ ।
ଅହୋ ଲକ୍ଷ୍ମଣ ଗର୍ହ୍ୟଂ ତେ କୃତଂ ଯସ୍ତ୍ୱଂ ବିହାୟ ତାମ୍ । ୧୮ ।
ସୀତାମିହାଗତଃ ସୌମ୍ୟ କଚ୍ଚିତ୍ ସ୍ୱସ୍ତି ଭବେଦିହ ।
ନ ମେଽସ୍ତି ସଂଶୟୋ ବୀର ସର୍ବଥା ଜନକାତ୍ମଜା । ୧୯ ।
ବିନଷ୍ଟା ଭକ୍ଷିତା ବାପି ରାକ୍ଷସୈର୍ବନଚାରିଭିଃ ।
ଅଶୁଭାନ୍ୟେବ ଭୂୟିଷ୍ଠଂ ଯଥା ପ୍ରାଦୁର୍ଭବନ୍ତି ମେ । ୨୦ ।
ଅପି ଲକ୍ଷ୍ମଣ ସୀତାୟାଃ ସାମଗ୍ର୍ୟଂ ପ୍ରାପ୍ନୁୟାବହେ ।
ଜୀବନ୍ତ୍ୟାଃ ପୁରୁଷବ୍ୟାଘ୍ର ସୁତାୟା ଜନକସ୍ୟ ବୈ । ୨୧ ।
ଯଥା ବୈ ମୃଗସଙ୍ଘାଶ୍ଚ ଗୋମାୟୁଶ୍ଚୈବ ଭୈରବମ୍ ।
ବାଶନ୍ତେ ଶକୁନାଶ୍ଚାପି ପ୍ରଦୀପ୍ତାମଭିତୋ ଦିଶମ୍ । ୨୨ ।

---

ସେ ଦେଖିଲେ ଯେ ଲକ୍ଷ୍ମଣ ପ୍ରଭାହୀନ ହୋଇ ଆସୁଅଛନ୍ତି । ଦୁଃଖିତ ଏବଂ ବିଷଣ୍ଣ ଲକ୍ଷ୍ମଣ ଅଳ୍ପ ଦୂରରେ ଅତିବିଷଣ୍ଣ ଓ ଦୁଃଖିତ ରାମଙ୍କ ସହିତ ମିଳିତ ହେଲେ । ଲକ୍ଷ୍ମଣ ରାକ୍ଷସସେବିତ ନିର୍ଜନ ବନରେ ସୀତାଙ୍କୁ ଛାଡ଼ିଦେଇ ଚାଲି ଆସିଥିବାରୁ ଭ୍ରାତା ରାମ ତାଙ୍କୁ ବିଶେଷ ଭର୍ତ୍ସନାକଲେ । ରଘୁନନ୍ଦନ ରାମ ଲକ୍ଷ୍ମଣଙ୍କର ବାମହସ୍ତ ଧାରଣକରି କାତରଭାବରେ ଶ୍ରୁତିକଠୋର ଅଥଚ ପରିଣାମ ମଧୁର ବାକ୍ୟରେ କହିଲେ । "ହେ ସୌମ୍ୟ ଲକ୍ଷ୍ମଣ ! ସୀତାଙ୍କୁ ଛାଡ଼ିଦେଇ ଏଠାକୁ ଚାଲି ଆସିଲ; ଏହା ବଡ଼ ଅନ୍ୟାୟ କରିଛ । ଏହାଦ୍ୱାରା କ'ଣ କେବେ ମଙ୍ଗଳ ହେବ ? ହେ ବୀର ! ମୋ ସମକ୍ଷରେ ଯେପରି ବହୁସଂଖ୍ୟକ ଅଶୁଭ ଲକ୍ଷଣ ପ୍ରାଦୁର୍ଭୂତ ହେଉଛି, ସେଥିରୁ ମୋର ଆଉ ସନ୍ଦେହ ହେଉ ନାହିଁ ଯେ, ଜନକନନ୍ଦିନୀ ସୀତା ବନଚାରୀ ରାକ୍ଷସମାନଙ୍କଦ୍ୱାରା ଭକ୍ଷିତ କିମ୍ବା ବିନଷ୍ଟହୋଇ ଅଛନ୍ତି । ୧୫-୨୦ । ହେ ନରଶ୍ରେଷ୍ଠ ଲକ୍ଷ୍ମଣ ! ସତେ କ'ଣ ଆମେ ଦୁହେଁ ଜନକନନ୍ଦିନୀ ସୀତାଙ୍କୁ ସର୍ବାଙ୍ଗଶୁଭରେ ପାଇବା ? । ୨୧ । ହେ ମହାବଳ ! ମୃଗପଲ, ଗୋମାୟୁ ତଥା ପକ୍ଷୀମାନେ ପୂର୍ବଦିଗକୁ

ଅପି ସ୍ୱସ୍ତି ଭବେତ୍ତସ୍ୟା ରାଜପୁତ୍ର୍ୟା ମହାବଲ । ୨୩।
ଇଦଂ ହି ରକ୍ଷୋ ମୃଗସଂନ୍ନିକାଶମ୍
ପ୍ରଲୋଭ୍ୟ ମାଂ ଦୂରମନୁପ୍ରୟାତମ୍ ।
ହତଂ କଥଂଚିନ୍ମହତା ଶ୍ରମେଣ
ସ ରାକ୍ଷସୋଽଭୂନ୍ମ୍ରିୟମାଣ ଏବ । ୨୪ ।
ମନଶ୍ଚ ମେ ଦୀନମିହାପ୍ରହୃଷ୍ଟମ୍
ଚକ୍ଷୁଶ୍ଚ ସବ୍ୟଂ କୁରୁତେ ବିକାରମ୍ ।
ଅସଂଶୟଂ ଲକ୍ଷ୍ମଣ ନାସ୍ତି ସୀତା
ହୃତା ମୃତା ବା ପଥି ବର୍ତ୍ତତେ ବା । ୨୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ ଅରଣ୍ୟକାଣ୍ଡେଽନିମିତ୍ତଦର୍ଶନମ୍
ନାମ ସପ୍ତପଞ୍ଚାଶଃ ସର୍ଗଃ

———

ମହାଁକର ଯେପରି ଭୟଙ୍କର ରବରେ ଶବ୍ଦ କରୁଛନ୍ତି, ସେଥିରେଁ ରାଜପୁତ୍ରୀ ଜାନକୀ ଆଜି କ'ଣ କୁଶଳରେ ଅଛନ୍ତି ? ୨୨-୨୩। ଏହି ମୃଗରୂପୀ ରାକ୍ଷସ ମୋତେ ପ୍ରଲୋଭିତକରି ଦୂରକୁ ନେଇଯାଇ ଶେଷରେ ବହୁ ପରିଶ୍ରମରେ କୌଣସିମତେ ନିହତ ହେଲା । ମଲାବେଳକୁ ସେ ରାକ୍ଷସରୂପ ଧାରଣକଲା । ୨୪ । ମୋର ମନ ବର୍ତ୍ତମାନ ନିତାନ୍ତ ଆନନ୍ଦରହିତ ଏବଂ ଅବସନ୍ନ ହୋଇପଡ଼ିଅଛି, ବାମଚକ୍ଷୁ ମଧ୍ୟ ସ୍ପନ୍ଦିତ ହେଉଅଛି । ହେ ଲକ୍ଷ୍ମଣ ! ସୀତା ନିଶ୍ଚୟ ଆଜି ନାହାନ୍ତି; ସେ ହୁଏତ ଅପହୃତ ହୋଇଛନ୍ତି ବା ମୃତ ହୋଇଛନ୍ତି ବା ବାଟରେ କେଉଁଠାରେ ବସିଛନ୍ତି" । ୨୫ ।

———

# ଅଷ୍ଟପଞ୍ଚାଶଃ ସର୍ଗଃ

## ରାମପ୍ରତ୍ୟାଗମନମ୍

ସ ଦୃଷ୍ଟ୍ବା ଲକ୍ଷ୍ମଣଂ ଦୀନଂ ଶୂନ୍ୟଂ ଦଶରଥାତ୍ମଜଃ ।
ପର୍ଯ୍ୟପୃଚ୍ଛତ ଧର୍ମାତ୍ମା ବୈଦେହୀମାଗତଂ ବିନା । ୧ ।
ପ୍ରସ୍ଥିତଂ ଦଣ୍ଡକାରଣ୍ୟଂ ଯା ମାମନୁଜଗାମ ହ ।
କ୍ୱ ସା ଲକ୍ଷ୍ମଣ ବୈଦେହୀ ଯାଂ ହିତ୍ୱା ତ୍ୱମିହାଗତଃ । ୨ ।
ରାଜ୍ୟଭ୍ରଷ୍ଟସ୍ୟ ଦୀନସ୍ୟ ଦଣ୍ଡକାନ୍ ପରିଧାବତଃ ।
କ୍ୱ ସା ଦୁଃଖସହାୟା ମେ ବୈଦେହୀ ତନୁମଧ୍ୟମା । ୩ ।
ଯାଂ ବିନା ନୋତ୍ସହେ ବୀର ମୁହୂର୍ତ୍ତମପି ଜୀବିତୁମ୍ ।
କ୍ୱ ସା ପ୍ରାଣସହାୟା ମେ ସୀତା ସୁରସୁତୋପମା । ୪ ।
ପତିତ୍ୱମମରାଣାଂ ବା ପୃଥିବ୍ୟାଶ୍ଚାପି ଲକ୍ଷ୍ମଣ ।
ତାଂ ବିନା ତପନୀୟାଭାଂ ନେଚ୍ଛେୟଂ ଜନକାତ୍ମଜାମ୍ । ୫ ।
କଚ୍ଚିଜ୍ଜୀବତି ବୈଦେହୀ ପ୍ରାଣୈଃ ପ୍ରିୟତରା ମମ ।
କଚ୍ଚିତ୍ ପ୍ରବ୍ରାଜନଂ ସୌମ୍ୟ ନ ମେ ମିଥ୍ୟା ଭବିଷ୍ୟତି । ୬ ।

---

## ୫୮ଶ ସର୍ଗ

### (ରାମଙ୍କର ଆଶ୍ରମକୁ ପ୍ରତ୍ୟାଗମନ)

ଦଶରଥନନ୍ଦନ ଧର୍ମାତ୍ମା ରାମ ଲକ୍ଷ୍ମଣଙ୍କୁ ଦୀନଭାବରେ ଶୂନ୍ୟମନରେ ସୀତାଙ୍କ ବ୍ୟତୀତ ଆସିଥିବାର ଦେଖି ବ୍ୟସ୍ତଭାବରେ ପୁଣି ପଚାରିବାକୁ ଲାଗିଲେ । । ୧ । ହେ ଲକ୍ଷ୍ମଣ ! ମୁଁ ଦଣ୍ଡକାରଣ୍ୟକୁ ପ୍ରସ୍ଥାନ କରିବାରୁ ଯେ ମୋର ଅନୁଗମନ କରିଥିଲେ ଏବଂ ଯାହାଙ୍କୁ ଛାଡ଼ିଦେଇ ତୁମେ ଏଠାକୁ ଆସିଛ, ସେ ବୈଦେହୀ କେଉଁଠାରେ ଅଛନ୍ତି ? । ୨ । ମୁଁ ରାଜ୍ୟଭ୍ରଷ୍ଟ ହୋଇ ଦୀନଭାବରେ ଦଣ୍ଡକାରଣ୍ୟରେ ଧାବମାନ ହେଲାବେଳେ ଯେ ମୋର ଦୁଃଖସହାୟ ଥିଲେ ସେହି କୃଶକଟୀ ବୈଦେହୀ ଏବେ କେଉଁଠାରେ ? ।୩ । ହେ ବୀର ! ଯାହାଙ୍କ ବିହୁନରେ ମୁହୂର୍ତ୍ତେମାତ୍ର ଜୀବିତ ରହିବାକୁ ଇଚ୍ଛା ହେଉ ନାହିଁ, ମୋର ପ୍ରାଣସହାୟା ସେହି ଦେବକନ୍ୟାସଦୃଶୀ ସୀତା କାହାନ୍ତି ? ।୪। ହେ ଲକ୍ଷ୍ମଣ ! ସେହି ହେମଗୌରୀ ଜନକନନ୍ଦିନୀଙ୍କ ବିହୁନରେ ମୁଁ ଦେବତାମାନଙ୍କର କିମ୍ବା ଏ ସମଗ୍ର ପୃଥିବୀର ପ୍ରଭୁତ୍ୱ ମଧ୍ୟ କାମନା କରୁ ନାହିଁ । । ୫ । ମୋର ପ୍ରାଣରୁ ବଳି ପ୍ରିୟତରା ବୈଦେହୀ ସତେ କ'ଣ ଜୀବିତ ଅଛନ୍ତି ?

ସୀତାନିମିତ୍ତଂ ସୌମିତ୍ରେ ମୃତେ ମୟି ଗତେ ତ୍ୱୟି ।
କଚ୍ଚିତ୍‌ସକାମା ସୁଖିତା କୈକେୟୀ ସା ଭବିଷ୍ୟତି । ୭ ।
ସପୁତ୍ରରାଜ୍ୟାଂ ସିଦ୍ଧାର୍ଥାଂ ମୃତପୁତ୍ରା ତପସ୍ୱିନୀ ।
ଉପସ୍ଥାସ୍ୟତି କୌସଲ୍ୟା କଚ୍ଚିନ୍ନ ସୌମ୍ୟ ନ କୈକେୟୀମ୍ । ୮ ।
ଯଦି ଜୀବତି ବୈଦେହୀ ଗମିଷ୍ୟାମ୍ୟାଶ୍ରମଂ ପୁନଃ ।
ସୁବୃତ୍ତା ଯଦି ବୃତ୍ତା ସା ପ୍ରାଣାଂସ୍ତ୍ୟକ୍ଷ୍ୟାମି ଲକ୍ଷ୍ମଣ । ୯ ।
ଯଦି ମାମାଶ୍ରମଗତଂ ବୈଦେହୀ ନାଭିଭାଷତେ ।
ପୁନଃ ପ୍ରହସିତା ସୀତା ବିନଶିଷ୍ୟାମି ଲକ୍ଷ୍ମଣ । ୧୦ ।
ବ୍ରୂହି ଲକ୍ଷ୍ମଣ ବୈଦେହୀ ଯଦି ଜୀବତି ବା ନ ବା ।
ତ୍ୱୟି ପ୍ରମତ୍ତେ ରକ୍ଷୋଭିର୍ଭକ୍ଷିତା ବା ତପସ୍ୱିନୀ । ୧୧ ।
ସୁକୁମାରୀ ଚ ବାଲା ଚ ନିତ୍ୟଂ ଚାଦୁଃଖଦର୍ଶିନୀ ।
ମଦ୍‌ବିୟୋଗେନ ବୈଦେହୀ ବ୍ୟକ୍ତଂ ଶୋଚତି ଦୁର୍ମନାଃ । ୧୨ ।
ସର୍ବଥା ରକ୍ଷସା ତେନ ଜିହ୍ମେନ ସୁଦୁରାତ୍ମନା ।
ବଦତା ଲକ୍ଷ୍ମଣେତ୍ୟୁଚ୍ଚୈସ୍ତବାପି ଜନିତଂ ଭୟମ୍ । ୧୩ ।

---

ହେ ସୌମ୍ୟ ! ମୋର ଏ ବନବାସବ୍ରତ ନିଷ୍ଫଳ ହୋଇଯିବ ନାହିଁ ତ ? । ୬ । ହେ ସୌମିତ୍ରେ ! ସୀତାଙ୍କ ଲାଗି ମୁଁ ମରିଗଲେ ଏବଂ ତୁମେ ଫେରିଗଲେ କୈକେୟୀ କଣ ସଫଳମନୋରଥ ଏବଂ ସୁଖୀ ହେବେ ? ୭ । ହେ ସୌମ୍ୟ ! କୈକେୟୀ ପୁତ୍ରର ରାଜ୍ୟପ୍ରାପ୍ତି ଦ୍ୱାରା ସିଦ୍ଧକାମ ହେଲେ, ମୃତପୁତ୍ରା ଦୁଃଖିନୀ ମୋର ମାତା କୌଶଲ୍ୟାଙ୍କୁ କ'ଣ ତାଙ୍କର ସେବା କରିବାକୁ ପଡ଼ିବ ନାହିଁ ? । ୮ । ହେ ଲକ୍ଷ୍ମଣ ! ଯଦି ବୈଦେହୀ ଜୀବିତ ଥିବେ, ତେବେ ମୁଁ ପୁନର୍ବାର ଆଶ୍ରମକୁ ଯିବି । ଯଦି ସେ ସଚ୍ଚରିତ୍ରା ମରି ଯାଇଥାନ୍ତି, ତେବେ ମୁଁ ନିଶ୍ଚୟ ପ୍ରାଣତ୍ୟାଗ କରିବି ।୯। ହେ ଲକ୍ଷ୍ମଣ ! ମୁଁ ଆଶ୍ରମରେ ପହଞ୍ଚିଲେ ଚନ୍ଦ୍ରବଦନା ସୀତା ଯଦି ହସି ହସି ମୋ ସଙ୍ଗରେ କଥାବାର୍ତ୍ତା ନ କରନ୍ତି, ତାହାହେଲେ ମୋର ବିନାଶ ଅନିବାର୍ଯ୍ୟ ।୧୦। ହେ ଲକ୍ଷ୍ମଣ ! ସୀତା ଜୀବିତ ଅଛନ୍ତି କି ନାହିଁ କହ । ତୁମ୍ଭର ଅସାବଧାନତା ଫଳରେ ସେ ଅସହାୟାଙ୍କୁ ରାକ୍ଷସମାନେ ଭକ୍ଷଣ କରିପକାଇ ନାହାନ୍ତି ତ ? ।୧୧। ବୈଦେହୀ ସୁକୁମାରୀ ବାଳିକା ଏବଂ ଦୁଃଖଭୋଗରେ ଅନଭ୍ୟସ୍ତା । ଏବେ ମୋ ବିରହରେ ସେ ଅତିଶୟ ଦୁର୍ମନା ହୋଇ ନିଶ୍ଚୟ ଶୋକ କରୁଅଛନ୍ତି । ୧୨ । ଅତି ଦୁରାତ୍ମା ସେହି କପଟୀ ରାକ୍ଷସ 'ଲକ୍ଷ୍ମଣ' ବୋଲି ଉଚ୍ଚୈଃସ୍ୱରରେ ଚିତ୍କାର କରିବାଦ୍ୱାରା ତୁମ ମନରେ ସର୍ବଥା

ଶ୍ରୁତସ୍ତୁ ଶଙ୍କେ ବୈଦେହ୍ୟା ସ ସ୍ୱରଃ ସଦୃଶୋ ମମ ।
ତ୍ରସ୍ତୟା ପ୍ରେଷିତସ୍ତ୍ୱଂ ଚ ଦ୍ରଷ୍ଟୁଂ ମାଂ ଶୀଘ୍ରମାଗତଃ । ୧୪ ।
ସର୍ବଥା ତୁ କୃତଂ କଷ୍ଟଂ ସୀତାମୁତ୍ସୃଜତା ବନେ ।
ପ୍ରତିକର୍ତ୍ତୁଂ ନୃଶଂସାନାଂ ରକ୍ଷସାଂ ଦତ୍ତମନ୍ତରମ୍ । ୧୫ ।
ଦୁଃଖିତାଃ ଖରଘାତେନ ରାକ୍ଷସାଃ ପିଶିତାଶନାଃ ।
ତୈଃ ସୀତା ନିହତା ଘୋରୈର୍ଭବିଷ୍ୟତି ନ ସଂଶୟଃ । ୧୬ ।
ଅହୋଽସ୍ମିନ୍ ବ୍ୟସନେ ମଗ୍ନଃ ସର୍ବଥା ଶତ୍ରୁସୂଦନ ।
କିଂ ତ୍ୱିଦାନୀଂ କରିଷ୍ୟାମି ଶଙ୍କେ ପ୍ରାପ୍ତବ୍ୟମୀଦୃଶମ୍ । ୧୭ ।
ଇତି ସୀତାଂ ବରାରୋହାଂ ଚିନ୍ତୟନ୍ନେବ ରାଘବଃ ।
ଆଜଗାମ ଜନସ୍ଥାନଂ ତ୍ୱରୟା ସହଲକ୍ଷ୍ମଣଃ । ୧୮ ।

ବିଗର୍ହମାଣୋଽନୁଜମାର୍ତ୍ତରୂପମ୍
କ୍ଷୁଧା ଶ୍ରମାଚ୍ଚୈବ ପିପାସୟା ଚ ।
ବିନିଃଶ୍ୱସନ୍ ଶୁଷ୍କମୁଖୋ ବିବର୍ଣ୍ଣଃ
ପ୍ରତିଶ୍ରୟଂ ପ୍ରାପ୍ୟ ସମୀକ୍ଷ୍ୟ ଶୂନ୍ୟମ୍ । ୧୯।

---

ଭୟଜାତ କରାଇ ଦେଇଅଛୁ । ୧୩ । ମୋର ଆଶଙ୍କା ହୁଏ ମୋ'ର ସ୍ୱରସଦୃଶ ସେହି ସ୍ୱର ଶୁଣି ବୈଦେହୀ ତ୍ରସ୍ତ ହୋଇ ତୁମକୁ ପଠାଇ ଦେଇଛନ୍ତି ଏବଂ ତୁମେ ମୋତେ ଦେଖିବା ପାଇଁ ଶୀଘ୍ର ଏଠାକୁ ଚାଲିଆସିଛ । ୧୪ । ତୁମେ ସୀତାଙ୍କୁ ବନରେ ଛାଡ଼ିଦେଇ ଅତି କଷ୍ଟକର କାର୍ଯ୍ୟ କରିଅଛ । ନୃଶଂସ ରାକ୍ଷସମାନେ ଆମ ଉପରେ ପ୍ରତିହିଂସା ନେବାପାଇଁ ତୁମେ ସେମାନଙ୍କୁ ସୁଯୋଗ ଦେଇଅଛ । ୧୫ । ଖରର ମୃତ୍ୟୁଦ୍ୱାରା ମାଂସଭୋଜୀ ରାକ୍ଷସମାନେ ଦୁଃଖିତ ହୋଇଛନ୍ତି । ସେହି ଘୋର ରାକ୍ଷସମାନଙ୍କଦ୍ୱାରା ସୀତା ନିହତ ହୋଇଥିବେ, ଏଥିରେ ସନ୍ଦେହ ନାହିଁ । ୧୬ । ଆହା ! ହେ ଶତ୍ରୁସୂଦନ ଲକ୍ଷ୍ମଣ ! ମୁଁ ସର୍ବଥା ବିପଦରେ ମଗ୍ନ ହୋଇଅଛି । ମୁଁ ଏବେ କ'ଣ କରିବି ! ଏ ବିପଦ ଅବଶ୍ୟମ୍ଭାବୀ ବୋଲି ମୋର ଆଶଙ୍କା ହୁଏ" । ୧୭ । ରାମ ଏହିପରିଭାବରେ ବରାରୋହା ସୀତାଙ୍କ କଥା ଚିନ୍ତା କରି କରି ଲକ୍ଷ୍ମଣଙ୍କ ସହିତ ତର ତର ହୋଇ ଜନସ୍ଥାନକୁ ଫେରିଆସିଲେ । ୧୮ । କ୍ଷୁଧା, ପିପାସା ଏବଂ ପରିଶ୍ରମରେ ତାଙ୍କର ମୁଖମଣ୍ଡଳ ଶୁଷ୍କ ହୋଇଯାଇଥିଲା । ସେ ବିଷଣ୍ଣମନରେ ଦୀର୍ଘ ନିଃଶ୍ୱାସ ତ୍ୟାଗକରି ଓ ଦୁଃଖାର୍ତ୍ତ ଅନୁଜ ଲକ୍ଷ୍ମଣଙ୍କୁ ଭର୍ତ୍ସନାକରି ଆଶ୍ରମକୁ

ସ୍ୱମାଶ୍ରମଂ ସଂପ୍ରବଗାହ୍ୟ ବୀରୋ
ବିହାରଦେଶାନନୁସୃତ୍ୟ କାଂଶ୍ଚିତ୍ ।
ଏତତ୍ତଦିତ୍ୟେବ ନିବାସଭୂମୌ
ପ୍ରହୃଷ୍ଟରୋମା ବ୍ୟଥିତୋ ବଭୂବ । ୨୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ରାମପ୍ରତ୍ୟାଗମନମ୍
ନାମ ଅଷ୍ଟପଞ୍ଚାଶଃ ସର୍ଗଃ

---

ଆସି ତାହାକୁ ଶୂନ୍ୟ ଦେଖିଲେ । ୧୯ । ଅନନ୍ତର ବୀର ରାମ ଆଶ୍ରମମଧ୍ୟରେ ପ୍ରବେଶ କରି ତାଙ୍କ ଆବାସଭୂମି ନିକଟରେ କ୍ରୀଡ଼ାସ୍ଥାନମାନ ସବୁ ଅନୁସନ୍ଧାନ କରିବାକୁ ଲାଗିଲେ ଏବଂ 'ଯାହା କହୁଥିଲି ତାହାହିଁ ହେଲା' ବୋଲି କହି ଅତିଶୟ ବ୍ୟଥିତ ହେଲେ ଓ ତାଙ୍କର ରୋମ ଟାଙ୍କୁରି ଉଠିଲା । ୨୦ ।

# ଏକୋନଷଷ୍ଟିତମଃ ସର୍ଗଃ

## ଲକ୍ଷ୍ମଣାଗମନବିଗର୍ହଣମ୍

ଅଥାଶ୍ରମାଦୁପାବୃତ୍ତମନ୍ତରା ରଘୁନନ୍ଦନଃ ।
ପରିପପ୍ରଚ୍ଛ ସୌମିତ୍ରିଂ ରାମୋ ଦୁଃଖାର୍ଦ୍ଦିତଂ ବଚଃ । ୧ ।
ତମୁବାଚ କିମର୍ଥଂ ତ୍ୱମାଗତୋଽପାସ୍ୟ ମୈଥିଲୀମ୍ ।
ଯଦା ସା ତବ ବିଶ୍ୱାସାଦ୍ବନେ ବିରହିତା ମୟା । ୨ ।
ଦୃଷ୍ଟ୍ୱୈବାଭ୍ୟାଗତଂ ତ୍ୱାଂ ମେ ମୈଥିଲୀଂ ତ୍ୟଜ୍ୟ ଲକ୍ଷ୍ମଣ ।
ଶଙ୍କମାନଂ ମହତ୍ପାପଂ ଯତ୍ସତ୍ୟଂ ବ୍ୟଥିତଂ ମନଃ । ୩ ।
ସ୍ଫୁରତେ ନୟନଂ ସବ୍ୟଂ ବାହୁଶ୍ଚ ହୃଦୟଂ ଚ ମେ ।
ଦୃଷ୍ଟ୍ୱା ଲକ୍ଷ୍ମଣ ଦୂରେ ତ୍ୱାଂ ସୀତାବିରହିତଂ ପଥି । ୪ ।
ଏବମୁକ୍ତସ୍ତୁ ସୌମିତ୍ରିର୍ଲକ୍ଷ୍ମଣଃ ଶୁଭଲକ୍ଷଣଃ ।
ଭୂୟୋ ଦୁଃଖସମାବିଷ୍ଟୋ ଦୁଃଖିତଂ ରାମମବ୍ରବୀତ୍ । ୫ ।
ନ ସ୍ୱୟଂ କାମକାରେଣ ତାଂ ତ୍ୟକ୍ତ୍ୱାହମିହାଗତଃ ।
ପ୍ରଚୋଦିତସ୍ତୟୈବୋଗ୍ରୈସ୍ତ୍ୱତ୍ସକାଶମିହାଗତଃ । ୬ ।

---

## ୫୯ତମ ସର୍ଗ

( ଲକ୍ଷ୍ମଣଙ୍କ ଭର୍ତ୍ସନା )

ଆଶ୍ରମରୁ ଚାଲି ଆସିଥିବା ଲକ୍ଷ୍ମଣଙ୍କୁ ରଘୁନନ୍ଦନ ରାମ ଦୁଃଖିତହୋଇ ବାଟରେ ଏହି କଥା ପଚାରିଲେ । ୧ । ସେ ତାଙ୍କୁ କହିଲେ, "ମୁଁ ଯେତେବେଳେ ତୁମର ବିଶ୍ୱାସରେ ସୀତାଙ୍କୁ ବନରେ ଛାଡ଼ି ଆସିଥିଲି, ସେପରି ଅବସ୍ଥାରେ ତୁମେ କାହିଁକି ତାଙ୍କୁ ଛାଡ଼ିଦେଇ ଆସିଲ ?। ୨ । ହେ ଲକ୍ଷ୍ମଣ ! ତୁମେ ଯେ ସୀତାଙ୍କୁ ଛାଡ଼ି ଆସିଛ, ଏହା ଦେଖିବାମାତ୍ରେ ମୋର ମନ ବାସ୍ତବିକ ମହା ଅନିଷ୍ଟ ଆଶଙ୍କାକରି ବ୍ୟଥିତ ହୋଇ ପଡ଼ୁଅଛି । ୩ । ହେ ଲକ୍ଷ୍ମଣ ! ତୁମକୁ ଦୂରରୁ ବାଟରେ ସୀତାଙ୍କ ବ୍ୟତୀତ ଏକାକୀ ଆସୁଥିବାର ଦେଖି ମୋର ଚକ୍ଷୁ, ବାମବାହୁ ଏବଂ ହୃଦୟର ବାମଭାଗ ସ୍ପନ୍ଦିତ ହେଉଅଛି" । ୪ । ସେ ଏହିପରି କହିବାରୁ ଶୁଭଲକ୍ଷଣ ଲକ୍ଷ୍ମଣ ଅତିଶୟ ଦୁଃଖାଭିଭୂତ ହୋଇ ଦୁଃଖିତ ରାମଙ୍କୁ କହିଲେ । ୫ । "ମୁଁ ନିଜେ ଇଚ୍ଛାକରି ତାଙ୍କୁ ଛାଡ଼ି ଏଠାକୁ ଆସି ନାହିଁ । ତାଙ୍କରିକର୍ତ୍ତୃକ ଅତି ଉତ୍କଟ ବାକ୍ୟରେ ପ୍ରେରିତ ହେବାରୁହିଁ

ଆର୍ଯେ୍ୟଣେବ ପରିକ୍ରୁଷ୍ଟଂ ହା ସୀତେ ଲକ୍ଷ୍ମଣେତି ଚ ।
ପରିତ୍ରାହୀତି ଯଦ୍‌ବାକ୍ୟଂ ମୈଥିଲ୍ୟାସ୍ତଚ୍ଛ୍ରୁତଂ ଗତମ୍ । ୭ ।
ସା ତମାର୍ତସ୍ୱରଂ ଶ୍ରୁତ୍ୱା ତବ ସ୍ନେହେନ ମୈଥିଳୀ ।
ଗଚ୍ଛ ଗଚ୍ଛେତି ମାମାହ ରୁଦତୀ ଭୟବିହ୍ୱଳା । ୮ ।
ପ୍ରଚୋଦ୍ୟମାନେନ ମୟା ଗଚ୍ଛେତି ବହୁଶସ୍ତୟା ।
ପ୍ରତ୍ୟୁକ୍ତା ମୈଥିଳୀ ବାକ୍ୟମିଦଂ ତ୍ୱତ୍ପ୍ରତ୍ୟୟାନ୍ୱିତମ୍ । ୯ ।
ନ ତତ୍ପଶ୍ୟାମ୍ୟହଂ ରକ୍ଷୋ ଯଦସ୍ୟ ଭୟମାବହେତ୍ ।
ନିର୍ବୃତା ଭବ ନାସ୍ତ୍ୟେତତ୍ କେନାପ୍ୟେବମୁଦାହୃତମ୍ । ୧୦ ।
ବିଗର୍ହିତଂ ଚ ନୀଚଂ ଚ କଥମାର୍ଯୋଽଭିଧାସ୍ୟତି ।
ତ୍ରାହୀତି ବଚନଂ ସୀତେ ଯସ୍ତ୍ରାୟେତ୍ତ୍ରିଦଶାନପି । ୧୧ ।
କିଂ ନିମିତ୍ତଂ ତୁ କେନାପି ଭ୍ରାତୁରାଲମ୍ବ୍ୟ ମେ ସ୍ୱରମ୍ ।
ରାକ୍ଷସେନେରିତଂ ବାକ୍ୟଂ ତ୍ରାହି ତ୍ରାହୀତି ଶୋଭନେ । ୧୨ ।
ବିସ୍ୱରଂ ବ୍ୟାହୃତଂ ବାକ୍ୟଂ ଲକ୍ଷ୍ମଣ ତ୍ରାହି ମାମିତି ।
ନ ଭବତ୍ୟା ବ୍ୟଥା କାର୍ଯା କୁନାରୀଜନସେବିତା । ୧୩ ।

---

ମୁଁ ତୁମ ନିକଟକୁ ଏଠାକୁ ଆସିଛି । ୭ । 'ହା ସୀତେ, ହା ଲକ୍ଷ୍ମଣ ! ତ୍ରାହି କର' ବୋଲି ଆପଣ ଯେଉଁ ଚିତ୍କାରକଲେ ତାହା ମୈଥିଳୀଙ୍କର କାନରେ ପଡ଼ିଲା ।୮। ସେ ସେହି ଆର୍ତ୍ତସ୍ୱର ଶୁଣି ତୁମ ପ୍ରତି ସ୍ନେହବଶତଃ ଭୟବିହ୍ୱଳହୋଇ କାନ୍ଦି କାନ୍ଦି 'ଯାଅ ଯାଅ' ବୋଲି ମୋତେ କହିଲେ । ୮ । ସେ ବାରମ୍ବାର ଏହିପରି ଯାଅ ବୋଲି ମୋତେ ତଗିଡ଼ବାରୁ ତୁମପ୍ରତି ପୂର୍ଣ୍ଣ ବିଶ୍ୱାସହେତୁ ମୁଁ ତାଙ୍କୁ ଏହି କଥା କହିଲି । ୯ । 'ରାମଙ୍କର ଭୟଜାତ କରାଇବ, ମୁଁ ଏପରି ରାକ୍ଷସ କାହାକୁ ଦେଖୁନାହିଁ, ସୁତରାଂ ତୁମେ ନିଶ୍ଚିନ୍ତ ହୁଅ । ଏ ରାମଙ୍କର ସ୍ୱର ନୁହେ । ଆଉ କିଏ ଏପରି ଚିତ୍କାର କରୁଛି ।୧୦। ହେ ସୀତେ ! ଯେ କି ଦେବତାମାନଙ୍କୁ ମଧ୍ୟ ପରିତ୍ରାଣ କରିପାରନ୍ତି, ସେହି ଆର୍ଯ୍ୟ ରାମ 'ମୋତେ ରକ୍ଷାକର' ଏହି ନିନ୍ଦନୀୟ ନୀଚ କଥା କପରି କହି ପାରନ୍ତି ? । ୧୧ । ହେ ସୁନ୍ଦରି ! କୌଣସି କାରଣରୁ କୌଣସି ରାକ୍ଷସ ମୋ ଭାଇଙ୍କର ସ୍ୱରକୁ ଅନୁକରଣକରି 'ତ୍ରାହି ତ୍ରାହି' ବୋଲି ଚିତ୍କାରକରୁଛି । ୧୨ । କୌଣସି ଲୋକ 'ଲକ୍ଷ୍ମଣ ମୋତେ ରକ୍ଷାକର' ବୋଲି ବିକୃତ ସ୍ୱରରେ ଚିତ୍କାରକରୁଛି, ସୁତରାଂ ଆପଣ ଇତର ସ୍ତ୍ରୀଲୋକଙ୍କପରି ବ୍ୟଥିତ ହେବା ଉଚିତ ନୁହେଁ । ୧୩ । ବୃଥା

ଅଲଂ ବୈକ୍ଳବ୍ୟମାଲମ୍ବ୍ୟ ସ୍ୱସ୍ଥା ଭବ ନିରୁତ୍ସୁକା ।
ନ ସୋଽସ୍ତି ତ୍ରିଷୁ ଲୋକେଷୁ ପୁମାନ୍ ଯୋ ରାଘବଂ ରଣେ । ୧୪।
ଜାତୋ ବା ଜାୟମାନୋ ବା ସଂଯୁଗେ ଯଃ ପରାଜୟେତ୍ ।
ନ ଜୟ୍ୟୋ ରାଘବୋ ଯୁଦ୍ଧେ ଦେବୈଃ ଶକ୍ରପୁରୋଗମୈଃ ।୧୫।
ଏବମୁକ୍ତା ତୁ ବୈଦେହୀ ପରମୋହିତଚେତନା ।
ଉବାଚାଶ୍ରୂଣି ମୁଞ୍ଚନ୍ତୀ ଦାରୁଣଂ ମାମିଦଂ ବଚଃ । ୧୬ ।
ଭାବୋ ମୟି ତବାତ୍ୟର୍ଥଂ ପାପ ଏବ ନିବେଶିତଃ ।
ବିନଷ୍ଟେ ଭ୍ରାତରି ପ୍ରାପ୍ତୁଂ ନ ଚ ତ୍ୱଂ ମାମବାପ୍ସ୍ୟସି । ୧୭ ।
ସଙ୍କେତାଦ୍ଭରତେନ ତ୍ୱଂ ରାମଂ ସମନୁଗଚ୍ଛସି ।
କ୍ରୋଶନ୍ତଂ ହି ଯଥାତ୍ୟର୍ଥଂ ନୈନମଭ୍ୟବପଦ୍ୟସେ । ୧୮ ।
ରିପୁଃ ପ୍ରଚ୍ଛନ୍ନଚାରୀ ତ୍ୱଂ ମଦର୍ଥମନୁଗଚ୍ଛସି ।
ରାଘବସ୍ୟାନ୍ତରଂ ପ୍ରେପ୍ସୁସ୍ତଥୈନଂ ନାଭିପଦ୍ୟସେ । ୧୯ ।
ଏବମୁକ୍ତୋ ହି ବୈଦେହ୍ୟା ସଂରବ୍ଧୋ ରକ୍ତଲୋଚନଃ ।
କ୍ରୋଧାତ୍ ପ୍ରସ୍ଫୁରମାଣୋଷ୍ଠ ଆଶ୍ରମାଦଭିନିର୍ଗତଃ । ୨୦ ।

---

ବୃଥା ବ୍ୟାକୁଳ ହେବାର ଆବଶ୍ୟକ ନାହିଁ । ତୁମେ ଉଦ୍‌ବେଗଶୂନ୍ୟହୋଇ ସୁସ୍ଥ ହୁଅ । ତ୍ରିଲୋକରେ ଏପରି କୌଣସି ପୁରୁଷ ଜନ୍ମି ନାହାଁନ୍ତି ବା ଜନ୍ମିବ ନାହିଁ, ଯେ କି ଯୁଦ୍ଧରେ ରାଘବଙ୍କୁ ପରାଜିତ କରିପାରିବ । ଇନ୍ଦ୍ରପ୍ରମୁଖ ଦେବତାମାନେ ମଧ୍ୟ ରାମଙ୍କୁ ଯୁଦ୍ଧରେ ଜିଣି ପାରିବେ ନାହିଁ । ୧୪-୧୫ । ବ୍ୟାକୁଳଚିତ୍ତ ବୈଦେହୀ ମୋର ଏହି କଥାରେ ଅଶ୍ରୁମୋଚନକରି ମୋତେ କର୍କଶ ବାକ୍ୟରେ ଏହି କଥା କହିଲେ । ୧୬ । 'ଭ୍ରାତା ମଲେ ମୋତେ ପାଇବା ପାଇଁ ମୋ ପ୍ରତି ତୁମମନରେ ଅତ୍ୟନ୍ତ ପାପଭାବ ରହିଛି; କିନ୍ତୁ କଦାପି ତୁମେ ମୋତେ ପାଇବ ନାହିଁ । ୧୭ । ରାମ ଅତିବ୍ୟାକୁଳଭାବରେ ଡାକ ପକାଉଥିଲେ ମଧ୍ୟ ତୁମେ ଯେତେବେଳେ ତାଙ୍କ ନିକଟକୁ ଯାଉ ନାହଁ, ସେଥିରୁ ମୋର ଆଶଙ୍କା ହେଉଛି ଯେ ତୁମେ ଭରତର ଇଙ୍ଗିତକ୍ରମେ ରାମଙ୍କର ଅନୁଗାମୀ ହୋଇଅଛ । ୧୮ । ତୁମେ ତାଙ୍କର ଛଦ୍ମବେଶୀ ଶତ୍ରୁ, ମୋର ଲାଗି ତୁମେ ତାଙ୍କର ଅନୁଗମନକରୁଛ ଏବଂ ସବୁବେଳେ ତାଙ୍କର ଛିଦ୍ର ପାଇବାକୁ ଇଚ୍ଛାକରୁଛ; ସେଇଥିପାଇଁ ତାଙ୍କ ପାଖକୁ ଯାଉ ନାହଁ" । ୧୯ । ବୈଦେହୀ ଏହିପରି କହିବାରୁ କ୍ରୋଧରେ ମୋର ଚକ୍ଷୁ ରକ୍ତବର୍ଣ୍ଣ ହୋଇଗଲା ଏବଂ ଓଠ ଥରିବାକୁ ଲାଗିଲା । ମୁଁ ଅତିଶୟ ବିରକ୍ତ ହୋଇ ଆଶ୍ରମରୁ ବାହାରି ଆସିଲି' ।୨୦।"

ଏବଂ ବ୍ରୁବାଣଂ ସୌମିତ୍ରିଂ ରାମଃ ସଂତାପମୋହିତଃ ।
ଅବ୍ରବୀଦ୍ଦୁଷ୍କୃତଂ ସୌମ୍ୟ ତାଂ ବିନା ଯତ୍ତ୍ୱମାଗତଃ । ୨୧ ।
ଜାନନ୍ନପି ସମର୍ଥଂ ମାଂ ରକ୍ଷସାଂ ବିନିବାରଣେ ।
ଅନେନ କ୍ରୋଧବାକ୍ୟେନ ମୈଥିଲ୍ୟା ନିଃସୃତୋ ଭବାନ୍ ।୨୨।
ନ ହି ତେ ପରିତୁଷ୍ୟାମି ତ୍ୟକ୍ତ୍ୱା ଯଦସି ମୈଥିଲୀମ୍ ।
କ୍ରୁଦ୍ଧାୟାଃ ପରୁଷଂ ବାକ୍ୟଂ ଶ୍ରୁତ୍ୱା ଯତ୍ତ୍ୱମିହାଗତଃ । ୨୩ ।
ସର୍ବଥା ତ୍ୱପନୀତଂ ତେ ସୀତୟା ଯତ୍ପ୍ରଚୋଦିତଃ ।
କ୍ରୋଧସ୍ୟ ବଶମାପନ୍ନୋ ନାକରୋଃ ଶାସନଂ ମମ । ୨୪ ।
ଅସୌ ହି ରାକ୍ଷସଃ ଶେତେ ଶରେଣାଭିହତୋ ମୟା ।
ମୃଗରୂପେଣ ଯେନାହମାଶ୍ରମାଦପବାହିତଃ । ୨୫ ।

ବିକୃଷ୍ୟ ଚାପଂ ପରିଧାୟ ସାୟକମ୍
ସଲୀଲବାଣେନ ଚ ତାଡ଼ିତୋ ମୟା ।
ମାର୍ଗୀଂ ତନୁଂ ତ୍ୟଜ୍ୟ ସ ବିକ୍ଳବସ୍ୱରୋ
ବଭୂବ କେୟୂରଧରଃ ସ ରାକ୍ଷସଃ । ୨୬ ।

---

ଲକ୍ଷ୍ମଣ ଏହିପରି କହିବାରୁ ରାମ ଶୋକରେ ମୋହିତହୋଇ ତାଙ୍କୁ କହିଲେ । "ହେ ସୌମ୍ୟ ! ତୁମେ ଯେ ସୀତାଙ୍କୁ ଛାଡ଼ି ଏଠାକୁ ଆସିଲ, ଏହା ଅତି ଦୁଷ୍କାର୍ଯ୍ୟ ହୋଇଅଛି । ୨୧ । ରାକ୍ଷସମାନଙ୍କୁ ନିବାରଣ କରିବାରେ ମୁଁ ସମ୍ପୂର୍ଣ୍ଣ ସମର୍ଥ, ଏହା ଜାଣି ଶୁଣି ମଧ୍ୟ ଜାନକୀଙ୍କର ଏହି କ୍ରୋଧବାକ୍ୟରେ ତୁମେ ଆଶ୍ରମରୁ ବାହାରି ଆସିଲ । ୨୨ । ତୁମେ ଯେ କ୍ରୁଦ୍ଧା ମୈଥିଳୀଙ୍କର କର୍କଶ ବାକ୍ୟ ଶୁଣି ତାଙ୍କୁ ଛାଡ଼ିଦେଇ ଏଠାକୁ ଚାଲି ଆସିଲ, ଏଥିରେ ମୁଁ ତୁମପ୍ରତି ସନ୍ତୁଷ୍ଟ ନୁହେଁ । ୨୩ । ସୀତାଙ୍କ କଥାରେ କ୍ରୋଧରେ ବଶୀଭୂତହୋଇ ତୁମେ ଯେ ମୋର ଆଦେଶ ନ କଲ, ଏହା ସର୍ବତୋଭାବରେ ଗର୍ହିତ ହୋଇଅଛି । ୨୪ । ଯେଉଁ ରାକ୍ଷସ ମୃଗରୂପ ଧରି ମୋତେ ଆଶ୍ରମରୁ ଅପସାରିତକରି ଆଣିଥିଲା, ଏଇ ଦେଖ, ସେହି ରାକ୍ଷସ ମୋ ଶରରେ ନିହତ ହୋଇ ଶୋଇ ରହିଛି । ୨୫ । ମୁଁ ଧନୁ ଆକର୍ଷଣକରି ଏବଂ ଶରସଂଯୋଗ ପୂର୍ବକ ଅବଲୀଳାକ୍ରମେ ଶରନିକ୍ଷେପକରି ଏହାକୁ ଆଘାତକଲି । ଏହି ରାକ୍ଷସ ମୃଗଶରୀର ତ୍ୟାଗକରି ବିକଳସ୍ୱରରେ କେୟୂରଧାରୀ ରାକ୍ଷସ ହୋଇଗଲା । ୨୬ ।

ଶରାହତେନୈବ ତଦାର୍ତ୍ତୟା ଗିରା
ସ୍ୱରଂ ମମାଲମ୍ବ୍ୟ ସୁଦୂରସଂଶ୍ରବମ୍ ।
ଉଦାହୃତଂ ତଦ୍ବଚନଂ ସୁଦାରୁଣମ୍
ତ୍ୱମାଗତୋ ଯେନ ବିହାୟ ମୈଥିଲୀମ୍ । ୨୭ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ଲକ୍ଷ୍ମଣାଗମନବିଗର୍ହଣମ୍
ନାମ ଏକୋନଷଷ୍ଟିତମଃ ସର୍ଗଃ ।

---

ସେତେବେଳେ ସେ ମୋର ଶରରେ ଆହତହୋଇ ମୋର ସ୍ୱର ଅବଲମ୍ବନରେ ବହୁ ଦୂରକୁ ଶୁଣାଯିବାଭଳି ଯେଉଁ ଆର୍ତ୍ତନାଦ କଲା, ତାହା ଶୁଣି ତୁମେ ସୀତାଙ୍କୁ ଛାଡ଼ିଦେଇ ଏଠାକୁ ଚାଲିଆସିଲ । ୨୭ ।

# ଷଷ୍ଟିତମଃ ସର୍ଗଃ

ରାମୋନ୍ମାଦଃ

ଭୃଶମାବ୍ରଜମାନସ୍ୟ ତସ୍ୟାଧୋବାମଲୋଚନମ୍ ।
ପ୍ରାସ୍ଫୁରଚ୍ଚାସ୍ଖଲଦ୍ରାମୋ ବେପଥୁଶ୍ଚାପ୍ୟଜାୟତ । ୧ ।
ଉପାଲକ୍ଷ୍ୟ ନିମିତ୍ତାନି ସୋଽଶୁଭାନି ମୁହୁର୍ମୁହୁଃ ।
ଅପି କ୍ଷେମଂ ନୁ ସୀତାୟା ଇତି ବୈ ବ୍ୟାଜହାର ଚ । ୨ ।
ତ୍ୱରମାଣୋ ଜଗାମାଥ ସୀତାଦର୍ଶନଲାଲସଃ ।
ଶୂନ୍ୟମାବସଥଂ ଦୃଷ୍ଟ୍ୱା ବଭୂବୋଦ୍ୱିଗ୍ନମାନସଃ । ୩ ।
ଉଦ୍‌ଭ୍ରମନ୍ନିବ ବେଗେନ ବିକ୍ଷିପନ୍ ରଘୁନନ୍ଦନଃ ।
ତତ୍ର ତତ୍ରୋଟଜସ୍ଥାନମଭିବୀକ୍ଷ୍ୟ ସମନ୍ତତଃ । ୪ ।
ଦଦର୍ଶ ପର୍ଣଶାଲାଂ ଚ ରହିତାଂ ସୀତୟା ତଦା ।
ଶ୍ରିୟା ବିରହିତାଂ ଧ୍ୱସ୍ତାଂ ହେମନ୍ତେ ପଦ୍ମିନୀମିବ । ୫ ।
ରୁଦନ୍ତମିବ ବୃକ୍ଷୈଶ୍ଚ ମ୍ଲାନପୁଷ୍ପମୃଗଦ୍ୱିଜମ୍ ।
ଶ୍ରିୟା ବିହୀନଂ ବିଧ୍ୱସ୍ତଂ ସଂତ୍ୟକ୍ତବନଦେବତମ୍ । ୬ ।

---

## ୬୦ତମ ସର୍ଗ

( ରାମଙ୍କର ଉନ୍ମାଦ )

ଆଶ୍ରମକୁ ଆସିବା ସମୟରେ ରାମଙ୍କର ବାମ ଚକ୍ଷୁର ଅଧୋଭାଗ ଅତ୍ୟନ୍ତ ସ୍ପନ୍ଦିତହେଲା, ତାଙ୍କର ପାଦ ସ୍ଖଳିତହେଲା ଏବଂ ଶରୀର ଥରିବାକୁ ଲାଗିଲା । ୧ । ସେ ବାରମ୍ବାର ଏହି ସବୁ ଦୁର୍ନିମିତ୍ତ ଲକ୍ଷ୍ୟକରି 'ସୀତା କୁଶଳରେ ଅଛନ୍ତିତ ?' ବୋଲି କହିଲେ ।୨। ସେ ସୀତାଙ୍କୁ ଦେଖିବାକୁ ବ୍ୟାକୁଳହୋଇ ଅତି ସତ୍ୱର ଗମନକଲେ ଏବଂ ଆଶ୍ରମକୁ ଶୂନ୍ୟ ଦେଖି ତାଙ୍କର ମନ ଅତିଶୟ ଉଦ୍‌ବିଗ୍ନ ହୋଇପଡ଼ିଲା । ୩ ।ରାମ ଅତି ବେଗରେ ପଦବିକ୍ଷେପକରି ଇତସ୍ତତଃ ଭ୍ରମଣ ପୂର୍ବକ ସମୁଦାୟ ପର୍ଣ୍ଣଶାଳାର ସ୍ଥାନଗୁଡ଼ିକ ଚାରିଆଡ଼େ ଚନ୍ନ ଚନ୍ନ କରି ଦେଖି ସେହି ପର୍ଣ୍ଣଶାଳାକୁ ସୀତାଶୂନ୍ୟ ଦେଖିଲେ । ହେମନ୍ତ ସମୟରେ ସରୋବର ଯେପରି ଶ୍ରୀହୀନ ହୋଇ ଧ୍ୱସ୍ତବିଧ୍ୱସ୍ତ, ହୋଇଥାଏ, ସୀତାଙ୍କ ବିରହରେ ସେ ପର୍ଣ୍ଣଶାଳାର ଅବସ୍ଥା ସେତେବେଳେ ସେହିପରି ହୋଇଥିଲା । ୪-୫ । ପୁଷ୍ପ, ମୃଗ ଓ ପକ୍ଷୀମାନେ ମ୍ଲାନ ହୋଇ ଯାଇଥିବାରୁ ବୃକ୍ଷମାନେ ସତେ ଯେପରି କାନ୍ଦୁଥିଲେ । ବନଦେବତାମାନେ ସେହି ଶ୍ରୀହୀନ ଧ୍ୱସ୍ତବିଧ୍ୱସ୍ତ ବନକୁ ଛାଡ଼ି ଚାଲିଯାଇଥିଲେ ।୬। ଅଜିନ ଓ କୁଶ ସବୁ

ବିପ୍ରକୀର୍ଣାଜିନକୁଶଂ ବିପ୍ରବଦ୍ଧବୃସୀକଟମ୍ ।
ଦୃଷ୍ଟ୍ବା ଶୂନ୍ୟୋଟଜସ୍ଥାନଂ ବିଲଲାପ ପୁନଃପୁନଃ । ୭ ।
ହୃତା ମୃତା ବା ନଷ୍ଟା ବା ଭକ୍ଷିତା ବା ଭବିଷ୍ୟତି ।
ନିଲୀନାପ୍ୟଥବା ଭୀରୁରଥବା ବନମାଶ୍ରିତା । ୮ ।
ଗତା ବିଚେତୁଂ ପୁଷ୍ପାଣି ଫଲାନ୍ୟପି ଚ ବା ପୁନଃ ।
ଅଥବା ପଦ୍ମିନୀଂ ଯାତା ଜଲାର୍ଥଂ ବା ନଦୀଂ ଗତା । ୯ ।
ଯତ୍ନାନ୍ମୃଗୟମାଣସ୍ତୁ ନାସସାଦ ବନେ ପ୍ରିୟାମ୍ ।
ଶୋକରକ୍ତେକ୍ଷଣଃ ଶୋକାଦୁନ୍ମତ୍ତ ଇବ ଲକ୍ଷ୍ୟତେ । ୧୦ ।
ବୃକ୍ଷାଦ୍ବୃକ୍ଷଂ ପ୍ରଧାବନ୍ ସ ଗିରେଶ୍ଚାଦ୍ରିଂ ନଦାନ୍ନଦୀମ୍ ।
ବଭୂବ ବିଲପନ୍ ରାମଃ ଶୋକପଙ୍କାର୍ଣବପ୍ଲୁତଃ । ୧୧ ।
ଅପି କଚ୍ଚିତ୍ତ୍ୱୟା ଦୃଷ୍ଟା ସା କଦମ୍ବପ୍ରିୟା ପ୍ରିୟା ।
କଦମ୍ବ ଯଦି ଜାନୀଷେ ଶଂସ ସୀତାଂ ଶୁଭାନନାମ୍ । ୧୨ ।
ସ୍ନିଗ୍ଧପଲ୍ଲବସଂକାଶା ପୀତକୌଶେୟବାସିନୀ ।
ଶଂସସ୍ୱ ଯଦି ବା ଦୃଷ୍ଟା ବିଲ୍ୱ ବିଲ୍ୱୋପମସ୍ତନୀ । ୧୩ ।

---

ଇତଃସ୍ତତଃ ବିକ୍ଷିପ୍ତ ହୋଇପଡ଼ିଥିଲା ଏବଂ କୁଶାସନଗୁଡ଼ିକ ଛିନ୍ନ ଭିନ୍ନ ହୋଇ ଯାଇଥିଲା । ସେହି ଉଟଜଭୂମିର ଏହି ଶୂନ୍ୟ ଅବସ୍ଥା ଦେଖି ରାମ ପୁନଃପୁନଃ ବିଳାପ କରିବାକୁ ଲାଗିଲେ । ୭ ।—"ସୀତା ନିଶ୍ଚୟ ଅପହୃତା, ମୃତା, ନଷ୍ଟା କିମ୍ବା କାହାଦ୍ୱାରା ଭକ୍ଷିତା ହୋଇଥିବେ ଅଥବା ସେହି ଭୀରୁସ୍ୱଭାବା ବନକୁ ଆଶ୍ରୟକରି କେଉଁଠାରେ ଲୁଚିଯାଇଛନ୍ତି । ୮ । କିମ୍ବା ସେ ଫଳପୁଷ୍ପଚୟନ-ନିମନ୍ତେ ଯାଇଥିବେ କିମ୍ବା ପାଣି ଆଣିବାନିମନ୍ତେ ନଦୀକୁ ବା ପୁଷ୍କରିଣୀକୁ ଯାଇଥିବେ" । ୯ । ସେ ନାନା ଯତ୍ନକରି ଖୋଜି ଖୋଜି ମଧ୍ୟ ପ୍ରିୟାଙ୍କୁ ସେ ବନରେ ପାଇଲେ ନାହିଁ । ସେତେବେଳେ ଶୋକରେ ତାଙ୍କର ଚକ୍ଷୁ ରକ୍ତବର୍ଣ୍ଣ ହୋଇ ଯାଇଥିଲା ଏବଂ ସେ ଉନ୍ମତ୍ତପ୍ରାୟ ଦେଖାଯାଉଥିଲେ । ରାମ ଶୋକରୂପ ପଙ୍କପୂର୍ଣ୍ଣ ସାଗରରେ ନିମଗ୍ନହୋଇ ସେତେବେଳେ ବିଳାପକରି କରି ଏ ଗଛରୁ ସେ ଗଛକୁ, ଏ ନଦୀରୁ ସେ ନଦୀକୁ ଏବଂ ଏ ପର୍ବତରୁ ସେ ପର୍ବତକୁ ଧାବମାନ ହେବାକୁ ଲାଗିଲେ । ୧୦-୧୧ । ସେ କହୁଥାନ୍ତି "ହେ କଦମ୍ବ ! ତୁ ମୋର ସେହି କଦମ୍ବ ପ୍ରିୟା ପ୍ରିୟାଙ୍କୁ କେଉଁଠି ଦେଖିଛୁ କି ? ଯଦି ଜାଣୁ ତେବେ ସେ ଶୁଭାନନାର କଥା ମୋତେ କହି ଦେ । ୧୨ । ହେ ବିଲ୍ୱ ! ସେ ବିଲ୍ୱସଦୃଶ ସ୍ତନବିଶିଷ୍ଟ କୋମଳପଲ୍ଲବ ତୁଲ୍ୟ କାନ୍ତିମତୀ ପୀତପଟ୍ଟବସ୍ତ୍ରପରିହିତା ସୀତାଙ୍କୁ ଯଦି ଦେଖିଥାଉ, ତେବେ

ଅଥବାର୍ଜ୍ଜୁନ ଶଂସ ତ୍ୱଂ ପ୍ରିୟାଂ ତାମର୍ଜ୍ଜୁନପ୍ରିୟାମ୍ ।
ଜନକସ୍ୟ ସୁତା ଭୀରୁର୍ଯଦି ଜୀବତି ବା ନ ବା । ୧୪ ।
କକୁଭଃ କକୁଭୋରୁଂ ତାଂ ବ୍ୟକ୍ତଂ ଜାନାତି ମୈଥିଲୀମ୍ ।
ଯଥା ପଲ୍ଲବପୁଷ୍ପାଢ୍ୟୋ ଭାତି ହ୍ୟେଷ ବନସ୍ପତିଃ । ୧୫ ।
ଭ୍ରମରୈରୁପଗୀତଶ୍ଚ ଯଥା ଦ୍ରୁମବରୋ ହ୍ୟୟମ୍ ।
ଏଷ ବ୍ୟକ୍ତଂ ବିଜାନାତି ତିଲକସ୍ତିଲକପ୍ରିୟାମ୍ । ୧୬ ।
ଅଶୋକ ଶୋକାପନୁଦ ଶୋକୋପହତଚେତସମ୍ ।
ତ୍ୱନ୍ନାମାନଂ କୁରୁ କ୍ଷିପ୍ରଂ ପ୍ରିୟାସଂଦର୍ଶନେନ ମାମ୍ । ୧୭ ।
ଯଦି ତାଲ ତ୍ୱୟା ଦୃଷ୍ଟା ପକ୍ୱତାଲଫଲସ୍ତନୀ ।
କଥୟସ୍ୱ ବରାରୋହାଂ କାରୁଣ୍ୟଂ ଯଦି ତେ ମୟି । ୧୮ ।
ଯଦି ଦୃଷ୍ଟା ତ୍ୱୟା ସୀତା ଜମ୍ବୁ ଜାମ୍ବୂନଦପ୍ରଭା ।
ପ୍ରିୟା ଯଦି ବିଜାନୀଷେ ନିଃଶଙ୍କଂ କଥୟସ୍ୱ ମେ । ୧୯ ।
ଅହୋ ତ୍ୱଂ କର୍ଣ୍ଣିକାରାଦ୍ୟ ସୁପୁଷ୍ପୈଃ ଶୋଭସେ ଭୃଶମ୍ ।
କର୍ଣ୍ଣିକାରପ୍ରିୟା ସାଧ୍ୱୀ ଶଂସ ଦୃଷ୍ଟା ପ୍ରିୟା ଯଦି । ୨୦ ।

---

କହ । ୧୩ । ଅଥବା ହେ ଅର୍ଜ୍ଜୁନ ! ମୋର ପ୍ରିୟା ଅର୍ଜ୍ଜୁନଫୁଲକୁ ଭାରି ଭଲ ପାଆନ୍ତି । ସେହି ଭୀରୁ ଜନକକନ୍ୟା ଜୀବିତ ଅଛନ୍ତି କି ନାହିଁ ମୋତେ କହ । ୧୪ । ଏହି କକୁଭ ବୃକ୍ଷ ପଲ୍ଲବ ଓ ପୁଷ୍ପାଦିଦ୍ୱାରା ଯେପରି ସମୃଦ୍ଧିଶାଳୀ ଦେଖାଯାଉଛି, ସେଥିରୁ ସ୍ପଷ୍ଟ ଅନୁମାନହୁଏ ଯେ, ସେ କକୁଭୋରୁ ସୀତାଙ୍କ କଥା ନିଶ୍ଚୟ ଜାଣେ । । ୧୫ । କିମ୍ବା ଏହି ବୃକ୍ଷରାଜ ତିଲକ ବୃକ୍ଷରେ ଭ୍ରମରମାନେ ଯେପରି ଗାନକରୁଛନ୍ତି, ସେଥିରୁ ଜଣାଯାଏ, ସେ ତିଳକକୁ ଭଲପାଉଥିବା ସୀତାଙ୍କୁ ଜାଣେ । ୧୬ । ହେ ଶୋକାପନୋଦନକାରି ଅଶୋକ ! ମୋର ମନ ଶୋକରେ ଅଭିଭୂତ ହୋଇଅଛି, ସୁତରାଂ ତୁ ମୋତେ ଶୀଘ୍ର ପ୍ରିୟାକୁ ଦେଖାଇଦେଇ ତୋ'ରି ନାମଧାରୀ ଅର୍ଥାତ୍ 'ଅଶୋକ' କର ।୧୭। ହେ ତାଳବୃକ୍ଷ ! ତୁ ଯଦି ପକ୍ୱତାଳସଦୃଶ ସ୍ତନବିଶିଷ୍ଟା ସୀତାଙ୍କୁ ଦେଖିଛୁ ଏବଂ ତୋର ଯଦି ମୋଠାରେ ଦୟା ଅଛି, ତେବେ ସେ ବରାରୋହା କଥା ମୋତେ କହ ।୧୮। ହେ ଜାମୁ ! ମୋର ହେମପ୍ରଭାମୟୀ ପ୍ରିୟାକୁ ଯଦି ଦେଖିଥାଉ ବା ଜାଣିଥାଉ, ତେବେ ନିଃଶଙ୍କଭାବରେ ମୋତେ କହ ।୧୯। କର୍ଣ୍ଣିକାର ! ତୁ ଆଜ ଉତ୍ତମ ପୁଷ୍ପଦ୍ୱାରା ଅତିଶୟ ଶୋଭାପାଉଛୁ । ମୋର ପ୍ରିୟା କର୍ଣ୍ଣିକାରକୁ ଖୁବ୍ ଭଲ ପାଆନ୍ତି ; ସେ ସାଧ୍ୱୀଙ୍କୁ ଯଦି ଦେଖିଛୁ, ତେବେ କହ" । ୨୦ । ଏହିରୂପେ ମହାଯଶା

ଚୂତନୀପମହାସାଲାନ୍ ପନସାନ୍ କୁରବାନ୍ ଧବାନ୍ ।
ଦାଡ଼ିମାନନସାନ୍ ଗତ୍ୱା ଦୃଷ୍ଟ୍ୱା ରାମୋ ମହାଯଶାଃ । ୨୧ ।
ବକୁଲାନଥ ପୁଂନାଗାନ୍ ଚମ୍ପକାନ୍ କେତକୀସ୍ତଥା ।
ପୃଛନ୍ ରାମୋ ବନେ ଭ୍ରାନ୍ତ ଉନ୍ମତ୍ତ ଇବ ଲକ୍ଷ୍ୟତେ । ୨୨ ।
ଅଥବା ମୃଗଶାବାକ୍ଷୀଂ ମୃଗ ଜାନାସି ମୈଥିଲୀମ୍ ।
ମୃଗବପ୍ରେକ୍ଷଣୀ କାନ୍ତା ମୃଗୀଭିଃ ସହିତା ଭବେତ୍ । ୨୩ ।
ଗଜ ସା ଗଜନାସୋରୂର୍ଯଦି ଦୃଷ୍ଟା ତ୍ୱୟା ଭବେତ୍ ।
ତାଂ ମନ୍ୟେ ବିଦିତାଂ ତୁଭ୍ୟମାଖ୍ୟାହି ବରବାରଣ । ୨୪ ।
ଶାର୍ଦ୍ଦୂଲ ଯଦି ସା ଦୃଷ୍ଟା ପ୍ରିୟା ଚନ୍ଦ୍ରନିଭାନନା ।
ମୈଥିଲୀ ମମ ବିସ୍ରବ୍ଧଂ କଥୟସ୍ୱ ନ ତେ ଭୟମ୍ । ୨୫ ।
କିଂ ଧାବସି ପ୍ରିୟେ ଦୂରଂ ଦୃଷ୍ଟାସି କମଲେକ୍ଷଣେ ।
ବୃକ୍ଷୈରାଛାଦ୍ୟ ଚାତ୍ମାନଂ କିଂ ମାଂ ନ ପ୍ରତିଭାଷସେ । ୨୬ ।
ତିଷ୍ଠ ତିଷ୍ଠ ବରାରୋହେ ନ ତେଽସ୍ତି କରୁଣା ମୟି ।
ନାତ୍ୟର୍ଥଂ ହାସ୍ୟଶୀଳାସି କିମର୍ଥମାମୁପେକ୍ଷସେ । ୨୭ ।

---

ରାମ ଚୂତ, ନୀପ, ମହାଶାଳ, ପନସ, କୁରବ, ଧବ, ଦାଡ଼ିମ, ଅନସ, ବକୁଳ, ପୁନ୍ନାଗ, ଚମ୍ପକ ଓ କେତକୀ ପ୍ରଭୃତି ବୃକ୍ଷମାନଙ୍କ ନିକଟକୁ ଯାଇ ସେମାନଙ୍କୁ ପଚାରି ପଚାରି ଭ୍ରାନ୍ତ ଏବଂ ଉନ୍ମତ୍ତପରି ବିଚରଣ କରିବାକୁ ଲାଗିଲେ । ୨୧-୨୨ । "ଅଥବା ହେ ମୃଗ ! ତୁ କ'ଣ ସେହି ମୃଗଶିଶୁନୟନା ମୈଥିଲୀର କଥା ଜାଣୁ ? ମୋର ସେ ମୃଗନୟନା କାନ୍ତା ହୁଏତ ମୃଗୀମାନଙ୍କ ସହିତ ଥାଇପାରନ୍ତି । ୨୩ । ହେ ଗଜ ! ସୀତାଙ୍କର ଊରୁ ଗଜର ଶୁଣ୍ଢସଦୃଶ ଅଟେ, ତୁ ଅବା ତାଙ୍କୁ ଦେଖିଛୁ । ହେ ଗଜରାଜ ! ମୋତେ ମନେହୁଏ ତାଙ୍କ କଥା ତୋତେ ଜଣାଥିବ, ତେବେ ମୋତେ କହ । ୨୪। ହେ ବ୍ୟାଘ୍ର ! ମୋର ଚନ୍ଦ୍ରବଦନା ପ୍ରିୟା ମୈଥିଲୀଙ୍କୁ ତୁ ଯେବେ ଦେଖିଛୁ, ତେବେ ନିଃଶଙ୍କଭାବରେ କହ; ତୋର କୌଣସି ଭୟ ନାହିଁ । ୨୫ । ପ୍ରିୟେ ! କମଳନୟନେ ! ତୁମେ ଆଜ କାହିଁକି ଦୂରକୁ ଦୌଡ଼ଯାଉଛ ? ମୁଁ ତୁମକୁ ଦେଖିପାରୁଛି । ତୁମେ କାହିଁକି ବୃକ୍ଷାନ୍ତରାଳରେ ନିଜକୁ ଲୁଚାଇରଖି ମୋ ସହିତ କଥାବାର୍ତ୍ତା କରୁ ନାହଁ ? ୨୬ । ବରାରୋହେ ? ରହ ରହ, ତୁମ୍ଭର ମୋଠାରେ ଦୟା ନାହିଁ । ତୁମେ ତ ଅଧିକ ହାସ୍ୟପରାୟଣା ନୁହଁ । ତେବେ ମୋତେ କାହିଁକି ଏପରି ଉପେକ୍ଷାକରୁଛ ? ୨୭ । ହେ ବରବର୍ଣ୍ଣିନି ! ତୁମ୍ଭର ପୀତ ପଟ୍ଟବସ୍ତ୍ରଦ୍ୱାରା ତୁମେ ଚିହ୍ନା

ପୀତକୌଶେୟକେନାସି ସୂଚିତା ବରବର୍ଣ୍ଣିନି ।
ଧାବନ୍ତ୍ୟପି ମୟା ଦୃଷ୍ଟା ତିଷ୍ଠ ଯଦ୍ୟସ୍ତି ସୌହୃଦମ୍ । ୨୮ ।
ନୈବ ସା ନୂନମଥବା ହିଂସିତା ଚାରୁହାସିନୀ ।
କୃଚ୍ଛ୍ରଂ ପ୍ରାପ୍ତଂ ହି ମାଂ ନୂନଂ ଯଥୋପେକ୍ଷିତୁମର୍ହତି । ୨୯ ।
ବ୍ୟକ୍ତଂ ସା ଭକ୍ଷିତା ବାଲା ରାକ୍ଷସୈଃ ପିଶିତାଶନୈଃ ।
ବିଭଜ୍ୟାଙ୍ଗାନି ସର୍ବାଣି ମୟା ବିରହିତା ପ୍ରିୟା ।୩୦ ।
ନୂନଂ ତଚ୍ଛୁଭଦନ୍ତୋଷ୍ଠଂ ସୁନାସଂ ଚାରୁକୁଣ୍ଡଳମ୍ ।
ପୂର୍ଣ୍ଣଚନ୍ଦ୍ରନିଭଂ ଗ୍ରସ୍ତଂ ମୁଖଂ ନିଷ୍ପ୍ରଭତାଂ ଗତମ୍ । ୩୧ ।
ସା ହି ଚଂପକବର୍ଣାଭା ଗ୍ରୀବା ଗ୍ରୈବେୟଶୋଭିତା ।
କୋମଳା ବିଲପନ୍ତ୍ୟାସ୍ତୁ କାନ୍ତାୟା ଭକ୍ଷିତା ଶୁଭା । ୩୨ ।
ନୂନଂ ବିକ୍ଷିପ୍ୟମାଣୌ ତୌ ବାହୁପଲ୍ଲବକୋମଳୌ ।
ଭକ୍ଷିତୌ ବେପମାନାଗ୍ରୌ ସହସ୍ତାଭରଣାଙ୍ଗଦୌ । ୩୩ ।
ମୟା ବିରହିତା ବାଲା ରକ୍ଷସାଂ ଭକ୍ଷଣାୟ ବୈ ।
ସାର୍ଥେନେବ ପରିତ୍ୟକ୍ତା ଭକ୍ଷିତା ବହୁବାନ୍ଧବା । ୩୪ ।

---

ପଡ଼ିଗଲଣି, ତୁମେ ଦୌଡ଼ିବାର ମୁଁ ଦେଖି ସାରିଲଣି; ସୁତରାଂ ଯଦି ତୁମ୍ଭର ମୋପ୍ରତି ପ୍ରଣୟ ଅଛି, ତେବେ ଠିଆ ହୁଅ ।୨୮। ନା, ତା ନୁହେ; ସେ ଚାରୁହାସିନୀକୁ ନିଶ୍ଚୟ କେହି ଖାଇପକାଇଅଛି । କାରଣ ମୁଁ ଏ ଦାରୁଣ ବିପଦରେ ପଡ଼ିଥିବାବେଳେ ସେ କ'ଣ ମୋତେ କେବେ ଏପରି ଉପେକ୍ଷା କରିପାରନ୍ତେ ? ।୨୯। ସ୍ପଷ୍ଟ ଜଣାଯାଉଛି, ମାଂସଭୋଜୀ ରାକ୍ଷସମାନେ ମୋଠାରୁଁ ବିରହିତ ହେବାରୁ ମୋର ପ୍ରିୟା ବାଳାର ଅଙ୍ଗସକଳ ଖଣ୍ଡ ଖଣ୍ଡ କରି ତାହାକୁ ଖାଇପକାଇ ଅଛନ୍ତି । ୩୦ । ଆହା ! ତାହାର ସେହି ସୁନ୍ଦର ଦନ୍ତଯୁକ୍ତ, ସୁନ୍ଦର ନାସାଯୁକ୍ତ ଏବଂ ସୁନ୍ଦର କୁଣ୍ଡଳମଣ୍ଡିତ, ପୂର୍ଣ୍ଣଚନ୍ଦ୍ରସଦୃଶ ବଦନ ରାକ୍ଷସଗ୍ରସ୍ତ ହୋଇ ନିଶ୍ଚୟ ନିଷ୍ପ୍ରଭ ହୋଇଯାଇଛି । ୩୧ । ମୋର ସେହି ରୋଦନପରତା କାନ୍ତାର ଗ୍ରୀବାଭୂଷଣରେ ଭୂଷିତ, କୋମଳ ଚମ୍ପକବର୍ଣ୍ଣ, ସୁନ୍ଦର ଗ୍ରୀବାକୁ କିଏ ଖାଇପକାଇଛି । ୩୨ । ତାହାର ବାହୁଦ୍ୱୟ ପଲ୍ଲବସଦୃଶ କୋମଳ ଏବଂ ହସ୍ତାଭରଣ ତଥା ଅଙ୍ଗଦରେ ସୁଶୋଭିତ । ସେ ବାହୁର ଅଗ୍ରଭାଗକୁ ଦୋହଲାଇ ଏଣେ ତେଣେ ଛାଟୁଥିବାବେଳେ ନିଶ୍ଚୟ ସେ ବାହୁଦ୍ୱୟକୁ ରାକ୍ଷସମାନେ ଭକ୍ଷଣ କରି ପକାଇଛନ୍ତି । ୩୩ । ଗୋଷ୍ଠୀଦ୍ୱାରା ପରିତ୍ୟକ୍ତ ବହୁବନ୍ଧୁସମନ୍ୱିତ ହରିଣୀ ହିଂସ୍ର ଜନ୍ତୁଦ୍ୱାରା ଭକ୍ଷିତହେଲାପରି ମୋଦ୍ୱାରା ବିରହିତ ହୋଇ ସେ ବାଳା ନିଶ୍ଚୟ ରାକ୍ଷସମାନଙ୍କର ଭକ୍ଷ୍ୟ ହୋଇଅଛି । ୩୪ ।

ହା ଲକ୍ଷ୍ମଣ ମହାବାହୋ ପଶ୍ୟସି ତ୍ୱଂ ପ୍ରିୟାଂ କ୍ୱଚିତ୍ ।
ହା ପ୍ରିୟେ କ୍ୱ ଗତା ଭଦ୍ରେ ହା ସୀତେତି ପୁନଃପୁନଃ । ୩୫ ।
ଇତ୍ୟେବଂ ବିଲପନ୍ ରାମଃ ପରିଧାବନ୍ ବନାଦ୍ ବନମ୍ ।
କ୍ୱଚିଦୁଦ୍ଭ୍ରମତେ ବେଗାତ୍ କ୍ୱଚିଦ୍ ବିଭ୍ରମତେ ବଲାତ୍ । ୩୬ ।
କ୍ୱଚିନ୍ମତ୍ତ ଇବାଭାତି କାନ୍ତାନ୍ୱେଷଣତତ୍ପରଃ ।
ସ ବନାନି ନଦୀଃ ଶୈଳାନ୍ ଗିରିପ୍ରସ୍ରବଣାନି ଚ । ୩୭ ।
କାନନାନି ଚ ବେଗେନ ଭ୍ରମତ୍ୟପରିସଂସ୍ଥିତଃ । ୩୮ ।
ତଥା ସ ଗତ୍ୱା ବିପୁଲଂ ମହଦ୍ ବନମ୍
ପରୀତ୍ୟ ସର୍ବଂ ତ୍ୱଥ ମୈଥିଲୀଂ ପ୍ରତି ।
ଅନିଷ୍ଠିତାଶଃ ସ ଚକାର ମାର୍ଗଣେ
ପୁନଃ ପ୍ରିୟାୟାଃ ପରମଂ ପରିଶ୍ରମମ୍ । ୩୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ରାମୋନ୍ମାଦୋ
ନାମ ଷଷ୍ଟିତମଃ ସର୍ଗଃ

---

ହା ମହାବାହୋ ଲକ୍ଷ୍ମଣ ! ତୁମେ ମୋ ପ୍ରିୟାଙ୍କୁ କେଉଁଠାରେ ଦେଖିଛ କି ? ହା ପ୍ରିୟେ ! ହା ଭଦ୍ରେ ! ହା ସୀତେ ! ତୁମେ କୁଆଡ଼େ ଗଲ ?" ଏହିପରି ବାରଂବାର ବିଳାପ କରି କରି ରାମ ବନରୁ ବନାନ୍ତରକୁ ଧାବମାନ ହେବାକୁ ଲାଗିଲେ । ସେ କେତେବେଳେ ବେଗରେ ଡେଇଁପଡ଼ୁଥିଲେ, କେତେବେଳେ ବା ଖୁବ୍ ଜୋରରେ ଦୌଡ଼ୁଥିଲେ । ୩୫-୩୬ । କେତେବେଳେ ସେ ଉନ୍ମତ୍ତପରି ଦେଖାଯାଉଥିଲେ । ଏହିପରି ପ୍ରିୟାର ଅନ୍ୱେଷଣରେ ତତ୍ପର ହୋଇ ସେ ବେଗରେ ନଦୀ, ପର୍ବତ, ଗିରି-ନିର୍ଝରଣୀ ଏବଂ କାନନମାନଙ୍କରେ ଭ୍ରମଣ କରିବାକୁ ଲାଗିଲେ; କୌଣସିଠାରେ ସ୍ଥିରହୋଇ ରହିପାରିଲେ ନାହିଁ । ୩୭-୩୮ । ଏହିପରିଭାବରେ ସେ ସେହି ବିଶାଳ ମହାବନରେ ପ୍ରବେଶକରି ଏବଂ ସୀତାଙ୍କ ଲାଗି ସମସ୍ତ ବନ ତନ୍ନ ତନ୍ନ କରି ଅନ୍ୱେଷଣକରି ମଧ୍ୟ ତାଙ୍କର ଆଶାପୂରଣ ହେଲା ନାହିଁ ଏବଂ ସେ ପୁଣି ପ୍ରିୟାର ଅନ୍ୱେଷଣରେ ଅତିଶୟ ପରିଶ୍ରମ କରିବାକୁ ଲାଗିଲେ । ୩୯ ।

# ଏକଷଷ୍ଟିତମଃ ସର୍ଗଃ

## ସୀତାନ୍ୱେଷଣମ୍

ଦୃଷ୍ଟ୍ୱାଶ୍ରମପଦଂ ଶୂନ୍ୟଂ ରାମୋ ଦଶରଥାତ୍ମଜଃ ।
ରହିତାଂ ପର୍ଣଶାଲାଂ ଚ ବିଧ୍ୱସ୍ତାନ୍ୟାସନାନି ଚ ।୧।
ଅଦୃଷ୍ଟ୍ୱା ତତ୍ର ବୈଦେହୀଂ ସଂନିରୀକ୍ଷ୍ୟ ଚ ସର୍ବଶଃ ।
ଉବାଚ ରାମଃ ପ୍ରାକ୍ରୁଶ୍ୟ ପ୍ରଗୃହ୍ୟ ରୁଚିରୌ ଭୁଜୌ ।୨।
କ୍ୱ ନୁ ଲକ୍ଷ୍ମଣ ବୈଦେହୀ କଂ ବା ଦେଶମିତୋ ଗତା ।
କେନାହୃତା ବା ସୌମିତ୍ରେ ଭକ୍ଷିତା କେନ ବା ପ୍ରିୟା ।୩।
ବୃକ୍ଷେଣାଚ୍ଛାଦ୍ୟ ଯଦି ମାଂ ସୀତେ ହସିତୁମିଚ୍ଛସି ।
ଅଲଂ ତେ ହସିତେନାଦ୍ୟ ମାଂ ଭଜସ୍ୱ ସୁଦୁଃଖିତମ୍ ।୪।
ଯୈଃ ସହ କ୍ରୀଡ଼ସେ ସୀତେ ବିଶ୍ୱସ୍ତୈର୍ମୃଗପୋତକୈଃ ।
ଏତେ ହୀନାସ୍ତ୍ୱୟା ସୌମ୍ୟେ ଧ୍ୟାୟନ୍ତ୍ୟସ୍ରାବିଲେକ୍ଷଣାଃ ।୫।
ସୀତୟା ରହିତୋଽହଂ ବୈ ନ ହି ଜୀବାମି ଲକ୍ଷ୍ମଣ ।
ମୃତଂ ଶୋକେନ ମହତା ସୀତା ହରଣଜେନ ମାମ୍ ।୬।

---

## ୬୧ତମ ସର୍ଗ

( ସୀତାଙ୍କ ଅନ୍ୱେଷଣ )

ଦଶରଥନନ୍ଦନ ରାମ ଆଶ୍ରମପଦ ଓ ପର୍ଣ୍ଣଶାଳା ଶୂନ୍ୟ ଏବଂ ଆସନଗୁଡ଼ିକ ବିଧ୍ୱସ୍ତ ହୋଇପଡ଼ିଥିବାର ଦେଖିଲେ । ସ୍ଥିରଆଉ ଉତ୍ତମରୂପେ ନିରୀକ୍ଷଣପୂର୍ବକ କୌଣସିଠାରେ ସୀତାଙ୍କୁ ନଦେଖି ରାମ ବାହୁଦ୍ୱୟ ଦୃଢ଼ବଦ୍ଧକରି ଧରି ଉଚ୍ଚସ୍ୱରରେ କହିଲେ ।୧-୨। "ହେ ଲକ୍ଷ୍ମଣ ! ସୀତା କାହାନ୍ତି ? ଏଠାରୁ ବା ସେ କେଉଁ ସ୍ଥାନକୁ ଯାଇଛନ୍ତି ? ହେ ସୌମିତ୍ରେ ! କେହି ମୋର ପ୍ରିୟାଙ୍କୁ ହରଣ କରିନେଇଛି ବା ଭକ୍ଷଣ କରିଅଛି ।୩। ହେ ଜାନକି ! ଯଦି ବୃକ୍ଷ ଅନ୍ତରାଳରେ ନିଜକୁ ଲୁଚାଇ ମୋତେ ଉପହାସ କରିବାକୁ ଇଚ୍ଛାକରୁଥାଅ, ତେବେ ଆଜି ସେ ଉପହାସ ଯଥେଷ୍ଟ ହୋଇଗଲାଣି । ମୁଁ ଦୁଃଖରେ ବଡ଼ କାତର ହୋଇପଡ଼ିଛି; ମୋନିକଟକୁ ଆସ ।୪। ହେ ସୁନ୍ଦରି ! ତୁମେ ଯେଉଁସବୁ ବିଶ୍ୱସ୍ତ ମୃଗଶାବକମାନଙ୍କ ସହିତ କ୍ରୀଡ଼ାକର, ସେମାନେ ସମସ୍ତେ ତୁମ ବିହୁନେ ଅଶ୍ରୁପୂର୍ଣ୍ଣ ନୟନରେ ତୁମକୁ ଝୁରୁଛନ୍ତି ।୫। ହେ ଲକ୍ଷ୍ମଣ ! ସୀତାଙ୍କ ବିରହରେ ମୁଁ କଦାପି ଜୀବନଧାରଣ କରିବି ନାହିଁ । ସୀତାଙ୍କ ହରଣଜନିତ ମହାଶୋକରେ ମୁଁ ମରିଗଲେ, ମୋର ପିତା ମହାରାଜା ଦଶରଥ ନିଶ୍ଚୟ

ପରଲୋକେ ମହାରାଜୋ ନୂନଂ ଦ୍ରକ୍ଷ୍ୟତି ମେ ପିତା ।
କଥଂ ପ୍ରତିଜ୍ଞାଂ ସଂଶ୍ରୁତ୍ୟ ମୟା ତ୍ୱମଭିଯୋଜିତଃ । ୭ ।
ଅପୂରୟିତ୍ୱା ତଂ କାଲଂ ମତ୍ସକାଶମିହାଗତଃ ।
କାମବୃତ୍ତମନାର୍ଯଂ ମାଂ ମୃଷାବାଦନମେବ ଚ । ୮ ।
ଧିକ୍ ତ୍ୱାମିତି ପରେ ଲୋକେ ବ୍ୟକ୍ତଂ ବକ୍ଷ୍ୟତି ମେ ପିତା ।
ବିବଶଂ ଶୋକସନ୍ତପ୍ତଂ ଦୀନଂ ଭଗ୍ନମନୋରଥମ୍ । ୯ ।
ମାମିହୋତ୍ସୃଜ୍ୟ କରୁଣଂ କୀର୍ତ୍ତିର୍ନରମିବାନୃଜୁମ୍ ।
କ୍ୱ ଗଚ୍ଛସି ବରାରୋହେ ମାଂ ନୋତ୍ସୃଜ ସୁମଧ୍ୟମେ । ୧୦ ।
ତ୍ୱୟା ବିରହିତଶ୍ଚାହଂ ତ୍ୟକ୍ଷ୍ୟେ ଜୀବିତମାତ୍ମନଃ ।
ଇତୀବ ବିଲପନ୍ ରାମଃ ସୀତାଦର୍ଶନଲାଲସଃ । ୧୧ ।
ନ ଦଦର୍ଶ ସୁଦୁଃଖାର୍ତ୍ତୋ ରାଘବୋ ଜନକାତ୍ମଜାମ୍ ।
ଅନାସାଦୟମାନଂ ତଂ ସୀତାଂ ଶୋକପରାୟଣମ୍ । ୧୨ ।
ପଙ୍କମାସାଦ୍ୟ ବିପୁଲଂ ସୀଦନ୍ତମିବ କୁଞ୍ଜରମ୍ ।
ଲକ୍ଷ୍ମଣୋ ରାମମତ୍ୟର୍ଥମୁବାଚ ହିତକାମ୍ୟୟା । ୧୩ ।

---

ମୋତେ ପରଲୋକରେ ଦେଖିବେ ଏବଂ କହିବେ, 'ତୁ କାହିଁକି ମୋନିକଟରେ ପ୍ରତିଜ୍ଞାକରି ଏବଂ ମୋକର୍ତ୍ତୃକ ନିର୍ବାସିତହୋଇ ସେ ପ୍ରତିଜ୍ଞାପୂରଣ ନକରି ଏଠାକୁ ମୋପାଖକୁ ଆସିଲୁ ?' ଏହା ପରିଷ୍କାର ଜଣାପଡ଼ୁଛି ଯେ ମୋର ପିତା ପରଲୋକରେ ମୋତେ 'ମିଥ୍ୟାବାଦୀ ! ସ୍ୱେଚ୍ଛାଚାରୀ ଅନାର୍ଯ୍ୟ ! ତୋତେ ଧିକ୍ !' ବୋଲି କହିବେ । ହେ ବରାରୋହେ ! ଜାନକି ! ମୁଁ ବର୍ତ୍ତମାନ ଶୋକସନ୍ତପ୍ତ ବିବଶ ଦୀନଭାବାପନ୍ନ ଓ ଭଗ୍ନମନୋରଥ ହୋଇଅଛି । ହେ ସୁମଧ୍ୟମେ ! କୀର୍ତ୍ତି ଯେପରି କୁଟିଳଚରିତ ଲୋକଙ୍କୁ ପରିତ୍ୟାଗକରେ, ତୁମେ ସେହିପରି ମୋତେ ପରିତ୍ୟାଗ କରି କୁଆଡ଼େ ଯାଉଛ ?, ମୋତେ ଛାଡ଼ିଯାଅ ନାହିଁ । ୭-୧୦ । ତୁମ ବିରହରେ ମୁଁ ନିଶ୍ଚୟ ନିଜର ଜୀବନ ବିସର୍ଜନ କରିବି" । ରାମ ଏହିପରି ବିଳାପକରି ସୀତାଙ୍କୁ ଦେଖିବା ପାଇଁ ଉଦ୍‌ବିଗ୍ନ ହୋଇ ଜନକନନ୍ଦିନୀଙ୍କୁ ନ ଦେଖି ଅତିଶୟ ଦୁଃଖାତୁର ହୋଇପଡ଼ିଲେ । ସୀତାଙ୍କୁ ନ ପାଇ ରାମ ଗଭୀର ପଙ୍କମଧ୍ୟରେ ପଡ଼ିଯାଇଥିବା ହସ୍ତୀ ଯେପରି ବିଷଣ୍ଣ ହୋଇଯାଏ, ସେହିପରି ଶୋକାକୁଳ ହୋଇପଡ଼ିଲେ । ଅନନ୍ତର ଲକ୍ଷ୍ମଣ ରାମଙ୍କୁ ତାଙ୍କର ହିତାଭିଳାଷରେ କହିଲେ । ୧୧-୧୩ । "ହେ ମହାବୁଦ୍ଧେ ! ତୁମେ

ମା ବିଷାଦଂ ମହାବୁଦ୍ଧେ କୁରୁ ଯତ୍ନଂ ମୟା ସହ ।
ଇଦଂ ଗିରିବରଂ ଶୂର ବହୁକନ୍ଦରଶୋଭିତମ୍ । ୧୪ ।
ପ୍ରିୟକାନନସଞ୍ଚାରା ବନୋନ୍ମତ୍ତା ଚ ମୈଥିଳୀ ।
ସା ବନଂ ବା ପ୍ରବିଷ୍ଟା ସ୍ୟାନ୍ନଳିନୀଂ ବା ସୁପୁଷ୍ପିତାମ୍ । ୧୫ ।
ସରିତଂ ବାପି ସଂପ୍ରାପ୍ତା ମୀନବଞ୍ଜୁଲସେବିତାମ୍ ।
ସ୍ନାତୁକାମା ନିଲୀନା ସ୍ୟାଦ୍ଧାସକାମା ବନେ କ୍ୱଚିତ୍ । ୧୬ ।
ବିତ୍ରାସୟିତୁକାମା ବା ଲୀନା ସ୍ୟାତ୍କାନନେ କ୍ୱଚିତ୍ ।
ଜିଜ୍ଞାସମାନା ବୈଦେହୀ ତ୍ୱାଂ ମାଂ ଚ ପୁରୁଷର୍ଷଭ । ୧୭ ।
ତସ୍ୟା ହ୍ୟନ୍ୱେଷଣେ ଶ୍ରୀମନ୍ କ୍ଷିପ୍ରମେବ ଯତାବହେ ।
ବନଂ ସର୍ବଂ ବିଚିନ୍ୱାନୌ ଯତ୍ର ସା ଜନକାତ୍ମଜା । ୧୮ ।
ମନ୍ୟସେ ଯଦି କାକୁତ୍ସ୍ଥ ମାସ୍ମ ଶୋକେ ମନଃ କୃଥାଃ ।
ଏବମୁକ୍ତସ୍ତୁ ସୌହାର୍ଦ୍ଦାଲ୍ଲକ୍ଷ୍ମଣେନ ସମାହିତଃ । ୧୯ ।
ସହ ସୌମିତ୍ରିଣା ରାମୋ ବିଚେତୁମୁପଚକ୍ରମେ ।
ତୌ ବନାନି ଗିରୀଂଶ୍ଚୈବ ସରିତଶ୍ଚ ସରାଂସି ଚ । ୨୦ ।

---

ବିଷଣ୍ଣ ହୁଅନାହିଁ, ମୋ ସହିତ ଯତ୍ନକର । ହେ ବୀର ! ଏହି ଗିରି କାନନ ବହୁ କନ୍ଦରଶୋଭିତ । ସୀତା ଏହି କାନନରେ ବିଚରଣ କରିବାକୁ ଭଲପାଆନ୍ତି ଓ ସେଥିରେ ବଡ଼ ଉନ୍ମତ୍ତ ହୋଇପଡ଼ନ୍ତି, ମୁତରାଂ ସେ ଏ ବନମଧ୍ୟରେ ପ୍ରବେଶ କରିଥିବେ କିମ୍ବା ପୁଷ୍ପପୂର୍ଣ୍ଣ ସରୋବରମଧ୍ୟରେ ପ୍ରବେଶ କରିଥିବେ । ୧୪-୧୫ । କିମ୍ବା ସେ ଗ୍ରୀଷ୍ମତପ୍ତ ହୋଇ ବେତସଲତା ଏବଂ ମତ୍ସ୍ୟପରିପୂର୍ଣ୍ଣ ନଦୀଭିତରକୁ ସ୍ନାନ କରିବାକୁ ଯାଇଥିବେ କିମ୍ବା ଆମମାନଙ୍କ ପରିହାସକରିବା ଉଦ୍ଦେଶ୍ୟରେ ବନରେ କୌଣସିଠାରେ ଲୁଚି ରହିଥିବେ । ୧୬ । ହେ ନରଶ୍ରେଷ୍ଠ ! ସୀତା ଆମମାନଙ୍କୁ ଡରାଇବାପାଇଁ ଏବଂ ଆମମାନଙ୍କର ଦମ୍ଭ ପରୀକ୍ଷା କରିବାପାଇଁ ହୁଏତ ବନରେ କେଉଁଠି ଲୁଚି ରହିଥିବେ । ୧୭ । ହେ ଶ୍ରୀମନ୍ ! ଆସ ତାଙ୍କୁ ଖୋଜିବା ପାଇଁ ଶୀଘ୍ର ଚେଷ୍ଟାକରିବା ଏବଂ କେଉଁଠାରେ ଜନକନନ୍ଦିନୀ ଅଛନ୍ତି, ସମଗ୍ର ବନ ଖୋଜିବା । ୧୮ । ହେ କାକୁତ୍ସ୍ଥ ! ଯଦି ଏ କଥା ତୁମର ମନକୁ ପାଉଛି ତାହା-ହେଲେ ଆଉ ଶୋକ କର ନାହିଁ” । ଲକ୍ଷ୍ମଣ ସୌହାର୍ଦ୍ଦ୍ୟବଶତଃ ଏହି କଥା କହିବାରୁ ରାମ ଖୁବ୍ ସାବଧାନଭାବରେ ଲକ୍ଷ୍ମଣଙ୍କ ସହିତ ସୀତାଙ୍କୁ ଖୋଜିବାକୁ ଆରମ୍ଭକଲେ । ସେହି ଦୁଇ ଦଶରଥନନ୍ଦନ ସୀତାଙ୍କୁ ଖୋଜିବା ପାଇଁ ବନ, ପର୍ବତ, ନଦୀ,

ନାଖିଲେନ ବିଚିନ୍ୱାନୌ ସୀତାଂ ଦଶରଥାତ୍ମଜୌ ।
ତସ୍ୟ ଶୈଳସ୍ୟ ସାନୂନି ଗୁହାଶ୍ଚ ଶିଖରାଣି ଚ । ୨୧ ।
ନାଖିଲେନ ବିଚିନ୍ୱାନୌ ନୈବ ତାମଭିଜଗ୍ମତୁଃ ।
ବିଚିତ୍ୟ ସର୍ବତଃ ଶୈଳଂ ରାମୋ ଲକ୍ଷ୍ମଣମବ୍ରବୀତ୍ । ୨୨ ।
ନେହ ପଶ୍ୟାମି ସୌମିତ୍ରେ ବୈଦେହୀଂ ପର୍ବତେ ଶୁଭାମ୍ ।
ତତୋ·ଦୁଃଖାଭିସଂତପ୍ତୋ ଲକ୍ଷ୍ମଣୋ ବାକ୍ୟମବ୍ରବୀତ୍ । ୨୩ ।
ବିଚରନ୍ ଦଣ୍ଡକାରଣ୍ୟଂ ଭ୍ରାତରଂ ଦୀପ୍ତତେଜସମ୍ ।
ପ୍ରାପ୍ସ୍ୟସି ତ୍ୱଂ ମହାପ୍ରାଜ୍ଞ ମୈଥିଲୀଂ ଜନକାତ୍ମଜାମ୍ ।୨୪।
ଯଥା ବିଷ୍ଣୁର୍ମହାବାହୁର୍ବଲିଂ ବଦ୍ଧ୍ୱା ମହୀମିମାମ୍ ।
ଏବମୁକ୍ତସ୍ତୁ ସୌହାର୍ଦା ଲ୍ଲକ୍ଷ୍ମଣେନ ସ ରାଘବଃ । ୨୫ ।
ଉବାଚ ଦୀନୟା ବାଚା ଦୁଃଖାଭିହତଚେତନଃ ।
ବନଂ ସର୍ବଂ ସୁବିଚିତଂ ପଦ୍ମିନ୍ୟଃ ଫୁଲ୍ଲପଙ୍କଜାଃ । ୨୬ ।
ଗିରିଶ୍ଚାୟଂ ମହାପ୍ରାଜ୍ଞ ବହୁକନ୍ଦରନିର୍ଝରଃ ।
ନ ହି ପଶ୍ୟାମି ବୈଦେହୀଂ ପ୍ରାଣେଭ୍ୟୋଽପି ଗରୀୟସୀମ୍ ।୨୭।
ଏବଂ ସ ବିଲପନ୍ ରାମଃ ସୀତାହରଣକର୍ଶିତଃ ।
ଦୀନଃ ଶୋକସମାବିଷ୍ଟୋ ମୁହୂର୍ତ୍ତଂ ବିହ୍ୱଲୋଽଭବତ୍ । ୨୮ ।

---

ସରୋବର, ପର୍ବତର ଶୃଙ୍ଗ, ପାର୍ଶ୍ୱଦେଶ ଏବଂ ଗୁହାମାନ ତନ୍ନ ତନ୍ନ କରି ବୁଲି ଦେଖିଲେ; ମାତ୍ର ତାଙ୍କୁ ପାଇଲେ ନାହିଁ । ପର୍ବତର ଚାରିଆଡ଼ ଖୋଜସାରି ରାମ ଲକ୍ଷ୍ମଣଙ୍କୁ କହିଲେ । ୧୯-୨୨ । "ହେ ସୌମିତ୍ରେ ! ମୁଁ ଏ ପର୍ବତରେ ସୁନ୍ଦରୀ ବୈଦେହୀଙ୍କୁ ଦେଖୁ ନାହିଁ ?" ଅନନ୍ତର ଲକ୍ଷ୍ମଣ ଦଣ୍ଡକାରଣ୍ୟରେ ବୁଲୁ ବୁଲୁ ଦୁଃଖାଭିଭୂତ ହୋଇ ତେଜସ୍ୱୀ ଭ୍ରାତାଙ୍କୁ କହିଲେ । "ହେ ମହାପ୍ରାଜ୍ଞ ! ବିଷ୍ଣୁ ଯେପରି ବଳିଙ୍କୁ ବନ୍ଧନକରି ଏ ପୃଥିବୀକୁ ପାଇଥିଲେ, ତୁମେ ଜନକନନ୍ଦିନୀ ସୀତାଙ୍କୁ ସେହିପରି ପାଇବ ।" ସୌହାର୍ଦ୍ଦ୍ୟବଶତଃ ଲକ୍ଷ୍ମଣ ଏପରି କହିବାରୁ ରାମ ଦୁଃଖରେ ହତଜ୍ଞାନ ହୋଇ ଅତି କରୁଣବାକ୍ୟରେ କହିଲେ । "ହେ ମହାପ୍ରାଜ୍ଞ ! ଆମେ ତ ସମଗ୍ର ବନ,ପ୍ରସ୍ଫୁଟିତ ପଦ୍ମପୁଷ୍ପପୂର୍ଣ୍ଣ ସରୋବର ଏବଂ ବହୁ କନ୍ଦରନିର୍ଝରଶୋଭିତ ଏ ପର୍ବତ ଉତ୍ତମରୂପେ ଖୋଜିଲେଣି; ତଥାପି ମୁଁ ମୋର ପ୍ରାଣରୁ ବଳି ପ୍ରିୟ ମୋ ବୈଦେହୀଙ୍କୁ ଦେଖିଲି ନାହିଁ"। ୨୩-୨୭ । ସୀତାହରଣସନ୍ତପ୍ତ ରାମ ଶୋକାବିଷ୍ଟ ଓ ବ୍ୟାକୁଳ ହୋଇ ଏହିପରି ବିଳାପ କରି କରି ମୁହୂର୍ତ୍ତେ କାଳ ବିହ୍ୱଳ

ସ ବହ୍ୱଲିତସର୍ବାଙ୍ଗୋ ଗତବୁଦ୍ଧିର୍ବିଚେତନଃ ।
ନିଷସାଦାତୁରୋ ଦୀନୋ ନିଃଶ୍ୱସ୍ୟାଶୀତମାୟତମ୍ । ୨୯ ।
ବହୁଶଃ ସ ତୁ ନିଃଶ୍ୱସ୍ୟ ରାମୋ ରାଜୀବଲୋଚନଃ ।
ହା ପ୍ରିୟେତି ବିଚୁକ୍ରୋଶ ବହୁଶୋ ବାଷ୍ପଗଦ୍‌ଗଦଃ । ୩୦ ।
ତଂ ତତଃ ସାନ୍ତ୍ୱୟାମାସ ଲକ୍ଷ୍ମଣଃ ପ୍ରିୟବାନ୍ଧବଃ ।
ବହୁପ୍ରକାରଂ ଧର୍ମଜ୍ଞଃ ପ୍ରଶ୍ରିତଃ ପ୍ରଶ୍ରିତାଞ୍ଜଳିଃ । ୩୧ ।
ଅନାଦୃତ୍ୟ ତୁ ତଦ୍‌ବାକ୍ୟଂ ଲକ୍ଷ୍ମଣୋଷ୍ଠପୁଟାଚ୍ୟୁତମ୍ ।
ଅପଶ୍ୟଂସ୍ତାଂ ପ୍ରିୟାଂ ସୀତାଂ ପ୍ରାକ୍ରୋଶତ୍ସ ପୁନଃପୁନଃ ।୩୨।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ସୀତାନ୍ୱେଷଣମ୍
ନାମ ଏକଷଷ୍ଟିତମଃ ସର୍ଗଃ ।

---

ହୋଇପଡ଼ିଲେ । ୨୮ । ତାଙ୍କର ବୁଦ୍ଧି ହୀନ, ଚେତନା ଶୂନ୍ୟ ଏବଂ ସମଗ୍ର ଶରୀର ଶିଥିଳ ହୋଇପଡ଼ିଲା । ସେ ଆତୁର ଏବଂ ଦୁଃଖିତ ହୋଇ ଦୀର୍ଘ ଉଷ୍ଣନିଶ୍ୱାସ ପରିତ୍ୟାଗକରି ବସିପଡ଼ିଲେ । ୨୯ । ପଦ୍ମଲୋଚନ ରାମ ବାରମ୍ବାର ନିଶ୍ୱାସ ପକାଇ ବାଷ୍ପଗଦ୍‌ଗଦକଣ୍ଠରେ 'ହା ପ୍ରିୟେ' ବୋଲି ଘନ ଘନ ଉଚ୍ଚସ୍ୱରରେ ରୋଦନ କରିବାକୁ ଲାଗିଲେ । ୩୦ । ଅନନ୍ତର ତାଙ୍କର ପ୍ରିୟବନ୍ଧୁ ଲକ୍ଷ୍ମଣ ଶୋକାର୍ତ୍ତ ହୋଇ ବିନୟସହକାରେ ଅଞ୍ଜଳିବନ୍ଧନପୂର୍ବକ ତାହାଙ୍କୁ ସାନ୍ତ୍ୱନା ଦେବାକୁ ଲାଗିଲେ । ୩୧ । କିନ୍ତୁ ରାମ ତାଙ୍କର ମୁଖନିସୃତ ସେହି କଥାକୁ ଭ୍ରୂକ୍ଷେପ ନ କରି ଓ ପ୍ରିୟତମା ସୀତାଙ୍କୁ ନ ଦେଖି ବାରମ୍ବାର ଉଚ୍ଚୈଃସ୍ୱରରେ କ୍ରନ୍ଦନ କରିବାକୁ ଲାଗିଲେ । ୩୨ ।

# ଦ୍ୱିଷଷ୍ଟିତମଃ ସର୍ଗଃ

## ରାଘବବିଳାପଃ

ସୀତାମପଶ୍ୟନ୍ ଧର୍ମାତ୍ମା ଶୋକୋପହତଚେତନଃ ।
ବିଲଲାପ ମହାବାହୂ ରାମଃ କମଲଲୋଚନଃ । ୧ ।
ପଶ୍ୟନ୍ନିବ ସ ତାଂ ସୀତାମପଶ୍ୟନ୍ ମଦନାର୍ଦ୍ଦିତଃ ।
ଉବାଚ ରାଘବୋ ବାକ୍ୟଂ ବିଳାପାଶ୍ରୟଦୁର୍ବଚମ୍ । ୨ ।
ତ୍ୱମଶୋକସ୍ୟ ଶାଖାଭିଃ ପୁଷ୍ପପ୍ରିୟ ତୟା ପ୍ରିୟେ ।
ଆବୃଣୋଷି ଶରୀରଂ ତେ ମମ ଶୋକବିବର୍ଧନୀ । ୩ ।
କଦଳୀକାଣ୍ଡସଦୃଶୌ କଦଲ୍ୟା ସଂବୃତାବୁଭୌ ।
ଉରୂ ପଶ୍ୟାମି ତେ ଦେବି ନାସି ଶକ୍ତା ନିଗୂହିତୁମ୍ । ୪ ।
କର୍ଣିକାରବନଂ ଭଦ୍ରେ ହସନ୍ତୀ ଦେବି ସେବସେ ।
ଅଲଂ ତେ ପରିହାସେନ ମମ ବାଧାବହେନ ବୈ । ୫ ।
ପରିହାସେନ କିଂ ସୀତେ ପରିଶ୍ରାନ୍ତସ୍ୟ ମେ ପ୍ରିୟେ ।
ଅୟଂ ସ ପରିହାସୋଽପି ସାଧୁ ଦେବି ନ ରୋଚତେ । ୬ ।

---

## ୬୨ତମ ସର୍ଗ

( ରାଘବବିଳାପ )

ମହାବାହୁ ଧର୍ମାତ୍ମା କମଳଲୋଚନ ରାମ ସୀତାଙ୍କୁ ନ ଦେଖି ଶୋକରେ ହତଜ୍ଞାନ ହୋଇବିଳାପ କରିବାକୁ ଲାଗିଲେ ।୧। ସେ ସୀତାଙ୍କୁ ନ ଦେଖିଲେ ମଧ୍ୟ ଦେଖିଲାପରି କାମପୀଡ଼ିତ ହୋଇ ବିଳାପକରି ନାନା ଅକଥନୀୟ କଥା କହିବାକୁ ଲଗିଲେ । ୨ । "ହେ ପ୍ରିୟେ ! ଫୁଲ ତୁମ୍ଭର ଅତିଶୟ ପ୍ରିୟ ହୋଇଥିବାରୁ ତୁମେ ଅଶୋକ ଶାଖାମାନଙ୍କଦ୍ୱାରା ନିଜଶରୀରକୁ ଘୋଡ଼ାଇ ମୋର ଶୋକକୁ ପରିବର୍ଦ୍ଧିତ କରୁଅଛ । ୩ । ଦେବି ! ତୁମ୍ଭର ଉରୁଯୁଗଳ କଦଳୀବୃକ୍ଷର କାଣ୍ଡସଦୃଶ ଏବଂ ତୁମେ ତାହାକୁ କଦଳୀବୃକ୍ଷଦ୍ୱାରା ଆଚ୍ଛନ୍ନ କରିଥିଲେ ମଧ୍ୟ ମୁଁ ତାହା ଦେଖି ପାରୁଛି । ତୁମେ ତାକୁ ଗୋପନ କରିବାରେ ସମର୍ଥ ହୋଇ ନାହଁ । ୪ । ଭଦ୍ରେ ! ତୁମେ ହସି ହସି କନିଅର ବନମଧ୍ୟରେ ପଶିଯାଉଛ, କିନ୍ତୁ ମୋତେ କଷ୍ଟ ଦେବାଭଳି ଆଜି ପରିହାସ କରିବାର ପ୍ରୟୋଜନ ନାହିଁ । ୫ । ପ୍ରିୟେ ସୀତେ ! ମୁଁ ବଡ଼ ପରିଶ୍ରାନ୍ତ ହୋଇପଡ଼ିଛି, ମୋତେ ପରିହାସ କରି କି ଲାଭ ? ଦେବି ! ତୁମ୍ଭର ଏହି ପରିହାସ ମୋତେ ସୁଖ ଲାଗୁ ନାହିଁ । ୬ । ପ୍ରିୟେ ! ତୁମେ ଯେ ସ୍ୱଭାବତଃ

ବିଶେଷେଣାଶ୍ରମସ୍ଥାନେ ହାସୋଽୟଂ ନ ପ୍ରଶସ୍ୟତେ ।
ଅବଗଚ୍ଛାମି ତେ ଶୀଳଂ ପରିହାସପ୍ରିୟଂ ପ୍ରିୟେ । ୭।
ଆଗଚ୍ଛ ତ୍ୱଂ ବିଶାଳାକ୍ଷି ଶୂନ୍ୟୋଽୟମୁଟଜସ୍ତବ ।
ସୁବ୍ୟକ୍ତଂ ରାକ୍ଷସୈଃ ସୀତା ଭକ୍ଷିତା ବା ହୃତାପି ବା । ୮।
ନ ହି ସା ବିଲପନ୍ତଂ ମାମୁପସଂପ୍ରୈତି ଲକ୍ଷ୍ମଣ ।
ଏତାନି ମୃଗୟୂଥାନି ସାଶ୍ରନେତ୍ରାଣି ଲକ୍ଷ୍ମଣ । ୯ ।
ଶଂସନ୍ତୀବ ହି ବୈଦେହୀଂ ଭକ୍ଷିତାଂ ରଜନୀଚରୈଃ ।
ହା ମମାର୍ଯ୍ୟେ କ୍ୱ ଯାତାସି ହା ସାଧ୍ୱି ବରବର୍ଣ୍ଣିନି । ୧୦ ।
ହା ସକାମାଦ୍ୟ କୈକେୟୀ ଦେବୀ ସାପି ଭବିଷ୍ୟତି ।
ସୀତୟା ସହ ନିର୍ଯ୍ୟାତୋ ବିନା ସୀତାମୁପାଗତଃ । ୧୧ ।
କଥଂ ନାମ ପ୍ରବେକ୍ଷ୍ୟାମି ଶୂନ୍ୟମନ୍ତଃପୁରଂ ପୁନଃ ।
ନିର୍ବୀର୍ଯ୍ୟ ଇତି ଲୋକୋ ମାଂ ନିର୍ଦ୍ଦୟଶ୍ଚେତି ବକ୍ଷ୍ୟତି । ୧୨।
କାତରତ୍ୱଂ ପ୍ରକାଶଂ ହି ସୀତାପନୟନେନ ମେ ।
ନିବୃତ୍ତବନବାସଶ୍ଚ ଜନକଂ ମିଥିଳାଧିପମ୍ । ୧୩ ।

---

ପରିହାସପ୍ରିୟ, ଏ କଥା ମୁଁ ଜାଣେ । ବିଶେଷତଃ ଆଶ୍ରମସ୍ଥାନରେ ପରିହାସ କରିବା ଭଲ ନୁହେଁ । ୭ । ବିଶାଳାକ୍ଷି ! ତୁମ୍ଭର ଏହି ପର୍ଣ୍ଣଶାଳା ଶୂନ୍ୟହୋଇ-ପଡ଼ିଛି, ତୁମେ ଆସ । ଲକ୍ଷ୍ମଣ ! ମୁଁ ଏପରି ବିଳାପ କରୁଥିଲେ ମଧ୍ୟ ସେ ଯେତେବେଳେ ମୋନିକଟକୁ ଆସୁନାହାନ୍ତି, ଏଥିରୁ ସ୍ପଷ୍ଟ ଜଣାଯାଉଛି ଯେ ସୀତାଙ୍କୁ ରାକ୍ଷସମାନେ ଭକ୍ଷଣ କରିପକାଇଛନ୍ତି ବା ଅପହରଣକରି ନେଇଛନ୍ତି । ଲକ୍ଷ୍ମଣ ! ଏହି ମୃଗଦଳମାନଙ୍କ ଚକ୍ଷୁ ଯେ ଲୋତକରେ ପୂର୍ଣ୍ଣ ହୋଇଯାଇଛି, ତଦ୍ୱାରା ସେମାନେ ସତେ ଯେପରି କହୁଛନ୍ତି କି, ସୀତା ରାକ୍ଷସମାନଙ୍କଦ୍ୱାରା ଭକ୍ଷିତ ହୋଇଅଛନ୍ତି । ହା ଅର୍ଯ୍ୟେ ! ସାଧ୍ୱି ! ବରବର୍ଣ୍ଣିନି ! ତୁମ୍ଭେ କେଉଁଆଡ଼େ ଗଲ ? । ୮-୧୦ । ଆର୍ଯ୍ୟେ ! ଆଜ ଦେବୀ କୈକେୟୀ ସଫଳମନୋରଥା ହେବେ ଯେ ମୁଁ ସୀତାଙ୍କ ସହିତ ଘରୁ ବାହାରିଥିଲି, ଅଥଚ ସୀତାଙ୍କୁ ଛାଡ଼ି ଘରକୁ ଫେରିବି ।୧୧। ଆହା ! ମୁଁ ଶୂନ୍ୟ ଅନ୍ତଃପୁରରେ କିପରି ପୁଣି ପ୍ରବେଶ କରିବି । ଲୋକେ ମୋତେ ନିଶ୍ଚୟ ନିର୍ବୀର୍ଯ୍ୟ ଏବଂ ନିର୍ଦ୍ଦୟ ବୋଲି କହିବେ । ୧୨ । ସୀତାଙ୍କର ଅପହରଣଦ୍ୱାରା ମୋର ଦୁର୍ବଳତା ହିଁ ପ୍ରକାଶିତ ହେଉଅଛି । ମୁଁ ବନବାସ ସମାପନକରି ଫେରିଗଲେ, ମିଥିଳାରାଜ ଜନକ ମୋତେ ଯେତେବେଳେ କୁଶଳପ୍ରଶ୍ନ ପଚାରିବେ, ସେତେବେଳେ

କୁଶଲଂ ପରିପୃଚ୍ଛନ୍ତଂ କଥଂ ଶକ୍ଷ୍ୟେ ନିରୀକ୍ଷିତୁମ୍ ।
ବୈଦେହୀରହିତୋ ନୂନଂ ମାଂ ଦୃଷ୍ଟ୍ୱା ବିରହିତଂ ତୟା । ୧୪ ।
ସୁତାସ୍ନେହେନ ସଂତପ୍ତୋ ମୋହସ୍ୟ ବଶମେଷ୍ୟତି ।
ଅଥବା ନ ଗମିଷ୍ୟାମି ପୁରୀଂ ଭରତପାଳିତାମ୍ । ୧୫ ।
ସ୍ୱର୍ଗୋଽପି ସୀତୟା ହୀନଃ ଶୂନ୍ୟ ଏବ ମତୋ ମମ ।
ମାମିହୋତ୍ସୃଜ୍ୟ ହି ବନେ ଗଚ୍ଛାଯୋଧ୍ୟାଂ ପୁରୀଂ ଶୁଭାମ୍ ।୧୬।
ନ ତ୍ୱହଂ ତାଂ ବିନା ସୀତାଂ ଜୀବେୟଂ ହି କଥଂଚନ ।
ଗାଢ଼ମାଶ୍ଳିଷ୍ୟ ଭରତୋ ବାଚ୍ୟୋ ମଦ୍ବଚନାତ୍ତ୍ୱୟା । ୧୭ ।
ଅନୁଜ୍ଞାତୋଽସି ରାମେଣ ପାଳୟେତି ବସୁନ୍ଧରାମ୍ ।
ଅମ୍ବା ଚ ମମ କୈକେୟୀ ସୁମିତ୍ରା ଚ ତ୍ୱୟା ବିଭୋ । ୧୮ ।
କୌସଲ୍ୟା ଚ ଯଥାନ୍ୟାୟମଭିବାଦ୍ୟା ମମାଜ୍ଞୟା ।
ରକ୍ଷଣୀୟା ପ୍ରଯତ୍ନେନ ଭବତା ସୂକ୍ତକାରିଣା । ୧୯ ।
ସୀତାୟାଶ୍ଚ ବିନାଶୋଽୟଂ ମମ ଚାମିତ୍ରକର୍ଶନ ।
ବିସ୍ତରେଣ ଜନନ୍ୟା ମେ ବିନିବେଦ୍ୟସ୍ତ୍ୱୟା ଭବେତ୍ । ୨୦ ।

---

ମୁଁ ତାଙ୍କ ଆଡ଼କୁ ଚାହିଁବାକୁ କିପରି ସମର୍ଥ ହେବି ? ସେ ମୋତେ ସୀତାହୀନ ଦେଖିଲେ ନିଶ୍ଚୟ କନ୍ୟାସ୍ନେହରେ ସଂତପ୍ତ ହୋଇ ମୋହାବିଷ୍ଟ ହୋଇପଡ଼ିବେ । ନା, ମୁଁ ଆଉ ଭରତପାଳିତ ଅଯୋଧ୍ୟାପୁରୀକୁ ଯିବି ନାହିଁ । ୧୩-୧୫ । ମୋର ମନେହୁଏ, ସୀତାଙ୍କ ବିରହରେ ସ୍ୱର୍ଗ ମଧ୍ୟ ମୋପକ୍ଷରେ ଶୂନ୍ୟ । ତୁମେ ମୋତେ ଏହି ବନମଧ୍ୟରେ ଛାଡ଼ିଦେଇ ରମଣୀୟ ଅଯୋଧ୍ୟାପୁରୀକୁ ଯାଅ । ୧୬ । ମୁଁ ସୀତାଙ୍କ ବିହୁନରେ କୌଣସିମତେ ଜୀବନ ଧରିପାରିବି ନାହିଁ । ତୁମେ ଭରତଙ୍କୁ ଗାଢ଼ ଆଲିଙ୍ଗନକରି ମୋକଥା ଅନୁସାରେ କହିବ ଯେ, 'ରାମ ଅନୁମତି ଦେଇଛନ୍ତି, ତୁମେ ଏ ପୃଥିବୀ ପାଳନକର ।' ହେ କାର୍ଯ୍ୟକୁଶଳ ଲକ୍ଷ୍ମଣ ! ତୁମେ ଜନନୀ କୌଶଲ୍ୟା, କୈକେୟୀ ଏବଂ ସୁମିତ୍ରାଙ୍କୁ ମୋ ଆଜ୍ଞା ଅନୁସାରେ ଅଭିବାଦନ କରିବ ଏବଂ ସଦ୍‌ବାକ୍ୟପ୍ରୟୋଗପୂର୍ବକ ଅତି ଯତ୍ନରେ ସେମାନଙ୍କର ରକ୍ଷଣାବେକ୍ଷଣ କରିବ । ୧୭-୧୯ । ହେ ଶତ୍ରୁନାଶନ ! ମୋର ଜନନୀଙ୍କୁ ବିସ୍ତୃତଭାବରେ ସୀତାଙ୍କର ବିନାଶବାର୍ତ୍ତା ଏବଂ ମୋର ଏ ଅବସ୍ଥା ନିବେଦନ କରିବ" । ୨୦ । ରାଘବ ସୁକେଶୀ

ଇତି ବିଲପତି ରାଘବେ ସୁଦୀନେ
ବନମୁପଗମ୍ୟ ତୟା ବିନା ସୁକେଶ୍ୟା ।
ଭୟବିକଳମୁଖସ୍ତୁ ଲକ୍ଷ୍ମଣୋଽପି
ବ୍ୟଥିତମନା ଭୃଶମାତୁରୋ ବଭୂବ । ୨୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ରାଘବବିଲାପୋ
ନାମ ଦ୍ୱିଷଷ୍ଟିତମଃ ସର୍ଗଃ

---

ସୀତାଙ୍କ ବିରହରେ ସେହି ବନମଧ୍ୟରେ ଦୀନଭାବରେ ଏହିପରି ବିଳାପ କରିବାରୁ ଭୟରେ ଲକ୍ଷ୍ମଣଙ୍କର ମୁଖ ବିବର୍ଣ୍ଣ ଓ ମନ ବ୍ୟଥିତ ହୋଇପଡ଼ିଲା ଏବଂ ସେ ଅତିଶୟ ଆତୁର ହୋଇ- ପଡ଼ିଲେ । ୨୧ ।

# ତ୍ରିଷଷ୍ଟିତମଃ ସର୍ଗଃ

## ଦୁଃଖାନୁଚିନ୍ତନମ୍

ସ ରାଜପୁତ୍ରଃ ପ୍ରିୟୟା ବିହୀନଃ
ଶୋକେନ ମୋହେନ ଚ ପୀଡ଼୍ୟମାନଃ ।
ବିଷାଦୟନ୍ ଭ୍ରାତରମାର୍ତ୍ତରୂପୋ
ଭୂୟୋ ବିଷାଦଂ ପ୍ରବିବେଶ ତୀବ୍ରମ୍ । ୧ ।
ସ ଲକ୍ଷ୍ମଣଂ ଶୋକବଶାଭିପନ୍ନମ୍
ଶୋକେ ନିମଗ୍ନୋ ବିପୁଲେ ତୁ ରାମଃ ।
ଉବାଚ ବାକ୍ୟଂ ବ୍ୟସନାନୁରୂପ-
ମୁଷ୍ଣଂ ବିନିଶ୍ୱସ୍ୟ ରୁଦନ୍ ସଶୋକମ୍ । ୨ ।
ନ ମଦ୍ୱିଧୋ ଦୁଷ୍କୃତକର୍ମକାରୀ
ମନ୍ୟେ ଦ୍ୱିତୀୟୋଽସ୍ତି ବସୁନ୍ଧରାୟାମ୍ ।
ଶୋକେନ ଶୋକୋ ହି ପରମ୍ପରାୟା
ମାମେତି ଭିନ୍ଦନ୍ ହୃଦୟଂ ମନଶ୍ଚ । ୩ ।

---

## ୬୩ତମ ସର୍ଗ

( ଦୁଃଖରେ ରାମଙ୍କର ଅନୁଶୋଚନା )

ପ୍ରିୟାବିହୀନ ରାଜପୁତ୍ର ରାମ ଶୋକ ଏବଂ ମୋହଦ୍ୱାରା ପ୍ରପୀଡ଼ିତ ହୋଇ ଭ୍ରାତାଙ୍କର ବିଷାଦ ଉତ୍ପାଦନପୂର୍ବକ ପୁନର୍ବାର ସ୍ୱୟଂ ତୀବ୍ର ବିଷାଦଗ୍ରସ୍ତ ହେଲେ । ୧ । ରାମ ବିପୁଳ ଶୋକରେ ମଗ୍ନ ହୋଇ, ଦୀର୍ଘନିଶ୍ୱାସ ପରିତ୍ୟାଗପୂର୍ବକ ରୋଦନ କରି କରି ଶୋକାକୁଳ ଲକ୍ଷ୍ମଣଙ୍କୁ ଉପସ୍ଥିତ ବିପଦର ଅନୁରୂପ ବାକ୍ୟରେ କହିବାକୁ ଲାଗିଲେ । ୨ । "ମୋର ମନେହୁଏ, ମୋପରି ଦୁଷ୍କର୍ମକାରୀ ଦ୍ୱିତୀୟ ବ୍ୟକ୍ତି ଆଉ ଏ ପୃଥିବୀରେ ନାହିଁ । ଦେଖ, ମୋର ହୃଦୟ ଏବଂ ମନକୁ ବିଦୀର୍ଣ୍ଣକରି ଶୋକ ପରେ ଶୋକ ପରଂପରାକ୍ରମରେ ବରାବର ଆସୁଅଛି । ୩ । ମୁଁ ନିଶ୍ଚୟ

ପୂର୍ବଂ ମୟା ନୂନମଭୀପ୍ସିତାନି
ପାପାନି କର୍ମାଣ୍ୟସକୃତ୍ କୃତାନି ।
ତତ୍ରାୟମଦ୍ୟାପତିତୋ ବିପାକୋ
ଦୁଃଖେନ ଦୁଃଖଂ ଯଦହଂ ବିଶାମି ।୪।
ରାଜ୍ୟପ୍ରଣାଶଃ ସ୍ୱଜନୈର୍ବିୟୋଗଃ
ପିତୁର୍ବିନାଶୋ ଜନନୀବିୟୋଗଃ ।
ସର୍ବାଣି ମେ ଲକ୍ଷ୍ମଣ ଶୋକବେଗ-
ମାପୂରୟନ୍ତି ପ୍ରବିଚିନ୍ତିତାନି ।୫।
ସର୍ବଂ ତୁ ଦୁଃଖଂ ମମ ଲକ୍ଷ୍ମଣେଦମ୍
ଶାନ୍ତଂ ଶରୀରେ ବନମେତ୍ୟ ଶୂନ୍ୟମ୍ ।
ସୀତାବିୟୋଗାତ୍ ପୁନରପ୍ୟୁଦୀର୍ଣ୍ଣମ୍
କାଷ୍ଠୈରିବାଗ୍ନିଃ ସହସା ପ୍ରଦୀପ୍ତଃ ।୬।
ସା ନୂନମାର୍ଯ୍ୟା ମମ ରାକ୍ଷସେନ
ବଲାଦ୍ଧୃତା ଖଂ ସମୁପେତ୍ୟ ଭୀରୁଃ ।
ଅପସ୍ୱରଂ ସସ୍ୱରବିପ୍ରଲାପା
ଭୟେନ ବିକ୍ରନ୍ଦିତବତ୍ୟଭୀକ୍ଷ୍ଣମ୍ ।୭।

---

ପୂର୍ବଜନ୍ମରେ ଇଚ୍ଛାପୂର୍ବକ ବାରଂବାର ବହୁ ପାପକାର୍ଯ୍ୟ କରିଅଛି । ସେହିହେତୁରୁ ଆଜି ତା'ର ଏହି ଫଳ ଉପସ୍ଥିତ ହୋଇଅଛି ଏବଂ ସେଥିପାଇଁ ଦୁଃଖ ଉପରେ ଦୁଃଖ ଆସି ମୋ ଉପରେ ପଡ଼ୁଛି ।୪। ହେ ଲକ୍ଷ୍ମଣ ! ରାଜ୍ୟନାଶ, ଆତ୍ମୀୟ ସ୍ୱଜନଙ୍କଠାରୁ ବିଚ୍ଛେଦ, ପିତାଙ୍କର ନାଶ ଏବଂ ଜନନୀଙ୍କଠାରୁ ବିଚ୍ଛେଦ, ଏହି ସମସ୍ତ ଚିନ୍ତା କରିବା ଦ୍ୱାରା ମୋର ଶୋକବେଗ ପରିପୂର୍ଣ୍ଣ ହୋଇଯାଉଛି ।୫। [illegible] ଲକ୍ଷ୍ମଣ ! ମୁଁ ଏ ନିର୍ଜନ ବନକୁ ଆସିବା ପରେ ଏ ସମସ୍ତ ଦୁଃଖ ମୋଦେହରେ ସନ୍ଧି ହୋଇଯାଇଥିଲା; ମାତ୍ର ବର୍ତ୍ତମାନ କାଷ୍ଠସଂଯୋଗରେ ସହସା ପ୍ରଦୀପ୍ତ ଅଗ୍ନି ପରି ସୀତାଙ୍କ ବିୟୋଗରେ ପୁଣି ସେ ସମସ୍ତ ପ୍ରବଳ ହୋଇଉଠିଛି ।୬। ନିଶ୍ଚୟ କୌଣସି ରାକ୍ଷସ ମୋର ସେହି ଧୀରସ୍ୱଭାବା ଆର୍ଯ୍ୟା ସୀତାଙ୍କୁ ଆକାଶରେ ଉଡ଼ି ବଳାତ୍କାରରେ ଅପହରଣକରି ନେଇଯାଇଛି । ଆହା ! ସେତେବେଳେ ସେ ଭୟରେ ନିଶ୍ଚୟ ବିକୃତସ୍ୱରରେ ବାରଂବାର ଚିତ୍କାରକରି କାନ୍ଦିଥିବେ ।୭।

ତୌ ଲୋହିତସ୍ୟ ପ୍ରିୟଦର୍ଶନସ୍ୟ
ସଦୋଚିତାବୁତ୍ତମଚନ୍ଦନସ୍ୟ ।
ବୃତ୍ତୌ ସ୍ତନୌ ଶୋଣିତପଙ୍କଦିଗ୍ଧୌ
ନୂନଂ ପ୍ରିୟାୟା ମମନାଭିଭାତଃ । ୮ ।
ତଚ୍ଛ୍ଲକ୍ଷ୍ଣସୁବ୍ୟକ୍ତମୃଦୁପ୍ରଲାପମ୍
ତସ୍ୟା ମୁଖଂ କୁଞ୍ଚିତକେଶଭାରମ୍ ।
ରକ୍ଷୋବଶଂ ନୂନମୁପାଗତାୟା
ନ ଭ୍ରାଜତେ ରାହୁମୁଖେ ଯଥେନ୍ଦୁଃ । ୯ ।
ତାଂ ହାରପାଶସ୍ୟ ସଦୋଚିତାୟା
ଗ୍ରୀବାଂ ପ୍ରିୟାୟା ମମ ସୁବ୍ରତାୟାଃ ।
ରକ୍ଷାଂସି ନୂନଂ ପରିପୀତବନ୍ତି
ବିଭିଦ୍ୟ ଶୂନ୍ୟେ ରୁଧିରାଶନାନି । ୧୦ ।
ମୟା ବିହୀନା ବିଜନେ ବନେ ଯା
ରକ୍ଷୋଭିରାହୃତ୍ୟ ବିକୃଷ୍ୟମାଣା ।
ନୂନଂ ବିନାଦଂ କୁରରୀବ ଦୀନା
ସା ମୁକ୍ତବତ୍ୟାୟତକାନ୍ତନେତ୍ରା । ୧୧ ।

---

ମୋ ପ୍ରିୟାଙ୍କର ସେହି ସୁଗୋଲ ସ୍ତନଯୁଗଳ ସର୍ବଦା ଉତ୍ତମ, ରକ୍ତବର୍ଣ୍ଣ, ଦୃଷ୍ଟି-ମନୋହର ଚନ୍ଦନ ଲେପନର ଉପଯୋଗୀ; ତାହା ଏବେ ଶୋଣିତରୂପକ ଆବର୍ଜନାଲିପ୍ତ ହୋଇ ଆଉ ସୁନ୍ଦର ଦିଶୁ ନ ଥିବ । ୮ । ତାଙ୍କର ମୁଖମଣ୍ଡଳ କୁଞ୍ଚିତକେଶକଳାପରେ ଶୋଭିତ ଏବଂ ସ୍ପଷ୍ଟ ମଧୁର ଓ କୋମଳ ବାଗ୍‌-ବିନ୍ୟାସରେ ସୁଶୋଭିତ । ତାହାଁ ଏବେ ରାକ୍ଷସର ବଶୀଭୂତ ହୋଇ ରାହୁମୁଖଗ୍ରସ୍ତ ଚନ୍ଦ୍ରଙ୍କପରି ନିଷ୍ପ୍ରଭ ଆଉ ଶୋଭା ପାଉ ନ ଥିବ । ୯ । ମୋର ସୁଚରିତା ପ୍ରିୟାଙ୍କର ସେହି ସୁନ୍ଦର ଗ୍ରୀବା ସର୍ବଦା ହାରଦ୍ୱାରା ଶୋଭା ପାଉଥାଏ । ରୁଧିରପାୟୀ ରାକ୍ଷସମାନେ ଏକାନ୍ତରେ ପାଇ ନିଶ୍ଚୟ ସେ ଗ୍ରୀବାକୁ ଭେଦକରି ରକ୍ତପାନ କରିଅଛନ୍ତି । ୧୦ । ମୁଁ ନ ଥିବାରୁ ନିର୍ଜନ ବନରେ ରାକ୍ଷସମାନେ ତାଙ୍କୁ ଧରି ଆକର୍ଷଣ କଲାବେଳେ ସେହି ଦୀର୍ଘ ବିଶାଳନୟନା ନିଶ୍ଚୟ ବ୍ୟାକୁଳହୋଇ ଚକୋରୀପରି ଦୀନଭାବରେ ଚିତ୍କାର କରିଥିବେ । ୧୧ । ହେ ଲକ୍ଷ୍ମଣ ! ସେହି ଉଦାରସ୍ୱଭାବା ହାସ୍ୟମୁଖୀ ସୀତା

ଅସ୍ମିନ୍ ମୟା ସାର୍ଧମୁଦାର ଶୀଳା
ଶିଳାତଳଂ ପୂର୍ବମୁପୋପବିଷ୍ଟା ।
କାନ୍ତସ୍ମିତା ଲକ୍ଷ୍ମଣ ଜାତହାସା
ତ୍ୱାମାହ ସୀତା ବହୁବାକ୍ୟଜାତମ୍ । ୧୨ ।
ଗୋଦାବରୀୟଂ ସରିତାଂ ବରିଷ୍ଠା
ପ୍ରିୟା ପ୍ରିୟାୟା ମମ ନିତ୍ୟକାଳମ୍ ।
ଅପ୍ୟତ୍ର ଗଚ୍ଛେଦିତି ଚିନ୍ତୟାମି
ନୈକାକିନୀ ଯାତି ହି ସା କଦାଚିତ୍ । ୧୩ ।
ପଦ୍ମାନନା ପଦ୍ମପଲାଶନେତ୍ରା
ପଦ୍ମାନି ବାନେତୁମଭିପ୍ରଯାତା ।
ତଦପ୍ୟଯୁକ୍ତଂ ନ ହି ସା କଦାଚି-
ନ୍ମୟା ବିନା ଗଚ୍ଛତି ପଙ୍କଜାନି । ୧୪ ।
କାମଂ ତ୍ୱିଦଂ ପୁଷ୍ପିତବୃକ୍ଷଷଣ୍ଡମ୍
ନାନାବିଧୈଃ ପକ୍ଷିଗଣୈରୁପେତମ୍ ।
ବନଂ ପ୍ରୟାତା ନୁ ତଦପ୍ୟଯୁକ୍ତ-
ମେକାକିନୀ ସାତିବିଭେତି ଭୀରୁଃ । ୧୫ ।

---

ପୂର୍ବେ ମୋସହିତ ପାଖକୁ ଲାଗି ଏହି ଶିଳାତଳରେ ବସି ହସି ହସି ତୁମକୁ କେତେ କଥା କହୁଥିଲେ । ୧୨ । ଏହି ନଦୀଶ୍ରେଷ୍ଠା ଗୋଦାବରୀ ମୋ-ପ୍ରିୟାଙ୍କର ସବୁବେଳେ ଅତି ପ୍ରିୟ ଥିଲେ । ମୁଁ ବିଚାରୁଛି, କେ ଜାଣି ଅବା ସେ ଏହି ନଦୀକୁ ଯାଇଥିବେ; ମାତ୍ର ସେ ତ ଏକୁଟିଆ ହୋଇ କେବେହେଲେ ଯାଆନ୍ତି ନାହିଁ । ୧୩ । ଯେଉଁ ପଦ୍ମପଲାଶଲୋଚନା ପଦ୍ମମୁଖୀ ସୀତା କ'ଣ ଆଜ ପଦ୍ମଫୁଲ ଆଣିବାକୁ ଯାଇଛନ୍ତି ? ନା ତାହା ମଧ୍ୟ ଉପଯୁକ୍ତ ନୁହେଁ । କାରଣ ସେ କେବେ ମୋ ସଙ୍ଗଛଡ଼ା ପଦ୍ମ ଆଣିବାକୁ ଯାଆନ୍ତି ନାହିଁ । ୧୪ । ଅଥବା ସେ ଏହି ପୁଷ୍ପିତ-ତରୁରାଜିଶୋଭିତ ନାନା ଜାତୀୟ ପକ୍ଷିଗଣପରିପୂର୍ଣ୍ଣ ଅରଣ୍ୟମଧ୍ୟକୁ ଯାଇଥିବେ । ନା ତାହା ମଧ୍ୟ ଯୁକ୍ତିଯୁକ୍ତ ନୁହେଁ । କାରଣ ସେ ଭୀରୁସ୍ୱଭାବା ଏକାକୀ ବନମଧ୍ୟରେ ପ୍ରବେଶ କରିବାକୁ ଅତିଶୟ ଭୟ କରନ୍ତି । ୧୫ । ହେ ସୂର୍ଯ୍ୟଦେବ ! ଆପଣ

ଆଦିତ୍ୟ ହେ ଲୋକକୃତାକୃତଜ୍ଞ
ଲୋକସ୍ୟ ସତ୍ୟାନୃତକର୍ମସାକ୍ଷିନ୍ ।
ମମ ପ୍ରିୟା ସା କ୍ୱ ଗତା ହୃତା ବା
ଶଂସସ୍ୱ ମେ ଶୋକବଶସ୍ୟ ନିତ୍ୟମ୍ । ୧୬ ।
ଲୋକେଷୁ ସର୍ବେଷୁ ଚ ନାସ୍ତି କିଂଚିଦ୍-
ଯତ୍ତେ ନ ନିତ୍ୟଂ ବିଦିତଂ ଭବେତ୍ତତ୍ ।
ଶଂସସ୍ୱ ବାୟୋ କୁଲଶାଳିନୀଂ ତାମ୍
ହୃତା ମୃତା ବା ପଥି ବର୍ତ୍ତତେ ବା । ୧୭ ।
ଇତୀବ ତଂ ଶୋକବିଧେୟଦେହମ୍
ରାମଂ ବିସଂଜ୍ଞଂ ବିଲପନ୍ତମେବ ।
ଉବାଚ ସୌମିତ୍ରିରଦୀନସତ୍ତ୍ୱୋ
ନ୍ୟାଯ୍ୟେ ସ୍ଥିତଃ କାଲଯୁତଂ ଚ ବାକ୍ୟମ୍ ।୧୮।
ଶୋକଂ ବିମୁଞ୍ଚାର୍ଯ ଧୃତିଂ ଭଜସ୍ୱ
ସୋତ୍ସାହତା ଚାସ୍ତୁ ବିମାର୍ଗଣେଽସ୍ୟାଃ ।
ଉତ୍ସାହବନ୍ତୋ ହି ନରା ନ ଲୋକେ
ସୀଦନ୍ତି କର୍ମସ୍ୱତିଦୁଷ୍କରେଷୁ । ୧୯ ।

---

ସମସ୍ତଙ୍କର କାର୍ଯ୍ୟାକାର୍ଯ୍ୟ ଜାଣନ୍ତି ଏବଂ ଏ ଜଗତର ସତ୍ୟ ଓ ମିଥ୍ୟା କାର୍ଯ୍ୟର ସାକ୍ଷୀ ଅଟନ୍ତି । ଅତଏବ ମୋ ପ୍ରିୟା କୁଆଡ଼େ ଯାଇଛନ୍ତି, ବା କିଏ ତାଙ୍କୁ ଅପହରଣ କରିନେଇଛି, ତାହା ମୋତେ କହ, ମୁଁ ସତତ ଶୋକାପନ୍ନ ହୋଇ-ପଡ଼ିଅଛି ।୧୬। ହେ ବାୟୋ ! ସମୁଦାୟ ଲୋକରେ ଏପରି କିଛି ନାହିଁ, ଯାହା ପ୍ରତ୍ୟହ ଆପଣଙ୍କୁ ବିଦିତ ନୁହଁଏ, ଅତଏବ ମୋର ସେହି କୁଳମର୍ଯ୍ୟାଦାରକ୍ଷିଣୀ ପ୍ରିୟା ମୃତ-ହୋଇଛନ୍ତି, କି ଅପହୃତହୋଇଛନ୍ତି, କି ପଥମଧ୍ୟରେ ଅଛନ୍ତି, ମୋତେ କହ" । ୧୭ । ରାମ ଏହିପରି ଶୋକାଚ୍ଛନ୍ନ କଳେବରରେ ସଂଜ୍ଞାହୀନଭାବରେ ବିଳାପ କରିବାକୁ ଲାଗିବାରୁ ନ୍ୟାୟପଥାନୁବର୍ତ୍ତୀ, ଧୈର୍ଯ୍ୟବାନ୍ ଲକ୍ଷ୍ମଣ ତାଙ୍କୁ କାଳୋଚିତ ବାକ୍ୟରେ କହିଲେ । ୧୮ । "ଆର୍ଯ୍ୟ ! ତୁମେ ଶୋକ ପରିତ୍ୟାଗକର, ଧୈର୍ଯ୍ୟ ଅବଲମ୍ବନକର, ଏହାଙ୍କୁ ଖୋଜିବାରେ ତୁମ୍ଭର ଉତ୍ସାହ ରହୁ । ଉତ୍ସାହୀ ପୁରୁଷମାନେ ଏ ସଂସାରରେ ଅତି ଦୁଷ୍କର କାର୍ଯ୍ୟମାନ କରିବାରେ ମଧ୍ୟ ଅବସନ୍ନ ହୁଅନ୍ତି ନାହିଁ" । ୧୯ । ଉଗ୍ରପୌରୁଷଶାଳୀ ଲକ୍ଷ୍ମଣ ଏପରି କହିବାରୁ ରଘୁବଂଶ

ଇତୀବ ସୌମିତ୍ରିମୁଦଗ୍ରପୌରୁଷମ୍
ବ୍ରୁବନ୍ନମାର୍ତ୍ତୋ ରଘୁବଂଶବର୍ଦ୍ଧନଃ ।
ନ ଚିନ୍ତୟାମାସ ଧୃତିଂ ବିମୁକ୍ତବାନ୍
ପୁନଶ୍ଚ ଦୁଃଖଂ ମହଦଭ୍ୟୁପାଗମତ୍ । ୨୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ଦୁଃଖାନୁଚିନ୍ତନମ୍
ନାମ ତ୍ରିଷଷ୍ଟିତମଃ ସର୍ଗଃ

---

ବର୍ଦ୍ଧନକାରୀ ରାମ ଅତିଶୟ କାତର ହୋଇ ତାଙ୍କ କହିବା କଥା ଆଦୌ ଚିନ୍ତା କଲେ ନାହିଁ । ସେ ଧୈର୍ଯ୍ୟ ପରିତ୍ୟାଗକରି ପୁନର୍ବାର ନିରତିଶୟ ଦୁଃଖରେ ନିମଗ୍ନ ହେଲେ । ୨୦ ।

# ଚତୁଃଷଷ୍ଟିତମଃ ସର୍ଗଃ

## ରାମକ୍ରୋଧଃ

ସ ଦୀନୋ ଦୀନୟା ବାଚା ଲକ୍ଷ୍ମଣଂ ବାକ୍ୟମବ୍ରବୀତ୍ ।
ଶୀଘ୍ରଂ ଲକ୍ଷ୍ମଣ ଜାନୀହି ଗତ୍ୱା ଗୋଦାବରୀଂ ନଦୀମ୍ । ୧ ।
ଅପି ଗୋଦାବରୀଂ ସୀତା ପଦ୍ମାନ୍ୟାନୟିତୁଂ ଗତା ।
ଏବମୁକ୍ତସ୍ତୁ ରାମେଣ ଲକ୍ଷ୍ମଣଃ ପୁନରେବ ହି । ୨ ।
ନଦୀଂ ଗୋଦାବରୀଂ ରମ୍ୟାଂ ଜଗାମ ଲଘୁବିକ୍ରମଃ ।
ତାଂ ଲକ୍ଷ୍ମଣସ୍ତୀର୍ଥବତୀଂ ବିଚିତ୍ୱା ରାମମବ୍ରବୀତ୍ । ୩ ।
ନୈନାଂ ପଶ୍ୟାମି ତୀର୍ଥେଷୁ କ୍ରୋଶତୋ ନ ଶୃଣୋତି ମେ ।
କଂ ନୁ ସା ଦେଶମାପନ୍ନା ବୈଦେହୀ କ୍ଲେଶନାଶିନୀ । ୪ ।
ନ ହି ତଂ ବେଦ୍ମି ବୈ ରାମ ଯତ୍ର ସା ତନୁମଧ୍ୟମା ।
ଲକ୍ଷ୍ମଣସ୍ୟ ବଚଃ ଶ୍ରୁତ୍ୱା ଦୀନଃ ସନ୍ତାପମୋହିତଃ । ୫ ।
ରାମଃ ସମଭିଚକ୍ରାମ ସ୍ୱୟଂ ଗୋଦାବରୀଂ ନଦୀମ୍ ।
ସ ତାମୁପସ୍ଥିତୋ ରାମଃ କ୍ୱ ସୀତେତ୍ୟେବମବ୍ରବୀତ୍ । ୬ ।

---

## ୬୪ତମ ସର୍ଗ

(ରାମଙ୍କ କ୍ରୋଧ)

ଦୁଃଖିତ ରାମ ଦୁଃଖିତ ବଚନରେ ଲକ୍ଷ୍ମଣଙ୍କୁ କହିଲେ, "ହେ ଲକ୍ଷ୍ମଣ ! ଶୀଘ୍ର ଗୋଦାବରୀ ନଦୀକୁ ଯାଇ ଜାଣିଆସ । ୧ । କେ ଜାଣି ହେବା ସୀତା ପଦ୍ମ ଆଣିବା ପାଇଁ ଗୋଦାବରୀ ନଦୀକୁ ଯାଇଥିବେ ।" ରାମ ଏପରି କହିବାରୁ ଲକ୍ଷ୍ମଣ ପୁଣି ଲଘୁପଦକ୍ଷେପରେ ରମଣୀୟ ଘାଟଥିବା ଗୋଦାବରୀ ନଦୀକୁ ଗଲେ ଏବଂ ସେଠାରେ ଭଲକରି ଖୋଜସାରି ରାମଙ୍କୁ କହିଲେ । ୨-୩ । "ମୁଁ ତାହାଙ୍କୁ ଘାଟମାନଙ୍କରେ ଦେଖିଲି ନାହିଁ ଏବଂ ମୁଁ ପାଟିକରି ଡାକିଲେ ମଧ୍ୟ ସେ ଶୁଣିଲେ ନାହିଁ । ଦୁଃଖହାରିଣୀ ବୈଦେହୀ ଯେ କେଉଁ ସ୍ଥାନକୁ ଯାଇଛନ୍ତି ଏବଂ ସେ ତନୁମଧ୍ୟମା ବର୍ତ୍ତମାନ କେଉଁଠାରେ ଅଛନ୍ତି; ମୁଁ ସେ ସ୍ଥାନ ଜାଣି ପାରୁ ନାହିଁ ।" ଲକ୍ଷ୍ମଣଙ୍କ କଥା ଶୁଣି ରାମ ବ୍ୟାକୁଳ ଏବଂ ସନ୍ତାପମୋହିତ ହୋଇ ନିଜେ ଗୋଦାବରୀ ନଦୀକୁ ଆସିଲେ ଏବଂ ସେଠାରେ ଉପସ୍ଥିତ ହୋଇ 'ସୀତା କାହାନ୍ତି' ବୋଲି କହିଲେ । ୪-୬ । ପ୍ରାଣୀମାନେ

ଭୂତାନ ରାକ୍ଷସେନ୍ଦ୍ରେଣ ବଧାର୍ହେଣ ହୃତାମପି ।
ନ ତାଂ ଶଶଂସୁ ରାମାୟ ତଥା ଗୋଦାବରୀ ନଦୀ । ୭ ।
ତତଃ ପ୍ରଚୋଦିତା ଭୂତୈଃ ଶଂସାସ୍ମୈ ତାଂ ପ୍ରିୟାମିତି ।
ନ ଚ ସାଭ୍ୟବଦତ୍‌ସୀତାଂ ପୃଷ୍ଟା ରାମେଣ ଶୋଚତା । ୮ ।
ରାବଣସ୍ୟ ଚ ତଦ୍ରୂପଂ କର୍ମାଣି ଚ ଦୁରାତ୍ମନଃ ।
ଧ୍ୟାତ୍ୱା ଭୟାତ୍ତୁ ବୈଦେହୀଂ ସା ନଦୀ ନ ଶଶଂସ ତାମ୍ । ୯ ।
ନିରାଶସ୍ତୁ ତୟା ନଦ୍ୟା ସୀତାୟା ଦର୍ଶନେ କୃତଃ ।
ଉବାଚ ରାମଃ ସୌମିତ୍ରିଂ ସୀତାଦର୍ଶନକର୍ଶିତଃ ।୧୦ ।
ଏଷା ଗୋଦାବରୀ ସୌମ୍ୟ କିଂଚିନ୍ନ ପ୍ରତିଭାଷତେ ।
କିଂ ନୁ ଲକ୍ଷ୍ମଣ ବକ୍ଷ୍ୟାମି ସମେତ୍ୟ ଜନକଂ ବଚଃ ।୧୧ ।
ମାତରଂ ଚୈବ ବୈଦେହ୍ୟା ବିନା ତାମହମପ୍ରିୟମ୍ ।
ଯା ମେ ରାଜ୍ୟବିହୀନସ୍ୟ ବନେ ବନ୍ୟେନ ଜୀବତଃ । ୧୨ ।
ସର୍ବଂ ବ୍ୟପାନୟଚ୍ଛୋକଂ ବୈଦେହୀ କ୍ୱ ନୁ ସା ଗତା ।
ଜ୍ଞାତିପକ୍ଷବିହୀନସ୍ୟ ରାଜପୁତ୍ରୀମପଶ୍ୟତଃ । ୧୩ ।
ମନ୍ୟେ ଦୀର୍ଘା ଭବିଷ୍ୟନ୍ତି ରାତ୍ରୟୋ ମମ ଜାଗ୍ରତଃ ।
ମନ୍ଦାକିନୀଂ ଜନସ୍ଥାନମିମଂ ପ୍ରସ୍ରବଣଂ ଗିରିମ୍ । ୧୪ ।

---

କିମ୍ବା ଗୋଦାବରୀ ନଦୀ କେହି ତାଙ୍କୁ କହିଲେ ନାହିଁ ଯେ ବଧାର୍ହ ରାକ୍ଷସରାଜ ରାବଣ ସୀତାଙ୍କୁ ହରଣ କରିଅଛି । ୭ । ଅନନ୍ତର ପ୍ରାଣୀମାନେ ଗୋଦାବରୀଙ୍କୁ କହିଲେ, "ଏହାଙ୍କ ପ୍ରିୟାଙ୍କ କଥା ଏହାଙ୍କୁ କହିଦିଅ ।" ରାମ ମଧ୍ୟ ଶୋକସହକାରେ ତାଙ୍କୁ ପଚାରିଲେ, ମାତ୍ର ସେ ସୀତାଙ୍କ କଥା କହିଲେ ନାହିଁ । ୮ । ଦୁରାତ୍ମା ରାବଣର ସେହି ଭୟଙ୍କର ରୂପ ଓ ତାହାର କାର୍ଯ୍ୟାବଳୀ ସ୍ମରଣକରି ଗୋଦାବରୀ ନଦୀ ଭୟରେ ସୀତାଙ୍କ କଥା କହିଲେ ନାହିଁ । ୯ । ଏହିପରିଭାବରେ ସୀତାଙ୍କୁ ଦେଖିବା ବିଷୟରେ ଗୋଦାବରୀଙ୍କଠାରୁ ନିରାଶହୋଇ ରାମ ସୀତାଙ୍କୁ ନ ଦେଖି ବ୍ୟଥିତ ହୋଇ ସୌମିତ୍ରିଙ୍କୁ କହିଲେ । ୧୦ । "ହେ ସୌମ୍ୟ ! ଏ ଗୋଦାବରୀ ନଦୀ କିଛି ଉତ୍ତର ଦେଉ ନାହାନ୍ତି । ହେ ଲକ୍ଷ୍ମଣ ! ମୁଁ ସୀତାଙ୍କ ବ୍ୟତୀତ ଫେରିଯାଇ ଜନକଙ୍କୁ ଏବଂ ସୀତାଙ୍କ ମାତାଙ୍କୁ ଏ ଅପ୍ରିୟ ସମ୍ବାଦ କିପରି କହିବି ? ମୁଁ ରାଜ୍ୟଭ୍ରଷ୍ଟ ହୋଇ ବନରେ ବନ୍ୟଦ୍ରବ୍ୟଦ୍ୱାରା ଜୀବନନିର୍ବାହ କରୁଥିବାବେଳେ ଯେଉଁ ବୈଦେହୀ ମୋର ସମସ୍ତ ଶୋକ ଅପନୋଦନ କରୁଥିଲେ ସେ କୁଆଡ଼େ ଗଲେ ? ମୁଁ ଜ୍ଞାତି-ବର୍ଗବିହୀନ ହୋଇ ସେ ରାଜକୁମାରୀଙ୍କୁ ନ ଦେଖି ଜାଗ୍ରତହୋଇ ରହିବାଦ୍ୱାରା

ସର୍ବାନ୍ୟନୁଚରିଷ୍ୟାମି ଯଦି ସୀତା ହି ଦୃଶ୍ୟତେ ।
ଏତେ ମୃଗା ମହାବୀର୍ଯା ମାମୀକ୍ଷନ୍ତେ ମୁହୁର୍ମୁହୁଃ । ୧୫ ।
ବକ୍ତୁକାମାଃ ଇବ ହି ମେ ଇଙ୍ଗିତାନ୍ୟୁପଲକ୍ଷୟେ ।
ତାଂସ୍ତୁ ଦୃଷ୍ଟ୍ୱା ନରବ୍ୟାଘ୍ରୋ ରାଘବଃ ପ୍ରତ୍ୟୁବାଚ ହ । ୧୬ ।
କ୍ୱ ସୀତେତି ନିରୀକ୍ଷନ୍ ବୈ ବାଷ୍ପସଂରୁଦ୍ଧୟା ଗିରା ।
ଏବମୁକ୍ତା ନରେନ୍ଦ୍ରେଣ ତେ ମୃଗାଃ ସହସୋତ୍ଥିତାଃ । ୧୭ ।
ଦକ୍ଷିଣାଭିମୁଖାଃ ସର୍ବେ ଦର୍ଶୟନ୍ତୋ ନଭସ୍ଥଲମ୍ ।
ମୈଥିଲୀ ହ୍ରିୟମାଣା ସା ଦିଶଂ ଯାମନ୍ୱପଦ୍ୟତ । ୧୮ ।
ତେନ ମାର୍ଗେଣ ଧାବନ୍ତୋ ନିରୀକ୍ଷନ୍ତେ ନରାଧିପମ୍ ।
ଯେନ ମାର୍ଗଂ ଚ ଭୂମିଂ ଚ ନିରୀକ୍ଷନ୍ତେ ସ୍ମ ତେ ମୃଗାଃ । ୧୯ ।
ପୁନଶ୍ଚ ମାର୍ଗମିଚ୍ଛନ୍ତୋ ଲକ୍ଷ୍ମଣେନୋପଲକ୍ଷିତାଃ ।
ତେଷାଂ ବଚନସର୍ବସ୍ୱଂ ଲକ୍ଷୟାମାସ ଚେଙ୍ଗିତମ୍ ।୨୦।
ଉବାଚ ଲକ୍ଷ୍ମଣୋ ଜ୍ୟେଷ୍ଠଂ ଧୀମାନ୍ ଭ୍ରାତରମାର୍ତ୍ତବତ୍ ।
କ୍ୱ ସୀତେତି ତ୍ୱୟା ପୃଷ୍ଟା ଯଥେମେ ସହସୋତ୍ଥିତାଃ । ୨୧ ।

---

ଋଷିସବୁ ମୋ ପକ୍ଷରେ ଅନ୍ତ ପାଇଁ ହେବ । ସୀତା ଯଦି ଦେଖିବାକୁ ମିଳନ୍ତେ ତେବେ ମୁଁ ଏହି ପ୍ରସ୍ରବଣ, ପର୍ବତ, ଜନସ୍ଥାନ ଏବଂ ମନ୍ଦାକିନୀ ନଦୀ ସର୍ବତ୍ର ବିଚରଣ କରିବାକୁ ପ୍ରସ୍ତୁତ ଅଛି । ମହାବଳଶାଳୀ ମୃଗମାନେ ମୋଆଡ଼କୁ ବାରମ୍ବାର ଦୃଷ୍ଟିପାତ କରୁଛନ୍ତି । ଇଙ୍ଗିତଦ୍ୱାରା ବୋଧହେଉଛି ଯେପରି କି, ସେମାନେ ମୋତେ କିଛି କହିବାକୁ ଇଚ୍ଛାକରୁଛନ୍ତି ।” ଅନନ୍ତର ନରଶ୍ରେଷ୍ଠ ରାମ ସେହି ମୃଗମାନଙ୍କ ଆଡ଼କୁ ଚାହିଁ ବାଷ୍ପରୁଦ୍ଧ ବାକ୍ୟରେ କହିଲେ, “ସୀତା କେଉଁଠାରେ ଅଛନ୍ତି ?” ନରେନ୍ଦ୍ର ରାମ ଏହି କଥା କହିବାରୁ ମୃଗମାନେ ସହସା ଗାତ୍ରୋତ୍ଥାନକରି ଦକ୍ଷିଣାଭିମୁଖରେ ଆକାଶକୁ ଦେଖାଇ, ମିଥିଳାରାଜଦୁହିତା ଯେଉଁ ଦିଗକୁ ଅପହୃତ ହୋଇଥିଲେ, ସେହି ଦିଗର ମାର୍ଗଧରି ରାମଙ୍କୁ ଚାହିଁ ଚାହିଁ ଧାବମାନ ହେବାକୁ ଲାଗିଲେ । ଯେଉଁ ଆଡ଼କୁ ବାଟ ପଡ଼ିଥିଲା ସେହି ଆଡ଼କୁ ସେହି ମୃଗମାନେ ଚାହିଁ, ପୁଣି ସେହି ମାର୍ଗ ଅବଲମ୍ବନକରି ଯିବାକୁ ଇଚ୍ଛାକରୁଥିବାର ଲକ୍ଷ୍ମଣ ଲକ୍ଷ୍ୟ କଲେ । ସେମାନଙ୍କର ଇଙ୍ଗିତହିଁ ମନୋଗତଭାବ ପ୍ରକାଶ କରିବାର ଏକମାତ୍ର ସାଧନ ।୧୧-୨୦। ଅନନ୍ତର ଧୀମାନ୍ ଲକ୍ଷ୍ମଣ ଜ୍ୟେଷ୍ଠଭ୍ରାତା ରାମଙ୍କୁ ଆର୍ତ୍ତସ୍ୱରରେ କହିଲେ, “ହେ ଦେବ ! ଆପଣ ‘ସୀତା କେଉଁଠାରେ’ ଏହି କଥା ପଚାରିବାରୁ ଏହି

ଦର୍ଶୟନ୍ତ କ୍ଷିତିଂ ଚୈବ ଦକ୍ଷିଣାଂ ଚ ଦିଶଂ ମୃଗାଃ ।
ସାଧୁ ଗଚ୍ଛାବହେ ଦେବ ଦିଶମେତାଂ ହି ନୈଋ୍ତୀମ୍ । ୨୨ ।
ଯଦି ସ୍ୟାଦାଗମଃ କଶ୍ଚିଦାର୍ଯ୍ୟା ବା ସାଥ ଲକ୍ଷ୍ୟତେ ।
ବାଢ଼ମିତ୍ୟେବ କାକୁତ୍‌ସ୍ଥଃ ପ୍ରସ୍ଥିତୋ ଦକ୍ଷିଣାଂ ଦିଶମ୍ । ୨୩ ।
ଲକ୍ଷ୍ମଣାନୁଗତଃ ଶ୍ରୀମାନ୍ ବୀକ୍ଷମାଣୋ ବସୁନ୍ଧରାମ୍ ।
ଏବଂ ସମ୍ଭାଷମାଣୌ ତାବନ୍ୟୋନ୍ୟଂ ଭ୍ରାତରାବୁଭୌ । ୨୪ ।
ବସୁନ୍ଧରାୟାଂ ପତିତଂ ପୁଷ୍ପମାର୍ଗମପଶ୍ୟତାମ୍ ।
ତାଂ ପୁଷ୍ପବୃଷ୍ଟିଂ ପତିତାଂ ଦୃଷ୍ଟ୍ୱା ରାମୋ ମହୀତଳେ । ୨୫ ।
ଉବାଚ ଲକ୍ଷ୍ମଣଂ ବୀରୋ ଦୁଃଖିତୋ ଦୁଃଖିତଂ ବଚଃ ।
ଅଭିଜାନାମି ପୁଷ୍ପାଣି ତାନୀମାନୀହ ଲକ୍ଷ୍ମଣ । ୨୬ ।
ଅପିନଦ୍ଧାନି ବୈଦେହ୍ୟା ମୟା ଦତ୍ତାନି କାନନେ ।
ମନ୍ୟେ ସୂର୍ଯ୍ୟଶ୍ଚ ବାୟୁଶ୍ଚ ମେଦିନୀ ଚ ଯଶସ୍ୱିନୀ । ୨୭ ।
ଅଭିରକ୍ଷନ୍ତି ପୁଷ୍ପାଣି ପ୍ରକୁର୍ବନ୍ତୋ ମମ ପ୍ରିୟମ୍ ।
ଏବମୁକ୍ତ୍ୱା ମହାବାହୁଂ ଲକ୍ଷ୍ମଣଂ ପୁରୁଷର୍ଷଭଃ । ୨୮ ।

---

ମୃଗମାନେ ସହସା ଉଠି ଭୂମି ଏବଂ ଦକ୍ଷିଣ ଦିଗ ଦେଖାଉଛନ୍ତି, ସୁତରାଂ ଚାଲନ୍ତୁ, ଆମେ ଏହି ନୈଋ୍ତ ଦିଗକୁ ଯିବା । ୨୧-୨୨ । କେଜାଣି ଅବା ଆର୍ଯ୍ୟା ସୀତା ସେ ଦିଗରେ ଦେଖାଯିବେ କିମ୍ବା ତାଙ୍କୁ ପାଇବାର କୌଣସି ଉପାୟ ଦେଖାଯିବ ।" ରାମ 'ତାହାହିଁ ହେଉ' ବୋଲି କହି ଦକ୍ଷିଣ ଦିଗକୁ ପ୍ରସ୍ଥାନକଲେ । ୨୩ । ଲକ୍ଷ୍ମଣ ତାଙ୍କ ପଛେ ଚାଲିଥାନ୍ତି ଏବଂ ଶ୍ରୀମାନ୍ ରାମ ପୃଥିବୀକୁ ଚାହିଁ ଚାହିଁ ଚାଲିଥାନ୍ତି । ଏହିପରି ସେ ଦୁଇଭାଇ ପରସ୍ପର କଥାବାର୍ତ୍ତା ହୋଇ ଯାଉ ଯାଉ ଦେଖିଲେ ଯେ ଭୂତଳରେ ପୁଷ୍ପର ଗୋଟିଏ ରେଖା ପଡ଼ିଛି । ବୀର ରାମ ପୃଥିବୀରେ ସେହି ପୁଷ୍ପବୃଷ୍ଟିରେଖା ପଡ଼ିଥିବାର ଦେଖି ଦୁଃଖିତହୋଇ ଦୁଃଖିତଭାବରେ ଲକ୍ଷ୍ମଣଙ୍କୁ କହିଲେ । "ହେ ଲକ୍ଷ୍ମଣ ! ମୁଁ ସୀତାଙ୍କୁ ଯେଉଁସବୁ ଫୁଲ ଦେଇଥିଲି ଏବଂ ସେ ପିନ୍ଧିଥିଲେ ଏସବୁ ସେହି ଫୁଲ, ମୁଁ ଚିହ୍ନିପାରୁଛି । ମୋର ମନେହୁଏ, ସୂର୍ଯ୍ୟ, ବାୟୁ ଏବଂ ଯଶସ୍ୱିନୀ ପୃଥିବୀ ମୋର ପ୍ରିୟକାମନାରେ ଏହି ସକଳ ପୁଷ୍ପକୁ ଅକ୍ଷୁଣ୍ଣ ରଖି-ଅଛନ୍ତି ।" ନରଶ୍ରେଷ୍ଠ ଧର୍ମାତ୍ମା ରାମ ମହାବାହୁ ଲକ୍ଷ୍ମଣଙ୍କୁ ଏହି କଥା କହି ବହୁ ପ୍ରସ୍ରବଣଯୁକ୍ତ ପର୍ବତକୁ ସମ୍ବୋଧନକରି କହିଲେ, "ହେ ପର୍ବତଶ୍ରେଷ୍ଠ ! ତୁମେ କ'ଣ ସେହି ସର୍ବାଙ୍ଗସୁନ୍ଦରୀ ମୋଦ୍ୱାରା ବିରହିତା ରମଣୀଙ୍କୁ ରମଣୀୟ ବନ-

"ଉବାଚ ରାମୋ ଧର୍ମାତ୍ମା ଗିରିଂ ପ୍ରସ୍ରବଣାକୁଳମ୍ ।
କଚ୍ଚିତ୍କ୍ଷିତିଭୃତାଂ ନାଥ ଦୃଷ୍ଟା ସର୍ବାଙ୍ଗସୁନ୍ଦରୀ । ୨୯ ।
ରାମା ରମ୍ୟେ ବନୋଦ୍ଦେଶେ ମୟା ବିରହିତା ତ୍ୱୟା ।
କ୍ରୁଦ୍ଧୋଽବ୍ରବୀଦ୍ଗିରିଂ ତତ୍ର ସିଂହଃ କ୍ଷୁଦ୍ରମୃଗଂ ଯଥା । ୩୦ ।
ତାଂ ହେମବର୍ଣ୍ଣାଂ ହେମାଙ୍ଗୀଂ ସୀତାଂ ଦର୍ଶୟ ପର୍ବତ ।
ଯାବତ୍ସାନୂନି ସର୍ବାଣି ନ ତେ ବିଧ୍ୱଂସୟାମ୍ୟହମ୍ । ୩୧ ।
ଏବମୁକ୍ତସ୍ତୁ ରାମେଣ ପର୍ବତୋ ମୈଥିଲୀଂ ପ୍ରତି ।
ଦର୍ଶୟନ୍ନିବ ତାଂ ସୀତାଂ ନାଦର୍ଶୟତ ରାଘବେ । ୩୨ ।
ତତୋ ଦାଶରଥୀ ରାମ ଉବାଚ ଚ ଶିଲୋଚ୍ଚୟମ୍ ।
ମମ ବାଣାଗ୍ନିନିର୍ଦ୍ଦଗ୍ଧୋ ଭସ୍ମୀଭୂତୋ ଭବିଷ୍ୟସି । ୩୩ ।
ଅସେବ୍ୟଃ ସର୍ବତଶ୍ଚୈବ ନିସ୍ତୃଣଦ୍ରୁମପଲ୍ଲବଃ ।
ଇମାଂ ବା ସରିତଂ ଚାଦ୍ୟ ଶୋଷୟିଷ୍ୟାମି ଲକ୍ଷ୍ମଣ । ୩୪ ।
ଯଦି ନାଖ୍ୟାତି ମେ ସୀତାମଦ୍ୟ ଚନ୍ଦ୍ରନିଭାନନାମ୍ ।
ଏବଂ ସ ରୁଷିତୋ ରାମୋ ଦିଧକ୍ଷନ୍ନିବ ଚକ୍ଷୁଷା । ୩୫ ।
ଦଦର୍ଶ ଭୂମୌ ନିଷ୍କ୍ରାନ୍ତଂ ରାକ୍ଷସସ୍ୟ ପଦଂ ମହତ୍ ।
ତ୍ରସ୍ତାୟା ରାମକାଙ୍କ୍ଷିଣ୍ୟାଃ ପ୍ରଧାବନ୍ତ୍ୟା ଇତସ୍ତତଃ । ୩୬ ।

---

ପ୍ରଦେଶରେ ଦେଖିଛ ?" ଅନନ୍ତର ସେ କ୍ରୁଦ୍ଧ ହୋଇ ସିଂହ କ୍ଷୁଦ୍ର ମୃଗକୁ କହିଲାପରି ସେ ପର୍ବତକୁ କହିଲେ, "ହେ ପର୍ବତ ! ମୁଁ ତୋର ଶୃଙ୍ଗମାନ ଧ୍ୱଂସ କରିଦେବା ପୂର୍ବରୁ ସେହି ହେମବର୍ଣ୍ଣା ହେମାଙ୍ଗୀ ସୀତାଙ୍କୁ ମୋତେ ଦେଖାଇଦେ । ୨୯-୩୧ । ସୀତାଙ୍କ ବିଷୟରେ ରାମ ଏହିପରି କହିବାରୁ ସେ ପର୍ବତ ସୀତାଙ୍କୁ ଦେଖାଇବାକୁ ଇଚ୍ଛାକରି ମଧ୍ୟ ଦେଖାଇ ପାରିଲା ନାହିଁ । ୩୨ । ଅନନ୍ତର ଦଶରଥନନ୍ଦନ ରାମ ସେ ପର୍ବତରାଜକୁ କହିଲେ, "ତୁ ମୋ ବାଣରେ ଭସ୍ମୀଭୂତ ହୋଇ ଛାରଖାର ହୋଇଯିବୁ । ୩୩ । ତୋର ତୃଣ ଏବଂ ବୃକ୍ଷ ପଲ୍ଲବ ସବୁ ଏକାବେଳକେ ନଷ୍ଟ ହୋଇଯିବ ଏବଂ କେହି ତୋ ନିକଟକୁ ଆଉ ଆଶ୍ରା ନେବାକୁ ଆସିବେ ନାହିଁ । ହେ ଲକ୍ଷ୍ମଣ ! ଏ ଗୋଦାବରୀ ନଦୀ ଯଦି ଆଜି ମୋତେ ଚନ୍ଦ୍ରାନନା ସୀତାଙ୍କ କଥା ନ କହନ୍ତି, ତେବେ ମୁଁ ଆଜି ଏହାକୁ ଶୁଖାଇଦେବି ।" ରାମ ଏହିପରି କ୍ରୋଧାନ୍ୱିତ ହୋଇ ଚକ୍ଷୁଦ୍ୱାରା ସମସ୍ତ ଦଗଧ କରିବାକୁ ଉଦ୍ୟତ ହୋଇ ଭୂପୃଷ୍ଠରେ ପଡ଼ିଥିବା ରାକ୍ଷସର ବିଶାଳ ପଦଚିହ୍ନ ଦେଖିଲେ ଏବଂ ସଙ୍ଗେ ସଙ୍ଗେ ତ୍ରସ୍ତଭାବରେ ରାମଙ୍କୁ ପାଇବା ପାଇଁ ଇଚ୍ଛାକରି ଇତସ୍ତତଃ ପ୍ରଧାବିତ ହୋଇଥିବା 'ସୀତାଙ୍କର ପଦଚିହ୍ନ

ରାକ୍ଷସେନାନ୍ ବୃତ୍ତାନ୍ସ୍ମା ମୈଥିଲ୍ୟାଶ୍ଚ ପଦାନ୍ୟଥ ।
ସ ସମୀକ୍ଷ୍ୟ ପରିକ୍ରାନ୍ତଂ ସୀତାୟା ରାକ୍ଷସସ୍ୟ ଚ । ୩୭ ।
ଭଗ୍ନଂ ଧନୁଶ୍ଚ ତୂଣୀ ଚ ବିକୀର୍ଣ୍ଣଂ ବହୁଧା ରଥମ୍ ।
ସଂଭ୍ରାନ୍ତହୃଦୟୋ ରାମଃ ଶଶଂସ ଭ୍ରାତରଂ ପ୍ରିୟମ୍ । ୩୮ ।
ପଶ୍ୟ ଲକ୍ଷ୍ମଣ ବୈଦେହ୍ୟାଃ ଶୀର୍ଣ୍ଣାଃ କନକବିନ୍ଦବଃ ।
ଭୂଷଣାନାଂ ହି ସୌମିତ୍ରେ ମାଲ୍ୟାନି ବିବିଧାନି ଚ । ୩୯ ।
ତପ୍ତବିନ୍ଦୁନିକାଶୈଶ୍ଚ ଚିତ୍ରୈଃ କ୍ଷତଜବିନ୍ଦୁଭିଃ ।
ଆବୃତଂ ପଶ୍ୟ ସୌମିତ୍ରେ ସର୍ବତୋ ଧରଣୀତଲମ୍ । ୪୦ ।
ମନ୍ୟେ ଲକ୍ଷ୍ମଣ ବୈଦେହୀ ରାକ୍ଷସୈଃ କାମରୂପିଭିଃ ।
ଭିତ୍ତ୍ୱା ଭିତ୍ତ୍ୱା ବିଭକ୍ତା ବା ଭକ୍ଷିତା ବା ଭବିଷ୍ୟତି । ୪୧ ।
ତସ୍ୟା ନିମିତ୍ତଂ ବୈଦେହ୍ୟା ଦ୍ୱୟୋର୍ବିବଦମାନୟୋଃ ।
ବଭୂବ ଯୁଦ୍ଧଂ ସୌମିତ୍ରେ ଘୋରଂ ରାକ୍ଷସୟୋରିହ । ୪୨ ।
ମୁକ୍ତାମଣିଚିତଂ ଚେଦଂ ତପନୀୟବିଭୂଷିତମ୍ ।
ଧରଣ୍ୟାଂ ପତିତଂ ସୌମ୍ୟ କସ୍ୟଭଗ୍ନଂ ମହଦ୍ଧନୁଃ । ୪୩ ।
ରାକ୍ଷସାନାମିଦଂ ବତ୍ସ ସୁରାଣାମଥ ବାପି ବା ।
ତରୁଣାଦିତ୍ୟସଂକାଶଂ ବୈଦୂର୍ଯ୍ୟଗୁଳିକାଚିତମ୍ । ୪୪ ।

---

ମଧ୍ୟ ଦେଖିଲେ । ରାମ ସୀତା ଏବଂ ରାକ୍ଷସର ପଦଚିହ୍ନ ଏବଂ ଭଗ୍ନଧନୁ, ଛିନ୍ନ ତୂଣୀର ଏବଂ ବହୁଧା ଛିନ୍ନ ଭିନ୍ନ ରଥ ପ୍ରଭୃତି ଦେଖି ଉଦ୍‌ବିଗ୍ନଚିତ୍ତରେ ପ୍ରିୟ ଭ୍ରାତା ଲକ୍ଷ୍ମଣଙ୍କୁ କହିଲେ । ୩୭-୩୮ । "ହେ ଲକ୍ଷ୍ମଣ ! ଦେଖ, ବୈଦେହୀଙ୍କ ଅଳଙ୍କାରର ସ୍ୱର୍ଣ୍ଣବିନ୍ଦୁ ସକଳ ଏବଂ ବିବିଧ ମାଲ୍ୟ ଇତସ୍ତତଃ ବିକ୍ଷିପ୍ତହୋଇ ପଡ଼ିଅଛି । ୩୯ । ହେ ସୌମିତ୍ରେ ! ଏଇ ଦେଖ, ଭୂମିତଳ ଚତୁର୍ଦ୍ଦିଗରେ ସ୍ୱର୍ଣ୍ଣବିନ୍ଦୁସଦୃଶ ବିଚିତ୍ରିତ ରକ୍ତ-ବିନ୍ଦୁରେ ଆଚ୍ଛନ୍ନ ହୋଇଅଛି । ୪୦ । ହେ ଲକ୍ଷ୍ମଣ ! ମୋର ମନେହୁଏ, କାମରୂପୀ ରାକ୍ଷସମାନେ ସୀତାଙ୍କୁ ଖଣ୍ଡ ଖଣ୍ଡ କରି ଛେଦନ କରିପକାଇଛନ୍ତି ବା ଭକ୍ଷଣକରି ପକାଇଛନ୍ତି । ୪୧ । ହେ ସୌମିତ୍ରେ ! ବୋଧହୁଏ ସୀତାଙ୍କ ଲାଗି ବିବାଦ କରି ଦୁଇଟି ରାକ୍ଷସଙ୍କର ଏଠାରେ ତୁମୁଳ ଯୁଦ୍ଧ ହୋଇଥିଲା । ୪୨ । ହେ ସୌମ୍ୟ ! କାହାର, ଏହି ମୁକ୍ତାମଣିଖଚିତ ସ୍ୱର୍ଣ୍ଣବିଭୂଷିତ ବିଶାଳ ଧନୁ ଭାଙ୍ଗି ପୃଥିବୀରେ ପଡ଼ିଛି ? । ୪୩ । ହେ ବତ୍ସ ! କୌଣସି ରାକ୍ଷସଙ୍କର ବା ଦେବତାଙ୍କର ଏହି ତରୁଣ ସୂର୍ଯ୍ୟସଦୃଶ ବୈଦୂର୍ଯ୍ୟମଣିଖଚିତ ସୁବର୍ଣ୍ଣକବଚ ଛିନ୍ନ ଭିନ୍ନ ହୋଇ ଭୂମିରେ ପଡ଼ିଅଛି ଏହି ଶତଶଳାକାଯୁକ୍ତ ଦିବ୍ୟମାଲ୍ୟଶୋଭିତ ଛତ୍ରଟି ବା କାହାର ଭୂମିରେ ପଡ଼ିଛି

ବିଶୀର୍ଣ୍ଣଂ ପତିତଂ ଭୂମୌ କବଚଂ କସ୍ୟ କାଞ୍ଚନମ୍ ।
ଛତ୍ରଂ ଶତଶଲାକଂ ଚ ଦିବ୍ୟମାଲ୍ୟୋପଶୋଭିତମ୍ । ୪୫ ।
ଭଗ୍ନଦଣ୍ଡମିଦଂ କସ୍ୟ ଭୂମୌ ସମ୍ୟଙ୍ନିପାତିତମ୍ ।
କାଞ୍ଚନୋରଶ୍ଛଦାଶ୍ଚେମେ ପିଶାଚବଦନାଃ ଖରାଃ । ୪୬ ।
ଭୀମରୂପା ମହାକାୟାଃ କସ୍ୟ ବା ନିହତା ରଣେ ।
ଦୀପ୍ତପାବକସଂକାଶୋ ଦ୍ୟୁତିମାନ୍ ସମରଧ୍ୱଜଃ । ୪୭ ।
ଅପବିଦ୍ଧଶ୍ଚ ଭଗ୍ନଶ୍ଚ କସ୍ୟ ସାଂଗ୍ରାମିକୋ ରଥଃ ।
ରଥାକ୍ଷମାତ୍ରା ବିଶିଖାସ୍ତପନୀୟବିଭୂଷଣାଃ । ୪୮ ।
କସ୍ୟେମେଽଭିହତା ବାଣାଃ ପ୍ରକୀର୍ଣ୍ଣା ଘୋରକର୍ମଣଃ ।
ଶରାବରୌ ଶରୈଃ ପୂର୍ଣ୍ଣୌ ବିଧ୍ୱସ୍ତୌ ପଶ୍ୟ ଲକ୍ଷ୍ମଣ । ୪୯ ।
ପ୍ରତୋଦାଭୀଷୁହସ୍ତୋଽୟଂ କସ୍ୟାୟଂ ସାରଥିର୍ହତଃ ।
କସ୍ୟେମୌ ପୁରୁଷବ୍ୟାଘ୍ର ଶୟ୍ୟାତେ ନିହତୌ ଯୁଧି । ୫୦ ।
ଚାମରଗ୍ରାହିଣୌ ସୌମ୍ୟ ସୋଷ୍ଣୀଷମଣିକୁଣ୍ଡଳୌ ।
ପଦବୀ ପୁରୁଷସ୍ୟୈଷା ବ୍ୟକ୍ତଂ କସ୍ୟାପି ରକ୍ଷସଃ । ୫୧ ।
ବୈରଂ ଶତଗୁଣଂ ପଶ୍ୟ ମମେଦଂ ଜୀବିତାନ୍ତକମ୍ ।
ସୁଘୋରହୃଦୟୈଃ ସୌମ୍ୟ ରାକ୍ଷସୈଃ କାମରୂପିଭିଃ । ୫୨ ।

---

ଓ ତାହାର ଦଣ୍ଡଟି ଭାଙ୍ଗିଯାଇଛି । ଏହି ସୁବର୍ଣ୍ଣନିର୍ମିତ ବକ୍ଷାବରଣଯୁକ୍ତ, ପିଶାଚବଦନ, ବୃହତ୍କାୟ, ଭୀମରୂପ ଗର୍ଦ୍ଦଭମାନେ ବା କାହାର ଯୁଦ୍ଧରେ ନିହତ ହୋଇଛନ୍ତି । ଏହି ପ୍ରଦୀପ୍ତ ଅଗ୍ନି ସଦୃଶ ଦ୍ୟୁତିମାନ୍ ଯୁଦ୍ଧଧ୍ୱଜ ଏବଂ ଭଗ୍ନ ଯୁଦ୍ଧରଥ ବା କାହାର ପଡ଼ିରହିଛି । କେଉଁ ଭୀଷଣକର୍ମା ବ୍ୟକ୍ତିର ଏହି ସ୍ୱର୍ଣ୍ଣବିଭୂଷିତ ରଥର ଅକ୍ଷସଦୃଶ ପ୍ରକାଣ୍ଡ ଫଳକବାନ ଶରମାନ ଇତସ୍ତତଃ ବିକ୍ଷିପ୍ତ ହୋଇ ପଡ଼ିଅଛି । ହେ ଲକ୍ଷ୍ମଣ ! ଏହି ଶରପୂର୍ଣ୍ଣ ତୂଣୀର ଦୁଇଟି କିପରି ଧ୍ୱସ୍ତବିଧ୍ୱସ୍ତ ହୋଇ-ପଡ଼ିଛି ଦେଖ । ୪୫-୪୯ । ହେ ସୌମ୍ୟ ! ନରଶ୍ରେଷ୍ଠ ! କାହାର ଏହି ଚାବୁକ ଏବଂ ଲଗାମଧାରୀ ସାରଥି ନିହତ ହୋଇଅଛି । କାହାର ଏହି ଉଷ୍ଣୀଷ ଏବଂ ମଣିକୁଣ୍ଡଳଶୋଭିତ ଦୁଇଜଣ ଚାମରଧାରୀ ବ୍ୟକ୍ତି ଯୁଦ୍ଧରେ ନିହତହୋଇ ଶୋଇ-ରହିଛନ୍ତି । କୌଣସି ରାକ୍ଷସର ଏହି ପଦଚିହ୍ନ ଦେଖାଯାଉଅଛି । ୫୦-୫୧ । ହେ ସୌମ୍ୟ ! ଅତି କଠୋରହୃଦୟ କାମରୂପୀ ରାକ୍ଷସମାନଙ୍କ ସହିତ ମୋର ଶତ୍ରୁତା ଶତଗୁଣ ବଢ଼ିଗଲା । ଏହାଦ୍ୱାରା ସେମାନଙ୍କ ଜୀବନର ଅନ୍ତ ହେବ ।୫୨।

ହୃତା ମୃତା ବା ସୀତା ସା ଭକ୍ଷିତା ବା ତପସ୍ୱିନୀ ।
ନ ଧର୍ମସ୍ତ୍ରାୟତେ ସୀତାଂ ହ୍ରିୟମାଣାଂ ମହାବନେ । ୫୩।
ଭକ୍ଷିତାୟାଂ ହି ବୈଦେହ୍ୟାଂ ହୃତାୟାମପି ଲକ୍ଷ୍ମଣ ।
କେହି ଲୋକେଽପ୍ରିୟଂ କର୍ତ୍ତୁଂ ଶକ୍ତାଃ ସୌମ୍ୟ ମମେଶ୍ୱରାଃ ।୫୪
କର୍ତ୍ତାରମପି ଲୋକାନାଂ ଶୂରଂ କରୁଣବେଦିନମ୍ ।
ଅଜ୍ଞାନାଦବମନ୍ୟେରନ୍ ସର୍ବଭୂତାନି ଲକ୍ଷ୍ମଣ । ୫୫ ।
ମୃଦୁଂ ଲୋକହିତେ ଯୁକ୍ତଂ ଦାନ୍ତଂ କରୁଣବେଦିନମ୍ ।
ନିର୍ବୀର୍ଯ୍ୟ ଇତି ମନ୍ୟନ୍ତେ ନୂନଂ ମାଂ ତ୍ରିଦଶେଶ୍ୱରାଃ । ୫୬ ।
ମାଂ ପ୍ରାପ୍ୟ ହି ଗୁଣୋ ଦୋଷଃ ସଂବୃତ୍ତଃ ପଶ୍ୟ ଲକ୍ଷ୍ମଣ ।
ଅଦ୍ୟୈବ ସର୍ବଭୂତାନାଂ ରକ୍ଷସାମଭବାୟ ଚ । ୫୭ ।
ସଂହୃତ୍ୟୈବ ଶଶିଜ୍ୟୋତ୍ସ୍ନାଂ ମହାନ୍ ସୂର୍ଯ୍ୟ ଇବୋଦିତଃ ।
ସଂହୃତ୍ୟୈବ ଗୁଣାନ୍ ସର୍ବାନ୍ ମମ ତେଜଃ ପ୍ରକାଶତେ ।୫୮।
ନୈବ ଯକ୍ଷା ନ ଗନ୍ଧର୍ବା ନ ପିଶାଚା ନ ରାକ୍ଷସାଃ ।
କିଂନରା ବା ମନୁଷ୍ୟା ବା ସୁଖଂ ପ୍ରାପ୍ସ୍ୟନ୍ତି ଲକ୍ଷ୍ମଣ । ୫୯ ।

---

ସୀତା ନିଶ୍ଚୟ ମୃତ, ଅପହୃତ ବା ଭକ୍ଷିତ ହୋଇଅଛନ୍ତି । ଏହି ମହାବନରେ ସୀତା ଅପହୃତ ହେଲାବେଳରେ ତାଙ୍କୁ ଧର୍ମ ରକ୍ଷା କରିପାରିଲା ନାହିଁ । ୫୩ । ହେ ସୌମ୍ୟ ! ଲକ୍ଷ୍ମଣ ! ସୀତା ଯଦି ଅପହୃତ ବା ଭକ୍ଷିତ ହୋଇଥାନ୍ତି, ତେବେ କେଉଁ ଐଶୀଶକ୍ତି-ସମ୍ପନ୍ନ ବ୍ୟକ୍ତି ମୋର ଏ ଅପ୍ରିୟ କାର୍ଯ୍ୟ କରିବା ପାଇଁ ସମର୍ଥ ହୋଇ ଅଛନ୍ତି । ୫୪ । ହେ ଲକ୍ଷ୍ମଣ ! ପ୍ରାଣୀମାନେ ଅଜ୍ଞାନତାହେତୁରୁ ସମସ୍ତ ଲୋକର କର୍ତ୍ତା, ପରମଦୟାଳୁ, ବୀର ବ୍ୟକ୍ତିକୁ ମଧ୍ୟ ଅବମାନନା କରିଥାନ୍ତି । ୫୫ । ମୁଁ କୋମଳସ୍ୱଭାବ, ସର୍ବଦା ପ୍ରାଣିହିତରେ ନିଯୁକ୍ତ, ସଂଯମୀ ଏବଂ ଦୟାର୍ଦ୍ରଚିତ୍ତ ଅଟେଁ । ସେଥିପାଇଁ ଦେବତାମାନେ ମୋତେ ନିର୍ବୀର୍ଯ୍ୟ ମନେ କରୁଛନ୍ତି, ସନ୍ଦେହ ନାହିଁ । ୫୬ । ହେ ଲକ୍ଷ୍ମଣ ! ତୁମ୍ଭେ ଦେଖ, ମୋଠାରେ ଏହି ଗୁଣ ସବୁ ଦୋଷରେ ପରିଣତ ହୋଇଅଛି, ସୁତରାଂ ମୁଁ ଆଜି ସମସ୍ତ ପ୍ରାଣୀ ଓ ରାକ୍ଷସମାନଙ୍କର ନିଃଶେଷ ନିମନ୍ତେ, ପ୍ରଳୟ କାଳରେ ଚନ୍ଦ୍ରର ଜ୍ୟୋତ୍ସ୍ନାକୁ ସଂହରଣକରି ବିରାଟ ସୂର୍ଯ୍ୟଦେବ ଯେପରି ଉଦିତ ହୁଅନ୍ତି, ସେହିପରି ଆଜି ମୋର ସମସ୍ତ ଗୁଣରାଶି ସଂହରଣକରି ମୋର ତେଜ ପ୍ରକାଶକରିବ । ୫୭-୫୮ । ହେ ଲକ୍ଷ୍ମଣ ! ନ ଦେବତା, ନ ଗନ୍ଧର୍ବ, ନ ପିଶାଚ, ନ ରାକ୍ଷସ, ନ କିନ୍ନର ବା ନ ମନୁଷ୍ୟ, କେହି ଆଜି ସୁଖଲାଭ କରିବେ

ମମାସ୍ତ୍ରବାଣସଂପୂର୍ଣ୍ଣମାକାଶଂ ପଶ୍ୟ ଲକ୍ଷ୍ମଣ ।
ନିଃସଂପାତଂ କରିଷ୍ୟାମି ହ୍ୟଦ୍ୟ ତ୍ରୈଲୋକ୍ୟଚାରିଣାମ୍ । ୭୦ ।
ସଂନିରୁଦ୍ଧଗ୍ରହଗଣମାବାରିତନିଶାକରମ୍ ।
ବିପ୍ରନଷ୍ଟାନଲମରୁଦ୍ଭାସ୍କରଦ୍ୟୁତିସଂବୃତମ୍ । ୭୧ ।
ବିନିର୍ମଥିତଶୈଳାଗ୍ରଂ ଶୁଷ୍ୟମାଣଜଲାଶୟମ୍ ।
ଧ୍ୱସ୍ତଦ୍ରୁମଲତାଗୁଲ୍ମଂ ବିପ୍ରଣାଶିତସାଗରମ୍ । ୭୨ ।
ତ୍ରୈଲୋକ୍ୟଂ ତୁ କରିଷ୍ୟାମି ସଂଯୁକ୍ତଂ କାଲଧର୍ମଣା ।
ନ ତାଂ କୁଶଳିନୀଂ ସୀତାଂ ପ୍ରଦାସ୍ୟନ୍ତି ଯଦୀଶ୍ୱରାଃ । ୭୩ ।
ଅସ୍ମିନ୍ ମୁହୂର୍ତ୍ତେ ସୌମିତ୍ରେ ମମ ଦ୍ରକ୍ଷ୍ୟନ୍ତି ବିକ୍ରମମ୍ ।
ନାକାଶମୁତ୍ପତିଷ୍ୟନ୍ତି ସର୍ବଭୂତାନି ଲକ୍ଷ୍ମଣ । ୭୪ ।
ମମ ଚାପଗୁଣୋନ୍ମୁକ୍ତୈର୍ବାଣଜାଲୈର୍ନିରନ୍ତରମ୍ ।
ଅର୍ଦ୍ଦିତଂ ମମ ନାରାଚୈର୍ଧ୍ୱସ୍ତଭ୍ରାନ୍ତମୃଗଦ୍ୱିଜମ୍ । ୭୫ ।
ସମାକୁଲମମର୍ଯ୍ୟାଦଂ ଜଗତ୍ପଶ୍ୟାଦ୍ୟ ଲକ୍ଷ୍ମଣ ।
ଆକର୍ଣ୍ଣପୂର୍ଣ୍ଣୈରିଷୁଭିର୍ଜୀବଲୋକଂ ଦୁରାସଦୈଃ । ୭୬ ।

---

ନାହିଁ । ୬୯ । ହେ ଲକ୍ଷ୍ମଣ ! ମୋର ଅସ୍ତ୍ର ଏବଂ ବାଣଦ୍ୱାରା ସମଗ୍ର ଆକାଶ କିପରି ପରିବ୍ୟାପ୍ତ ହୋଇଯିବ, ଦେଖ । ମୁଁ ଆଜ ତ୍ରିଲୋକବାସୀ ସମସ୍ତ ପ୍ରାଣୀଙ୍କର ଗତିରୋଧ କରିଦେବି । ୭୦ । ଦେବତାମାନେ ଯଦି ସୀତାଙ୍କୁ କୁଶଳରେ ମୋତେ ଫେରାଇ ନ ଦଅନ୍ତି, ତେବେ ମୁଁ ଆଜ ତ୍ରିଲୋକକୁ କାଳଧର୍ମରେ ସଂଯୋଜିତ କରିବି । ତଦ୍ୱାରା ଗ୍ରହମାନଙ୍କର ସଂଚାର ରୁଦ୍ଧହେବ, ଚନ୍ଦ୍ର ଅନ୍ତର୍ହିତ ହେବେ, ବାୟୁ, ଅଗ୍ନି ଓ ସୂର୍ଯ୍ୟ ପ୍ରଭୃତିଙ୍କର ଦୀପ୍ତି ବିନଷ୍ଟ ହେବାଦ୍ୱାରା ସମସ୍ତ ଜଗତ ଅନ୍ଧକାରାବୃତ ହେବ; ଶୈଳଶିଖରସମୂହ ଧ୍ୱସ୍ତବିଧ୍ୱସ୍ତ, ଜଳାଶୟସମୂହ ଶୁଷ୍କ, ଦ୍ରୁମ, ଲତା ଓ ଗୁଳ୍ମସମୂହ ବିଧ୍ୱସ୍ତ ଏବଂ ସମୁଦ୍ର ଏକାବେଳକେ ବିଧ୍ୱସ୍ତ ହୋଇଯିବ । ୭୧-୭୩। ହେ ସୌମିତ୍ରେ ! ଦେବତାମାନେ ସମସ୍ତେ ଏହି ମୁହୂର୍ତ୍ତରେ ମୋର ପରାକ୍ରମ ଦେଖିବେ; ଆଉ କୌଣସି ପ୍ରାଣୀ ଆକାଶକୁ ଉଠି ପାରିବେ ନାହିଁ । ୭୪ । ହେ ଲକ୍ଷ୍ମଣ ! ଦେଖ, ଆଜ ମୋର ଧନୁର୍ମୁକ୍ତ, ଜୀବଲୋକର ଦୁର୍ବାରଣୀୟ ଶରରାଜି ଦ୍ୱାରା ନିପୀଡ଼ିତ ହୋଇ ସମଗ୍ର ଜଗତ ବ୍ୟାକୁଳ ଏବଂ ମର୍ଯ୍ୟାଦାଶୂନ୍ୟ ହୋଇଯିବ ଓ ପଶୁପକ୍ଷୀମାନେ ସମସ୍ତେ ଧ୍ୱସ୍ତ ବିଧ୍ୱସ୍ତ ହୋଇଯିବେ । ୭୫-୭୬। ମୁଁ ସୀତାଙ୍କ

କରିଷ୍ୟେ ମୈଥିଲୀହେତୋରପିଶାଚମରାକ୍ଷସମ୍ ।
ମମ ରୋଷପ୍ରଯୁକ୍ତାନାଂ ସାୟକାନାଂ ବଲଂ ସୁରାଃ । ୬୭ ।
ଦ୍ରକ୍ଷ୍ୟନ୍ତ୍ୟଦ୍ୟ ବିମୁକ୍ତାନାମମର୍ଷାଦ୍ଦୂରଗାମିନାମ୍ ।
ନୈବ ଦେବା ନ ଦୈତେୟା ନ ପିଶାଚା ନ ରାକ୍ଷସାଃ । ୬୮ ।
ଭବିଷ୍ୟନ୍ତି ମମ କ୍ରୋଧାତ୍ତ୍ରୈଲୋକ୍ୟେ ବିପ୍ରଣାଶିତେ ।
ଦେବଦାନବଯକ୍ଷାଣାଂ ଲୋକା ଯେ ରକ୍ଷସାମପି । ୬୯ ।
ବହୁଧା ନିପତିଷ୍ୟନ୍ତି ବାଣୌଘୈଃ ଶକଲୀକୃତାଃ ।
ନିର୍ମର୍ଯାଦାନିମାଁଲ୍ଲୋକାନ୍ କରିଷ୍ୟାମ୍ୟଦ୍ୟ ସାୟକୈଃ । ୭୦ ।
ହୃତାଂ ମୃତାଂ ବା ସୌମିତ୍ରେ ନ ଦାସ୍ୟନ୍ତି ମମେଶ୍ୱରାଃ ।
ତଥାରୂପାଂ ହି ବୈଦେହୀଂ ନ ଦାସ୍ୟନ୍ତି ଯଦି ପ୍ରିୟାମ୍ । ୭୧ ।
ନାଶୟାମି ଜଗତ୍ସର୍ବଂ ତ୍ରୈଲୋକ୍ୟଂ ସଚରାଚରମ୍ ।
ଯାବଦ୍ଦର୍ଶନମସ୍ୟା ବୈ ତାପୟାମି ଚ ସାୟକୈଃ । ୭୨ ।
ଇତ୍ୟୁକ୍ତ୍ୱା ରୋଷତାମ୍ରାକ୍ଷଃ ସ୍ଫୁରମାଣୋଷ୍ଠସଂପୁଟଃ ।
ବଲ୍କଲାଜିନମାବଧ୍ୟ ଜଟାଭାରମବନ୍ଧୟତ୍ । ୭୩ ।

---

ଲାଗି ଏ ଜଗତକୁ ଏକାବେଳକେ ପିଶାଚ ଏବଂ ରାକ୍ଷସଶୂନ୍ୟ କରିଦେବି । ଦେବତାମାନେ ଆଜ ମୋର କ୍ରୋଧନିକ୍ଷିପ୍ତ ବହୁଦୂରଗାମୀ ଶରମାନଙ୍କର ଶକ୍ତି ଦେଖିବେ । ମୋ କ୍ରୋଧରେ ସମସ୍ତ ତ୍ରିଭୁବନ ବିନଷ୍ଟ ହୋଇଗଲେ, ଦେବ, ଦୈତ୍ୟ, ପିଶାଚ, ବା ରାକ୍ଷସ କେହି ଆଉ ରହିବେ ନାହିଁ । ମୋର ଶରବେଗରେ ଖଣ୍ଡ ଖଣ୍ଡ ହୋଇ ଦେବ, ଦାନବ, ରାକ୍ଷସଲୋକ ସବୁ ଇତସ୍ତତଃ ପଡ଼ିଯିବେ । ମୁଁ ଆଜ ଶରରାଜି ଦ୍ୱାରା ଏ ସମସ୍ତ ଲୋକଙ୍କୁ ମର୍ଯ୍ୟାଦାଶୂନ୍ୟ କରିଦେବି । ୬୭-୭୦ । ହେ ସୌମିତ୍ରେ ! ସୀତା ଅପହୃତହୋଇଥାନ୍ତୁ ବା ମୃତହୋଇଥାନ୍ତୁ, ଦେବତାମାନେ ଯଦି ମୋର ପ୍ରିୟାଙ୍କୁ ଠିକ୍ ପୂର୍ବ ଅବସ୍ଥାରେ ଆଣି ନ ଦିଅନ୍ତି, ତାହାହେଲେ ମୁଁ ସଚରାଚର ଏହି ତ୍ରିଭୁବନକୁ ବିନାଶକରିଦେବି । ମୁଁ ତାଙ୍କୁ ନ ଦେଖିବାପର୍ଯ୍ୟନ୍ତ ବାଣରାଜି ଦ୍ୱାରା ଜଗତକୁ ସନ୍ତାପିତ କରିବି" । ୭୧-୭୨ । ଏହା କହି କ୍ରୋଧରେ ତାଙ୍କର ଚକ୍ଷୁ ତାମ୍ରବର୍ଣ୍ଣ ହୋଇଗଲା ଏବଂ ଓଷ୍ଠର ଉପରିଭାଗ ଥରିବାକୁ ଲାଗିଲା । ସେ ବଲ୍କଲ ଏବଂ ଅଜିନକୁ କଷି ବାନ୍ଧି, ଜଟାରେ ମଜବୁତ କରି ଗଣ୍ଠି ପକାଇଲେ । ୭୩ । ସେତେବେଳେ ଧୀମାନ୍ ରାମଚନ୍ଦ୍ର ଏହିପରିଭାବରେ କ୍ରୁଦ୍ଧ ହେବାରୁ

ତସ୍ୟ କ୍ରୁଦ୍ଧସ୍ୟ ରାମସ୍ୟ ତଥାଭୂତସ୍ୟ ଧୀମତଃ ।
ତ୍ରିପୁରଂ ଜଘ୍ନୁଷଃ ପୂର୍ବଂ ରୁଦ୍ରସ୍ୟେବ ବଭୌ ତନୁଃ । ୭୪ ।
ଲକ୍ଷ୍ମଣାଦଥ ଚାଦାୟ ରାମୋ ନିଷ୍ପୀଡ୍ୟ କାର୍ମୁକମ୍ ।
ଶରମାଦାୟ ସଂଦୀପ୍ତଂ ଘୋରମାଶୀବିଷୋପମମ୍ । ୭୫ ।
ସଂଦଧେ ଧନୁଷି ଶ୍ରୀମାନ୍ ରାମଃ ପରପୁରଂଜୟଃ ।
ଯୁଗାନ୍ତାଗ୍ନିରିବ କ୍ରୁଦ୍ଧ ଇଦଂ ବଚନମବ୍ରବୀତ୍ । ୭୬ ।
ଯଥା ଜରା ଯଥା ମୃତ୍ୟୁର୍ଯଥା କାଲୋ ଯଥା ବିଧିଃ ।
ନିତ୍ୟଂ ନ ପ୍ରତିହନ୍ୟନ୍ତେ ସର୍ବଭୂତେଷୁ ଲକ୍ଷ୍ମଣ । ୭୭ ।
ତଥାହଂ କ୍ରୋଧସଂଯୁକ୍ତୋ ନ ନିବାର୍ଯୋଽସ୍ମ୍ୟସଂଶୟମ୍ ।୭୮।
ପୁରେବ ମେ ଚାରୁଦତୀମନିନ୍ଦିତାମ୍
ଦିଶନ୍ତି ସୀତାଂ ଯଦି ନାଦ୍ୟ ମୈଥିଲୀମ୍ ।
ସଦେବଗନ୍ଧର୍ବମନୁଷ୍ୟପନ୍ନଗମ୍
ଜଗତ୍ସଶୈଳଂ ପରିବର୍ତୟାମ୍ୟହମ୍ । ୭୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ରାମକ୍ରୋଧୋ
ନାମ ଚତୁଃଷଷ୍ଟିତମଃ ସର୍ଗଃ

---

ପୂର୍ବେ ତ୍ରିପୁରାସୁରର ସଂହାର ନିମନ୍ତେ ଉଦ୍ୟତ ରୁଦ୍ରଙ୍କପରି ତାଙ୍କର ଶରୀର ଶୋଭାପାଇଲା । ୭୪ । ଶତ୍ରୁଲୋକବିଜୟକାରୀ ଶ୍ରୀମାନ୍ ରାମ ଲକ୍ଷ୍ମଣଙ୍କ ନିକଟରୁ ଧନୁକୁ ଆଣି ଓ ଦୃଢ଼ଭାବରେ ଧାରଣକରି ସର୍ପସଦୃଶ ଅତି ଦୀପ୍ତ ଶରସମୂହ ଧରି ସେ ଧନୁରେ ସନ୍ଧାନକଲେ ଏବଂ ଯୁଗାନ୍ତକାଳୀନ ଅଗ୍ନିସଦୃଶ କ୍ରୁଦ୍ଧ ହୋଇ ଏହି କଥା କହିଲେ । ୭୫-୭୬ । "ହେ ଲକ୍ଷ୍ମଣ ! ଜରା, ମୃତ୍ୟୁ, କାଳ ଏବଂ ବିଧି ଯେପରି ପ୍ରାଣୀମାନଙ୍କ ପ୍ରତି ନିଜ କାର୍ଯ୍ୟ କରିବାରେ କେବେହେଲେ ପ୍ରତିହତ ହୁଅନ୍ତି ନାହିଁ, ମୁଁ ସେହିପରି ବର୍ତ୍ତମାନ କ୍ରୁଦ୍ଧ ହୋଇଅଛି; କେହି କେବେ ମୋତେ ନିବାରଣ କରିପାରିବେ ନାହିଁ । ୭୭-୭୮ । ମିଥିଳାରାଜନନ୍ଦିନୀ ସୀତାଙ୍କୁ ଯଦି ଠିକ୍ ପୂର୍ବ ଅବସ୍ଥାରେ ମୋତେ ନ ଦିଅନ୍ତି ତାହାହେଲେ ମୁଁ ଦେବ, ଗନ୍ଧର୍ବ, ମନୁଷ୍ୟ, ପନ୍ନଗ ଏବଂ ପର୍ବତ ସହିତ ସମଗ୍ର ଜଗତକୁ ଓଲଟାଇ ପକାଇବି" । ୭୯।

# ପଞ୍ଚଷଷ୍ଟିତମଃ ସର୍ଗଃ

## କ୍ରୋଧସଂହାରପ୍ରାର୍ଥନା

ତପ୍ୟମାନଂ ତଥା ରାମଂ ସୀତାହରଣକର୍ଶିତମ୍ ।
ଲୋକାନାମଭବେ ଯୁକ୍ତଂ ସଂବର୍ତ୍ତକମିବାନଲମ୍ । ୧ ।
ବୀକ୍ଷମାଣଂ ଧନୁଃ ସଜ୍ୟଂ ନିଃଶ୍ୱସନ୍ତଂ ପୁନଃପୁନଃ ।
ଦଗ୍ଧୁକାମଂ ଜଗତ୍ସର୍ବଂ ଯୁଗାନ୍ତେ ତୁ ଯଥା ହରମ୍ । ୨ ।
ଅଦୃଷ୍ଟପୂର୍ବଂ ସଂକ୍ରୁଦ୍ଧଂ ଦୃଷ୍ଟ୍ୱା ରାମଂ ତୁ ଲକ୍ଷ୍ମଣଃ ।
ଅବ୍ରବୀତ୍ ପ୍ରାଞ୍ଜଳିର୍ବାକ୍ୟଂ ମୁଖେନ ପରିଶୁଷ୍ୟତା । ୩ ।
ପୁରା ଭୂତ୍ୱା ମୃଦୁର୍ଦାନ୍ତଃ ସର୍ବଭୂତହିତେ ରତଃ ।
ନ କ୍ରୋଧବଶମାପନ୍ନଃ ପ୍ରକୃତିଂ ହାତୁମର୍ହସି । ୪ ।
ଚନ୍ଦ୍ରେ ଲକ୍ଷ୍ମୀଃ ପ୍ରଭା ସୂର୍ଯ୍ୟେ ଗତିର୍ବାୟୌ ଭୁବି କ୍ଷମା ।
ଏତଚ୍ଚ ନିୟତଂ ସର୍ବଂ ତ୍ୱୟି ଚାନୁତ୍ତମଂ ଯଶଃ । ୫ ।
ଏକସ୍ୟ ନାପରାଧେନ ଲୋକାନ୍ ହନ୍ତୁଂ ତ୍ୱମର୍ହସି ।
ନ ତୁ ଜାନାମି କସ୍ୟାୟଂ ଭଗ୍ନଃ ସାଂଗ୍ରାମିକୋ ରଥଃ । ୬ ।

---

## ୬୫ତମ ସର୍ଗ

( କ୍ରୋଧସଂବରଣପାଇଁ ଲକ୍ଷ୍ମଣଙ୍କ ଅନୁରୋଧ )

ସୀତାହରଣହେତୁ କାତର ଏବଂ ସଂତପ୍ତ ହୋଇ ରାମ ସଂବର୍ତ୍ତକ ଅଗ୍ନି ପରି ଲୋକବିନାଶନିମନ୍ତେ ଉଦ୍ୟତହେବାରୁ ଏବଂ ପ୍ରଳୟକାଳରେ ସମସ୍ତ ଜଗତ ଦଗ୍ଧ କରିବା ନିମନ୍ତେ ଅଭିଳାଷୀ ମହାଦେବଙ୍କପରି ବାରଂବାର ନିଃଶ୍ୱାସ ପକାଇ ଜ୍ୟାଯୁକ୍ତ ଧନୁ ପ୍ରତି ଦୃଷ୍ଟିପାତ କରିବାରୁ, ଲକ୍ଷ୍ମଣ ତାଙ୍କର ସେହିପରି ଅଦୃଷ୍ଟପୂର୍ବ କ୍ରୋଧ ଦେଖି ଶୁଷ୍କମୁଖରେ କରଯୋଡ଼ି କହିଲେ । ୧-୩ । "ଆପଣ ପୂର୍ବେ କୋମଳସ୍ୱଭାବ, ସଂଯମୀ ଏବଂ ସମସ୍ତ ପ୍ରାଣୀଙ୍କର ହିତରେ ରତଥାଇ, ବର୍ତ୍ତମାନ କ୍ରୋଧର ବଶୀଭୂତ ହୋଇ ନିଜର ସ୍ୱଭାବ ପରିତ୍ୟାଗ କରିବା ଉଚିତ ନୁହେଁ । ୪ । ଚନ୍ଦ୍ରଙ୍କ ଠାରେ ଲକ୍ଷ୍ମୀ, ସୂର୍ଯ୍ୟଙ୍କଠାରେ ଦୀପ୍ତି, ବାୟୁଙ୍କଠାରେ ଗତି ଏବଂ ଆପଣଙ୍କଠାରେ ଅନୁତ୍ତମ ଯଶ, ଏ ସମସ୍ତ ସର୍ବଦା ବିଦ୍ୟମାନ ରହିଅଛି । ୫ । ଜଣେ ବ୍ୟକ୍ତିର ଅପରାଧରେ ସମୁଦାୟ ଲୋକର ବିନାଶ କରିବା ତୁମ୍ଭର ଉଚିତ ନୁହେ । କାହାର ଏ ଯୁଦ୍ଧରଥ ଭାଙ୍ଗି ପଡ଼ିଛି ମୁଁ ଜାଣେ ନାହିଁ । ୬ । ରାଜକୁମାର ! କାହାଦ୍ୱାରା ବା

କେନ ବା କସ୍ୟ ବା ହେତୋଃ ସାୟୁଧଃ ସପରିଚ୍ଛଦଃ ।
ଖୁରନେମିକ୍ଷତଶ୍ଚାୟଂ ସିକ୍ତୋ ରୁଧିରବିନ୍ଦୁଭିଃ । ୭ ।
ଦେଶୋ ନିବୃତ୍ତସଂଗ୍ରାମଃ ସୁଘୋରଃ ପାର୍ଥିବାତ୍ମଜ ।
ଏକସ୍ୟ ତୁ ବିମର୍ଦ୍ଦୋଽୟଂ ନ ଦ୍ୱୟୋର୍ବଦତାଂ ବର । ୮ ।
ନ ହି ବୃତ୍ତଂ ହି ପଶ୍ୟାମି ବଳସ୍ୟ ମହତଃ ପଦମ୍ ।
ନୈକସ୍ୟ ତୁ କୃତେ ଲୋକାନ୍ ବିନାଶୟିତୁମର୍ହସି । ୯ ।
ଯୁକ୍ତଦଣ୍ଡା ହି ମୃଦବଃ ପ୍ରଶାନ୍ତା ବସୁଧାଧିପାଃ ।
ସଦା ତ୍ୱଂ ସର୍ବଭୂତାନାଂ ଶରଣ୍ୟଃ ପରମା ଗତିଃ । ୧୦ ।
କୋ ନୁ ଦାରପ୍ରଣାଶଂ ତେ ସାଧୁ ମନ୍ୟେତ ରାଘବ ।
ସରିତଃ ସାଗରାଃ ଶୈଳା ଦେବଗନ୍ଧର୍ବଦାନବାଃ । ୧୧ ।
ନାଲଂ ତେ ବିପ୍ରିୟଂ କର୍ତ୍ତୁଂ ଦୀକ୍ଷିତସ୍ୟେବ ସାଧବଃ ।
ଯେନ ରାଜନ୍ ହୃତା ସୀତା ତମନ୍ୱେଷିତୁମର୍ହସି । ୧୨ ।
ମଦ୍ୱିତୀୟୋ ଧନୁଷ୍ପାଣିଃ ସହାୟୈଃ ପରମର୍ଷିଭିଃ ।
ସମୁଦ୍ରଂ ଚ ବିଚେଷ୍ୟାମଃ ପର୍ବତାଂଶ୍ଚ ବନାନି ଚ । ୧୩ ।

---

କାହାହେତୁରୁ ଏହି ସ୍ଥାନ ଅଶ୍ୱର ଖୁର ଏବଂ ରଥର ନେମିଦ୍ୱାରା କ୍ଷତ ହୋଇଛି, ରକ୍ତବିନ୍ଦୁଦ୍ୱାରା ଆର୍ଦ୍ର ହୋଇଛି ଏବଂ ଅସ୍ତ୍ରଶସ୍ତ୍ର ତଥା ପରିଚ୍ଛଦାଦି ପଡ଼ିଥିବାରୁ ଯୁଦ୍ଧ ଶେଷରେ ତାହା ଭୟଙ୍କର ଆକାର ଧାରଣ କରିଅଛି, ଏହା ଜଣାଯାଉ ନାହିଁ ସତ. ମାତ୍ର ହେ ବାଗ୍ମିଶ୍ରେଷ୍ଠ, ତଥାପି ବୋଧ ହେଉଛି, ଏ ଘୋରରୁଘୋରର ଜଣକଦ୍ୱାରାହିଁ ହୋଇଛି, ଦୁଇଜଣଙ୍କଦ୍ୱାରା ନୁହେଁ ।୭ ୮। କୌଣସି ବିଶାଳସୈନ୍ୟବାହିନୀର ପଦଚିହ୍ନ ମଧ୍ୟ ଏଠାରେ ଦେଖାଯାଉ ନାହିଁ । ଅତଏବ ଜଣକ ଲାଗି ତୁମ୍ଭର ସମଗ୍ର ଜଗତକୁ ଧ୍ୱଂସକରିଦେବା ଉଚିତ ନୁହେଁ । ୯ । ରାଜାମାନଙ୍କର ସର୍ବଦା ମୃଦୁ ଏବଂ ଶାନ୍ତ-ସ୍ୱଭାବ ହେବା ଉଚିତ ଏବଂ ଦୋଷର ଗୁରୁତ୍ୱ ବିଚାର କରି ଉପଯୁକ୍ତ ଦଣ୍ଡବିଧାନ କରିବା ଉଚିତ । ତୁମେ ସର୍ବଦା ପ୍ରାଣୀମାନଙ୍କର ଆଶ୍ରୟସ୍ଥଳ ଓ ପରମଗତି ଅଟ । ୧୦ । ହେ ରାଘବ ! ସଂସାରରେ କେଉଁ ବ୍ୟକ୍ତି ତୁମ୍ଭର ପତ୍ନୀବିୟୋଗକୁ 'ସାଧୁ' ବୋଲି ମନେ କରିପାରେ ? ସାଧୁମାନେ ଯେପରି ଯଜ୍ଞଦୀକ୍ଷିତ ବ୍ୟକ୍ତିର କୌଣସି ଅପ୍ରିୟ କାର୍ଯ୍ୟ କରନ୍ତି ନାହିଁ, ସେହିପରି ଦେବ, ଦାନବ, ଗନ୍ଧର୍ବ, ସରିତ୍, ସମୁଦ୍ର ଏବଂ ପର୍ବତ କେହି ତୁମ୍ଭର ଅପ୍ରିୟ କାର୍ଯ୍ୟ କରି ନ ପାରନ୍ତି । ରାଜନ୍ ! ଯେଉଁ ବ୍ୟକ୍ତି ସୀତାଙ୍କୁ ଅପହରଣ କରିଛି ତାହାକୁ ଅନ୍ୱେଷଣ କରିବା ତୁମ୍ଭର ଉଚିତ । ୧୧-୧୨ । ଅତଏବ ଆପଣ ଧନୁ ଧରନ୍ତୁ । ମୁଁ ଆପଣଙ୍କର ସହାୟ ହୋଇ ରହିଥିବି । ଆମେ-ମାନେ ମହର୍ଷିମାନଙ୍କ ସାହାଯ୍ୟରେ, ବନ, ପର୍ବତ ଓ ସମୁଦ୍ରମାନ ଖୋଜିବା । ୧୩ ।

ଗୁହାଶ୍ଚ ବିବିଧା ଘୋରା ନଦୀଃ ପଦ୍ମବନାନି ଚ ।
ଦେବଗନ୍ଧର୍ବଲୋକାଂଶ୍ଚ ବିଚେଷ୍ୟାମଃ ସମାହିତାଃ । ୧୪ ।
ଯାବନ୍ନାଧିଗମିଷ୍ୟାମସ୍ତବ ଭାର୍ଯାପହାରିଣମ୍ ।
ନ ଚେତ୍ସାମ୍ନା ପ୍ରଦାସ୍ୟନ୍ତି ପତ୍ନୀଂ ତେ ତ୍ରିଦଶେଶ୍ୱରାଃ । ୧୫ ।
କୋଶଲେନ୍ଦ୍ର ତତଃ ପଶ୍ଚାତ୍ ପ୍ରାପ୍ତକାଳଂ କରିଷ୍ୟସି । ୧୬ ।
ଶୀଲେନ ସାମ୍ନା ବିନୟେନ ସୀତାମ୍
ନୟେନ ନ ପ୍ରାପ୍ସ୍ୟସି ଚେନ୍ନରେନ୍ଦ୍ର ।
ତତଃ ସମୁତ୍ସାଦୟ ହେମପୁଙ୍ଖୈ-
ର୍ମହେନ୍ଦ୍ରବଜ୍ରପ୍ରତିମୈଃ ଶରୌଘୈଃ । ୧୭ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ କ୍ରୋଧସଂହାରପ୍ରାର୍ଥନା
ନାମ ପଞ୍ଚଷଷ୍ଟିତମଃ ସର୍ଗଃ

———

ଆମେମାନେ ଖୁବ୍ ସାବଧାନଭାବରେ ବିଭିନ୍ନ ଭୟଙ୍କର ଗୁହା, ନଦୀ, ପଦ୍ମବନ ଏବଂ ଦେବ ଓ ଗନ୍ଧର୍ବଲୋକମାନ ଖୋଜିବା । ୧୪ । ତୁମ ପତ୍ନୀଙ୍କର ଅପହରଣକାରୀକୁ ନ ପାଇବାପର୍ଯ୍ୟନ୍ତ ଆମେ ଖୋଜୁଥିବା । ହେ କୋଶଳରାଜ ! ଯଦି ଏହି ସାମନୀତି ଅବଲମ୍ବନଦ୍ୱାରା ଦେବତାମାନେ ତୁମ ପତ୍ନୀଙ୍କୁ ନ ଦିଅନ୍ତି, ତେବେ ସେତେବେଳେ ତୁମେ କାଳୋଚିତ ବ୍ୟବସ୍ଥା କରିବ । ୧୫-୧୬ । ହେ ନରେନ୍ଦ୍ର ! ଶୀଳ, ବିନୟ ଓ ସାମନୀତି ଅବଲମ୍ବନକରି ମଧ୍ୟ ଯଦି ତୁମେ ସୀତାଙ୍କୁ ନ ପାଅ, ତେବେ ଇନ୍ଦ୍ରଙ୍କ ବଜ୍ରତୁଲ୍ୟ ସ୍ୱର୍ଣ୍ଣପୁଙ୍ଖବିଶିଷ୍ଟ ଶରରାଜିଦ୍ୱାରା ଜଗତର ମୂଳୋତ୍ପାଟନ କରିବ" । ୧୭ ।

————

# ଷଟ୍‌ଷଷ୍ଟିତମଃ ସର୍ଗଃ

## ଔଚିତ୍ୟପ୍ରବୋଧନମ୍

ତଂ ତଥା ଶୋକସଂତପ୍ତଂ ବିଲପନ୍ତମନାଥବତ୍ ।
ମୋହେନ ମହତାବିଷ୍ଟଂ ପରିଦ୍ୟୂନମଚେତସମ୍ । ୧ ।
ତତଃ ସୌମିତ୍ରିରାଶ୍ୱାସ୍ୟ ମୁହୂର୍ତ୍ତାଦିବ ଲକ୍ଷ୍ମଣଃ ।
ରାମଂ ସଂବୋଧୟାମାସ ଚରଣୌ ଚାଭିପୀଡ଼ୟନ୍ । ୨ ।
ମହତା ତପସା ରାମ ମହତା ଚାପି କର୍ମଣା ।
ରାଜ୍ଞା ଦଶରଥେନାସି ଲବ୍ଧୋଽମୃତମିବାମରୈଃ । ୩ ।
ତବ ଚୈବ ଗୁଣୈର୍ବଦ୍ଧସ୍ତ୍ୱଦ୍ୱିୟୋଗାନ୍ମହୀପତିଃ ।
ରାଜା ଦେବତ୍ୱମାପନ୍ନୋ ଭରତସ୍ୟ ଯଥା ଶ୍ରୁତମ୍ । ୪ ।
ସ୍ପୃଶନ୍ତ୍ୟନଲବଦ୍ରାଜନ୍ କ୍ଷଣେନ ନ ଭବନ୍ତି ଚ ।
ଆଶ୍ୱସିହି ନରଶ୍ରେଷ୍ଠ ପ୍ରାଣିନଃ କସ୍ୟ ନାପଦଃ । ୫ ।
ଯଦି ଦୁଃଖମିଦଂ ପ୍ରାପ୍ତଂ କାକୁତ୍ସ୍ଥ ନ ସହିଷ୍ୟସେ ।
ପ୍ରାକୃତଶ୍ଚାଲ୍ପସତ୍ତ୍ୱଶ୍ଚ ଇତରଃ କଃ ସହିଷ୍ୟତେ । ୬ ।

---

## ୬୬ତମ ସର୍ଗ

( ଲକ୍ଷ୍ମଣଙ୍କର ପ୍ରବୋଧନା )

ରାମ ଏହିପରି ଶୋକସନ୍ତପ୍ତ, ମହାମୋହାବିଷ୍ଟ ଏବଂ ହତଜ୍ଞାନ ହୋଇ ଅନାଥପରି ବିଳାପ କରିବାରୁ ଲକ୍ଷ୍ମଣ ତାଙ୍କର ପାଦମର୍ଦ୍ଦନ କରି ମୁହୂର୍ତ୍ତକ ମଧ୍ୟରେ ତାଙ୍କୁ ଆଶ୍ୱାସିତକରି କହିଲେ ।୧-୨। "ହେ ରାମ ! ଦେବତାମାନେ ଅମୃତ ଲାଭକଲାପରି ରାଜା ଦଶରଥ ମହତ୍ ତପସ୍ୟା ଓ କର୍ମାନୁଷ୍ଠାନଦ୍ୱାରା ତୁମକୁ ପାଇଛନ୍ତି । ୩ । ଭରତଙ୍କଠାରୁ ଯେପରି ଶୁଣାଯାଇଛି, ରାଜା ଦଶରଥ ତୁମର ଗୁଣରେ ମୁଗ୍ଧହୋଇ ତୁମର ବିୟୋଗ ହେତୁରୁହିଁ ଦେବତ୍ୱ ଲାଭ କରିଅଛନ୍ତି । ୪ । ହେ ନରଶ୍ରେଷ୍ଠ ! ତୁମେ ଆଶ୍ୱସ୍ତ ହୁଅ । ବିପଦ ବାୟୁପରି ପ୍ରାଣୀକୁ ସ୍ପର୍ଶକରି ପରକ୍ଷଣରେ ଆଉ ରହେ ନାହିଁ । ଏ ଜଗତରେ କେଉଁ ପ୍ରାଣୀର ବିପଦ ନାହିଁ ? ।୫। କାକୁତ୍ସ୍ଥ ! ତୁମେ ଯଦି ଏ ଉପସ୍ଥିତ ବିପଦକୁ ନ ସହିବ, ତେବେ ଇତର ସାଧାରଣ ଅଳ୍ପପ୍ରାଣ ଲୋକ କିଏ କିପରି ସହିବ ? । ୬ । ଆପଣ ଯଦି ଏପରି ଦୁଃଖିତ ହୋଇ

ଦୁଃଖିତୋ ହ୍ୟୁ ଭବାଂଲ୍ଲୋକାଂସ୍ତେଜସା ଯଦି ଧକ୍ଷ୍ୟତେ ।
ଆର୍ତ୍ତାଃ ପ୍ରଜା ନରବ୍ୟାଘ୍ର କ୍ୱ ନୁ ଯାସ୍ୟନ୍ତି ନିର୍ବୃତିମ୍ । ୭।
ଲୋକସ୍ୱଭାବ ଏବୈଷ ଯଯାତିର୍ନହୁଷାତ୍ମଜଃ * ।
ଗତଃ ଶକ୍ରେଣ ସାଲୋକ୍ୟମନୟସ୍ତଂ ସମସ୍ପୃଶତ୍ । ୮ ।
ମହର୍ଷିର୍ଯୋ ବସିଷ୍ଠସ୍ତୁ ଯଃ ପିତୁର୍ନଃ ପୁରୋହିତଃ ।
ଅହ୍ନା ପୁତ୍ରଶତଂ ଜଜ୍ଞେ ତଥୈବାସ୍ୟ ପୁନର୍ହତମ୍ । ୯ ।
ଯା ଚେୟଂ ଜଗତାଂ ମାତା ଦେବୀ ଲୋକନମସ୍କୃତା ।
ଅସ୍ୟାଶ୍ଚ ଚଳନଂ ଭୂମେର୍ଦୃଶ୍ୟତେ କୋସଲେଶ୍ୱର । ୧୦ ।
ଯୌ ଧର୍ମୌ ଜଗତାଂ ନେତ୍ରୌ ଯତ୍ର ସର୍ବଂ ପ୍ରତିଷ୍ଠିତମ୍ ।
ଆଦିତ୍ୟଚନ୍ଦ୍ରୌ ଗ୍ରହଣମଭ୍ୟୁପେତୌ ମହାବଲୌ । ୧୧ ।
ସୁମହାନ୍ତ୍ୟପି ଭୂତାନି ଦେବାଶ୍ଚ ପୁରୁଷର୍ଷଭ ।
ନ ଦୈବସ୍ୟ ପ୍ରମୁଞ୍ଚନ୍ତି ସର୍ବଭୂତାନି ଦେହିନଃ । ୧୨ ।

---

ତେଜଃପ୍ରଭାବରେ ସମଗ୍ର ଜଗତକୁ ଦଗ୍ଧ କରିପକାଇବେ, ତେବେ ଦୁଃଖାର୍ତ୍ତ ଜନସାଧାରଣ କପରି ଶାନ୍ତିଲାଭ କରିବେ । ୭ । ଲୋକଙ୍କର ସ୍ୱଭାବହିଁ ଏହିପରି । ଦେଖ, ନହୁଷପୁତ୍ର ଯଯାତି ଇନ୍ଦ୍ରତ୍ୱ ଲାଭକରିଥିଲେ ମଧ୍ୟ ଅନୀତି ତାଙ୍କୁ ସ୍ପର୍ଶ କରିଥିଲା । ୮ । ଯେଉଁ ମହର୍ଷି ବଶିଷ୍ଠ ଆମ୍ଭମାନଙ୍କ ପିତାଙ୍କର ପୁରୋହିତ, ସେ ଏକାଦିନକରେ ଶତପୁତ୍ର ଜନ୍ମ କରିଥିଲେ,ପୁଣି-ଏକାଦିନକରେ ତାଙ୍କର ସେହି ପୁତ୍ରମାନେ ନଷ୍ଟ ହୋଇଯାଇଥିଲେ । ୯। କୋଶଳରାଜ ! ଏହି ଯେ ଜଗନ୍ମାତା ସର୍ବଲୋକପୂଜ୍ୟା ଦେବୀ ବସୁନ୍ଧରା, ତାଙ୍କର ମଧ୍ୟ କମ୍ପନ ହେବାର ଦେଖାଯାଏ । ୧୦ । ଯେଉଁ ଚନ୍ଦ୍ର ଓ ସୂର୍ଯ୍ୟ ଏ ଜଗତର ଚକ୍ଷୁସଦୃଶ, ସାକ୍ଷାତ୍ ଧର୍ମସ୍ୱରୂପ ଓ ଯାହାଙ୍କଠାରେ ସମୁଦାୟ ସଂସାର ପ୍ରତିଷ୍ଠିତ ହୋଇରହିଛି, ସେ ଦୁଇ ମହାବଳୀଙ୍କର ମଧ୍ୟ ଗ୍ରହଣ ହୋଇଥାଏ । ୧୧ । ନରଶ୍ରେଷ୍ଠ ! ଏହିପରି ଅତି ମହତ୍ ପ୍ରାଣୀ ଏବଂ ଦେବତାମାନଙ୍କୁ ମଧ୍ୟ ଯେତେବେଳେ ଦୈବ ଅବ୍ୟାହତି ଦିଏନାହିଁ, ସେତେବେଳେ ଦେହଧାରୀ ଅନ୍ୟ ପ୍ରାଣୀମାନଙ୍କ କଥା ବା କ'ଣ କହିବା ? ।୧୨ । ହେ ନରଶ୍ରେଷ୍ଠ ! ଇନ୍ଦ୍ର ପ୍ରଭୃତି

---

* ନହୁଷ ନିଜର ପୁଣ୍ୟବଳରେ ଇନ୍ଦ୍ରତ୍ୱ ଲାଭକରିଥିଲେ; ମାତ୍ର ସ୍ୱର୍ଗରେ ସେ ପଦପ୍ରାପ୍ତିଜନିତରୁ ଗର୍ବିତହୋଇ ଅଗସ୍ତ୍ୟ ମହର୍ଷିଙ୍କୁ ଅବମାନନା କରିବାରୁ ତାଙ୍କ ଅଭିଶାପରେ ପୁଣି ଇନ୍ଦ୍ରତ୍ୱ ହରାଇ ମର୍ତ୍ତ୍ୟକୁ ଖସି ଆସିଥିଲେ ।

ଶକ୍ରାଦଷ୍ୱପି ଦେବେଷୁ ବର୍ତ୍ତମାନୌ ନୟାନୟୌ ।
ଶ୍ରୂୟେତେ ନରଶାର୍ଦ୍ଦୂଳ ନ ତ୍ୱଂ ବ୍ୟଥିତୁମର୍ହସି । ୧୩ ।
ନଷ୍ଟାୟାମପି ବୈଦେହ୍ୟାଂ ହୃତାୟାମପି ରାଘବ ।
ଶୋଚିତୁଂ ନାର୍ହସେ ବୀର ଯଥାନ୍ୟଃ ପ୍ରାକୃତସ୍ତଥା । ୧୪ ।
ତ୍ୱଦ୍‌ବିଧା ନ ହି ଶୋଚନ୍ତି ସତତଂ ସତ୍ୟଦର୍ଶିନଃ ।
ସୁମହତ୍‌ସ୍ୱପି କୃଚ୍ଛ୍ରେଷୁ ରାମାନିର୍ବିଣ୍ଣଦର୍ଶନାଃ । ୧୫ ।
ତତ୍ତ୍ୱତୋ ହି ନରଶ୍ରେଷ୍ଠ ବୁଦ୍ଧ୍ୟା ସମନୁଚିନ୍ତୟ ।
ବୁଦ୍ଧ୍ୟା ଯୁକ୍ତା ମହାପ୍ରାଜ୍ଞା ବିଜାନନ୍ତି ଶୁଭାଶୁଭେ । ୧୬ ।
ଅଦୃଷ୍ଟଗୁଣଦୋଷାଣାମଧୃତାନାଂ ଚ କର୍ମଣାମ୍ ।
ନାନ୍ତରେଣ କ୍ରିୟାଂ ତେଷାଂ ଫଲମିଷ୍ଟଂ ପ୍ରବର୍ତ୍ତତେ । ୧୭ ।
ତ୍ୱମେବ ହି ପୁରା ରାମ ମାମେବଂ ବହୁଶୋଽନ୍ୱଶାଃ ।
ଅନୁଶିଷ୍ୟାଦ୍ଧି କୋ ନୁ ତ୍ୱାମପି ସାକ୍ଷାଦ୍‌ବୃହସ୍ପତିଃ । ୧୮ ।
ବୁଦ୍ଧିଶ୍ଚ ତେ ମହାପ୍ରାଜ୍ଞ ଦେବୈରପି ଦୁରନ୍ୱୟା ।
ଶୋକେନାଭିପ୍ରସୁପ୍ତଂ ତେ ଜ୍ଞାନଂ ସମ୍ବୋଧୟାମ୍ୟହମ୍ । ୧୯ ।
ଦିବ୍ୟଂ ଚ ମାନୁଷଂ ଚ ତ୍ୱମାତ୍ମନଶ୍ଚ ପରାକ୍ରମମ୍ ।
ଇକ୍ଷ୍ୱାକୁବୃଷଭାବେକ୍ଷ୍ୟ ଯତସ୍ୱ ଦ୍ୱିଷତାଂ ବଧେ । ୨୦ ।

---

ଦେବତାମାନଙ୍କଠାରେ ମଧ୍ୟ ନୀତି ଏବଂ ଅନୀତି ବିଦ୍ୟମାନ ଥିବାର ଶୁଣାଯାଏ; ସୁତରାଂ ତୁମ୍ଭର ବ୍ୟଥିତ ହେବା ଉଚିତ ନୁହେଁ ।୧୩। ହେ ବୀର ! ବୈଦେହୀ ମୃତା ବା ଅପହୃତା ହେଲେ ମଧ୍ୟ ଅନ୍ୟ ସାଧାରଣ ବ୍ୟକ୍ତିପରି ତୁମ୍ଭର ଶୋକ କରିବା ଅନୁଚିତ । ୧୪ । ରାମ ! ତୁମପରି ସତତ ସତ୍ୟଦର୍ଶୀ ଏବଂ ଦୁଃଖଶୋକରହିତ ବ୍ୟକ୍ତିମାନେ ଅତି ଘୋର ବିପଦରେ ମଧ୍ୟ ଶୋକ କରନ୍ତି ନାହିଁ । ୧୫ । ନରଶ୍ରେଷ୍ଠ ! ତୁମେ ଯଥାର୍ଥଭାବରେ ବିଚାରକରି ବୁଦ୍ଧିଦ୍ୱାରା ଉତ୍ତମରୂପେ ଚିନ୍ତାକର । ବୁଦ୍ଧିମାନ୍ ସୁବିଜ୍ଞ ବ୍ୟକ୍ତିମାନେ ଶୁଭାଶୁଭ ଜାଣିପାରନ୍ତି । ୧୬ । ଯାହାର ଗୁଣ ଦୋଷ ପ୍ରତ୍ୟକ୍ଷ ଦେଖାଯାଏ ନାହିଁ, ତାଦୃଶ ଅଧ୍ରୁବ କର୍ମମାନଙ୍କର ଅନୁଷ୍ଠାନ ବ୍ୟତୀତ କଦାପି ଇଷ୍ଟଫଳ ଲବ୍ଧହୁଏ ନାହିଁ । ୧୭ । ରାମ ! ତୁମେହିଁ ପୂର୍ବେ ମୋତେ ବହୁବାର ଏପରି ଉପଦେଶ ଦେଇଛ । ତୁମେ ତ ସାକ୍ଷାତ୍ ବୃହସ୍ପତିଙ୍କପରି । ତୁମକୁ ପୁଣି କିଏ ଉପଦେଶ ଦେବ ? । ୧୮ । ହେ ମହାପ୍ରାଜ୍ଞ ! ଦେବତାମାନେ ମଧ୍ୟ ତୁମ ବୁଦ୍ଧିକୁ କଳି ପାରନ୍ତି ନାହିଁ । ତୁମ୍ଭର ସେ ଜ୍ଞାନ ବର୍ତ୍ତମାନ ଶୋକଦ୍ୱାରା ଆଚ୍ଛନ୍ନ ହୋଇଯାଇଛି । ମୁଁ ତାକୁ ଉଦ୍‌ବୋଧିତ କରୁଛି ମାତ୍ର । ୧୯ । ହେ ଇକ୍ଷ୍ୱାକୁପ୍ରବର ! ତୁମେ ନିଜର ଦିବ୍ୟ ଏବଂ ମାନୁଷ ପରାକ୍ରମ ବିବେଚନାକରି ଶତ୍ରୁଦ୍ୱାର ବିଷୟରେ ଯତ୍ନବାନ୍

**କିଂ ତେ ସର୍ବନାଶେନ କୃତେନ ପୁରୁଷର୍ଷଭ ।**
**ତମେବ ତ୍ୱଂ ରିପୁଂ ପାପଂ ବିଜ୍ଞାୟୋଦ୍ଧର୍ତୁମର୍ହସି ।୨୧।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ ଅରଣ୍ୟକାଣ୍ଡେ ଔଚିତ୍ୟପ୍ରବୋଧନମ୍
ନାମ ଷଟ୍‌ଷଷ୍ଟିତମଃ ସର୍ଗଃ

---

ହୁଅ ।୨୦। ନରଶ୍ରେଷ୍ଠ ! ତୁମେ ସମଗ୍ର ଲୋକ ସଂହାର କରିବାର କି ପ୍ରୟୋଜନ ଅଛି ? ତୁମର ସେହି ପାପାତ୍ମା ଶତ୍ରୁକୁ ଜାଣି, ସୀତାଙ୍କୁ ଉଦ୍ଧାର କରିବା ଉଚିତ ”।୨୧।

# ସପ୍ତଷଷ୍ଟିତମଃ ସର୍ଗଃ

## ଗୃଧ୍ରରାଜଦର୍ଶନମ୍

ପୂର୍ବଜୋଽପ୍ୟୁକ୍ତମାତ୍ରସ୍ତୁ ଲକ୍ଷ୍ମଣେନ ସୁଭାଷିତମ୍ ।
ସାରଗ୍ରାହୀ ମହାସାରଂ ପ୍ରତିଜଗ୍ରାହ ରାଘବଃ । ୧ ।
ସଂନିଗୃହ୍ୟ ମହାବାହୁଃ ପ୍ରବୃଦ୍ଧଂ ରୋଷମାତ୍ମନଃ ।
ଅବଷ୍ଟଭ୍ୟ ଧନୁଶ୍ଚିତ୍ରଂ ରାମୋ ଲକ୍ଷ୍ମଣମବ୍ରବୀତ୍ । ୨ ।
କିଂ କରିଷ୍ୟାବହେ ବତ୍ସ କ୍ୱ ବା ଗଚ୍ଛାବ ଲକ୍ଷ୍ମଣ ।
କେନୋପାୟେନ ପଶ୍ୟାବ ସୀତାମିତି ବିଚିନ୍ତୟ । ୩ ।
ତଂ ତଥା ପରିତାପାର୍ତ୍ତଂ ଲକ୍ଷ୍ମଣୋ ରାମମବ୍ରବୀତ୍ ।
ଇଦମେବ ଜନସ୍ଥାନଂ ତ୍ୱମନ୍ୱେଷିତୁମର୍ହସି । ୪ ।
ରାକ୍ଷସୈର୍ବହୁଭିଃ କୀର୍ଣ୍ଣଂ ନାନାଦ୍ରୁମଲତାୟୁତମ୍ ।
ସନ୍ତୀହ ଗିରିଦୁର୍ଗାଣି ନିର୍ଦରାଃ କନ୍ଦରାଣି ଚ । ୫ ।
ଗୁହାଶ୍ଚ ବିବିଧା ଘୋରା ନାନାମୃଗଗଣାକୁଲାଃ ।
ଆବାସାଃ କିନ୍ନରାଣାଂ ଚ ଗନ୍ଧର୍ବଭବନାନି ଚ । ୬ ।

---

## ୬୭ତମ ସର୍ଗ

( ଗୃଧ୍ରରାଜଦର୍ଶନ )

ଲକ୍ଷ୍ମଣ ଏହିପରି ସାରଗର୍ଭକ ସୁନ୍ଦର କଥା କହିବାମାତ୍ରେ ଜ୍ୟେଷ୍ଠଭ୍ରାତା ସାରଗ୍ରାହୀ ରାମ ତାହା ଗ୍ରହଣକଲେ ।୧। ଅନନ୍ତର ମହାବାହୁ ରାମ ନିଜର ଉଦ୍‌ବୁଦ୍ଧ କ୍ରୋଧକୁ ନିରୋଧକରି ବିଚିତ୍ର ଧନୁ ଉପରେ ଭରଦେଇ ଠିଆହୋଇ ଲକ୍ଷ୍ମଣଙ୍କୁ କହିଲେ । ୨ । "ବତ୍ସ ଲକ୍ଷ୍ମଣ ! ଆମ୍ଭେ ଏବେ କ'ଣ କରିବା, କେଉଁଠାକୁ ଯିବା, କି ଉପାୟରେ ବା ସୀତାଙ୍କୁ ଦେଖି ପାରିବା, ଏ କଥା ଭଲକରି ଚିନ୍ତାକର" । ୩ । ଲକ୍ଷ୍ମଣ ତାଙ୍କୁ ଶୋକସନ୍ତପ୍ତ ରାମଙ୍କୁ କହିଲେ, "ଏହି ଜନସ୍ଥାନରେହିଁ ଅନ୍ୱେଷଣ କରିବା ତୁମ୍ଭର କର୍ତ୍ତବ୍ୟ । ୪ । ଏ ସ୍ଥାନ ବହୁସଂଖ୍ୟକ ରାକ୍ଷସଙ୍କଦ୍ୱାରା ସମାକୀର୍ଣ୍ଣ ଏବଂ ବିବିଧ ବୃକ୍ଷ-ଲତାରେ ସମାବୃତ । ଏଠାରେ ଅନେକ ଦୁର୍ଗମ ପର୍ବତ, କନ୍ଦର ଏବଂ ଶିଳାବିବର, ନାନା ପଶୁପୂର୍ଣ୍ଣ ଭୟଙ୍କର ଗୁହାମାନ ଅଛି । ସେସବୁ କିନ୍ନର ଓ ଗନ୍ଧର୍ବ-ମାନଙ୍କର ଆବାସଭୂମି ଅଟେ । ୫-୬ । ତୁମେ ମୋସହିତ ସତର୍କଭାବରେ ଏ ସମସ୍ତ

ତାନ ଯୁକ୍ତୋ ମୟା ସାର୍ଧଂ ସମନ୍ୱେଷିତୁମର୍ହସି ।
ତ୍ୱଦ୍‌ବିଧା ବୁଦ୍ଧିସଂପନ୍ନା ମହାତ୍ମାନୋ ନରର୍ଷଭାଃ । ୭ ।
ଆପତ୍ସୁ ନ ପ୍ରକମ୍ପନ୍ତେ ବାୟୁବେଗୈରିବାଚଲାଃ ।
ଇତ୍ୟୁକ୍ତସ୍ତଦ୍‌ବନଂ ସର୍ବଂ ବିଚଚାର ସଲକ୍ଷ୍ମଣଃ । ୮ ।
କ୍ରୁଦ୍ଧୋ ରାମଃ ଶରଂ ଘୋରଂ ସଂଧାୟ ଧନୁଷି କ୍ଷୁରମ୍ ।
ତତଃ ପର୍ବତକୂଟାଭଂ ମହାଭାଗଂ ଦ୍ୱିଜୋତ୍ତମମ୍ । ୯ ।
ଦଦର୍ଶ ପତିତଂ ଭୂମୌ କ୍ଷତଜାର୍ଦ୍ରଂ ଜଟାୟୁଷମ୍ ।
ତଂ ଦୃଷ୍ଟ୍ୱା ଗିରିଶୃଙ୍ଗାଭଂ ରାମୋ ଲକ୍ଷ୍ମଣମବ୍ରବୀତ୍ । ୧୦ ।
ଅନେନ ସୀତା ବୈଦେହୀ ଭକ୍ଷିତା ନାତ୍ର ସଂଶୟଃ ।
ଗୃଧ୍ରରୂପମିଦଂ ବ୍ୟକ୍ତଂ ରକ୍ଷୋ ଭ୍ରମତି କାନନମ୍ । ୧୧ ।
ଭକ୍ଷୟିତ୍ୱା ବିଶାଲାକ୍ଷୀମାସ୍ତେ ସୀତାଂ ଯଥାସୁଖମ୍ ।
ଏନଂ ବଧିଷ୍ୟେ ଦୀପ୍ତାଗ୍ରୈର୍ଘୋରୈର୍ବାଣୈରଜିହ୍ମଗୈଃ । ୧୨ ।
ଇତ୍ୟୁକ୍ତ୍ୱାଭ୍ୟପତତ୍ ଗୃଧ୍ରଂ ସଂଧାୟ ଧନୁଷି କ୍ଷୁରମ୍ ।
କ୍ରୁଦ୍ଧୋ ରାମଃ ସମୁଦ୍ରାନ୍ତାଂ ଚାଳୟନ୍ନିବ ମେଦିନୀମ୍ । ୧୩ ।
ତଂ ଦୀନଂ ଦୀନୟା ବାଚା ସଫେନଂ ରୁଧିରଂ ବମନ୍ ।
ଅଭ୍ୟଭାଷତ ପକ୍ଷୀ ତୁ ରାମଂ ଦଶରଥାତ୍ମଜମ୍ । ୧୪ ।

---

ଭଲଭାବରେ ଅନ୍ୱେଷଣ କରିବା ଉଚିତ । ତୁମସଦୃଶ ବୁଦ୍ଧିସମ୍ପନ୍ନ ନରଶ୍ରେଷ୍ଠ ମହାତ୍ମାମାନେ ବିପତ୍ତିକାଳରେ, ବାୟୁବେଗରେ ପର୍ବତସଦୃଶ କଦାପି ବିଚଳିତ ହୁଅନ୍ତି ନାହିଁ ।” ଲକ୍ଷ୍ମଣ ଏପରି କହିବାରୁ ରାମ କ୍ରୁଦ୍ଧହୋଇ ଧନୁରେ କ୍ଷୁରାସ୍ତ୍ର ସଂଯୋଗ କରି ତାଙ୍କ ସହିତ ସମସ୍ତ ବନ ବିଚରଣ କରିବାକୁ ଲାଗିଲେ । ଅନନ୍ତର ସେ ପର୍ବତ-ଶୃଙ୍ଗସଦୃଶ ମହାଭାଗ ପକ୍ଷିଶ୍ରେଷ୍ଠ ଜଟାୟୁଙ୍କୁ ଶୋଣିତସିକ୍ତ ହୋଇ ଭୂତଳରେ ପଡ଼ିଥିବାର ଦେଖିଲେ । ରାମ ସେହି ପର୍ବତଶୃଙ୍ଗସଦୃଶ ଜଟାୟୁଙ୍କୁ ଦେଖି ଲକ୍ଷ୍ମଣଙ୍କୁ କହିଲେ । ୭-୧୦ । “ସ୍ପଷ୍ଟ ଜଣାଯାଉଛି, ଏ ଗୋଟିଏ ରାକ୍ଷସ, ଗୃଧ୍ରରୂପ ଧାରଣକରି ଏ ବନରେ ବୁଲୁଛି । ବିଦେହନନ୍ଦିନୀ ସୀତାଙ୍କୁ ଏହି ପକ୍ଷିରାଜହିଁ ଖାଇଯାଇଛି, ଏଥିରେ ସନ୍ଦେହ ନାହିଁ । ୧୧ । ଏହି ରାକ୍ଷସ ବିଶାଳାକ୍ଷୀ ସୀତାଙ୍କୁ ଭକ୍ଷଣକରି ମନସୁଖରେ ବିଶ୍ରାମକରୁଛି । ଅତଏବ ମୁଁ ଏହାକୁ ଅକୁଟିଳଗାମୀ, ଦୀପ୍ତମୁଖ, ଭୟଙ୍କର ଶରସମୂହଦ୍ୱାରା ବଧକରିବି” । ୧୨। ରାମ ଏହା କହି କ୍ରୋଧାବିଷ୍ଟ ହୋଇ ସାଗରାନ୍ତା ମେଦିନୀକୁ ପ୍ରକମ୍ପିତକରି ଧନୁରେ କ୍ଷୁରାସ୍ତ୍ର ଯୋଜନାପୂର୍ବକ ସେହି ଗୃଧ୍ର ଆଡ଼କୁ ଧାବିତହେଲେ । ୧୩ । ସେହି ପକ୍ଷୀ ଫେନଯୁକ୍ତ ରକ୍ତ ବାନ୍ତିକରି କରି କାତର ବାକ୍ୟରେ ଦଶରଥନନ୍ଦନ ଦୁଃଖିତ ରାମଙ୍କୁ କହିଲେ ।୧୪। “ହେ ଆୟୁଷ୍ମନ୍ !

ଯାମୋଷଧିମିବାୟୁଷ୍ମନ୍ନନ୍ୱେଷସି ମହାବନେ ।
ସା ଦେବୀ ମମ ଚ ପ୍ରାଣା ରାବଣେନୋଭୟଂ ହୃତମ୍ । ୧୫ ।
ତ୍ୱୟା ବିରହିତା ଦେବୀ ଲକ୍ଷ୍ମଣେନ ଚ ରାଘବ ।
ହ୍ରିୟମାଣା ମୟା ଦୃଷ୍ଟା ରାବଣେନ ବଲୀୟସା । ୧୬ ।
ସୀତାମଭ୍ୟବପନ୍ନୋଽହଂ ରାବଣଶ୍ଚ ରଣେ ମୟା ।
ବିଧ୍ୱଂସିତରଥଚ୍ଛତ୍ରଃ ପାତିତୋ ଧରଣୀତଲେ । ୧୭ ।
ଏତଦସ୍ୟ ଧନୁର୍ଭଗ୍ନମେତେ ଚାସ୍ୟ ଶରାସ୍ତଥା ।
ଅୟମସ୍ୟ ରଣେ ରାମ ଭଗ୍ନଃ ସାଂଗ୍ରାମିକୋ ରଥଃ । ୧୮ ।
ଅୟଂ ତୁ ସାରଥିସ୍ତସ୍ୟ ମତ୍ପକ୍ଷନିହତୋ ଭୁବି ।
ପରିଶ୍ରାନ୍ତସ୍ୟ ମେ ପକ୍ଷୌ ଛିତ୍ତ୍ୱା ଖଡ୍ଗେନ ରାବଣଃ । ୧୯ ।
ସୀତାମାଦାୟ ବୈଦେହୀମୁତ୍ପପାତ ବିହାୟସମ୍ ।
ରକ୍ଷସା ନିହତଂ ପୂର୍ବଂ ନ ମାଂ ହନ୍ତୁଂ ତ୍ୱମର୍ହସି । ୨୦ ।
ରାମସ୍ତସ୍ୟ ତୁ ବିଜ୍ଞାୟ ବାଷ୍ପପୂର୍ଣମୁଖସ୍ତଦା ।
ଦ୍ୱିଗୁଣୀକୃତତାପାର୍ତ୍ତଃ ସୀତାସକ୍ତାଂ ପ୍ରିୟାଂ କଥାମ୍ । ୨୧ ।

---

ତୁମେ ଔଷଧିପରି ଯାହାଙ୍କୁ ଏ ବନରେ ଅନ୍ୱେଷଣ କରୁଅଛ, ସେହି ଦେବୀ ସୀତା ଏବଂ ମୋର ପ୍ରାଣ, ଏ ଉଭୟ ରାବଣକର୍ତ୍ତୃକ ଅପହୃତ ହୋଇଅଛନ୍ତି । ୧୫ । ହେ ରାଘବ ! ବଳବାନ୍ ରାବଣ ତୁମ୍ଭର ଓ ଲକ୍ଷ୍ମଣଙ୍କ ଅନୁପସ୍ଥିତିରେ ଦେବୀ ଜାନକୀଙ୍କୁ ଅପହରଣ କରି ନେଉଥିବାର ମୁଁ ଦେଖିଲି ।୧୬। ମୁଁ ସୀତାଙ୍କ ନିକଟକୁ ଦୌଡ଼ିଗଲି ଏବଂ ଯୁଦ୍ଧରେ ରାବଣର ରଥ ଓ ଛତ୍ର ବିନଷ୍ଟ କରି ତାକୁ ଧରାତଳରେ ପକାଇଦେଲି । ୧୭ । ହେ ରାମ ! ହେଉଛି ତାହାର ଭଗ୍ନ ଧନୁ, ଏହି ଭଗ୍ନ ଶରସମୂହ ଏହି ଭଗ୍ନ ଯୁଦ୍ଧରଥ ପଡ଼ିରହିଛି । ୧୮ । ଏହି ତାର ସାରଥି ମୋର ପକ୍ଷାଘାତରେ ନିହତ ହୋଇ ଭୂମିରେ ପଡ଼ିଛି । ମୁଁ ପରିଶ୍ରାନ୍ତ ହୋଇପଡ଼ିବାରୁ ରାବଣ ଖଡ୍ଗଦ୍ୱାରା ମୋର ପକ୍ଷଚ୍ଛେଦନ କରି ବିଦେହନନ୍ଦିନୀ ସୀତାଙ୍କୁ ଘେନି ଆକାଶକୁ ଉଠି ଚାଲିଗଲା । ମୁଁ ପୂର୍ବରୁ ସେ ରାକ୍ଷସଦ୍ୱାରା ନିହତ ହୋଇଅଛି, ସୁତରାଂ ତୁମେ ମୋତେ ବଧ କରିବା ଉଚିତ ନୁହେଁ" । ୧୯-୨୦ । ରାମ ସେ ଗୃଧ୍ରରାଜଙ୍କୁ ଚିହ୍ନି ଏବଂ ତାଙ୍କଠାରୁ ସୀତାସମ୍ବନ୍ଧୀୟ ପ୍ରିୟକଥା ଶୁଣିଲାପରେ ତାଙ୍କର ସନ୍ତାପ ଦୁଇଗୁଣ ବଢ଼ିଗଲା

ଶ୍ରୁତ୍ୱା ଜଟାୟୁଷୋ ବାକ୍ୟଂ ରାମଃ ସୌମିତ୍ରିଣା ସହ ।
ଗୃଧ୍ରରାଜଂ ପରିଷ୍ୱଜ୍ୟ ପରିତ୍ୟଜ୍ୟ ମହଦ୍ଧନୁଃ ।୨୨।
ନିପପାତାବଶୋ ଭୂମୌ ରୁରୋଦ ସହଲକ୍ଷ୍ମଣଃ ।
ଏକମେକାୟନେ ଦୁର୍ଗେ ନିଃଶ୍ୱସନ୍ତଂ କଥଂଚନ ।୨୩।
ସମୀକ୍ଷ୍ୟ ଦୁଃଖିତତରୋ ରାମଃ ସୌମିତ୍ରିମବ୍ରବୀତ୍ ।
ରାଜ୍ୟାଦ୍‌ଭ୍ରଂଶୋ ବନେ ବାସଃ ସୀତା ନଷ୍ଟା ଦ୍ୱିଜୋ ହତଃ ।୨୪।
ଇଦୃଶୀୟଂ ମମାଲକ୍ଷ୍ମୀର୍ନିର୍ଦହେଦପି ପାବକମ୍ ।
ସଂପୂର୍ଣ୍ଣମପି ଚେଦଦ୍ୟ ପ୍ରତରେୟଂ ମହୋଦଧିମ୍ ।୨୫।
ସୋଽପି ନୂନଂ ମମାଲକ୍ଷ୍ମ୍ୟା ବିଶୁଷ୍ୟେତ୍ ସରିତାଂପତିଃ ।
ନାସ୍ତ୍ୟଭାଗ୍ୟତରୋ ଲୋକେ ମତ୍ତୋଽସ୍ମିନ୍ ସଚରାଚରେ ।୨୬।
ଯେନେୟଂ ମହତୀ ପ୍ରାପ୍ତା ମୟା ବ୍ୟସନବାଗୁରା ।
ଅୟଂ ପିତୃବୟସ୍ୟୋ ମେ ଗୃଧ୍ରରାଜୋ ଜରାନ୍ୱିତଃ ।୨୭।
ଶେତେ ବିନିହତୋ ଭୂମୌ ମମ ଭାଗ୍ୟବିପର୍ଯ୍ୟୟାତ୍ ।
ଇତ୍ୟେବମୁକ୍ତ୍ୱା ବହୁଶୋ ରାଘବଃ ସହଲକ୍ଷ୍ମଣଃ ।୨୮।
ଜଟାୟୁଷଂ ଚ ପସ୍ପର୍ଶ ପିତୃସ୍ନେହଂ ବିଦର୍ଶୟନ୍ ।୨୯।

---

ସେ ଅତିଶୟ କାତର ହୋଇ ବିଶାଳ ଧନୁ ପରିତ୍ୟାଗପୂର୍ବକ ଲକ୍ଷ୍ମଣଙ୍କ ସହିତ ସେହି ଗୃଧ୍ରରାଜଙ୍କୁ ଆଲିଙ୍ଗନକରି ଅବଶହୋଇ ଭୂମିରେ ପଡ଼ିଗଲେ ଏବଂ ଲକ୍ଷ୍ମଣଙ୍କ ସହିତ ରୋଦନ କରିବାକୁ ଲାଗିଲେ । ସେହି ଏକପଥୀ ଦୁର୍ଗମ ସ୍ଥାନରେ ଏକାକୀ ପଡ଼ି ବହୁ କଷ୍ଟରେ ନିଶ୍ୱାସ ପକାଉଥିବା ଗୃଧ୍ରରାଜଙ୍କୁ ଦେଖି ରାମ ଅଧିକତର ଦୁଃଖିତ ହୋଇ ଲକ୍ଷ୍ମଣଙ୍କୁ କହିଲେ, "ମୋର ରାଜ୍ୟ-ଭ୍ରଂଶ ଓ ବନବାସ ସଙ୍ଗକୁ ସୀତା ଅପହୃତ ହେଲେ ଏବଂ ଜଟାୟୁଙ୍କର ମୃତ୍ୟୁ ହେଲା । ୨୧-୨୪ । ମୋର ଏହି ଅଲକ୍ଷ୍ମୀ ଅଗ୍ନିକୁ ମଧ ଦଗ୍ଧ କରିପାରେ । ମୁଁ ଯଦି ଆଜି ଅତଳ ଜଳପୂର୍ଣ୍ଣ ସମୁଦ୍ରରେ ପ୍ରବେଶ କରେଁ, ତେବେ ମୋ ଦୁର୍ଭାଗ୍ୟହେତୁରୁ ସେହି ସରିତ୍‌ପତି ମଧ ଏକାବେଳକେ ଶୁଷ୍କ ହୋଇଯିବେ। ଏ ସଚରାଚର ଜଗତରେ ମୋଠାରୁ ବଳି ଅଧିକ ମନ୍ଦଭାଗ୍ୟ ଲୋକ ଆଉ କେହି ନାହିଁ । ୨୫-୨୬ । କାରଣ ମୁଁ ଏତାଦୃଶ ମହାବିପଦଜାଲରେ ପଡ଼ିଅଛି । ଆଜି ମୋର ଭାଗ୍ୟବିପର୍ଯ୍ୟୟହେତୁରୁ ମୋର ପିତୃସଖା, ବୃଦ୍ଧ ଗୃଧ୍ରରାଜ ନିହତହୋଇ ଧରାତଳରେ ଶୟନକରିଛନ୍ତି ।" ରାଘବ ଏହିପରି ବହୁ ବିଳାପକରି ଲକ୍ଷ୍ମଣଙ୍କ ସହିତ ପିତୃସ୍ନେହ ପ୍ରଦର୍ଶନପୂର୍ବକ ଜଟାୟୁଙ୍କୁ ସ୍ପର୍ଶକଲେ ।୨୭-୨୯।

ନିକୃତ୍ତପକ୍ଷଂ ରୁଧିରାବସିକ୍ତମ୍
ସ ଗୃଧ୍ରରାଜଂ ପରିରଭ୍ୟ ରାମଃ ।
କ୍ୱ ମୈଥିଳୀ ପ୍ରାଣସମା ମମେତି
ବିମୁଚ୍ୟ ବାଚଂ ନିପପାତ ଭୂମୌ । ୩୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ଗୃଧ୍ରରାଜଦର୍ଶନମ୍
ନାମ ସପ୍ତଷଷ୍ଟିତମଃ ସର୍ଗଃ ।

---

ରାମ ସେହି ଛିନ୍ନପକ୍ଷ ରକ୍ତସିକ୍ତକଳେବର ଗୃଧ୍ରରାଜ ଜଟାୟୁଙ୍କୁ ଆଲିଙ୍ଗନ କରି "ମୋର ପ୍ରିୟତମା ମୈଥିଳୀ କୁଆଡ଼େ ଗଲେ" ଏହା କହି ଭୂମିରେ ପଡ଼ିଗଲେ । ୩୦ ।

# ଅଷ୍ଟଷଷ୍ଟିତମଃ ସର୍ଗଃ

## ଜଟାୟୁଃସଂସ୍କାରଃ

ରାମଃ ସଂପ୍ରେକ୍ଷ୍ୟ ତଂ ଗୃଧ୍ରଂ ଭୁବି ରୌଦ୍ରେଣ ପାତିତମ୍ ।
ସୌମିତ୍ରିଂ ମିତ୍ରସଂପନ୍ନମିଦଂ ବଚନମବ୍ରବୀତ୍ । ୧ ।
ମମାୟଂ ନୂନମର୍ଥେଷୁ ଯତମାନୋ ବିହଙ୍ଗମଃ ।
ରାକ୍ଷସେନ ହତଃ ସଂଖ୍ୟେ ପ୍ରାଣାଂସ୍ତ୍ୟଜତି ଦୁସ୍ତ୍ୟଜାନ୍ ।୨।
ଅତିଖିନ୍ନଃ ଶରୀରେଽସ୍ମିନ୍ ପ୍ରାଣୋ ଲକ୍ଷ୍ମଣ ବିଦ୍ୟତେ ।
ତଥା ସ୍ୱରବିହୀନୋଽୟଂ ବିକ୍ଳବଃ ସମୁଦୀକ୍ଷତେ ।୩ ।
ଜଟାୟୋ ଯଦି ଶକ୍ନୋଷି ବାକ୍ୟଂ ବ୍ୟାହରିତୁଂ ପୁନଃ ।
ସୀତାମାଖ୍ୟାହି ଭଦ୍ରଂ ତେ ବଧମାଖ୍ୟାହି ଚାତ୍ମନଃ । ୪ ।
କିଂ ନିମିତ୍ତୋଽହରତ୍ସୀତାଂ ରାବଣସ୍ତସ୍ୟ କିଂ ମୟା ।
ଅପରାଧଂ ତୁ ଯଂ ଦୃଷ୍ଟ୍ୱା ରାବଣେନ ହୃତା ପ୍ରିୟା । ୫ ।
କଥଂ ତଚ୍ଚନ୍ଦ୍ରସଂକାଶଂ ମୁଖମାସୀନ୍ମନୋହରମ୍ ।
ସୀତୟା କାନି ଚୋକ୍ତାନି ତସ୍ମିନ୍କାଲେ ଦ୍ୱିଜୋତ୍ତମ । ୬ ।

---

## ୬୮ତମ ସର୍ଗ

( ଜଟାୟୁର ଶବସଂସ୍କାର )

ଭୟଙ୍କର ରାକ୍ଷସକର୍ତ୍ତୃକ ଭୂତଳରେ ନିପାତିତ ସେହି ଜଟାୟୁଙ୍କୁ ଦେଖି ରାମ ପରମମିତ୍ର ସୌମିତ୍ରିଙ୍କୁ କହିଲେ । ୧ । "ଏହି ପକ୍ଷୀ ମୋ'ରନିମନ୍ତେ ଯତ୍ନକରି ରାକ୍ଷସହସ୍ତରେ ଯୁଦ୍ଧରେ ନିହତ ହୋଇ ଅତ୍ୟାଜ୍ୟ ଜୀବନ ତ୍ୟାଗକରୁଛନ୍ତି । ୨ । ଲକ୍ଷ୍ମଣ ! ଏହାଙ୍କ ଦେହରେ ପ୍ରାଣ ଅତି କ୍ଷୀଣଭାବରେ ରହିଅଛି ଏବଂ ସେ ସ୍ୱରବିହୀନ ହୋଇ ବଡ଼ କ୍ଳାନ୍ତି ଦେଖାଯାଉଛନ୍ତି । ୩ । ହେ ଜଟାୟୋ ! ତୁମେ ଯଦି କଥା କହି ପାରିବ, ତେବେ ତୁମ ବଧବିଷୟ ଓ ସୀତାଙ୍କ ବିଷୟ ପୁଣି ଥରେ କହ । ୪ । ରାବଣ କି ନିମନ୍ତେ ସୀତାଙ୍କୁ ହରଣକଲା ? ? ମୁଁ ତା'ର କି ଅପରାଧ କରିଥିଲି ଯେ ତାହା ଦେଖି ସେ ମୋ ପ୍ରିୟାଙ୍କୁ ଅପହରଣ କଲା । ୫ । ହେ ପକ୍ଷିଶ୍ରେଷ୍ଠ ! ସୀତାଙ୍କର ସେହି ଚନ୍ଦ୍ରସଦୃଶ ମୁଖ କିପରି ସୁନ୍ଦର ଦେଖାଯାଉଥିଲା ଏବଂ ସେତେବେଳେ ସେ କ'ଣ କ'ଣ କହିଥିଲେ ? । ୬ । ତାତ ! ସେ ରାକ୍ଷସ ରାବଣର ବୀର୍ଯ୍ୟ କିପରି, କିପରି

କଥଂ ବୀର୍ଯ୍ୟଃ କଥଂ ରୂପଃ କିଂ କର୍ମା ସ ଚ ରାକ୍ଷସଃ ।
କ୍ୱ ଚାସ୍ୟ ଭବନଂ ତାତ ବ୍ରୂହି ମେ ପରିପୃଚ୍ଛତଃ । ୭ ।
ତମୁଦ୍‌ବୀକ୍ଷ୍ୟ ସ ଧର୍ମାତ୍ମା ବିଲପନ୍ତମନାଥବତ୍ ।
ବାଚା ବିକ୍ଲବୟା ରାମଂ ଜଟାୟୁରିଦମବ୍ରବୀତ୍ । ୮ ।
ହୃତା ସା ରାକ୍ଷସେନ୍ଦ୍ରେଣ ରାବଣେନ ଦୁରାତ୍ମନା ।
ମାୟାମାସ୍ଥାୟ ବିପୁଲାଂ ବାତଦୁର୍ଦ୍ଦିନସଂକୁଳାମ୍ । ୯ ।
ପରିଶ୍ରାନ୍ତସ୍ୟ ମେ ତାତ ପକ୍ଷୌ ଛିତ୍ୱା ସ ରାକ୍ଷସଃ ।
ସୀତାମାଦାୟ ବୈଦେହୀଂ ପ୍ରୟାତୋ ଦକ୍ଷିଣାଂ ଦିଶମ୍ । ୧୦ ।
ଉପରୁଧ୍ୟନ୍ତି ମେ ପ୍ରାଣା ଦୃଷ୍ଟିର୍ଭ୍ରମତି ରାଘବ ।
ପଶ୍ୟାମି ବୃକ୍ଷାନ୍ ସୌବର୍ଣ୍ଣାନୁଶୀରକୃତମୂର୍ଦ୍ଧଜାନ୍ । ୧୧ ।
ଯେନ ଯାତୋ ମୁହୂର୍ତ୍ତେନ ସୀତାମାଦାୟ ରାବଣଃ ।
ବିପ୍ରନଷ୍ଟଂ ଧନଂ କ୍ଷିପ୍ରଂ ତତ୍ସ୍ୱାମୀ ପ୍ରତିପଦ୍ୟତେ । ୧୨ ।
ବିନ୍ଦୋ ନାମ ମୁହୂର୍ତ୍ତୋଽସୌ ସ ଚ କାକୁତ୍‌ସ୍ଥ ନାବୁଧତ୍ ।
ତ୍ୱତ୍ପ୍ରିୟାଂ ଜାନକୀଂ ହୃତ୍ୱା ରାବଣୋ ରାକ୍ଷସେଶ୍ୱରଃ । ୧୩ ।
ଝଷବଦ୍‌ବଡ଼ିଶଂ ଗୃହ୍ୟ କ୍ଷିପ୍ରମେବ ବିନଶ୍ୟତି ।
ନ ଚ ତ୍ୱୟା ବ୍ୟଥା କାର୍ଯ୍ୟା ଜନକସ୍ୟ ସୁତାଂ ପ୍ରତି । ୧୪ ।

---

ରୂପ ଓ କର୍ମ କପରି, ତା'ର ଘର କେଉଁଠାରେ; ମୁଁ ପଚାରୁଛି, ମୋତେ ତାହା ସବୁ କହ" । ୭ । ଧର୍ମାତ୍ମା ଜଟାୟୁ ରାମଙ୍କୁ ଏହିପରି ବିଳାପ କରୁଥିବାର ଦେଖି ଅସମ୍ବଦ୍ଧ ବଚନରେ କହିଲେ । ୮ । "ଦୁରାତ୍ମା ରାକ୍ଷସରାଜ ରାବଣ ପ୍ରବଳ ମାୟାଦ୍ୱାରା ଝଡ଼ବୃଷ୍ଟି ସୃଷ୍ଟିକରି ସୀତାଙ୍କୁ ହରଣକରି ନେଇଅଛି । ୯ । ବତ୍ସ ! ମୁଁ ପରିଶ୍ରାନ୍ତ ହୋଇପଡ଼ିବାରୁ ସେହି ରାକ୍ଷସ ମୋର ପକ୍ଷଦ୍ୱୟ ଛେଦନକରି ବିଦେହନନ୍ଦିନୀ ସୀତାଙ୍କୁ ନେଇ ଦକ୍ଷିଣ ଦିଗକୁ ପ୍ରସ୍ଥାନକଲା । ୧୦ । ରାଘବ ! ମୋର ପ୍ରାଣ ରୁଦ୍ଧ ହୋଇଯାଉଛି ଏବଂ ଚକ୍ଷୁଭ୍ରମ ଜାତହେଲାଣି । ମୁଁ ବୃକ୍ଷମାନଙ୍କୁ ଉଶୀରରୂପ କେଶବିଶିଷ୍ଟ ଏବଂ ସୁବର୍ଣ୍ଣମୟ ଦେଖୁଅଛି । ୧୧ । ରାବଣ ଯେଉଁ ଲଗ୍ନରେ ସୀତାଙ୍କୁ ନେଇଯାଇଛି, ସେ ମୁହୂର୍ତ୍ତରେ ଯେଉଁ ଧନ ନଷ୍ଟହୁଏ ସେ ଧନର ସ୍ୱାମୀ ଅତିଶୀଘ୍ର ସେହି ଧନ ଫେରିପାଏ । ୧୨ । ହେ କାକୁସ୍ଥ ! ସେ ମୁହୂର୍ତ୍ତର ନାମ ବିନ୍ଦ । ସେ ତାହା ଜାଣି ନ ଥିଲା । ଅତଏବ ରାକ୍ଷସରାଜ ରାବଣ ତୁମ୍ଭର ପ୍ରିୟା ଜାନକୀଙ୍କୁ ଅପହରଣକରି, ବନଶି ଯେନ ଗିଳିଥିବା ମତ୍ସ୍ୟସଦୃଶ ଶୀଘ୍ର ବିନଷ୍ଟ ହେବ । ଜନକକନ୍ୟାଙ୍କ ବିଷୟରେ ତୁମ୍ଭର ବ୍ୟଥିତହେବା ଉଚିତ ନୁହେ ।୧୩-୧୪।

ବୈଦେହ୍ୟା ରଂସ୍ୟସେ କ୍ଷିପ୍ରଂ ହତ୍ୱା ତଂ ରାକ୍ଷସଂ ରଣେ ।
ଅସଂମୂଢ଼ସ୍ୟ ଗୃଧ୍ରସ୍ୟ ରାମଂ ପ୍ରତ୍ୟନୁଭାଷତଃ । ୧୫ ।
ଆସ୍ୟାତ୍ ସୁସ୍ରାବ ରୁଧିରଂ ମ୍ରିୟମାଣସ୍ୟ ସାମିଷମ୍ ।
ପୁତ୍ରୋ ବିଶ୍ରବସଃ ସାକ୍ଷାଦ୍ଭ୍ରାତା ବୈଶ୍ରବଣସ୍ୟ ଚ । ୧୬ ।
ଇତ୍ୟୁକ୍ତ୍ୱା ଦୁର୍ଲଭାନ୍ ପ୍ରାଣାନ୍ ମୁମୋଚ ପତଗେଶ୍ୱରଃ ।
ବ୍ରୂହି ବ୍ରୂହୀତି ରାମସ୍ୟ ବ୍ରୁବାଣସ୍ୟ କୃତାଞ୍ଜଲେଃ । ୧୭ ।
ତ୍ୟକ୍ତ୍ୱା ଶରୀରଂ ଗୃଧ୍ରସ୍ୟ ଜଗ୍ମୁଃ ପ୍ରାଣା ବିହାୟସମ୍ ।
ସ ନିକ୍ଷିପ୍ୟ ଶିରୋ ଭୂମୌ ପ୍ରସାର୍ଯ୍ୟ ଚରଣୌ ତଦା । ୧୮ ।
ବିକ୍ଷିପ୍ୟ ଚ ଶରୀରଂ ସ୍ୱଂ ପପାତ ଧରଣୀତଲେ ।
ତଂ ଗୃଧ୍ରଂ ପ୍ରେକ୍ଷ୍ୟ ତାମ୍ରାକ୍ଷଂ ଗତାସୁମଚଲୋପମମ୍ ।୧୯ ।
ରାମଃ ସୁବହୁଭିର୍ଦୁଃଖୈର୍ଦୀନଃ ସୌମିତ୍ରିମବ୍ରବୀତ୍ ।
ବହୂନି ରକ୍ଷସାଂ ବାସେ ବର୍ଷାଣି ବସତା ସୁଖମ୍ । ୨୦ ।
ଅନେନ ଦଣ୍ଡକାରଣ୍ୟେ ବିଶୀର୍ଣମିହ ପକ୍ଷିଣା ।
ଅନେକବାର୍ଷିକୋ ଯସ୍ତୁ ଚିରକାଲସମୁତ୍ଥିତଃ । ୨୧ ।

---

ତୁମେ ଶୀଘ୍ର ଯୁଦ୍ଧରେ ରାକ୍ଷସକୁ ନିହତକରି ବୈଦେହୀଙ୍କ ସହିତ ରମଣ କରିବ ।" ଅନନ୍ତର ରାମଙ୍କ ସହିତ କଥା କହୁଥିବା ସେହି ଅବମୂଢ଼ଚିତ୍ତ ମରଣୋନ୍ମୁଖ ଗୃଧ୍ରରାଜ ଜଟାୟୁଙ୍କର ମୁଖରୁ ମାଂସଯୁକ୍ତ ରକ୍ତ ସ୍ରବିବାକୁ ଲାଗିଲା । ସେତେବେଳେ ସେହି ପକ୍ଷୀରାଜ, "ସେ ବିଶ୍ରବାଙ୍କର ପୁଅ ଏବଂ ସାକ୍ଷାତ୍ କୁବେରଙ୍କ ଭାଇ" ଏତିକିମାତ୍ର କହି ଦୁର୍ଲ୍ଲଭପ୍ରାଣ ପରିତ୍ୟାଗକଲେ । ରାମ କରଯୋଡ଼ି କହୁଥାଆନ୍ତି, "ହଁ କହ, କହ ।"।୧୫-୧୭।ଏହିପରି ଅବସ୍ଥାରେ ଗୃଧ୍ରଙ୍କର ପ୍ରାଣ ତାଙ୍କ ଶରୀର ତ୍ୟାଗକରି ଆକାଶକୁ ଚାଲିଗଲା । ସେ ମୁଣ୍ଡକୁ ଭୂଇଁରେ ଗଡ଼ାଇ, ନିଜର ଗୋଡ଼ଦୁଇଟି ମେଲାଇଦେଇ ଏବଂ ଶରୀରକୁ ଛାଟିଦେଇ ଭୂତଳରେ ପଡ଼ିଗଲେ । ସେହି ରକ୍ତଲୋଚନ ପ୍ରାଣହୀନ ଗୃଧ୍ରଙ୍କୁ ପର୍ବତସଦୃଶ ପଡ଼ିଥିବାର ଦେଖି, ରାମ ବହୁ ଦୁଃଖରେ ଦୀନଭାବାପନ୍ନ ହୋଇ ଲକ୍ଷ୍ମଣଙ୍କୁ କହିଲେ, "ଏହି ପକ୍ଷିରାଜ ରାକ୍ଷସମାନଙ୍କର ଆବାସଭୂମି ଦଣ୍ଡକାରଣ୍ୟରେ ବହୁବର୍ଷକାଳ ସୁଖରେ ବାସକରି ଏବେ ଦେହତ୍ୟାଗ କଲେ । ସେ ଅନେକ ବର୍ଷ ଜୀବିତ ରହି ଚିରକାଳ ସମୃଦ୍ଧି ପ୍ରାପ୍ତ ହୋଇଥିଲେ ।୧୮-୨୧। ଆଜି ସେ ନିହତହୋଇ

ସୋଽୟମଦ୍ୟ ହତଃ ଶେତେ କାଲୋ ହି ଦୁରତିକ୍ରମଃ ।
ପଶ୍ୟ ଲକ୍ଷ୍ମଣ ଗୃଧ୍ରୋଽୟମୁପକାରୀ ହତଶ୍ଚ ମେ । ୨୨ ।
ସୀତାମଭ୍ୟବପନ୍ନୋ ବୈ ରାବଣେନ ବଲୀୟସା ।
ଗୃଧ୍ରରାଜ୍ୟଂ ପରିତ୍ୟଜ୍ୟ ପିତୃପୈତାମହଂ ମହତ୍ । ୨୩ ।
ମମ ହେତୋରୟଂ ପ୍ରାଣାନ୍ ମୁମୋଚ ପତଗେଶ୍ୱରଃ ।
ସର୍ବତ୍ର ଖଲୁ ଦୃଶ୍ୟନ୍ତେ ସାଧବୋ ଧର୍ମଚାରିଣଃ ।୨୪ ।
ଶୂରାଃ ଶରଣ୍ୟାଃ ସୌମିତ୍ରେ ତିର୍ଯ୍ୟଗ୍ ଯୋନିଗତେଷ୍ୱପି ।
ସୀତାହରଣଜଂ ଦୁଃଖଂ ନ ମେ ସୌମ୍ୟ ତଥାଗତମ୍ । ୨୫ ।
ଯଥା ବିନାଶେ ଗୃଧ୍ରସ୍ୟ ମତ୍କୃତେ ଚ ପରଂତପ ।
ରାଜା ଦଶରଥଃ ଶ୍ରୀମାନ୍ ଯଥା ମମ ମହାଯଶାଃ । ୨୬ ।
ପୂଜନୀୟଶ୍ଚ ମାନ୍ୟଶ୍ଚ ତଥାୟଂ ପତଗେଶ୍ୱରଃ ।
ସୌମିତ୍ରେ ହର କାଷ୍ଠାନି ନିର୍ମଥିଷ୍ୟାମି ପାବକମ୍ । ୨୭ ।
ଗୃଧ୍ରରାଜଂ ଦିଧକ୍ଷାମି ମତ୍କୃତେ ନିଧନଂ ଗତମ୍ ।
ନାଥଂ ପତଗଲୋକସ୍ୟ ଚିତାମାରୋପୟାମ୍ୟହମ୍ । ୨୮ ।
ଇମଂ ଧକ୍ଷ୍ୟାମି ସୌମିତ୍ରେ ହତଂ ରୌଦ୍ରେଣ ରକ୍ଷସା ।
ଯା ଗତିର୍ଯଜ୍ଞଶୀଲାନାମାହିତାଗ୍ନେଶ୍ଚ ଯା ଗତିଃ । ୨୯ ।

---

ଶୋଇ ରହିଛନ୍ତି । ବାସ୍ତବିକ କାଳର ଗତି ଅଲଙ୍ଘନୀୟ । ଲକ୍ଷ୍ମଣ ! ମୋର ଏହି ଉପକାରୀ ଗୃଧ୍ର ସୀତାଙ୍କୁ ସାହାଯ୍ୟ କରିବାକୁ ଯାଇ ମହାବଳୀ ରାବଣକର୍ତ୍ତୃକ ନିହତ ହେଲେ ଏବଂ ନିଜର ଗୃଧ୍ରରାଜ୍ୟ ପରିତ୍ୟାଗ କରି ମହତ୍ ପିତୃଲୋକକୁ ଗମନ କଲେ । ୨୨-୨୩ । ଏ ପକ୍ଷିରାଜ ମୋ ଲାଗି ପ୍ରାଣ ତ୍ୟାଗକଲେ । ହେ ସୌମିତ୍ରେ ! ମାନବେତର ପ୍ରାଣୀମାନଙ୍କ ଭିତରେ ମଧ୍ୟ ସାଧୁ, ଧର୍ମାଚାରୀ, ବୀର ଏବଂ ଶରଣଦାତା ପ୍ରାଣୀ ସର୍ବତ୍ର ଦେଖାଯାଇଥାନ୍ତି । ହେ ସୌମ୍ୟ, ଶତ୍ରୁସୂଦନ ! ମୋ ଲାଗି ଯେ ଏ ଗୃଧ୍ରଙ୍କର ବିନାଶ ହେଲା, ତାହା ମୋତେ ଯେପରି ବାଧୁଛି, ସୀତାଙ୍କ ହରଣଜନିତ ଦୁଃଖ ସେପରି ବାଧୁ ନାହିଁ । ମହାଯଶା ଶ୍ରୀମାନ୍ ଦଶରଥ ମୋର ଯେପରି ମାନନୀୟ ଏବଂ ପୂଜନୀୟ, ଏ ପକ୍ଷିରାଜ ମଧ୍ୟ ସେହିପରି । ସୌମିତ୍ରେ ! ତୁମେ କାଷ୍ଠ ଆହରଣ କର । ମୁଁ ସେ କାଷ୍ଠ ଘର୍ଷଣକରି ଅଗ୍ନି ଉତ୍ପାଦନ କରିବି ।୨୪-୨୭। ମୋ ନିମନ୍ତେ ପ୍ରାଣ ହରାଇଥିବା ଏହି ଗୃଧ୍ରରାଜଙ୍କୁ ମୁଁ ଦହନ କରିବାକୁ ଇଚ୍ଛାକରେଁ । ଏହି ପକ୍ଷିକୁଳର ସ୍ୱାମୀଙ୍କୁ ମୁଁ ଚିତାରେ ଆରୋପଣ କରୁଛି । ୨୮ । ରୁଦ୍ରକର୍ମା ରାକ୍ଷସଦ୍ୱାରା ନିହତ ହୋଇଥିବା ଏହାଙ୍କୁ ମୁଁ ଦହନକରିବି । ଯଜ୍ଞଶୀଳ ଓ ଆହିତାଗ୍ନିମାନଙ୍କର ଯେଉଁ ଗତି, ଯୁଦ୍ଧରେ ଅପରାଙ୍ମୁଖ ବ୍ୟକ୍ତିଙ୍କର ଯେଉଁ ଗତି,

ଅପରାବର୍ତ୍ତିନାଂ ଯା ଚ ଯା ଚ ଭୂମିପ୍ରଦାୟିନାମ୍ ।
ମୟା ତ୍ୱଂ ସମନୁଜ୍ଞାତୋ ଗଚ୍ଛ ଲୋକାନନୁତ୍ତମାନ୍ । ୩୦ ।
ଗୃଧ୍ରରାଜ ମହାସତ୍ତ୍ୱ ସଂସ୍କୃତଶ୍ଚ ମୟା ବ୍ରଜ ।
ଏବମୁକ୍ତ୍ୱା ଚିତାଂ ଦୀପ୍ତାମାରୋପ୍ୟ ପତଗେଶ୍ୱରମ୍ ।୩୧।
ଦଦାହ ରାମୋ ଧର୍ମାତ୍ମା ସ୍ୱବନ୍ଧୁମିବ ଦୁଃଖିତଃ ।
ରାମୋଽଥ ସହସୌମିତ୍ରିର୍ବନଂ ଗତ୍ୱା ସ ବୀର୍ଯ୍ୟବାନ୍ । ୩୨ ।
ସ୍ଥୂଲାନ୍ ହତ୍ୱା ମହାରୋହୀନନୁତସ୍ତାର ତଂ ଦ୍ୱିଜମ୍ ।
ରୋହିମାଂସାନି ଚୋତ୍କୃତ୍ୟ ପେଶୀକୃତ୍ୟ ମହାଯଶାଃ । ୩୩ ।
ଶକୁନାୟ ଦଦୌ ରାମୋ ରମ୍ୟେ ହରିତଶାଦ୍ୱଲେ ।
ଯତ୍ତତ୍ ପ୍ରେତସ୍ୟ ମର୍ତ୍ତ୍ୟସ୍ୟ କଥୟନ୍ତି ଦ୍ୱିଜାତୟଃ ।୩୪ ।
ତତ୍ ସ୍ୱର୍ଗଗମନଂ ତସ୍ୟ ପିତ୍ର୍ୟଂ ରାମୋ ଜଜାପ ହ ।
ତତୋ ଗୋଦାବରୀଂ ଗତ୍ୱା ନଦୀଂ ନରବରାତ୍ମଜୌ । ୩୫ ।
ଉଦକଂ ଚକ୍ରତୁସ୍ତସ୍ମୈ ଗୃଧ୍ରରାଜାୟ ତାବୁଭୌ ।
ଶାସ୍ତ୍ରଦୃଷ୍ଟେନ ବିଧିନା ଜଲଂ ଗୃଧ୍ରାୟ ରାଘବୌ । ୩୬ ।
ସ୍ନାତ୍ୱା ତୌ ଗୃଧ୍ରରାଜାୟ ଉଦକଂ ଚକ୍ରତୁସ୍ତଦା । ୩୭ ।
ସ ଗୃଧ୍ରରାଜଃ କୃତବାନ୍ ଯଶସ୍କରମ୍
ସୁଦୁଷ୍କରଂ କର୍ମ ରଣେ ନିପାତିତଃ ।

---

ଏବଂ ଭୂମିଦାନକାରୀ ବ୍ୟକ୍ତିମାନଙ୍କର ଯେଉଁ ଗତି ହୁଏ, ହେ ମହାବଳ ଗୃଧ୍ରରାଜ ! ତୁମେ ମୋକର୍ତ୍ତୃକ ସଂସ୍କୃତ ଏବଂ ଆଦିଷ୍ଟ ହୋଇ ସେହିସବୁ ଶ୍ରେଷ୍ଠ ଲୋକକୁ ଯାଅ ।” ଧର୍ମାତ୍ମା ରାମ ଏହା କହି ପ୍ରଦୀପ୍ତ ଚିତାଗ୍ନି ଉପରେ ସେହି ପକ୍ଷିରାଜଙ୍କୁ ଥୋଇ ନିଜ ବନ୍ଧୁପରି ଦୁଃଖିତ ହୋଇ ତାଙ୍କୁ ଦହନକଲେ । ଅନନ୍ତର ବୀର୍ଯ୍ୟବାନ୍ ରାମ ଲକ୍ଷ୍ମଣଙ୍କ ସହିତ ବନକୁ ଯାଇ ସ୍ଥୂଳକାୟ ରୋହିଜାତୀୟ ମୃଗମାନଙ୍କୁ ମାରି ସେହି ପକ୍ଷୀଙ୍କ ଉଦ୍ଦେଶ୍ୟରେ ଆଣି ଥୋଇଲେ । ମହାଯଶା ରାମ ସେହି ମୃଗମାଂସକୁ ଖଣ୍ଡ ଖଣ୍ଡ କରି ଏବଂ ପିଣ୍ଡ ତିଆରି କରି ରମଣୀୟ ହରିଦ୍‌ବର୍ଣ୍ଣ ତୃଣ ଉପରେ ସେହି ପକ୍ଷୀଙ୍କ ଉଦ୍ଦେଶ୍ୟରେ ପ୍ରଦାନ କଲେ । ବ୍ରାହ୍ମଣମାନେ ପ୍ରେତର ସ୍ୱର୍ଗଗତି ଉଦ୍ଦେଶ୍ୟରେ ଯେଉଁ ମନ୍ତ୍ରମାନ ଜପକରନ୍ତି, ରାମ ସେହି ସମସ୍ତ ପିତୃମନ୍ତ୍ର ଜପକଲେ । ଅନନ୍ତର ସେ ଦୁଇ ରାଜକୁମାର ଗୋଦାବରୀ ନଦୀକୁ ଯାଇ ଗୃଧ୍ରରାଜଙ୍କ ଉଦ୍ଦେଶ୍ୟରେ ଜଳଦାନ କଲେ । ରଘୁନନ୍ଦନ ଦୁହେଁ ସ୍ନାନକରି ଶାସ୍ତ୍ରୋକ୍ତ ବିଧାନଅନୁସାରେ ଗୃଧ୍ରରାଜଙ୍କ ଉଦ୍ଦେଶ୍ୟରେ ସେତେବେଳେ ଜଳଦାନ

ମହର୍ଷିକଲ୍ପେନ ଚ ସଂସ୍କୃତସ୍ତଦା
ଜଗାମ ପୁଣ୍ୟାଂ ଗତିମାତ୍ମନଃ ଶୁଭାମ୍ । ୩୮ ।
କୃତୋଦକୌ ତାବପି ପକ୍ଷିସତ୍ତମେ
ସ୍ଥିରାଂ ଚ ବୁଦ୍ଧିଂ ପ୍ରଣିଧାୟ ଜଗ୍ମତୁଃ ।
ପ୍ରବେଶ୍ୟ ସୀତାଧିଗମେ ତତୋ ମନୋ
ବନଂ ସୁରେନ୍ଦ୍ରାବିବ ବିଷ୍ଣୁବାସବୌ । ୩୯।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ଜଟାୟୁସଂସ୍କାରୋ
ନାମ ଅଷ୍ଟଷଷ୍ଟିତମଃ ସର୍ଗଃ

---

କଲେ । ୨୯-୩୭ । ଗୃଧ୍ରରାଜ ଜଟାୟୁ ଦୁଷ୍କର କାର୍ଯ୍ୟ ଅନୁଷ୍ଠାନକରି ଯୁଦ୍ଧରେ ନିପାତିତ ଏବଂ ମହର୍ଷିସଦୃଶ ରାମଙ୍କକର୍ତ୍ତୃକ ସଂସ୍କୃତ ହୋଇ ଅତି ଉତ୍ତମ ପୁଣ୍ୟଗତି ଲାଭକଲେ । ୩୮ । ରାମ ଲକ୍ଷ୍ମଣ ଦୁହେଁ ଉଦକକ୍ରିୟା ସମାପନକରି ପକ୍ଷିଶ୍ରେଷ୍ଠ ଜଟାୟୁଙ୍କ ପ୍ରତି ସ୍ଥିରବୁଦ୍ଧି ସ୍ଥାପନପୂର୍ବକ ସେଠାରୁ ପ୍ରସ୍ଥାନକଲେ ଏବଂ ସୀତାଙ୍କ ଅନ୍ୱେଷଣରେ ମନୋନିବେଶକରି ସୁରଶ୍ରେଷ୍ଠ ବିଷ୍ଣୁ ଓ ଇନ୍ଦ୍ରଙ୍କପରି ଅରଣ୍ୟ ମଧ୍ୟରେ ପ୍ରବେଶକଲେ । ୩୯ ।

# ଏକୋନସପ୍ତତିତମଃ ସର୍ଗଃ

## କବନ୍ଧଗ୍ରାହଃ

କୃତ୍ୱୈବମୁଦକଂ ତସ୍ମୈ ପ୍ରସ୍ଥିତୌ ରାମଲକ୍ଷ୍ମଣୌ ।
ଅବେକ୍ଷନ୍ତୌ ବନେ ସୀତାଂ ପଶ୍ଚିମାଂ ଜଗ୍ମତୁର୍ଦିଶମ୍ । ୧ ।
ତୌ ଦିଶଂ ଦକ୍ଷିଣାଂ ଗତ୍ୱା ଶରଚାପାସିଧାରିଣୌ ।
ଅବିପ୍ରହତମୈକ୍ଷ୍ୱାକୌ ପନ୍ଥାନଂ ପ୍ରତିଜଗ୍ମତୁଃ । ୨ ।
ଗୁଲ୍ମୈର୍ବୃକ୍ଷୈଶ୍ଚ ବହୁଭିର୍ଲତାଭିଶ୍ଚ ପ୍ରବେଷ୍ଟିତମ୍ ।
ଆବୃତଂ ସର୍ବତୋ ଦୁର୍ଗଂ ଗହନଂ ଘୋରଦର୍ଶନମ୍ । ୩ ।
ବ୍ୟତିକ୍ରମ୍ୟ ତୁ ବେଗେନ ଗୃହୀତ୍ୱା ଦକ୍ଷିଣାଂ ଦିଶମ୍ ।
ସୁଭୀମଂ ତନ୍ମହାରଣ୍ୟଂ ବ୍ୟତିଯାତୌ ମହାବଲୌ । ୪ ।
ତତଃ ପରଂ ଜନସ୍ଥାନାତ୍ ତ୍ରିକ୍ରୋଶଂ ଗମ୍ୟ ରାଘବୌ ।
କ୍ରୌଞ୍ଚାରଣ୍ୟଂ ବିବିଶତୁର୍ଗହନଂ ତୌ ମହୌଜସୌ । ୫ ।
ନାନାମେଘଘନପ୍ରଖ୍ୟଂ ପ୍ରହୃଷ୍ଟମିବ ସର୍ବତଃ ।
ନାନାବର୍ଣୈଃ ଶୁଭୈଃ ପୁଷ୍ପୈଃ ମୃଗପକ୍ଷିଗଣୈର୍ୟୁତମ୍ । ୬ ।

---

## ୬୯ତମ ସର୍ଗ

( କବନ୍ଧକବଳରେ ରାମ ଲକ୍ଷ୍ମଣ )

ଏହିପରି ଜଟାୟୁଙ୍କ ଉଦ୍ଦେଶ୍ୟରେ ଉଦକକ୍ରିୟା ସମାପନକରି ରାମ ଲକ୍ଷ୍ମଣ ଦୁହେଁ ସେଠାରୁ ପ୍ରସ୍ଥାନକଲେ ଏବଂ ବନରେ ସୀତାଙ୍କୁ ଅନ୍ୱେଷଣ କରି କରି ପଶ୍ଚିମ ଦିଗକୁ ଗଲେ । ୧ । ଅନନ୍ତର ଦୁଇ ଇକ୍ଷ୍ୱାକୁନନ୍ଦନ ଧନୁ, ଶର ଏବଂ ଖଡ୍ଗ ଧାରଣକରି ନିର୍ବିଘ୍ନରେ ଅରଣ୍ୟପଥରେ ଉପନୀତ ହେଲେ । ସେହି ପଥ ଗୁଳ୍ମ, ବୃକ୍ଷ ଓ ଲତାରାଜିଦ୍ୱାରା ସମାକୀର୍ଣ୍ଣ, ଅଗମ୍ୟ ଏବଂ ଦେଖିବାକୁ ଭୟଙ୍କର । ୨-୩ । ଅନନ୍ତର ସେହି ଦୁଇ ମହାବଳୀ ଦକ୍ଷିଣ ଦିଗ ଧରି ସବେଗରେ ସେହି ଭୀଷଣ ପଥ ଅତିକ୍ରମ କରିଗଲେ । ୪ । ସେହି ମହାବଳୀ ରଘୁନନ୍ଦନ ଦୁହେଁ ଜନସ୍ଥାନଠାରୁ ତିନି କ୍ରୋଶ ଯାଇ କ୍ରୌଞ୍ଚାରଣ୍ୟ ନାମକ ନିବିଡ଼ ଅରଣ୍ୟରେ ପ୍ରବେଶ କଲେ । ୫ । ସେହି ବନ ଦେଖିବାକୁ ରାଶୀକୃତ ମେଘସଦୃଶ, ସର୍ବତୋଭାବରେ ପ୍ରଫୁଲ୍ଲିତ ଏବଂ

ଵୀକ୍ଷମାଣୌ ବୈଦେହୀଂ ତଦ୍ଵନଂ ତୌ ଵିଚକ୍ରତୁଃ ।
ତତ୍ର ତତ୍ରାଵତିଷ୍ଠନ୍ତୌ ସୀତାହରଣକର୍ଶିତୌ । ୭ ।
ତତଃ ପୂର୍ବେଣ ତୌ ଗତ୍ୱା ତ୍ରିକ୍ରୋଶଂ ଭ୍ରାତରୌ ତଦା ।
କ୍ରୌଞ୍ଚାରଣ୍ୟମତିକ୍ରମ୍ୟ ମତଙ୍ଗାଶ୍ରମମନ୍ତରେ । ୮ ।
ଦୃଷ୍ଟ୍ୱା ତୁ ତଦ୍ଵନଂ ଘୋରଂ ବହୁଭୀମମୃଗଦ୍ୱିଜମ୍ ।
ନାନାସତ୍ତ୍ୱସମାକୀର୍ଣଂ ସର୍ବଂ ଗହନପାଦପମ୍ । ୯ ।
ଦଦୃଶାତେ ଗିରୌ ତତ୍ର ଦରୀଂ ଦଶରଥାତ୍ମଜୌ ।
ପାତାଳସମଗମ୍ଭୀରାଂ ତମସା ନିତ୍ୟସଂଵୃତାମ୍ । ୧୦ ।
ଆସାଦ୍ୟ ତୌ ନରଵ୍ୟାଘ୍ରୌ ଦର୍ୟାସ୍ତସ୍ୟାଵିଦୂରତଃ ।
ଦଦୃଶାତେ ମହାରୂପାଂ ରାକ୍ଷସୀଂ ଵିକୃତାନନାମ୍ । ୧୧ ।
ଭୟଦାମଲ୍ପସତ୍ତ୍ୱାନାଂ ବୀଭତ୍ସାଂ ରୌଦ୍ରଦର୍ଶନାମ୍ ।
ଲମ୍ବୋଦରୀଂ ତୀକ୍ଷ୍ଣଦଂଷ୍ଟ୍ରାଂ କରାଲାଂ ପରୁଷତ୍ୱଚମ୍ । ୧୨ ।
ଭକ୍ଷୟନ୍ତୀଂ ମୃଗାନ୍ ଭୀମାନ୍ ଵିକଟାଂ ମୁକ୍ତମୂର୍ଧଜାମ୍ ।
ପ୍ରୈକ୍ଷେତାଂ ତୌ ତତସ୍ତତ୍ର ଭ୍ରାତରୌ ରାମଲକ୍ଷ୍ମଣୌ । ୧୩ ।

---

ନାନା ବର୍ଣ୍ଣର ସୁନ୍ଦର ପୁଷ୍ପ, ମୃଗ ଓ ପକ୍ଷୀମାନଙ୍କଦ୍ୱାରା ପରିପୂର୍ଣ୍ଣ । ୬ । ସେମାନେ ସୀତାହରଣହେତୁ ଦୁଃଖିତ ହୋଇ ତାଙ୍କୁ ଦେଖିବା ଉଦ୍ଦେଶ୍ୟରେ ସେହି ବନ ଅନ୍ୱେଷଣ କରି କରି ସ୍ଥାନେ ସ୍ଥାନେ ଅବସ୍ଥାନ କରୁଥିଲେ । ୭ । ଅନନ୍ତର ସେ ଦୁଇ ଭାଇ ପୂର୍ବ ଦିଗରେ ତିନ କୋଶ ଯାଇ କ୍ରୌଞ୍ଚାରଣ୍ୟ ଅତିକ୍ରମପୂର୍ବକ ପଥମଧ୍ୟରେ ମତଙ୍ଗାଶ୍ରମରେ ପହଞ୍ଚିଲେ । ୮ । ସେହି ଆଶ୍ରମର ବନ ଅତିଶୟ ଭୀଷଣ, ବହୁ ଭୀଷଣକାୟ ମୃଗ ଓ ପକ୍ଷିସମୂହରେ ପୂର୍ଣ୍ଣ. ଅନେକ ପ୍ରକାର ନିବିଡ଼ ବୃକ୍ଷରେ ଆଚ୍ଛନ୍ନ ଏବଂ ସର୍ବତ୍ର ବହୁପ୍ରାଣିସମାକୀର୍ଣ୍ଣ ।୯। ଦଶରଥନନ୍ଦନ ଦୁହେଁ ସେଠାରେ ପର୍ବତ ଦେହରେ ପାତାଳ ସଦୃଶ ଗମ୍ଭୀର ଏବଂ ସର୍ବଦା ଅନ୍ଧକାରବୃତ ଗୋଟିଏ ଗିରିଗହ୍ୱର ଦେଖିଲେ । ୧୦ । ସେ ଦୁଇ ନରଶ୍ରେଷ୍ଠ ସେଠାରେ ପହଞ୍ଚି ସେହି ଗିରି-ଗହ୍ୱରର ଅଲ୍ପଦୂରରେ ଗୋଟିଏ ଭୀଷଣାକୃତି ବିକୃତବଦନା ରାକ୍ଷସୀ ଦେଖିଲେ । । ୧୧ । ସେ ରାକ୍ଷସୀ ଦେଖିବାକୁ ନିତାନ୍ତ ବୀଭତ୍ସ ଏବଂ ଭୟଙ୍କର । ତାହାକୁ ଦେଖିଲେ ମନ ଖୁବ୍ ଦମ୍ଭ ନ ଥିବା ପ୍ରାଣୀମାନଙ୍କର ଭୟ ଜାତହୁଏ । ତାହାର ଉଦର ଖୁବ୍ ଲମ୍ବ, ଦନ୍ତ ତୀକ୍ଷ୍ଣ, ଚର୍ମ ଅତି କର୍କଶ ଏବଂ ସ୍ୱଭାବ ଅତି ଭୟଙ୍କର । ୧୨ । ସେହି ରାକ୍ଷସୀ ବାଳ ମୁକୁଳାକରି ଭୟଙ୍କର ମୃଗମାନଙ୍କୁ ସେଠାରେ ଭକ୍ଷଣ କରୁଥିବାର ରାମ ଲକ୍ଷ୍ମଣ ଦୁଇ ଭାଇ ଦେଖିଲେ । ୧୩ ।

ସା ସମାସାଦ୍ୟ ତୌ ବୀରୌ ବ୍ରଜନ୍ତଂ ଭ୍ରାତୁରଗ୍ରତଃ ।
ଏହି ରଂସ୍ୟାବହେତ୍ୟୁକ୍ତ୍ୱା ସମାଲମ୍ବତ ଲକ୍ଷ୍ମଣମ୍ ।୧୪।
ଉବାଚ ଚୈନଂ ବଚନଂ ସୌମିତ୍ରିମୁପଗୃହ୍ୟ ସା ।
ଅହଂ ତ୍ୱୟୋମୁଖୀ ନାମ ଲାଭସ୍ତେ ତ୍ୱମସି ପ୍ରିୟଃ ।୧୫।
ନାଥ ପର୍ବତକୂଟେଷୁ ନଦୀନାଂ ପୁଳିନେଷୁ ଚ ।
ଆୟୁଃଶେଷମିମଂ ବୀର ତ୍ୱଂ ମୟା ସହ ରଂସ୍ୟସେ ।୧୬।
ଏବମୁକ୍ତସ୍ତୁ କୁପିତଃ ଖଡ୍ଗମୁଦ୍ଧୃତ୍ୟ ଲକ୍ଷ୍ମଣଃ ।
କର୍ଣ୍ଣନାସସ୍ତନଂ ତସ୍ୟା ନିଚକର୍ତ୍ତାରିସୂଦନଃ ।୧୭।
କର୍ଣ୍ଣନାସେ ନିକୃତ୍ତେ ତୁ ବିସ୍ୱରଂ ସା ବିନଦ୍ୟ ଚ ।
ଯଥାଗତଂ ପ୍ରଦୁଦ୍ରାବ ରାକ୍ଷସୀ ଭୀମଦର୍ଶନା ।୧୮।
ତସ୍ୟାଂ ଗତାୟାଂ ଗହନଂ ବିଶନ୍ତୌ ବନମୋଜସା ।
ଆସେଦତୁରମିତ୍ରଘ୍ନୌ ଭ୍ରାତରୌ ରାମଲକ୍ଷ୍ମଣୌ ।୧୯।
ଲକ୍ଷ୍ମଣସ୍ତୁ ମହାତେଜାଃ ସତ୍ତ୍ୱବାନ୍ ଶୀଲବାନ୍ ଶୁଚିଃ ।
ଅବ୍ରବୀତ୍ ପ୍ରାଞ୍ଜଳିର୍ବାକ୍ୟଂ ଭ୍ରାତରଂ ଦୀପ୍ତତେଜସମ୍ ।୨୦।
ସ୍ପନ୍ଦତେ ମେ ଦୃଢ଼ଂ ବାହୁରୁଦ୍ୱିଗ୍ନମିବ ମେ ମନଃ ।
ପ୍ରାୟଶଶ୍ଚାପ୍ୟନିଷ୍ଟାନି ନିମିତ୍ତାନ୍ୟୁପଲକ୍ଷୟେ ।୨୧।

---

ସେରାକ୍ଷସୀ ସେହି ଦୁଇ ବୀରଙ୍କ ନିକଟରେ ପହଞ୍ଚି ଭାଇଙ୍କ ଆଗେ ଆଗେ ଚାଲୁଥିବା ଲକ୍ଷ୍ମଣଙ୍କୁ ଆଲିଙ୍ଗନ କରି କହିଲା, "ଆସ ଆମେ ଦୁହେଁ ବିହାର କରିବା" ।୧୪। ସେ ଲକ୍ଷ୍ମଣଙ୍କୁ କୁଣ୍ଢାଇ ଧରି ତାଙ୍କୁ କହିଲା, "ମୋର ନାମ ଅୟୋମୁଖୀ, ମୁଁ ତୁମକୁ ମିଳିଲି, ତୁମେ ମୋର ପ୍ରିୟ ଅଟ ।୧୫। ହେ ନାଥ ! ତୁମେ ମୋ ସହିତ ଅବଶିଷ୍ଟ ଜୀବନ ନଦୀପୁଳିନ ଏବଂ ପର୍ବତଶିଖରରେ ରମଣ କରିବ" ।୧୬। ସେ ଏପରି କହିବାରୁ ଅରିନ୍ଦମ ଲକ୍ଷ୍ମଣ କ୍ରୁଦ୍ଧ ହୋଇ ଖଡ୍ଗ ଉତ୍ତୋଳନ କରି ତାହାର ନାସା, କର୍ଣ୍ଣ ଏବଂ ସ୍ତନ କାଟିପକାଇଲେ ।୧୭। ନାକ କାନ କଟିଯିବାରୁ ସେହି ଭୀଷଣ-ଦର୍ଶନା ରାକ୍ଷସୀ ବିକୃତସ୍ୱରରେ ଚିତ୍କାରକରି, ଯେଉଁଠାରୁ ଆସିଥିଲା ସେହି ଆଡ଼କୁ ଦୌଡ଼ ପଳାଇଗଲା ।୧୮। ସେ ଚାଲିଗଲାରୁ ଶତ୍ରୁସଂହାରକାରୀ ରାମ ଲକ୍ଷ୍ମଣ ଦୁଇ ଭାଇ ସବେଗରେ ଯାଇ ଏକ ଗହନବନରେ ପ୍ରବେଶ କଲେ ।୧୯। ଅନନ୍ତର ବଳବାନ୍ ସତ୍ ଏବଂ ପବିତ୍ରସ୍ୱଭାବ, ପରମତେଜସ୍ୱୀ ଲକ୍ଷ୍ମଣ କୃତାଞ୍ଜଳି ହୋଇ ଦୀପ୍ତତେଜା ଭ୍ରାତାଙ୍କୁ କହିଲେ ।୨୦। "ମୋର ବାମବାହୁ ଅତିଶୟ ସ୍ପନ୍ଦିତ ହେଉଅଛି ଏବଂ ମନ ଉଦ୍‌ବିଗ୍ନ ହେଉଅଛି ଓ ଅନିଷ୍ଟକାରୀ ପ୍ରାୟ ସମସ୍ତ ଦୁର୍ଲକ୍ଷଣ

ତସ୍ମାତ୍ ସଜ୍ଜୀଭବାର୍ଯ୍ୟ ତ୍ୱଂ କୁରୁଷ୍ୱ ବଚନଂ ହିତମ୍ ।
ମମୈବ ହି ନିମିତ୍ତାନି ସଦ୍ୟଃ ଶଂସନ୍ତି ସଂଭ୍ରମମ୍ । ୨୨ ।
ଏଷ ବଞ୍ଜୁଳକୋ ନାମ ପକ୍ଷୀ ପରମଦାରୁଣଃ ।
ଆବୟୋର୍ବିଜୟଂ ଯୁଦ୍ଧେ ଶଂସନ୍ନିବ ବିନର୍ଦତି । ୨୩ ।
ତୟୋରନ୍ୱେଷତୋରେବଂ ସର୍ବଂ ତଦ୍‌ବନମୋଜସା ।
ସଂଜଜ୍ଞେ ବିପୁଳଃ ଶବ୍ଦଃ ପ୍ରଭଞ୍ଜନ୍ନିବ ତଦ୍‌ବନମ୍ । ୨୪ ।
ସଂବେଷ୍ଟିତମିବାତ୍ୟର୍ଥଂ ଗଗନଂ ମାତରିଶ୍ୱନା ।
ବନସ୍ୟ ତସ୍ୟ ଶବ୍ଦୋଽଭୂଦ୍ଦିବମାପୂରୟନ୍ନିବ । ୨୫ ।
ତଂ ଶବ୍ଦଂ କାଙ୍‌କ୍ଷମାଣସ୍ତୁ ରାମଃ କକ୍ଷେ ସହାନୁଜଃ ।
ଦଦର୍ଶ ସୁମହାକାୟଂ ରାକ୍ଷସଂ ବିପୁଳୋରସମ୍ । ୨୬ ।
ଆସେଦତୁସ୍ତତସ୍ତତ୍ର ତାବୁଭୌ ପ୍ରମୁଖେ ସ୍ଥିତମ୍ ।
ବିବୃଦ୍ଧମଶିରୋଗ୍ରୀବଂ କବନ୍ଧମୁଦରେମୁଖମ୍ । ୨୭ ।
ରୋମଭିର୍ନିଚିତୈସ୍ତୀକ୍ଷ୍ଣୈର୍ମହାଗିରିମିବୋଚ୍ଛ୍ରିତମ୍ ।
ନୀଳମେଘନିଭଂ ରୌଦ୍ରଂ ମେଘସ୍ତନିତନିଃସ୍ୱନମ୍ । ୨୮ ।

---

ମୁଁ ଲକ୍ଷ୍ୟକରୁଅଛି । ୨୧ । ଅତଏବ ହେ ଆର୍ଯ୍ୟ ! ଆପଣ ମୋର ହିତକଥା କରନ୍ତୁ ଏବଂ ସଜ୍ଜିତ ହୋଇ ରହନ୍ତୁ । ସଙ୍ଗେ ସଙ୍ଗେ ଯେ ଭୟ ଉପସ୍ଥିତ ହେବ ଏହି ଦୁର୍ଲକ୍ଷଣମାନ ମୋତେ ସେହି ସୂଚନା ଦେଉଅଛନ୍ତି । ୨୨ । ଏହି ଅତି ଭୟଙ୍କର ବଞ୍ଜୁଳ ପକ୍ଷୀ ଯୁଦ୍ଧରେ ଆମ ଦୁହିଙ୍କର ବିଜୟ ଘୋଷଣା କଲାପରି ଉଚ୍ଚୈଃସ୍ୱରରେ ରାବକରୁଅଛି" । ୨୩ । ସେ ଦୁହେଁ ତେଜରେ ସେ ସମଗ୍ର ବନ ଅନ୍ୱେଷଣ କରୁଥିବାବେଳେ ସମଗ୍ର ବନକୁ ଭାଙ୍ଗିପକାଇବାପରି ଏକ ବିପୁଳ ଶବ୍ଦ ପ୍ରାଦୁର୍ଭୂତ ହେଲା । ୨୪ । ସମଗ୍ର ଆକାଶ ଅତିଶୟ ପ୍ରଭଞ୍ଜନରେ ପୂର୍ଣ୍ଣ ହୋଇଗଲା ଏବଂ ସେହି ବନମଧ୍ୟରୁ ସ୍ୱର୍ଗକୁ ନିନାଦିତ କଲାପରି ଶବ୍ଦ ଉତ୍ପନ୍ନ ହେଲା । ୨୫ । ରାମ କନିଷ୍ଠ ଭ୍ରାତାଙ୍କ ସହିତ , କେଉଁଆଡ଼ୁ ସେ ଶବ୍ଦ ଆସୁଛି ତାହା ଲକ୍ଷ୍ୟ କରୁ କରୁ ଏକ ଅତି ବିଶାଳବକ୍ଷ ବୃହତ୍‌କାୟ ରାକ୍ଷସକୁ ଦେଖିଲେ ।୨୬। ସେମାନଙ୍କ ସମ୍ମୁଖରେ ଠିଆ ହୋଇଥିବା ସେହି କବନ୍ଧ ନିକଟରେ ସେମାନେ ଯାଇ ପହଞ୍ଚିଲେ । ତାହାର ମସ୍ତକ ବା ଗ୍ରୀବା ନ ଥିଲା ଏବଂ ତାହାର ପେଟରେ ଗୋଟିଏ ମୁହଁ ଥିଲା । ୨୭ । ତାହାର ଶରୀର ତୀକ୍ଷ୍ଣ ରୋମରାଜିରେ ପରିପୂର୍ଣ୍ଣ ହୋଇଥିଲା, ସେ ଏକ ବିଶାଳ ପର୍ବତସଦୃଶ ଉଚ୍ଚ ହୋଇଥିଲା, ନୀଳମେଘସଦୃଶ ଭୟଙ୍କର ଦେଖାଯାଉଥିଲା ଏବଂ

ଅଗ୍ନିଜ୍ୱାଲାନିକାଶେନ ଲଲାଟସ୍ଥେନ ଦୀପ୍ୟତା ।
ମହାପକ୍ଷ୍ମେଣ ପିଙ୍ଗେନ ବିପୁଲେନାୟତେନ ଚ । ୨୯ ।
ଏକେନୋରସି ଘୋରେଣ ନୟନେନାଶୁଦର୍ଶିନା ।
ମହାଦଂଷ୍ଟ୍ରୋପପନ୍ନଂ ତଂ ଲେଲିହାନଂ ମହାମୁଖମ୍ । ୩୦ ।
ଭକ୍ଷୟନ୍ତଂ ମହାଘୋରାନୃକ୍ଷସିଂହମୃଗଦ୍ୱିପାନ୍ ।
ଘୋରୌ ଭୁଜୌ ବିକୁର୍ବାଣମୁଭୌ ଯୋଜନମାୟତୌ ।୩୧।
କରାଭ୍ୟାଂ ବିବିଧାନ୍ ଗୃହ୍ୟ ଋକ୍ଷାନ୍ ପକ୍ଷିଗଣାନ୍ ମୃଗାନ୍ ।
ଆକର୍ଷନ୍ତଂ ବିକର୍ଷନ୍ତମନେକାନ୍ ମୃଗୟୂଥପାନ୍ । ୩୨ ।
ସ୍ଥିତମାବୃତ୍ୟ ପନ୍ଥାନଂ ତୟୋର୍ଭ୍ରାତ୍ରୋଃ ପ୍ରପନ୍ନୟୋଃ ।
ଅଥ ତୌ ସମତିକ୍ରମ୍ୟ କ୍ରୋଶମାତ୍ରେ ଦଦର୍ଶତୁଃ । ୩୩ ।
ମହାନ୍ତଂ ଦାରୁଣଂ ଭୀମଂ କବନ୍ଧଂ ଭୁଜସଂବୃତମ୍ ।
କବନ୍ଧମିବ ସଂସ୍ଥାନାଦତିଘୋରପ୍ରଦର୍ଶନମ୍ । ୩୪ ।
ସ ମହାବାହୁରତ୍ୟର୍ଥଂ ପ୍ରସାର୍ଯ୍ୟ ବିପୁଲୌ ଭୁଜୌ ।
ଜଗ୍ରାହ ସହିତାବେବ ରାଘବୌ ପୀଡ଼ୟନ୍ ବଲାତ୍ । ୩୫ ।

---

ମେଘ ଘଡ଼ଘଡ଼ପରି ଶବ୍ଦ କରୁଥିଲା । ୨୮ । ତାହାର ବକ୍ଷୋଦେଶରେ ଓ ଲଲାଟରେ ଗୋଟିଏ ଚକ୍ଷୁ ଥିଲା । ସେ ଚକ୍ଷୁ ଅଗ୍ନିଶିଖାସଦୃଶ ପ୍ରଦୀପ୍ତ, ଅତି ବୃହତ୍ ପକ୍ଷ୍ମଯୁକ୍ତ, ପିଙ୍ଗଳବର୍ଣ୍ଣ, ଅତି ବିଶାଳ ଏବଂ ଦୀର୍ଘ । ଏହି ଚକ୍ଷୁ ଅତି ଭୟଙ୍କର ଏବଂ ଖୁବ୍ ଶୀଘ୍ର ଦେଖିପାରେ । ତାହାର ମୁଖ ଅତି ବିଶାଳ ଏବଂ ପ୍ରକାଣ୍ଡ ଦନ୍ତପଂକ୍ତିବିଶିଷ୍ଟ । ସେ ସେହି ମୁଖକୁ ବାରମ୍ବାର ଚାଟୁଥାଏ । ୨୯-୩୦ । ସେ ନିଜର ଯୋଜନପରିମିତ ଭୁଜଦ୍ୱୟକୁ ଇତସ୍ତତଃ ପରିଚାଳନା କରି ଭଲ୍ଲୁକ, ସିଂହ, ମୃଗ ଏବଂ ହସ୍ତୀମାନଙ୍କୁ ଭକ୍ଷଣ କରୁଥିଲା । ୩୧ । ସେ ଦୁଇହସ୍ତଦ୍ୱାରା ବିବିଧ ମୃଗ, ପକ୍ଷୀ, ଭଲ୍ଲୁକ ଏବଂ ମୃଗଯୂଥପତିମାନଙ୍କୁ ଆକର୍ଷଣ ଏବଂ ବିକର୍ଷଣ କରୁଥିଲା । ୩୨ । ସେ ସେହି ଦୁଇ ଭାଇଙ୍କର ଗମନପଥକୁ ଅବରୋଧକରି ଠିଆ ହୋଇଥିଲା । ସେମାନେ ପଥ ଅତିକ୍ରମ କରି ଆଗେ ଏକକ୍ରୋଶ ମାତ୍ର ଦୂରରେ ସେହି ଅତି ଘୋରଦର୍ଶନ ଦାରୁଣ ଭୀଷଣାକାର ଭୁଜବିଶିଷ୍ଟ ବିଶାଳକାୟ କବନ୍ଧକୁ ଦେଖିଲେ ।୩୩-୩୪। ଅନନ୍ତର ସେହି ମହାବାହୁ କବନ୍ଧ ବିଶାଳ ଭୁଜଦ୍ୱୟକୁ ଅତିଶୟ ପ୍ରସାରିତ କରି ଏକାବେଳକେ ରାମ ଲକ୍ଷ୍ମଣ ଦୁହିଙ୍କୁ ବଳପୂର୍ବକ ଚାପିଧରି ଟାଣିନେଲା ।୩୫। ଦୃଢ଼ ଧନୁ, ଖଡ଼୍ଗଧାରୀ, ତୀବ୍ରତେଜା,

ଖଡ୍ଗିନୌ ଦୃଢ଼ଧନ୍ୱାନୌ ତିଗ୍ମତେଜୋବପୁର୍ଧରୌ ।
ଭ୍ରାତରୌ ବିବଶଂ ପ୍ରାପ୍ତୌ କୃଷ୍ୟମାଣୌ ମହାବଳୌ ।୩୬ ।
ତତ୍ର ଧୈର୍ଯ୍ୟେଣ ଶୂରସ୍ତୁ ରାଘବୋ ନୈବ ବିବ୍ୟଥେ ।
ବାଲ୍ୟାଦନାଶ୍ରୟତ୍ୱାଚ୍ଚ ଲକ୍ଷ୍ମଣସ୍ତ୍ୱତି ବିବ୍ୟଥେ । ୩୭ ।
ଉବାଚ ଚ ବିଷଣ୍ଣଃ ସନ୍ ରାଘବଂ ରାଘବାନୁଜଃ ।
ପଶ୍ୟ ମାଂ ବୀର ବିବଶଂ ରାକ୍ଷସସ୍ୟ ବଶଂ ଗତମ୍ ।୩୮ ।
ମୟୈକେନ ବିନିଯୁକ୍ତଃ ପରିମୁଞ୍ଚସ୍ୱ ରାଘବ ।
ମାଂ ହି ଭୂତବଳିଂ ଦତ୍ତ୍ୱା ପଲାୟସ୍ୱ ଯଥାସୁଖମ୍ । ୩୯ ।
ଅଧିଗନ୍ତାସି ବୈଦେହୀମଚିରେଣେତି ମେ ମତିଃ ।
ପ୍ରତିଲଭ୍ୟ ଚ କାକୁତ୍ସ୍ଥ ପିତୃପୈତାମହୀଂ ମହୀମ୍ ।୪୦ ।
ତତ୍ର ମାଂ ରାମ ରାଜ୍ୟସ୍ଥଃ ସ୍ମର୍ତୁମର୍ହସି ସର୍ବଦା ।
ଲକ୍ଷ୍ମଣେନୈବ ମୁକ୍ତସ୍ତୁ ରାମଃ ସୌମିତ୍ରିମବ୍ରବୀତ୍ । ୪୧ ।
ମା ସ୍ମ ତ୍ରାସଂ କୃଥା ବୀର ନ ହି ତ୍ୱାଦୃଗ୍ୱିଷୀଦତି ।
ଏତସ୍ମିନ୍ନନ୍ତରେ କ୍ରୂରୌ ଭ୍ରାତରୌ ରାମଲକ୍ଷ୍ମଣୌ । ୪୨।

---

ମହାବଳୀ ସେ ଦୁଇ ଭ୍ରାତା କବନ୍ଧକର୍ତ୍ତୃକ ଆକର୍ଷିତ ହୋଇ ଅତିଶୟ ବିବଶ ହୋଇ-ପଡ଼ିଲେ । ୩୬ । ରାମ ସ୍ୱଭାବତଃ ଧୈର୍ଯ୍ୟଶୀଳ ଏବଂ ବୀର; ସୁତରାଂ ସେ କିଞ୍ଚିତ୍ମାତ୍ର ବ୍ୟଥିତ ହେଲେ ନାହିଁ । ମାତ୍ର ଲକ୍ଷ୍ମଣ ବାଲ୍ୟ ଏବଂ ଆଶ୍ରୟହୀନତାହେତୁରୁ ଅତିଶୟ ବ୍ୟଥିତ ହୋଇପଡ଼ିଲେ । ୩୭ । ରାମଙ୍କର କନିଷ୍ଠଭ୍ରାତା ଲକ୍ଷ୍ମଣ ବିଷଣ୍ଣ ହୋଇ ରାମଙ୍କୁ କହିଲେ, "ହେ ବୀର ! ଦେଖ, ମୁଁ ବିବଶ ହୋଇ ରାକ୍ଷସର ବଶତାପନ୍ନ ହେଉଅଛି ।୩୮। ଅତଏବ ହେ ରାଘବ ! ମୋତେ ଏକା ଛାଡ଼ିଦେଇ ନିଜକୁ ମୁକ୍ତକର ଏବଂ ମୋତେ ଭୂତବଳିସ୍ୱରୂପ ପ୍ରଦାନକରି ଯଥାସୁଖରେ ପଳାୟନ କର । ୩୯ । ହେ କାକୁତ୍ସ୍ଥ ! ମୋର ମନେହୁଏ, ତୁମେ ଅଚିରେ ବୈଦେହୀଙ୍କୁ ପାଇବ ଏବଂ ପିତୃପିତାମହ ରାଜ୍ୟ ମଧ୍ୟ ଲାଭକରିବ । ୪୦ । ହେ ରାମ ! ତୁମେ ରାଜ୍ୟରେ ପ୍ରତିଷ୍ଠିତ ହୋଇ ମୋତେ ସବୁବେଳେ ମନେ ପକାଉଥିବ ।" ଲକ୍ଷ୍ମଣ ଏହିପରି କହିବାରୁ ରାମ ତାଙ୍କୁ କହିଲେ । ୪୧ । "ହେ ବୀର ! ତୁମେ ଏପରି ତ୍ରସ୍ତ ହୁଅ ନାହିଁ । ତୁମପରି ଲୋକ କଦାପି ବିଷଣ୍ଣ ହୁଏ ନାହିଁ ।" ଏହି ସମୟରେ କ୍ରୂରସ୍ୱଭାବ ମେଘସଦୃଶ ଗର୍ଜନକାରୀ ଦାନବଶ୍ରେଷ୍ଠ କବନ୍ଧ ରାମ ଲକ୍ଷ୍ମଣ ଦୁଇଭାଇଙ୍କୁ ପଚାରିଲା, " ତୁମ ଦୁହିଙ୍କର ସ୍କନ୍ଧ

ପପ୍ରଚ୍ଛ ଘନନିର୍ଘୋଷଃ କବନ୍ଧୋ ଦାନବୋତ୍ତମଃ ।
କୌ ଯୁବାଂ ବୃଷଭସ୍କନ୍ଧୌ ମହାଖଡ୍ଗଧନୁର୍ଧରୌ । ୪୩ ।
ଘୋରଂ ଦେଶମିମଂ ପ୍ରାପ୍ତୌ ଦୈବେନ ମମ ଚକ୍ଷୁଷୌ ।
ବଦତଂ କାର୍ଯ୍ୟମିହ ବାଂ କିମର୍ଥଂ ଚାଗତୌ ଯୁବାମ୍ । ୪୪ ।
ଇମଂ ଦେଶମନୁପ୍ରାପ୍ତୌ କ୍ଷୁଧାର୍ତ୍ତସ୍ୟେହ ତିଷ୍ଠତଃ ।
ସବାଣଚାପଖଡ୍ଗୌ ଚ ତୀକ୍ଷ୍ଣଶୃଙ୍ଗାବିବର୍ଷଭୌ । ୪୫ ।
ମମାସ୍ୟମନୁସଂପ୍ରାପ୍ତୌ ଦୁର୍ଲଭଂ ଜୀବିତଂ ପୁନଃ ।
ତସ୍ୟ ତଦ୍ବଚନଂ ଶ୍ରୁତ୍ୱା କବନ୍ଧସ୍ୟ ଦୁରାତ୍ମନଃ । ୪୬ ।
ଉବାଚ ଲକ୍ଷ୍ମଣଂ ରାମୋ ମୁଖେନ ପରିଶୁଷ୍ୟତା ।
କୃଚ୍ଛ୍ରାତ୍ କୃଚ୍ଛ୍ରତରଂ ପ୍ରାପ୍ୟ ଦାରୁଣଂ ସତ୍ୟବିକ୍ରମ । ୪୭ ।
ବ୍ୟସନଂ ଜୀବିତାନ୍ତାୟ ପ୍ରାପ୍ତମପ୍ରାପ୍ୟ ତାଂ ପ୍ରିୟାମ୍ ।
କାଳସ୍ୟ ସୁମହଦ୍ବୀର୍ଯ୍ୟଂ ସର୍ବଭୂତେଷୁ ଲକ୍ଷ୍ମଣ । ୪୮ ।
ତ୍ୱାଂ ଚ ମାଂ ଚ ନରବ୍ୟାଘ୍ର ବ୍ୟସନୈଃ ପଶ୍ୟ ମୋହିତୌ ।
ନାତିଭାରୋଽସ୍ତି ଦୈବସ୍ୟ ସର୍ବଭୂତେଷୁ ଲକ୍ଷ୍ମଣ । ୪୯ ।
ଶୂରାଶ୍ଚ ବଳବନ୍ତଶ୍ଚ କୃତାସ୍ତ୍ରାଶ୍ଚ ରଣାଜିରେ ।
କାଳାଭିପନ୍ନାଃ ସୀଦନ୍ତି ଯଥା ବାଲୁକସେତବଃ । ୫୦ ।

---

ବୃଷଭସଦୃଶ ଏବଂ ତୁମେ ହାତରେ ବୃହତ୍ ଖଡ୍ଗ ଏବଂ ଧନୁ ଧରିଛ; ତୁମେ ଦୁହେଁ କିଏ ? ୪୨-୪୩। ତୁମେ ଦୁହେଁ ଏ ଭୟଙ୍କର ସ୍ଥାନକୁ ଆସି ଦୈବକ୍ରମେ ମୋ ଦୃଷ୍ଟିରେ ପଡ଼ିଛ । ତୁମର ଏଠାରେ କି କାର୍ଯ୍ୟ ଅଛି ଏବଂ କାହିଁକି ବା ତୁମେ ଏଠାକୁ ଆସିଛ, କହ । ୪୪ । ମୁଁ କ୍ଷୁଧାର୍ତ୍ତ ହୋଇ ଏଠାରେ ରହିଛି । ତୁମେ ଦୁହେଁ ଧନୁ, ଶର ଓ ଖଡ୍ଗ ଧାରଣପୂର୍ବକ ତୀକ୍ଷ୍ଣଶୃଙ୍ଗ ବୃଷଭସଦୃଶ ଏଠାକୁ ଆସିଅଛ । ୪୫ । ମୋର ମୁହଁ ପାଖରେ ପହଞ୍ଚି ତୁମର ଜୀବିତ ରହିବା ଦୁର୍ଲ୍ଲଭ ହେବ ।” ସେହି ଦୁରାତ୍ମା କବନ୍ଧର ସେହି କଥା ଶୁଣି ରାମ ଶୁଷ୍କମୁଖରେ ଲକ୍ଷ୍ମଣଙ୍କୁ କହିଲେ, “ହେ ସତ୍ୟ-ବିକ୍ରମ ! ପ୍ରିୟାଙ୍କୁ ନ ପାଇ ଆମେମାନେ ଅତି କ୍ଲେଶକର ଯେଉଁ ଦାରୁଣ ବିପଦରେ ପଡ଼ିଥାଇଁ, ସେଥିରେ ଆମର ପ୍ରାଣ ଶେଷହେବ । ହେ ଲକ୍ଷ୍ମଣ ! ସବୁ ପ୍ରାଣୀଙ୍କ-ଠାରେ କାଳର ବଳ ଅତି ଅଧିକ । ନରଶ୍ରେଷ୍ଠ ! ଦେଖ, ଏବେ ତୁମେ ଏବଂ ମୁଁ କିପରି ବିପଦରେ ଅଭିଭୂତ ହୋଇ ପଡ଼ିଥାଇଁ । ଲକ୍ଷ୍ମଣ ! ସବୁ ପ୍ରାଣୀଙ୍କୁ ଦୁଃଖ ଦେବାରେ କାଳକୁ ବେଶି ଭାର ଲାଗେ ନାହିଁ । ୪୭-୪୯ । ବଳବାନ୍ ଅସ୍ତ୍ରନିପୁଣ ଶୂରପୁରୁଷମାନେ ମଧ୍ୟ କାଳଦ୍ୱାରା ଆକ୍ରାନ୍ତ ହୋଇ ବାଲୁକାନିର୍ମିତ ସେତୁପରି

ଇତି ବ୍ରୁବାଣୋ ଦୃଢ଼ସତ୍ୟବିକ୍ରମୋ
ମହାଯଶା ଦାଶରଥିଃ ପ୍ରତାପବାନ୍ ।
ଅବେକ୍ଷ୍ୟ ସୌମିତ୍ରିମୁଦଗ୍ରପୌରୁଷମ୍
ସ୍ଥିରାଂ ତଦା ସ୍ୱାଂ ମତିମାତ୍ମନାକରୋତ୍ । ୫୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ ଅରଣ୍ୟକାଣ୍ଡେ କବନ୍ଧଗ୍ରାହୋ ନାମ
ଏକୋନସପ୍ତତିତମଃ ସର୍ଗଃ

---

ଯୁଦ୍ଧଭୂମିରେ ଅବସନ୍ନ ହୋଇପଡ଼ିଥାନ୍ତି ।" । ୫୦ । ସତ୍ୟ ଏବଂ ଦୃଢ଼ବିକ୍ରମସମ୍ପନ୍ନ ପ୍ରତାପଶାଳୀ ମହାଯଶା ଦଶରଥନନ୍ଦନ ଧୀମାନ୍ ରାମ ଉଗ୍ରପରାକ୍ରମୀ ଲକ୍ଷ୍ମଣଙ୍କ ଆଡ଼କୁ ଚାହିଁ ଏହା କହି, ନିଜେ ନିଜର ମନକୁ ଦୃଢ଼କଲେ । ୫୧ ।

# ସପ୍ତତିତମଃ ସର୍ଗଃ

## କବନ୍ଧବାହୁଚ୍ଛେଦଃ

ତୌ ତୁ ତତ୍ର ସ୍ଥିତୌ ଦୃଷ୍ଟ୍ୱା ଭ୍ରାତରୌ ରାମଲକ୍ଷ୍ମଣୌ ।
ବାହୁପାଶପରିକ୍ଷିପ୍ତୌ କବନ୍ଧୋ ବାକ୍ୟମବ୍ରବୀତ୍ । ୧ ।
ତିଷ୍ଠତଃ କିଂ ନୁ ମାଂ ଦୃଷ୍ଟ୍ୱା କ୍ଷୁଧାର୍ତ୍ତଂ କ୍ଷତ୍ରିୟର୍ଷଭୌ ।
ଆହାରାର୍ଥଂ ତୁ ସଂଦିଷ୍ଟୌ ଦୈବେନ ଗତଚେତସୌ । ୨ ।
ତଚ୍ଛ୍ରୁତ୍ୱା ଲକ୍ଷ୍ମଣୋ ବାକ୍ୟଂ ପ୍ରାପ୍ତକାଲଂ ହିତଂ ତଦା ।
ଉବାଚାର୍ତ୍ତିଂ ସମାପନ୍ନୋ ବିକ୍ରମେ କୃତନିଶ୍ଚୟଃ । ୩ ।
ତ୍ୱାଂ ଚ ମାଂ ଚ ପୁରା ତୂର୍ଣମାଦତ୍ତେ ରାକ୍ଷସାଧମଃ ।
ତସ୍ମାଦସିଭ୍ୟାମସ୍ୟାଶୁ ବାହୂ ଛିନ୍ଦାବହେ ଗୁରୂ । ୪ ।
ଭୀଷଣୋଽୟଂ ମହାକାୟୋ ରାକ୍ଷସୋ ଭୁଜବିକ୍ରମଃ ।
ଲୋକଂ ହ୍ୟତିଜିତଂ କୃତ୍ୱା ହ୍ୟାବାଂ ହନ୍ତୁମିହେଚ୍ଛତି । ୫ ।
ନିଶ୍ଚେଷ୍ଟାନାଂ ବଧୋ ରାଜନ୍ କୁତ୍ସିତୋ ଜଗତୀପତେଃ ।
କ୍ରତୁମଧ୍ୟୋପନୀତାନାଂ ପଶୂନାମିବ ରାଘବ । ୬ ।

---

# ୭୦ତମ ସର୍ଗ

## ( କବନ୍ଧର ବାହୁଚ୍ଛେଦନ )

ରାମ ଓ ଲକ୍ଷ୍ମଣ ଦୁଇ ଭାଇ ତାହାର ବାହୁପାଶରେ ଆବଦ୍ଧହୋଇ ସେଠାରେ ରହିଥିବାର ଦେଖି କବନ୍ଧ ସେମାନଙ୍କୁ କହିଲା । ୧ । "ହେ କ୍ଷତ୍ରିୟଶ୍ରେଷ୍ଠ ! ମୁଁ କ୍ଷୁଧାର୍ତ୍ତ ହୋଇଅଛି । ଦୈବ ତୁମ ଦୁହିଙ୍କର ବୁଦ୍ଧି ବିଣାଶକରି ମୋର ଆହାର ନିମନ୍ତେ ଏଠାକୁ ପଠାଇଅଛି; ସୁତରାଂ ମୋତେ ଦେଖି ତୁମେ ଆଉ ଅପେକ୍ଷାକରି ରହିଛ କାହିଁକି ?" । ୨ । ସେ କଥା ଶୁଣି ଲକ୍ଷ୍ମଣ ଦୁଃଖିତ ଏବଂ ବିକ୍ରମପ୍ରକାଶନିମନ୍ତେ କୃତନିଶ୍ଚୟ ହୋଇ ତତ୍କାଳୋଚିତ ହିତବାକ୍ୟରେ ରାମଙ୍କୁ କହିଲେ । ୩ । "ଏ ରାକ୍ଷସାଧମ ସତ୍ୱର ତୁମ୍ଭଙ୍କୁ ଓ ମୋତେ ଗ୍ରହଣ କରିବାପୂର୍ବରୁ ଆମେ ଦୁହେଁଯାକ ଖଡ୍‌ଗଦ୍ୱାରା ଏହାର ବିଶାଳ ବାହୁଦ୍ୱୟ ଛେଦନ କରିପକାଇବା । ୪ । ଏହି ମହାକାୟ ଭୀଷଣ ରାକ୍ଷସ ବାହୁବଳଦ୍ୱାରା ସମସ୍ତ ଜଗତକୁ ପରାଜିତ କରି ଏବେ ଆମ ଦୁହିଙ୍କୁ ହତ୍ୟା କରିବାକୁ ଇଚ୍ଛା କରୁଅଛି । ୫ । ରାଜନ୍ ରାଘବ ! ଯଜ୍ଞସ୍ଥଳକୁ ଅଣାହୋଇଥିବା ପଶୁପରି ନିଶ୍ଚେଷ୍ଟ ହୋଇ ନିହତ ହେବା କ୍ଷତ୍ରିୟ ପକ୍ଷରେ ନିତାନ୍ତ

ଏତତ୍ସଂକଳ୍ପିତଂ ଶ୍ରୁତ୍ୱା ତୟୋଃ କ୍ରୁଦ୍ଧସ୍ତୁ ରାକ୍ଷସଃ ।
ବଦାର୍ଯାସ୍ୟଂ ତଦା ରୌଦ୍ରଂ ତୌ ଭକ୍ଷୟିତୁମାରଭତ୍ ।୭ ।
ତତସ୍ତୌ ଦେଶକାଳଜ୍ଞୌ ଖଡ୍ଗାଭ୍ୟାମେବ ରାଘବୌ ।
ଅଚ୍ଛିନ୍ଦତାଂ ସୁସଂହୃଷ୍ଟୌ ବାହୂ ତସ୍ୟାଂସଦେଶତଃ ।୮ ।
ଦକ୍ଷିଣୋ ଦକ୍ଷିଣଂ ବାହୁମସକ୍ତମସିନା ତତଃ ।
ଚିଚ୍ଛେଦ ରାମୋ ବେଗେନ ସବ୍ୟଂ ବୀରସ୍ତୁ ଲକ୍ଷ୍ମଣଃ ।୯ ।
ସ ପପାତ ମହାବାହୁଶ୍ଛିନ୍ନବାହୁର୍ମହାସ୍ୱନଃ ।
ଖଂ ଚ ଗାଂ ଚ ଦିଶଶ୍ଚୈବ ନାଦୟଞ୍ଜଲଦୋ ଯଥା ।୧୦ ।
ସ ନିକୃତ୍ତୌ ଭୁଜୌ ଦୃଷ୍ଟ୍ୱା ଶୋଣିତୌଘପରିପ୍ଲୁତଃ ।
ଦୀନଃ ପପ୍ରଚ୍ଛ ତୌ ବୀରୌ କୌ ଯୁବାମିତି ଦାନବଃ ।୧୧ ।
ଇତି ତସ୍ୟ ବ୍ରୁବାଣସ୍ୟ ଲକ୍ଷଣଃ ଶୁଭଲକ୍ଷଣଃ ।
ଶଶଂସ ରାଘବଂ ତସ୍ୟ କବନ୍ଧସ୍ୟ ମହାବଲଃ ।୧୨ ।
ଅୟମିକ୍ଷ୍ୱାକୁଦାୟାଦୋ ରାମୋ ନାମ ଜନୈଃ ଶ୍ରୁତଃ ।
ଅସ୍ୟୈବାବରଜଂ ବିଦ୍ଧି ଭ୍ରାତରଂ ମାଂ ଚ ଲକ୍ଷଣମ୍ ।୧୩ ।
ମାତ୍ରା ପ୍ରତିହୃତେ ରାଜ୍ୟେ ରାମଃ ପ୍ରବ୍ରାଜିତୋ ବନମ୍ ।
ମୟା ସହ ଚରତ୍ୟେଷ ଭାର୍ଯୟା ଚ ମହଦ୍ୱନମ୍ ।୧୪ ।

---

କିନାର କରସ୍ୟ ” ।୬। ସେ ଦୁହିଁଙ୍କର ଏହି କଥୋପକଥନ ଶୁଣି ସେ ରାକ୍ଷସ ଅତ୍ୟନ୍ତ କ୍ରୁଦ୍ଧହୋଇ ତାହାର ଭୟଙ୍କର ମୁଖ ବ୍ୟାଦାନ କରି ସେ ଦୁହିଁଙ୍କୁ ଭକ୍ଷଣ କରିବାକୁ ଉଦ୍ୟତ ହେଲା ।୭। ଅନନ୍ତର ଦେଶକାଳଜ୍ଞ ରାମ ଲକ୍ଷ୍ମଣ ଅତ୍ୟନ୍ତ ଆନନ୍ଦିତ ହୋଇ ଖଡ୍ଗ ଦୁଇଟିଦ୍ୱାରା ତାହାର କାନ୍ଧଠାରୁ ବାହୁ ଦୁଇଟି ଛେଦନ କରିଦେଲେ ।୮। ପ୍ରଥମେ ରାମ ତାର ଦକ୍ଷିଣ ବାହୁ ଏବଂ ବୀର୍ଯ୍ୟବାନ୍ ଲକ୍ଷ୍ମଣ ତାର ବାମ ବାହୁ ଅନାୟାସରେ ଖଡ୍ଗରେ ଛେଦନ କରିଦେଲେ ।୯। ବାହୁ ଛିନ୍ନ ହେବାରୁ ସେହି ଭୟଙ୍କର ସ୍ୱରସମ୍ପନ୍ନ ମହାବାହୁ କବନ୍ଧ ଘୋର ଗର୍ଜନକରି ମେଘସଦୃଶ ଆକାଶ, ପୃଥିବୀ ଏବଂ ଦଶ ଦିଗକୁ ପ୍ରତିଧ୍ୱନିତ କରି ପଡ଼ିଗଲା ।୧୦। ସେହି ଦାନବ ବାହୁଦ୍ୱୟ ଛିନ୍ନ ହେବାର ଦେଖି, ରକ୍ତାକ୍ତ କଳେବରରେ ସେ ଦୁଇ ବୀରଙ୍କୁ ପଚାରିଲା, “ତୁମେ ଦୁହେଁ କିଏ ?” ।୧୧। ସେ ଏପରି ପଚାରିବାରୁ ମହାବଳୀ ଶୁଭଲକ୍ଷଣ ଲକ୍ଷ୍ମଣ କବନ୍ଧକୁ ରାମଙ୍କର ପରିଚୟ ଦେଇ କହିଲେ ।୧୨। “ଏ ଇକ୍ଷ୍ୱାକୁବଂଶଜାତ ‘ରାମ’ ନାମରେ ଲୋକଙ୍କମଧ୍ୟରେ ବିଖ୍ୟାତ । ମୁଁ ତାଙ୍କର ସାନ ଭାଇ, ମୋର ନାମ ‘ଲକ୍ଷ୍ମଣ’ ବୋଲି ଜାଣ ।୧୩। ମାତାଙ୍କଦ୍ୱାରା ରାଜ୍ୟରୁ ବଞ୍ଚିତ ହୋଇ ରାମ ବନକୁ ନିର୍ବାସିତ ହୋଇଅଛନ୍ତି ଏବଂ ମୋ ସହିତ ଓ ଭାର୍ଯ୍ୟାଙ୍କ ସହିତ ଏହି ମହାବନରେ

ଅସ୍ୟ ଦେବପ୍ରଭାବସ୍ୟ ବସତୋ ବିଜନେ ବନେ ।
ରକ୍ଷସାପହୃତା ଭାର୍ଯା ଯାମିଚ୍ଛନ୍ତାବିହାଗତୌ । ୧୫ ।
ତ୍ୱଂ ତୁ କୋ ବା କିମର୍ଥଂ ବା କବନ୍ଧସଦୃଶୋ ବନେ ।
ଆସ୍ୟେନୋରସି ଦୀପ୍ତେନ ଭଗ୍ନଜଙ୍ଘୋ ବିବେଷ୍ଟସେ । ୧୬ ।
ଏବମୁକ୍ତଃ କବନ୍ଧସ୍ତୁ ଲକ୍ଷ୍ମଣେନୋତ୍ତରଂ ବଚଃ ।
ଉବାଚ ପରମପ୍ରୀତସ୍ତଦିନ୍ଦ୍ରବଚନଂ ସ୍ମରନ୍ । ୧୭ ।
ସ୍ୱାଗତଂ ବାଂ ନରବ୍ୟାଘ୍ରୌ ଦିଷ୍ଟ୍ୟା ପଶ୍ୟାମି ବାମହମ୍ ।
ଦିଷ୍ଟ୍ୟା ଚେମୌ ନିକୃତ୍ତୌ ମେ ଯୁବାଭ୍ୟାଂ ବାହୁବନ୍ଧନୌ ।୧୮।
ବିରୂପଂ ଯଚ୍ଚ ମେ ରୂପଂ ପ୍ରାପ୍ତଂ ହ୍ୟବିନୟାଦ୍ୟଥା ।
ତନ୍ମେ ଶୃଣୁ ନରବ୍ୟାଘ୍ର ତତ୍ତ୍ୱତଃ ଶଂସତସ୍ତବ । ୧୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ କବନ୍ଧବାହୁଚ୍ଛେଦୋ
ନାମ ସପ୍ତତିତମଃ ସର୍ଗଃ

---

ବିଚରଣ କରୁଅଛନ୍ତି । ଏହି ଦେବପ୍ରଭାବ ରାମ ନିର୍ଜନ ବନରେ ବାସକରୁଥିବାବେଳେ ତାଙ୍କର ଭାର୍ଯ୍ୟା ରାକ୍ଷସକର୍ତ୍ତୃକ ଅପହୃତ ହୋଇ ଅଛନ୍ତି । ଆମେ ଦୁହେଁ ତାହାଙ୍କୁ ଖୋଜିବାନିମନ୍ତେ ଏଠାକୁ ଆସିଅଛୁଁ । ୧୪-୧୫ । ତୁମେ କିଏ, କାହିଁକି ଏପରି କବନ୍ଧସଦୃଶ ଏ ବନରେ ବିଚରଣ କରୁଛ ? ତୁମର ଜଙ୍ଘ ଭାଙ୍ଗିଯାଇଛି ଏବଂ ଦୀପ୍ତିବିଶିଷ୍ଟ ମୁଖମଣ୍ଡଳ ବକ୍ଷସ୍ଥଳରେ ବିରାଜିତ ରହିଛି" । ୧୬ । ଲକ୍ଷ୍ମଣ ଏହିପରି କହିବାରୁ କବନ୍ଧ ଇନ୍ଦ୍ରଙ୍କର ପୂର୍ବକଥା ସ୍ମରଣ କରି ଅତିଶୟ ପ୍ରୀତ-ହୋଇ ଉତ୍ତର ଦେଲା । ୧୭ । "ହେ ନରଶ୍ରେଷ୍ଠ ! ମୁଁ ଆପଣମାନଙ୍କର ସ୍ୱାଗତ କରୁଅଛି । ଭାଗ୍ୟବଳରେ ମୁଁ ଆପଣମାନଙ୍କୁ ଏଠାରେ ଦେଖିଲି । ମୋର ଯେ ବାହୁବନ୍ଧନ ଆପଣମାନେ ଛେଦନକଲେ, ଏହା ମଧ୍ୟ ସୌଭାଗ୍ୟର ବିଷୟ ।୧୮। ହେ ନରଶ୍ରେଷ୍ଠ ! ଔଦ୍ଧତ୍ୟହେତୁରୁ ଯେପରିଭାବରେ ମୁଁ ଏପରି ବିକୃତରୂପ ପାଇଅଛି, ତାହା ଯଥାଯଥଭାବରେ କହୁଛି ଶୁଣ । ୧୯ ।

---

# ଏକସପ୍ତତିତମଃ ସର୍ଗଃ

## କବନ୍ଧଶାପାଖ୍ୟାନମ୍

ପୁରା ରାମ ମହାବାହୋ ମହାବଲପରାକ୍ରମମ୍ ।
ରୂପମାସୀନ୍ମମାଚନ୍ତ୍ୟଂ ତ୍ରିଷୁ ଲୋକେଷୁ ବିଶ୍ରୁତମ୍ । ୧ ।
ଯଥା ସୂର୍ଯ୍ୟସ୍ୟ ସୋମସ୍ୟ ଶକ୍ରସ୍ୟ ଚ ଯଥା ବପୁଃ ।
ସୋଽହଂ ରୂପମିଦଂ କୃତ୍ୱା ଲୋକବିତ୍ରାସନଂ ମହତ୍ । ୨ ।
ଋଷୀନ୍ ବନଗତାନ୍ ରାମ ତ୍ରାସୟାମି ତତସ୍ତତଃ ।
ତତଃ ସ୍ଥୂଲଶିରା ନାମ ମହର୍ଷିଃ କୋପିତୋ ମୟା । ୩ ।
ସଂଚିନ୍ୱନ୍ ବିବିଧଂ ବନ୍ୟଂ ରୂପେଣାନେନ ଧର୍ଷିତଃ ।
ତେନାହମୁକ୍ତଃ ପ୍ରେକ୍ଷ୍ୟୈବଂ ଘୋରଶାପାଭିଧାୟିନା । ୪ ।
ଏତଦେବ ନୃଶଂସଂ ତେ ରୂପମସ୍ତୁ ବିଗର୍ହିତମ୍ ।
ସ ମୟା ଯାଚିତଃ କ୍ରୁଦ୍ଧଃ ଶାପସ୍ୟାନ୍ତୋ ଭବେଦିତି ।୫ ।
ଅଭିଶାପକୃତସ୍ୟେତି ତେନେଦଂ ଭାଷିତଂ ବଚଃ ।
ଯଦା ଛିତ୍ତ୍ୱା ଭୁଜୌ ରାମସ୍ତ୍ୱାଂ ଦହେଦ୍ୱିଜନେ ବନେ । ୬ ।

---

## ୭୧ତମ ସର୍ଗ

( କବନ୍ଧଶାପବର୍ଣ୍ଣନ )

"ହେ ମହାବାହୋ ରାମ ! ପୂର୍ବେ ମୋର ମହାବଲପରାକ୍ରମଶାଳୀ ଅଚିନ୍ତ୍ୟନୀୟ ରୂପ ତ୍ରିଭୁବନରେ ବିଖ୍ୟାତ ଥିଲା । ୧ । ସୂର୍ଯ୍ୟ, ଚନ୍ଦ୍ର ଏବଂ ଇନ୍ଦ୍ରଙ୍କ ଶରୀରପରି ମୋର ଶରୀର ଥିଲା । ରାମ ! ପରେ ମୁଁ ଏହି ଲୋକଭୀତିପ୍ରଦ ବିକଟରୂପ ଧାରଣ କରି ବନବାସୀ ଋଷିମାନଙ୍କୁ ଘନ ଘନ ଭୟଭୀତ କରାଇବାକୁ ଲାଗିଲି । ଅନନ୍ତର 'ସ୍ଥୂଲଶିରା' ନାମକ ଜଣେ ମହର୍ଷି ବିବିଧ ବନ୍ୟଜାତ ଦ୍ରବ୍ୟ ସଂଗ୍ରହ କରୁଥିବାବେଳେ ମୋର ଏହି ରୂପରେ ଭୀତ ହୋଇ କ୍ରୁଦ୍ଧ ହୋଇଥିଲେ । ସେ ମୋତେ ଏହି ରୂପରେ ଦେଖି ଭୟଙ୍କର ଅଭିଶାପବାକ୍ୟ ପ୍ରୟୋଗକରି କହିଲେ । ୨-୪ । "ତୋର ଏହି ଲୋକନିନ୍ଦିତ ନୃଶଂସ ରୂପହିଁ ରହୁ । ଅନନ୍ତର ମୁଁ କ୍ରୁଦ୍ଧ ଋଷିଙ୍କ ନିକଟରେ କିପରି ଶାପମୁକ୍ତ ହେବି ତାହା ପ୍ରାର୍ଥନା କରିବାରୁ ସେ କହିଲେ, 'ରାମ ଯେତେବେଳେ ତୋର ଭୁଜଦ୍ୱୟ ଛେଦନକରି ନିର୍ଜନ ବନରେ ତୋତେ ଦଗ୍ଧ କରିବେ,

ତଦା ତ୍ୱଂ ପ୍ରାପ୍ସ୍ୟସେ ରୂପଂ ସ୍ୱମେବ ବିପୁଳଂ ଶୁଭମ୍ ।
ଶ୍ରିୟା ବିରାଜିତଂ ପୁତ୍ରଂ ଦନୋସ୍ତ୍ୱଂ ବିଦ୍ଧି ଲକ୍ଷ୍ମଣ । ୭ ।
ଇନ୍ଦ୍ରକୋପାଦିଦଂ ରୂପଂ ପ୍ରାପ୍ତମେବଂ ରଣାଜିରେ ।
ଅହଂ ହି ତପସୋଗ୍ରେଣ ପିତାମହମତୋଷୟମ୍ । ୮ ।
ଦୀର୍ଘମାୟୁଃ ସ ମେ ପ୍ରାଦାତ୍ତତୋ ମାଂ ବିଭ୍ରମୋଽସ୍ପୃଶତ୍ ।
ଦୀର୍ଘମାୟୁର୍ମୟା ପ୍ରାପ୍ତଂ କିଂ ମେ ଶକ୍ରଃ କରିଷ୍ୟତି । ୯ ।
ଇତ୍ୟେବଂ ବୁଦ୍ଧିମାସ୍ଥାୟ ରଣେ ଶକ୍ରମଧର୍ଷୟମ୍ ।
ତସ୍ୟ ବାହୁପ୍ରମୁକ୍ତେନ ବଜ୍ରେଣ ଶତପର୍ବଣା । ୧୦ ।
ସକ୍ଥିନୀ ଚୈବ ମୂର୍ଧା ଚ ଶରୀରେ ସଂପ୍ରବେଶିତମ୍ ।
ସ ମୟା ଯାଚ୍ୟମାନଃ ସନ୍ନାନୟଦ୍ୟମସାଦନମ୍ । ୧୧ ।
ପିତାମହବଚଃ ସତ୍ୟଂ ତଦସ୍ତ୍ୱିତି ମମାବ୍ରବୀତ୍ ।
ଅନାହାରଃ କଥଂ ଶକ୍ତୋ ଭଗ୍ନସକ୍ଥିଶିରୋମୁଖଃ । ୧୨ ।
ବଜ୍ରେଣାଭିହତଃ କାଳଂ ସୁଦୀର୍ଘମପିଜୀବିତୁମ୍ ।
ଏବମୁକ୍ତସ୍ତୁ ମେ ଶକ୍ରୋ ବାହୂ ଯୋଜନମାୟତୌ । ୧୩ ।
ପ୍ରାଦାଦାସ୍ୟଂ ଚ ମେ କୁକ୍ଷୌ ତୀକ୍ଷ୍ଣଦଂଷ୍ଟ୍ରମକଳ୍ପୟତ୍ ।
ସୋଽହଂ ଭୁଜାଭ୍ୟାଂ ଦୀର୍ଘାଭ୍ୟାଂ ସଂକ୍ଷିପ୍ୟାସ୍ମିନ୍ ବନେଚରାନ୍ ।

ସେତିକିବେଳେ ଯାଇ ତୁ ନିଜର ସୁବିପୁଳ ମନୋହର ଆକାର ଲାଭ କରିବୁ ।' ଲକ୍ଷ୍ମଣ ! ତୁମେ ମୋତେ 'ଦନୁ'ଙ୍କର ଶ୍ରୀଶୋଭିତ ପୁତ୍ର ବୋଲି ଜାଣ । ୫-୭ । ମୁଁ ଯୁଦ୍ଧଭୂମିରେ ଇନ୍ଦ୍ରଙ୍କ କୋପରୁ ଏହି ରୂପ ପାଇଥିଲି । ମୁଁ ଉଗ୍ର ତପସ୍ୟାଦ୍ୱାରା ପିତାମହ ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରିଥିଲି । ୮ । ସେ ମୋତେ ଦୀର୍ଘ ଆୟୁ ପ୍ରଦାନ କରିଥିଲେ । ଅନନ୍ତର ମୋର ଏହି ମତିଭ୍ରମ ଜାତହେଲା ଯେ, ମୁଁ ତ ଦୀର୍ଘାୟୁ ପାଇଛି, ଇନ୍ଦ୍ର ମୋର କ'ଣ କରି ପାରିବେ । ୯ । ମୁଁ ଏକଥା ବିଚାରି ଯୁଦ୍ଧରେ ଇନ୍ଦ୍ରଙ୍କୁ ଆକ୍ରମଣ କଲି । ସେହି ଇନ୍ଦ୍ରଙ୍କର ବାହୁପ୍ରମୁକ୍ତ ଶତପର୍ବ ବଜ୍ରଦ୍ୱାରା ମୋର ଜଙ୍ଘଦ୍ୱୟ ଏବଂ ମସ୍ତକ ଶରୀର ମଧ୍ୟରେ ପଶିଗଲା । ମୁଁ ତାଙ୍କୁ ପ୍ରାର୍ଥନା କରିବାରୁ ସେ ମୋତେ ଯମପୁରକୁ ନେଇଗଲେ ନାହିଁ । ୧୦-୧୧ । ସେ ମୋତେ କହିଲେ, 'ଆଚ୍ଛା, ପିତାମହ ବ୍ରହ୍ମାଙ୍କ କଥା ସତ୍ୟ ହେଉ ।' ମୁଁ କହିଲି, ବଜ୍ରରେ ଆହତ ହୋଇ ମୋର ଜଙ୍ଘ, ମସ୍ତକ ଏବଂ ମୁଖ ଭଗ୍ନ ହୋଇଅଛି, ସୁତରାଂ ମୁଁ ଅନାହାରରେ କପରି ଦୀର୍ଘକାଳ ଜୀବନ ଧରି ପାରିବି । ମୋର ଏ କଥାରେ ଇନ୍ଦ୍ର ମୋର ବାହୁଦ୍ୱୟକୁ ଯୋଜନବିସ୍ତୃତ କରିଦେଲେ ଏବଂ ମୋ ପେଟରେ ଚୋଟିଏ ମୁଖ ଦେଇ ସେଥିରେ

ସିଂହଦ୍ୱିପମୃଗବ୍ୟାଘ୍ରାନ୍ ଭକ୍ଷୟାମି ସମନ୍ତତଃ ।
ସ ତୁ ମାମବ୍ରବୀଦିନ୍ଦ୍ରୋ ଯଦା ରାମଃ ସଲକ୍ଷ୍ମଣଃ । ୧୫ ।
ଛେତ୍ସ୍ୟତେ ସମରେ ବାହୂ ତଦା ସ୍ୱର୍ଗଂ ଗମିଷ୍ୟସି ।
ଅନେନ ବପୁଷା ରାମ ବନେଽସ୍ମିନ୍ ରାଜସତ୍ତମ । ୧୬ ।
ଯଦ୍ ଯତ୍ପଶ୍ୟାମି ସର୍ବସ୍ୟ ଗ୍ରହଣଂ ସାଧୁ ରୋଚୟେ ।
ଅବଶ୍ୟଂ ଗ୍ରହଣଂ ରାମୋ ମନ୍ୟେଽହଂ ସମୁପୈଷ୍ୟତି । ୧୭ ।
ଇମାଂ ବୁଦ୍ଧିଂ ପୁରସ୍କୃତ୍ୟ ଦେହନ୍ୟାସକୃତଶ୍ରମଃ ।
ସ ତ୍ୱଂ ରାମୋଽସି ଭଦ୍ରଂ ତେ ନାହମନ୍ୟେନ ରାଘବ । ୧୮ ।
ଶକ୍ୟୋ ହନ୍ତୁଂ ଯଥା ତତ୍ତ୍ୱମେବମୁକ୍ତଂ ମହର୍ଷିଣା ।
ଅହଂ ହି ମତିସାଚିବ୍ୟଂ କରିଷ୍ୟାମି ନରର୍ଷଭ । ୧୯ ।
ମିତ୍ରଂ ଚୈବୋପଦେକ୍ଷ୍ୟାମି ଯୁବାଭ୍ୟାଂ ସଂସ୍କୃତୋଽଗ୍ନିନା ।
ଏବମୁକ୍ତସ୍ତୁ ଧର୍ମାତ୍ମା ଦନୁନା ତେନ ରାଘବଃ । ୨୦ ।
ଇଦଂ ଜଗାଦ ବଚନଂ ଲକ୍ଷ୍ମଣସ୍ୟୋପଶୃଣ୍ୱତଃ ।
ରାବଣେନ ହୃତା ଭାର୍ଯା ମମ ସୀତା ଯଶସ୍ୱିନୀ । ୨୧ ।

---

ଶିକ୍ଷଣ ଦନ୍ତପଂକ୍ତି ସଂଯୋଜିତ କରିଦେଲେ, ସୁତରାଂ ମୁଁ ଦୀର୍ଘବାହୁ ପ୍ରସାରଣ କରି ଘୂରିଆଡ଼ୁ ବନସ୍ଥିତ ସିଂହ, ବ୍ୟାଘ୍ର, ହସ୍ତୀ ଓ ମୃଗମାନଙ୍କୁ ଟାଣିଆଣି ଖାଏ । ଇନ୍ଦ୍ର ମଧ୍ୟ ମୋତେ କହିଥିଲେ ଯେ 'ଯେତେବେଳେ ରାମ ଲକ୍ଷ୍ମଣଙ୍କ ସହିତ ତୋର ବାହୁଦ୍ୱୟ ଛେଦନ କରିବେ, ସେତିକିବେଳେ ତୁ ସ୍ୱର୍ଗକୁ ଯିବୁ ।' ହେ ନୃପଶ୍ରେଷ୍ଠ ରାମ ! ସେହିଦିନଠାରୁ ଏହି ବନମଧ୍ୟରେ ଏହି ଶରୀରରେ ମୁଁ ଯାହା ଯାହା ଦେଖି ପାରେଁ, ସେହି ସମସ୍ତ ଗ୍ରହଣ କରିବା ଭଲ ମନେ କରୁଛି । ମୋର ମନରେ ଧାରଣା ଯେ 'ରାମ ଦିନେ ଅବଶ୍ୟ ମୋ କବଳକୁ ଆସିବେ ।' ।୧୩-୧୭। ମୁଁ ଏହିପରି ବିଚାର ସ୍ଥିର କରି ଦେହରକ୍ଷାନିମନ୍ତେ ଉଦ୍ୟମ କରି ଆସୁଅଛି । ତୁମ୍ଭର ମଙ୍ଗଳ ହେଉ, ତୁମେହିଁ ନିଶ୍ଚୟ ରାମ । କାରଣ ସେ ମହର୍ଷି ମୋତେ ଯଥାର୍ଥରେ କହିଥିଲେ 'ରାମଙ୍କ ବ୍ୟତୀତ ଅନ୍ୟ କେହି ମୋତେ ବଧ କରି ପାରିବ ନାହିଁ' । ହେ ନରଶ୍ରେଷ୍ଠ ! ମୁଁ ତୁମକୁ ମନ୍ତ୍ରଣାଦ୍ୱାରା ସାହାଯ୍ୟ କରିବି । ୧୮-୧୯ । ଆପଣ ଦୁହେଁ ଅଗ୍ନିରେ ମୋତେ ସଂସ୍କାର କରିଦେବା ପରେ ଆପଣଙ୍କର କାହା ସହିତ ମିତ୍ରତା କରିବା ଆବଶ୍ୟକ ସେ ବିଷୟରେ ମୁଁ ଉପଦେଶ ଦେବି ।" ସେ ଦାନବ ଏପରି କହିବାରୁ ଧର୍ମାତ୍ମା ରାମ ଲକ୍ଷ୍ମଣଙ୍କ ସମକ୍ଷରେ ତାକୁ କହିଲେ, "ମୋର ଯଶସ୍ୱିନୀ ଭାର୍ଯ୍ୟା ସୀତା ରାବଣ

ନିଷ୍କ୍ରାନ୍ତସ୍ୟ ଜନସ୍ଥାନାତ୍‌ସହ ଭ୍ରାତ୍ରା ଯଥାସୁଖମ୍ ।
ନାମମାତ୍ରଂ ତୁ ଜାନାମି ନ ରୂପଂ ତସ୍ୟ ରକ୍ଷସଃ । ୨୨ ।
ନିବାସଂ ବା ପ୍ରଭାବଂ ବା ବୟଂ ତସ୍ୟ ନ ବିଦ୍ମହେ ।
ଶୋକାର୍ତ୍ତାନାମନାଥାନାମେବଂ ବିପରିଧାବତାମ୍ । ୨୩ ।
କାରୁଣ୍ୟଂ ସଦୃଶଂ କର୍ତ୍ତୁମୁପକାରେଣ ବର୍ତ୍ତତାମ୍ ।
କାଷ୍ଠାନ୍ୟାଦାୟ ଶୁଷ୍କାଣି କାଲେ ଭଗ୍ନାନି କୁଞ୍ଜରୈଃ । ୨୪ ।
ଧକ୍ଷ୍ୟାମସ୍ତ୍ୱାଂ ବୟଂ ବୀର ଶ୍ୱଭ୍ରେ ମହତି କଲ୍ପିତେ ।
ସ ତ୍ୱଂ ସୀତାଂ ସମାଚକ୍ଷ୍ୱ ଯେନ ବା ଯତ୍ର ବା ହୃତା । ୨୫ ।
କୁରୁ କଲ୍ୟାଣମତ୍ୟର୍ଥଂ ଯଦି ଜାନାସି ତତ୍ତ୍ୱତଃ ।
ଏବମୁକ୍ତସ୍ତୁ ରାମେଣ ବାକ୍ୟଂ ଦନୁରନୁତ୍ତମମ୍ । ୨୬ ।
ପ୍ରୋବାଚ କୁଶଲୋ ବକ୍ତୁଂ ବକ୍ତାରମପି ରାଘବମ୍ ।
ଦିବ୍ୟମସ୍ତି ନ ମେ ଜ୍ଞାନଂ ନାଭିଜାନାମି ମୈଥିଲୀମ୍ । ୨୭ ।
ଯସ୍ତାଂ ଜ୍ଞାସ୍ୟତି ତଂ ବକ୍ଷ୍ୟେ ଦଗ୍ଧଃ ସ୍ୱଂ ରୂପମାସ୍ଥିତଃ ।
ଅଦଗ୍ଧସ୍ୟ ତୁ ବିଜ୍ଞାତୁଂ ଶକ୍ତିରସ୍ତି ନ ମେ ପ୍ରଭୋ । ୨୮ ।

---

କର୍ତ୍ତୃକ ଅପହୃତ ହୋଇଅଛନ୍ତି । ୨୦-୨୧ । ମୁଁ ସେତେବେଳେ ଭାଇ ସହିତ ଯଥାସୁଖରେ ଜନସ୍ଥାନରୁ ବାହାରି ଯାଇଥିଲି । ମୁଁ ସେ ରାକ୍ଷସର ନାମଟି ମାତ୍ର ଜାଣେ, କିନ୍ତୁ ତାହାର ରୂପ ଦେଖି ନାହିଁ । ୨୨ । ତାହାର ନିବାସ କେଉଁଠାରେ ଏବଂ ଶକ୍ତି କ'ଣ ଆମେ ଜାଣୁ ନାହିଁ, କେବଳ ଶୋକାର୍ତ୍ତ ହୋଇ ଅନାଥପରି ଏ ବନରେ ପରିଭ୍ରମଣ କରୁଅଛୁଁ । ୨୩ । ତୁମେ ଆମର ଉପକାର କରି ଉପଯୁକ୍ତ ଦୟାପ୍ରକାଶ କରିବାରେ ପ୍ରବୃତ୍ତ ହୁଅ । ହେ ବୀର ! ଯେଉଁ କାଷ୍ଠମାନ ହସ୍ତି ଦ୍ୱାରା ଭଗ୍ନହୋଇ କାଳକ୍ରମେ ଶୁଖିଯାଇଅଛି, ସେ ସମସ୍ତ ଆହରଣ କରି ଆମେ ଏକ ବୃହତ୍ ଗର୍ତ୍ତ ଖନନ କରି ତୁମକୁ ଦଗ୍ଧ କରିବୁଁ । ଯେଉଁ ବ୍ୟକ୍ତି ଯେଉଁଠାକୁ ସୀତାଙ୍କୁ ହରଣ କରି ନେଇଯାଇଛି, ସେ ସମସ୍ତ ଯଥାର୍ଥଭାବରେ ଆମକୁ କହ । ୨୪-୨୫ । ତୁମେ ଯଦି ପ୍ରକୃତରେ ଜାଣ, ତାହାହେଲେ ଆମର ବିଶେଷ ମଙ୍ଗଳ ସାଧନକର ।" ରାମ ଏହିପରି କହିବାରୁ, କହିବାରେ ନିପୁଣ ସେ ଦାନବ ସୁବକ୍ତା ରାମଙ୍କୁ କହିଲା, "ମୋର ଦିବ୍ୟଜ୍ଞାନ ନାହିଁ, ସୁତରାଂ ଜାନକୀ କେଉଁଠାରେ ଅଛନ୍ତି ମୁଁ ଜାଣେ ନାହିଁ । ୨୬-୨୭ । ମୁଁ ଦଗ୍ଧ ହେବାପରେ ନିଜ ରୂପ ଧାରଣ କରି ଯେଉଁ ବ୍ୟକ୍ତି ସୀତାଙ୍କୁ ଜାଣେ ତାଙ୍କ କଥା ତୁମକୁ କହିବି । ହେ ପ୍ରଭୋ ! ମୁଁ ଦଗ୍ଧ ନ ହେବାପର୍ଯ୍ୟନ୍ତ ତାଙ୍କୁ ଜାଣିବାର ମୋର ଶକ୍ତି ନାହିଁ । ୨୮ । ହେ ରାଘବ !

ରାକ୍ଷସଂ ତଂ ମହାବୀର୍ଯ୍ୟଂ ସୀତା ଯେନ ହୃତା ତବ ।
ବିଜ୍ଞାନଂ ହି ମମ ଭ୍ରଷ୍ଟଂ ଶାପଦୋଷେଣ ରାଘବ । ୨୯ ।
ସ୍ୱକୃତେନ ମୟା ପ୍ରାପ୍ତଂ ରୂପଂ ଲୋକବିଗର୍ହିତମ୍ ।
କିଂ ତୁ ଯାବନ୍ନ ଯାତ୍ୟସ୍ତଂ ସବିତା ଶ୍ରାନ୍ତବାହନଃ ।୩୦ ।
ତାବନ୍ମାମବଟେ କ୍ଷିପ୍ତ୍ୱା ଦହ ରାମ ଯଥାବିଧି ।
ଦଗ୍ଧସ୍ତ୍ୱୟାହମବଟେ ନ୍ୟାୟେନ ରଘୁନନ୍ଦନ । ୩୧ ।
ବକ୍ଷ୍ୟାମି ତମହଂ ବୀର ଯସ୍ତଂ ଜ୍ଞାସ୍ୟତି ରାକ୍ଷସମ୍ ।
ତେନ ସଖ୍ୟଂ ଚ କର୍ତ୍ତବ୍ୟଂ ନ୍ୟାଯ୍ୟବୃତ୍ତେନ ରାଘବ । ୩୨ ।
କଲ୍ପୟିଷ୍ୟତି ତେ ପ୍ରୀତଃ ସାହାଯ୍ୟଂ ଲଘୁବିକ୍ରମଃ ।
ନ ହି ତସ୍ୟାସ୍ତ୍ୟବିଜ୍ଞାତଂ ତ୍ରିଷୁ ଲୋକେଷୁ ରାଘବ ।୩୩।
ସର୍ବାନ୍ ପରିସୃତୋ ଲୋକାନ୍ ପୁରାସୌ କାରଣାନ୍ତରେ ।୩୪।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ କବନ୍ଧଶାପାଖ୍ୟାନମ୍
ନାମ ଏକସପ୍ତତିତମଃ ସର୍ଗଃ

---

ଯେଉଁ ବଳବାନ୍ ରାକ୍ଷସ ସୀତାଙ୍କୁ ହରଣକରି ନେଇଅଛି ମୋର ତାକୁ ବିଶେଷଭାବରେ ଜାଣିବାର ଶକ୍ତି ଶାପଦୋଷରୁ ନଷ୍ଟ ହୋଇଯାଇଛି । ୨୯ । ମୋର ନିଜକୃତ କାର୍ଯ୍ୟଫଳରେ ମୁଁ ଏହି ଲୋକନିନ୍ଦିତ ରୂପ ଲାଭ କରିଅଛି । ହେ ରାମ ! ସୂର୍ଯ୍ୟଙ୍କର ବାହନ ଅଶ୍ୱମାନେ ପରିଶ୍ରାନ୍ତ ହୋଇ ସୂର୍ଯ୍ୟ ଅସ୍ତ ନ ହେବାପୂର୍ବରୁ ମୋତେ ଗର୍ତ୍ତମଧ୍ୟରେ ନିକ୍ଷେପକରି ଯଥାବିଧାନରେ ଦହନକର । ହେ ରଘୁନନ୍ଦନ ! ଯଥାନ୍ୟାୟରେ ତୁମ୍ଭକର୍ତ୍ତୃକ ଗର୍ତ୍ତମଧ୍ୟରେ ଦଗ୍ଧ ହେବାଉତ୍ତାରୁ ଯେଉଁ ବ୍ୟକ୍ତି ସେ ରାକ୍ଷସକୁ ଜାଣେ ମୁଁ ତାଙ୍କ କଥା କହିବି । ହେ ରାଘବ ! ସେହି ନ୍ୟାୟଚରିତ ବ୍ୟକ୍ତିଙ୍କ ସହିତ ତୁମ୍ଭର ବନ୍ଧୁତା କରିବା କର୍ତ୍ତବ୍ୟ । ୩୦-୩୨ । ସେ ତୁମ ପ୍ରତି ପ୍ରୀତହୋଇ କ୍ଷିପ୍ରଗତିରେ ତୁମକୁ ସାହାଯ୍ୟ କରିବେ । ହେ ରାଘବ ! ତ୍ରିଲୋକମଧ୍ୟରେ ସେ ବ୍ୟକ୍ତିଙ୍କୁ କିଛି ଅଜଣା ନାହିଁ । ସେ ପୂର୍ବେ କୌଣସି କାରଣବଶତଃ ସମସ୍ତ ଲୋକ ପରିଭ୍ରମଣ କରିଥିଲେ । ୩୩-୩୪ ।

# ଦ୍ୱିସପ୍ତତିତମଃ ସର୍ଗଃ

## ସୀତାଧିଗମୋପାୟଃ

ଏବମୁକ୍ତୌ ତୁ ତୌ ବୀରୌ କବନ୍ଧେନ ନରେଶ୍ୱରୌ ।
ଗିରିପ୍ରଦରମାସାଦ୍ୟ ପାବକଂ ବିସସର୍ଜତୁଃ ॥ ୧ ।
ଲକ୍ଷ୍ମଣସ୍ତୁ ମହୋଲ୍କାଭିର୍ଜ୍ୱଲିତାଭିଃ ସମନ୍ତତଃ ।
ଚିତାମାଦୀପୟାମାସ ସା ପ୍ରଜଜ୍ୱାଲ ସର୍ବତଃ ॥ ୨ ॥
ତଚ୍ଛରୀରଂ କବନ୍ଧସ୍ୟ ଘୃତପିଣ୍ଡୋପମଂ ମହତ୍ ।
ମେଦସା ପଚ୍ୟମାନସ୍ୟ ମନ୍ଦଂ ଦହତି ପାବକଃ ॥ ୩ ॥
ସ ବିଧୂୟ ଚିତାମାଶୁ ବିଧୂମୋଽଗ୍ନିରିବୋତ୍ଥିତଃ ।
ଅରଜେ ବାସସୀ ବିଭ୍ରନ୍ମାଲାଂ ଦିବ୍ୟାଂ ମହାବଳଃ ॥ ୪ ॥
ତତଶ୍ଚିତାୟା ବେଗେନ ଭାସ୍ୱରୋ ବିମଳାମ୍ବରଃ ।
ଉତ୍ପପାତାଶୁ ସଂହୃଷ୍ଟଃ ସର୍ବପ୍ରତ୍ୟଙ୍ଗଭୂଷଣଃ ॥ ୫ ॥
ବିମାନେ ଭାସ୍ୱରେ ତିଷ୍ଠନ୍ ହଂସଯୁକ୍ତେ ଯଶସ୍କରେ ।
ପ୍ରଭୟା ଚ ମହାତେଜା ଦିଶୋ ଦଶ ବିରାଜୟନ୍ ॥ ୬ ॥

---

## ୭୨ ସର୍ଗ

### ( ସୀତାପ୍ରାପ୍ତିର ଉପାୟ )

କବନ୍ଧ ଏହିପରି କହିବାଉତ୍ତାରୁ ନରଶ୍ରେଷ୍ଠ ରାମ ଲକ୍ଷ୍ମଣ ଦୁଇ ବୀର ଗୋଟିଏ ଗିରିଗର୍ତ୍ତ ପାଇ ସେଥିରେ ଅଗ୍ନି ପ୍ରସ୍ତୁତ କଲେ । ୧ । ଲକ୍ଷ୍ମଣ ବଡ଼ ବଡ଼ ହୁଳାମାନ ଜାଳି ଚାରିଆଡ଼ୁ ଅଗ୍ନିସଂଯୋଗ କଲେ । ଚିତା ସର୍ବତୋଭାବରେ ଜଳି ଉଠିଲା । ଅନନ୍ତର କବନ୍ଧର ସେହି ଘୃତପିଣ୍ଡସଦୃଶ ମେଦପରିପୂର୍ଣ୍ଣ ପ୍ରକାଣ୍ଡ ଶରୀର ଅଗ୍ନିଦ୍ୱାରା ମନ୍ଦ ମନ୍ଦଭାବରେ ଦଗ୍ଧ ହେବାକୁ ଲାଗିଲା । ଅନନ୍ତର ସେହି ମହାବଳୀ କବନ୍ଧ ତତ୍‌କ୍ଷଣାତ୍ ସେହି ଚିତାକୁ ଦୋହଲାଇ ଦେଇ ଦୁଇଟି ନିର୍ମଳ ବସ୍ତ୍ର ଏବଂ ଗୋଟିଏ ଦିବ୍ୟମାଳା ଧାରଣକରି ଧୂମହୀନ ଅଗ୍ନିପରି ଉତ୍ଥିତ ହେଲା । ୨-୪ । ସେ ଏହିପରି ନିର୍ମଳ ବସ୍ତ୍ର ପିନ୍ଧି ଏବଂ ସର୍ବାଙ୍ଗରେ ଅଳଙ୍କାର ଧାରଣକରି ଦେଦୀପ୍ୟମାନ ରୂପଧାରଣପୂର୍ବକ ଆନନ୍ଦରେ ସେହି ଚିତାମଧ୍ୟରୁ ସବେଗରେ ଉତ୍ଥିତ ହେଲା । ୫ । ସେହି ମହାତେଜା ହଂସଯୁକ୍ତ ଏକ ପ୍ରଭାଶାଳୀ ବିମାନ ଉପରେ ବସି ନିଜର ଯଶପ୍ରଭାରେ ଦଶଦିଗକୁ ଉଜ୍ଜ୍ୱଳ କରିଦେଲା । ସେହି କବନ୍ଧ ଆକାଶରେ

ସୋଽନ୍ତରୀକ୍ଷଗତୋ ରାମଂ କବନ୍ଧୋ ବାକ୍ୟମବ୍ରବୀତ୍ ।
ଶୃଣୁ ରାଘବ ତତ୍ତ୍ୱେନ ଯଥା ସୀତାମବାପ୍ସ୍ୟସି । ୭ ।
*ରାମ ଷଡ଼୍ ଯୁକ୍ତୟୋ ଲୋକେ ଯାଭିଃ ସର୍ବଂ ବିମୃଶ୍ୟତେ ।
ପରିମୃଷ୍ଟୋ ଦଶାନ୍ତେନ ଦଶାଭାଗେନ ସେବ୍ୟତେ । ୮ ।
ଦଶାଭାଗଗତୋ ହୀନସ୍ତ୍ୱଂ ହି ରାମ ସଲକ୍ଷ୍ମଣଃ ।
ଯତ୍କୃତେ ବ୍ୟସନଂ ପ୍ରାପ୍ତଂ ତ୍ୱୟା ଦାରପ୍ରଧର୍ଷଣମ୍ । ୯ ।
ତଦବଶ୍ୟଂ ତ୍ୱୟା କାର୍ଯଃ ସସୁହୃତ୍ସୁହୃଦାଂ ବର ।
ଅକୃତ୍ୱା ହି ନ ତେ ସିଦ୍ଧିମହଂ ପଶ୍ୟାମି ଚିନ୍ତୟନ୍ । ୧୦ ।
ଶ୍ରୂୟତାଂ ରାମ ବକ୍ଷ୍ୟାମି ସୁଗ୍ରୀବୋ ନାମ ବାନରଃ ।
ଭ୍ରାତ୍ରା ନିରସ୍ତଃ କ୍ରୁଦ୍ଧେନ ବାଲିନା ଶକ୍ରସୂନୁନା । ୧୧ ।
ଋଶ୍ୟମୂକେ ଗିରିବରେ ପମ୍ପାପର୍ଯନ୍ତଶୋଭିତେ ।
ନିବସତ୍ୟାତ୍ମବାନ୍ ବୀରଶ୍ଚତୁର୍ଭିଃ ସହ ବାନରୈଃ । ୧୨ ।

---

ଋଷି ରାମଙ୍କୁ କହିଲେ, "ହେ ରାଘବ ! ତୁମେ ଯେ ଉପାୟରେ ସୀତାଙ୍କୁ ପାଇବ, ତାହାର ଯଥାଯଥ ତତ୍ତ୍ୱ ଶୁଣ ।୭-୭।ହେ ରାମ ! ସଂସାରରେ ଛଅଟି ଯୁକ୍ତି ବା ଉପାୟ ଅଛି, ଯାହା ସାହାଯ୍ୟରେ ସମସ୍ତବିଷୟ ବିଚାର କରାଯାଏ । ତନ୍ମଧ୍ୟରୁ 'ସମାଶ୍ରୟ'ନାମକ ଉପାୟଟି ଦୁର୍ଦ୍ଦଶାର ଶେଷଦଶା ଉପସ୍ଥିତ ହେଲେ ଲୋକେ ଆଶ୍ରୟ କରିଥାନ୍ତି । ୮ । ତୁମେ ଲକ୍ଷ୍ମଣଙ୍କ ସହିତ ସେହିପରି ଦୁର୍ଦ୍ଦଶାରେ ପଡ଼ି ଏହିପରି ହୀନ ଅବସ୍ଥାଗ୍ରସ୍ତ ହୋଇଅଛ ଏବଂ ସେହିହେତୁରୁ ତୁମ୍ଭର ଭାର୍ଯ୍ୟାହରଣରୂପ ବ୍ୟସନ ଉପସ୍ଥିତ ହୋଇଅଛି ।୯। ଅତଏବ ହେ ବନ୍ଧୁଶ୍ରେଷ୍ଠ ! ବର୍ତ୍ତମାନ ତୁମକୁ ସେହି ମିତ୍ରତା କରିବାକୁ ହେବ । ମୁଁ ଚିନ୍ତାକରି ଦେଖୁଛି ଯେ ତାହା ନ କଲେ ତୁମ୍ଭର କାର୍ଯ୍ୟ ସିଦ୍ଧି ହେବ ନାହିଁ । ୧୦ । ହେ ରାମ ! ମୁଁ କହୁଛି ତୁମେ ଶୁଣ; ସୁଗ୍ରୀବ ନାମକ ଆତ୍ମବାନ୍ ବୀର ବାନର ସ୍ୱୀୟ କ୍ରୁଦ୍ଧ ଭ୍ରାତା ଇନ୍ଦ୍ରପୁତ୍ର ବାଳିଦ୍ୱାରା ଦୂରୀକୃତ ହୋଇ ପମ୍ପା ହ୍ରଦର ସୀମାନ୍ତରେ ବିରାଜିତ ପର୍ବତଶ୍ରେଷ୍ଠ ଋଶ୍ୟମୂକରେ ଚାରିଗୋଟି ବାନରଙ୍କ ସହିତ ବାସ

---

* ସନ୍ଧି, ବିଗ୍ରହ, ଯାନ, ଆସନ, ଦ୍ୱୈଧୀଭାବ ଓ ସମାଶ୍ରୟ ଏହି ଛଅଟି ଯୁକ୍ତି ବା ଉପାୟ ରାଜନୀତିକମାନେ ବିଭିନ୍ନ ଅବସ୍ଥାରେ କାର୍ଯ୍ୟସାଧନନିମନ୍ତେ ଅବଲମ୍ବନ କରିଥାନ୍ତି ।

ବାନରେନ୍ଦ୍ରୋ ମହାବୀର୍ଯ୍ୟସ୍ତେଜୋବାନମିତପ୍ରଭଃ ।
ସତ୍ୟସନ୍ଧୋ ବିନୀତଶ୍ଚ ଧୃତିମାନ୍ ମତିମାନ୍ ମହାନ୍ । ୧୩ ।
ଦକ୍ଷଃ ପ୍ରଗଲ୍ଭୋ ଦ୍ୟୁତିମାନ୍ ମହାବଲପରାକ୍ରମଃ ।
ଭ୍ରାତ୍ରା ବିବାସିତୋ ରାମ ରାଜ୍ୟହେତୋର୍ମହାବଲଃ । ୧୪ ।
ସ ତେ ସହାୟୋ ମିତ୍ରଂ ଚ ସୀତାୟାଃ ପରିମାର୍ଗଣେ ।
ଭବିଷ୍ୟତି ହି ହେ ରାମ ମା ଚ ଶୋକେ ମନଃ କୃଥାଃ । ୧୫ ।
ଭବିତବ୍ୟଂ ହି ଯଚ୍ଚାପି ନ ତଚ୍ଛକ୍ୟମିହାନ୍ୟଥା ।
କର୍ତୁମିକ୍ଷ୍ୱାକୁଶାର୍ଦ୍ଦୂଲ କାଲୋ ହି ଦୁରତିକ୍ରମଃ । ୧୬ ।
ଗଚ୍ଛ ଶୀଘ୍ରମିତୋ ରାମ ସୁଗ୍ରୀବଂ ତଂ ମହାବଲମ୍ ।
ବୟସ୍ୟଂ ତଂ କୁରୁ କ୍ଷିପ୍ରମିତୋ ଗତ୍ୱାଦ୍ୟ ରାଘବ ।୧୭ ।
ଅଦ୍ରୋହାୟ ସମାଗମ୍ୟ ଦୀପ୍ୟମାନେ ବିଭାବସୌ ।
ସ ଚ ତେ ନାବମନ୍ତବ୍ୟଃ ସୁଗ୍ରୀବୋ ବାନରାଧିପଃ । ୧୮ ।
କୃତଜ୍ଞଃ କାମରୂପୀ ଚ ସହାୟାର୍ଥୀ ଚ ବୀର୍ଯ୍ୟବାନ୍ ।
ଶକ୍ତୌ ହ୍ୟଦ୍ୟ ଯୁବାଂ କର୍ତୁଂ କାର୍ଯ୍ୟଂ ତସ୍ୟ ଚିକୀର୍ଷିତମ୍ । ୧୯ ।

---

କରୁଅଛନ୍ତି ।୧୧-୧୨। ସେହି ବାନରରାଜ ଅତିଶୟ ଜିତେନ୍ଦ୍ରିୟ, ବୀର, ମହାବୀର୍ଯ୍ୟଶାଳୀ, ତେଜସ୍ୱୀ, ଅତୁଳପ୍ରଭାସମ୍ପନ୍ନ, ସତ୍ୟପ୍ରତିଜ୍ଞ, ବିନୟୀ, ଧୈର୍ଯ୍ୟଶୀଳ ଏବଂ ମତିମାନ୍ ଅଟନ୍ତି । ୧୩ । ସେ କାର୍ଯ୍ୟଦକ୍ଷ, ସୁବକ୍ତା, ଦୀପ୍ତିମାନ୍ ଏବଂ ମହାବଳପରାକ୍ରମଶାଳୀ । ତାଙ୍କୁ ତାଙ୍କର ଭ୍ରାତା ନିର୍ବାସିତ କରିଦେଇଛନ୍ତି ।୧୪। ହେ ରାମ ! ତୁମେ ଶୋକରେ ମନକୁ ଅଭିଭୂତ କର ନାହିଁ । ସୀତାଙ୍କୁ ଅନ୍ୱେଷଣ କରିବାରେ ସେ ନିଶ୍ଚୟ ତୁମ୍ଭର ମିତ୍ର ଏବଂ ସହାୟ ହେବେ । ୧୫ । ଯାହା ହେବାର ଥାଏ ତାକୁ ଅନ୍ୟଥା କରିହୁଏ ନାହିଁ । ହେ ଇକ୍ଷ୍ୱାକୁପ୍ରବର ! କାଳ ମନୁଷ୍ୟର ଦୁରତିକ୍ରମଣୀୟ ଅଟେ ।୧୬। ହେ ରଘୁନନ୍ଦନ ! ତୁମେ ଶୀଘ୍ର ଏଠାରୁ ଯାଅ । ଆଜହିଁ ଏଠାରୁ ଯାଇ ସେହି ମହାବଳୀ ସୁଗ୍ରୀବଙ୍କୁ ମିତ୍ର କର । ୧୭ । ତୁମେ ପ୍ରଜ୍ୱଳିତ ଅଗ୍ନିସମକ୍ଷରେ "କେବେ ପରସ୍ପର ଦ୍ରୋହ କରିବ ନାହିଁ" ଏହି ପ୍ରତିଜ୍ଞାକରି ତାଙ୍କ ସହିତ ମିତ୍ରତାବଦ୍ଧ ହୁଅ । ସେହି ବାନରରାଜ ସୁଗ୍ରୀବଙ୍କୁ କଦାପି ଅବଜ୍ଞା କରିବ ନାହିଁ । ୧୮ । ସେହି ବୀର୍ଯ୍ୟବାନ୍ ବଡ଼ କୃତଜ୍ଞ, କାମରୂପୀ, ପୁଣି ବର୍ତ୍ତମାନ ସେ ସାହାଯ୍ୟପ୍ରାର୍ଥୀ ହୋଇଅଛନ୍ତି । ତାଙ୍କର ଈପ୍‌ସିତ କାର୍ଯ୍ୟ ସାଧନ କରିବାପାଇଁ ଆପଣ ଦୁହେଁ ମଧ୍ୟ ସମର୍ଥ ଅଟନ୍ତି । ୧୯ । ସେ ସଫଳମନୋରଥ ହୁଅନ୍ତୁ ବା ବିଫଳମନୋରଥ ହୁଅନ୍ତୁ

କୃତାଥୋ ବାକୃତାର୍ଥୋ ବା କୃତ୍ୟଂ ତବ କରିଷ୍ୟତି ।
ସ ଋକ୍ଷରଜସଃ ପୁତ୍ରଃ ପମ୍ପାମଟତି ଶଙ୍କିତଃ । ୨୦ ।
ଭାସ୍କରସ୍ୟୌରସଃ ପୁତ୍ରୋ ବାଲିନା କୃତକିଲ୍ବିଷଃ ।
ସଂନିଧାୟାୟୁଧଂ କ୍ଷିପ୍ରମୃଶ୍ୟମୂକାଲୟଂ କପିମ୍ । ୨୧ ।
କୁରୁ ରାଘବ ସତ୍ୟେନ ବୟସ୍ୟଂ ବନଚାରିଣମ୍ ।
ସ ହି ସ୍ଥାନାନି ସର୍ବାଣି କାର୍ତ୍ସ୍ନ୍ୟେନ କପିକୁଞ୍ଜରଃ ।୨୨ ।
ନରମାଂସାଶିନାଂ ଲୋକେ ନୈପୁଣ୍ୟାଦଧିଗଚ୍ଛତି ।
ନ ତସ୍ୟାବିଦିତଂ ଲୋକେ କିଂଚିଦସ୍ତି ହି ରାଘବ । ୨୩ ।
ଯାବତ୍ସୂର୍ଯଃ ପ୍ରତପତି ସହସ୍ରାଂଶୁରରିଂଦମ ।
ସ ନଦୀର୍ବିପୁଲାଂ ଶୈଲାନ୍ ଗିରିଦୁର୍ଗାଣି କନ୍ଦରାନ୍ । ୨୪ ।
ଅନ୍ୱେଷ୍ୟ ବାନରୈଃ ସାର୍ଧଂ ପତ୍ନୀଂ ତେଽଧିଗମିଷ୍ୟତି ।
ବାନରାଂଶ୍ଚ ମହାକାୟାନ୍ ପ୍ରେଷୟିଷ୍ୟତି ରାଘବ । ୨୫ ।
ଦିଶୋ ବିଚେତୁଂ ତାଂ ସୀତାଂ ତ୍ୱଦ୍‌ବିୟୋଗେନ ଶୋଚତୀମ୍ ।
ସ ଜ୍ଞାସ୍ୟତି ବରାରୋହାଂ ନିର୍ମଲାଂ ରାବଣାଲୟେ । ୨୬ ।

---

ସେ ନିଶ୍ଚୟ ତୁମ୍ଭର କାର୍ଯ୍ୟ ସାଧନ କରିବେ । ସେ ଋକ୍ଷରାଜଙ୍କର ପୁତ୍ର ବର୍ତ୍ତମାନ ଶଙ୍କିତ ହୋଇ ପମ୍ପାତୀରରେ ବୁଲୁଛନ୍ତି । ୨୦ । ସେ ସୂର୍ଯ୍ୟଙ୍କର ଔରସଜାତ ପୁତ୍ର । ବାଲି ତାଙ୍କପ୍ରତି ଅନ୍ୟାୟାଚରଣ କରିଅଛି । ହେ ରାଘବ ! ତୁମେ ଶୀଘ୍ର ଅସ୍ତ୍ର ଥୋଇ, ସତ୍ୟକରି, ସେହି ବନଚାରୀ ଋଶ୍ୟମୂକବାସୀ ବାନରଙ୍କ ସହିତ ମିତ୍ରତା କର । ସେହି ବାନରଶ୍ରେଷ୍ଠ ନିଜର ନିପୁଣତାହେତୁରୁ ଏ ଜଗତରେ ନରମାଂସଭୋଜୀ ରାକ୍ଷସମାନଙ୍କର ସବୁ ସ୍ଥାନ ତନ୍ନ ତନ୍ନକରି ଜାଣନ୍ତି । ହେ ଶତ୍ରୁସୂଦନ ରାମ ! ଯେତେଦିନ ପର୍ଯ୍ୟନ୍ତ ସୂର୍ଯ୍ୟ ପୃଥିବୀକୁ କିରଣଦାନ କରୁଥିବେ, ସେତେଦିନ ପର୍ଯ୍ୟନ୍ତ ଏ ଜଗତରେ ତାଙ୍କର କିଛି ଅବିଦିତ ରହିବ ନାହିଁ । ସେ ନଦୀ, ବିସ୍ତୃତ ଶୈଳ, ଗିରିସଂକଟ ଏବଂ ପର୍ବତକନ୍ଦରମାନ ବାନରମାନଙ୍କ ସାହାଯ୍ୟରେ ଅନୁସନ୍ଧାନ କରି ତୁମ ପତ୍ନୀଙ୍କୁ ଲାଭକରିବେ । ହେ ରାଘବ ! ସେ ତୁମ ବିୟୋଗହେତୁରୁ ଦୁଃଖିତା ସୀତାଙ୍କୁ ଅନ୍ୱେଷଣ କରିବାପାଇଁ ବୃହତ୍‌କାୟ ବାନରମାନଙ୍କୁ ସବୁ ଦିଗକୁ ପଠାଇବେ ଏବଂ ରାବଣଗୃହରେ ସେ ବରାରୋହା ମୈଥିଳୀଙ୍କର ସନ୍ଧାନ ପାଇବେ । ୨୧-୨୬ । ଅନିନ୍ଦିତା ସୀତା ମେରୁପର୍ବତର ଶୃଙ୍ଗ ଉପରେ କିମ୍ବା

ସ ମେରୁଶୃଙ୍ଗାଗ୍ରଗତାମନିନ୍ଦିତାମ୍
ପ୍ରବିଶ୍ୟ ପାତାଳତଲେଽପି ବା ଶ୍ରିତାମ୍ ।
ପ୍ଲବଙ୍ଗମାନାଂ ପ୍ରବରସ୍ତବ ପ୍ରିୟାମ୍
ନିହତ୍ୟ ରକ୍ଷାଂସି ପୁନଃ ପ୍ରଦାସ୍ୟତି । ୨୭ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ ଅରଣ୍ୟକାଣ୍ଡେ ସୀତାଧିଗମୋପାୟୋ
ନାମ ଦ୍ୱିସପ୍ତତିତମଃ ସର୍ଗଃ ।

————

ପାତାଳତଳରେ ରହିଥିଲେ ମଧ୍ୟ ସେହି କପିଶ୍ରେଷ୍ଠ ସୁଗ୍ରୀବ ସେଠାରେ ପ୍ରବେଶ କରି ଓ ରାକ୍ଷସମାନଙ୍କୁ ନିହତ କରି ତୁମ୍ଭର ପ୍ରିୟାଙ୍କୁ ପୁଣି ଆଣିଦେବେ” । ୨୭ ।

———

# ତ୍ରିସପ୍ତତିତମଃ ସର୍ଗଃ

## ଋଶ୍ୟମୂକମାର୍ଗକଥନମ୍

ଦର୍ଶୟିତ୍ୱା ତୁ ରାମାୟ ସୀତାୟାଃ ପରିମାର୍ଗଣେ ।
ବାକ୍ୟମନ୍ୱର୍ଥମର୍ଥଜ୍ଞଃ କବନ୍ଧଃ ପୁନରବ୍ରବୀତ୍ । ୧ ।
ଏଷ ରାମ ଶିବଃ ପନ୍ଥା ଯତ୍ରୈତେ ପୁଷ୍ପିତା ଦ୍ରୁମାଃ ।
ପ୍ରତୀଚୀଂ ଦିଶମାଶ୍ରିତ୍ୟ ପ୍ରକାଶନ୍ତେ ମନୋରମାଃ । ୨ ।
ଜମ୍ବୂପ୍ରିୟାଲପନସପ୍ଲକ୍ଷନ୍ୟଗ୍ରୋଧତିନ୍ଦୁକାଃ ।
ଅଶ୍ୱତ୍ଥାଃ କର୍ଣିକାରାଶ୍ଚ ଚୂତାଶ୍ଚାନ୍ୟେ ଚ ପାଦପାଃ । ୩ ।
ଧନ୍ୱନା ନାଗବୃକ୍ଷାଶ୍ଚ ତିଲକା ନକ୍ତମାଲକାଃ ।
ନୀଲାଶୋକାଃ କଦମ୍ବାଶ୍ଚ କରବୀରାଶ୍ଚ ପୁଷ୍ପିତାଃ । ୪ ।
ଅଗ୍ନିମୁଖ୍ୟା ଅଶୋକାଶ୍ଚ ସୁରକ୍ତାଃ ପାରିଭଦ୍ରକାଃ ।
ତାନାରୁହ୍ୟାଥବା ଭୂମୌ ପାତୟିତ୍ୱା ଚ ତାନ୍ ବଲାତ୍ । ୫।
ଫଲାନ୍ୟମୃତକଳ୍ପାନି ଭକ୍ଷୟନ୍ତୌ ଗମିଷ୍ୟଥଃ ।
ତଦତିକ୍ରମ୍ୟ କାକୁତ୍ସ୍ଥ ବନଂ ପୁଷ୍ପିତପାଦପମ୍ । ୬ ।

---

## ୭୩ତମ ସର୍ଗ

### ( ଋଷ୍ୟମୂକପଥନିର୍ଦ୍ଦେଶ )

ଅର୍ଥଜ୍ଞ କବନ୍ଧ ସୀତାଙ୍କ ଅନ୍ୱେଷଣ ବିଷୟରେ ଉପାୟ ବତାଇ ଦେଇ, ପୁଣି ଅର୍ଥଯୁକ୍ତ ବାକ୍ୟରେ କହିଲା । ୧ । "ରାମ ଏହି ଯେ ଜମ୍ବୁ, ପ୍ରିୟାଳ, ପନସ, ଉଦୁମ୍ବର, ବଟ, ତିନ୍ଦୁକ, ଅଶ୍ୱତ୍ଥ, କର୍ଣ୍ଣିକାର, ଚୂତ, ଧବ, ନାଗେଶ୍ୱର, ନକ୍ତମାଳ, ନୀଳାଶୋକ, କଦମ୍ବ, କରଙ୍କର, ରକ୍ତଚନ୍ଦନ, ଅଶୋକ, ରକ୍ତବର୍ଣ୍ଣ ପାରିଭଦ୍ର ଏବଂ ଅନ୍ୟାନ୍ୟ ପୁଷ୍ପଯୁକ୍ତ ବୃକ୍ଷସମୂହ ପଶ୍ଚିମ ଦିଗରେ ଶୋଭାପାଉଛି, ସେହି ଦିଗକୁହିଁ ତୁମର ମଙ୍ଗଳମୟ ପଥ ପଡ଼ିଅଛି । ତୁମେ ଦୁହେଁ ଯେଉଁସବୁ ବୃକ୍ଷରେ ଆରୋହଣ କରି ଅଥବା ସେଗୁଡ଼ିକୁ ବଳପୂର୍ବକ ଭୂମିରେ ନିପାତିତ କରି ସେହି ଅମୃତତୁଲ୍ୟ ଫଳଗୁଡ଼ିକ ଭକ୍ଷଣ କରି କରି ଯିବ । ହେ କାକୁତ୍ସ୍ଥ ! ଏହିପରି ପୁଷ୍ପିତ ବୃକ୍ଷସମୂହଦ୍ୱାରା ପରିପୂର୍ଣ୍ଣ ସେହି ବନକୁ ଅତିକ୍ରମ କରି ସାକ୍ଷାତ୍ ଉତ୍ତରକୁରୁ ଏବଂ

ନନ୍ଦନପ୍ରତିମଂ ଚ୍ଛନ୍ୟତ୍ କୁରବୋ ହ୍ୟୁତ୍ତରା ଇବ ।
ସର୍ବକାମଫଲା ଯତ୍ର ପାଦପାସ୍ତୁ ମଧୁସ୍ରବାଃ । ୭ ।
ସର୍ବେ ଚ ଋତବସ୍ତତ୍ର ବନେ ଚୈତ୍ରରଥେ ଯଥା ।
ଫଲଭାରାନତାସ୍ତତ୍ର ମହାବିଟପଧାରିଣଃ । ୮ ।
ଶୋଭନ୍ତେ ସର୍ବତସ୍ତତ୍ର ମେଘପର୍ବତସଂନିଭାଃ ।
ତାନାରୁହ୍ୟାଥବା ଭୂମୌ ପାତୟିତ୍ୱା ଯଥାସୁଖମ୍ । ୯ ।
ଫଲାନ୍ୟମୃତକଳ୍ପାନି ଲକ୍ଷ୍ମଣସ୍ତେ ପ୍ରଦାସ୍ୟତି ।
ଚଙ୍କ୍ରମନ୍ତୌ ବରାନ୍ ଦେଶାନ୍ ଶୈଳାଚ୍ଛୈଳଂ ବନାଦ୍ ବନମ୍ ।୧୦
ତତଃ ପୁଷ୍କରିଣୀଂ ବୀରୌ ପମ୍ପାଂ ନାମ ଗମିଷ୍ୟଥଃ ।
ଅଶର୍କରାମବିଭ୍ରଂଶାଂ ସମତୀର୍ଥାମଶୈବଲାମ୍ । ୧୧ ।
ରାମ ସଂଜାତବାଲୂକାଂ କମଳୋତ୍ପଲଶାଲିନୀମ୍ ।
ତତ୍ର ହଂସାଃ ପ୍ଲବାଃ କ୍ରୌଞ୍ଚାଃ କୁରରାଶ୍ଚୈବ ରାଘବ ।୧୨ ।
ବଲ୍ଗୁସ୍ୱନା ନିକୂଜନ୍ତି ପମ୍ପାସଲିଲଗୋଚରାଃ ।
ନୋଦ୍ୱିଜନ୍ତେ ନରାନ୍ ଦୃଷ୍ଟ୍ୱା ବଧସ୍ୟାକୋବିଦାଃ ଶୁଭାଃ । ୧୩ ।

---

ନନ୍ଦନବନସଦୃଶ ଅନ୍ୟ ବନକୁ ଯିବ । ସେଠାରେ ଚୈତ୍ରରଥବନସଦୃଶ ବୃକ୍ଷସମୂହ ସବୁ ସମୟରେ ଫଳପ୍ରସବ ଓ ମଧୁକ୍ଷରଣ କରନ୍ତି । ସେଠାରେ ସମସ୍ତ ଋତୁ ଏକ ସମୟରେ ବିଦ୍ୟମାନ ରହିଥାନ୍ତି । ସେଠାରେ ସର୍ବତ୍ର ମେଘ ଏବଂ ପର୍ବତସଦୃଶ ବଡ଼ ବଡ଼ଶାଖାବିଶିଷ୍ଟ ବିଶାଳ ବୃକ୍ଷମାନ ଫଳଭାରରେ ନତହୋଇ ରହି ଶୋଭା ପାଉଛନ୍ତି । ଲକ୍ଷ୍ମଣ ସେହିସବୁ ବୃକ୍ଷରେ ଆରୋହଣ କରି କିମ୍ବା ଯଥାସୁଖରେ ଝଡ଼ାଇ ସେହି ଅମୃତସଦୃଶ ଫଳମାନ ତୁମକୁ ଦେବେ । ତୁମେ ଦୁହେଁ ବନରୁ ବନକୁ,ପର୍ବତରୁ ପର୍ବତକୁ ଏହିପରିଭାବରେ ସେ ଅଞ୍ଚଳ ବୁଲାବୁଲି ପରେ ପମ୍ପା ନାମକ ପୁଷ୍କରିଣୀକୁ ଯିବ । ଏହି ସରୋବରରେ ଗୋଡ଼ିକଙ୍କର ନାହିଁ କିମ୍ବା ଏହାର ତୀରଭୂମି ପିଚ୍ଛିଳ ନୁହେଁ । ଘାଟଗୁଡ଼ିକ ସମତଳ ଏବଂ ଶୈବାଳଶୂନ୍ୟ । ୬-୧୧ । ତାହା ପଦ୍ମ, ଉତ୍ପଳ ତଥା ବାଲୁକାଭୂମିସମନ୍ୱିତ । ହେ ରାଘବ ! ସେଠାରେ ହଂସ, ଭେକ, କ୍ରୌଞ୍ଚ ଏବଂ କୁରରମାନେ ପମ୍ପାଜଳରେ ବିଚରଣ କରି, ମନୋହର ସ୍ୱରରେ ରବ କରୁଥାଆନ୍ତି । ପୂର୍ବେ କେବେ ମୃତ୍ୟୁର ଭୟ ଜାଣି ନ ଥିବାରୁ ସେମାନେ ମନୁଷ୍ୟକୁ ଦେଖି ଉଦ୍‌ବିଗ୍ନ ହୁଅନ୍ତି ନାହିଁ । ୧୨-୧୩ । ତୁମେ ଦୁହେଁ ସେହି

ଘୃତପିଣ୍ଡୋପମାନ୍ ସ୍ଥୂଲାଂସ୍ତାନ୍ ଦ୍ୱିଜାନ୍ ଭକ୍ଷୟିଷ୍ୟଥଃ ।
ରୋହିତାନ୍ ବକ୍ରତୁଣ୍ଡାଂଶ୍ଚ ନଡ଼ମୀନାଂଶ୍ଚ ରାଘବ । ୧୪ ।
ପମ୍ପାୟାମିଷୁଭିର୍ମତ୍ସ୍ୟାଂସ୍ତତ୍ର ରାମ ବରାନ୍ ହତାନ୍ ।
ନିସ୍ତ୍ୱକ୍ପକ୍ଷାନୟସ୍ତପ୍ତାନକୃଶାନେକକଣ୍ଟକାନ୍ । ୧୫ ।
ତବ ଭକ୍ତ୍ୟା ସମାଯୁକ୍ତୋ ଲକ୍ଷ୍ମଣଃ ସଂପ୍ରଦାସ୍ୟତି ।
ଭୃଶଂ ତେ ଖାଦତୋ ମତ୍ସ୍ୟାନ୍ ପମ୍ପାୟାଃ ପୁଷ୍ପସଂଚୟେ ।୧୬।
ପଦ୍ମଗନ୍ଧି ଶିବଂ ବାରି ସ୍ୱାଦୁ ଶୀତମନାମୟମ୍ ।
ଉଦ୍ଧୃତ୍ୟ ସତତାକ୍ଲିଷ୍ଟଂ ରୌପ୍ୟସ୍ଫାଟିକସଂନିଭମ୍ । ୧୭ ।
ଅସୌ ପୁଷ୍କରପର୍ଣେନ ଲକ୍ଷ୍ମଣଃ ପାୟୟିଷ୍ୟତି ।
ସ୍ଥୂଲାନ୍ ଗିରିଗୁହାଶଯ୍ୟାନ୍ ବାନରାନ୍ ବନଚାରିଣଃ । ୧୮ ।
ସାୟାହ୍ନେ ବିଚରନ୍ ରାମ ଦର୍ଶୟିଷ୍ୟତି ଲକ୍ଷ୍ମଣଃ ।
ଅପାଂ ଲୋଭାଦୁପାବୃତ୍ତାନ୍ ବୃଷଭାନିବ ନର୍ଦତଃ । ୧୯ ।
ରୂପାନ୍ୱିତାଂଶ୍ଚ ପମ୍ପାୟାଂ ଦ୍ରକ୍ଷ୍ୟସି ତ୍ୱଂ ନରୋତ୍ତମ ।
ସାୟାହ୍ନେ ବିଚରନ୍ ରାମ ବିଟପୀମାଲ୍ୟଧାରିଣଃ । ୨୦ ।
ଶୀତୋଦକଂ ଚ ପମ୍ପାୟା ଦୃଷ୍ଟ୍ୱା ଶୋକଂ ବିହାସ୍ୟସି ।
ସୁମନୋଭିଶ୍ଚିତାସ୍ତତ୍ର ତିଲକା ନକ୍ତମାଲକାଃ । ୨୧ ।

---

ସ୍ଥୂଳକାୟ ଘୃତପିଣ୍ଡସଦୃଶ ପକ୍ଷୀମାନଙ୍କୁ ଭକ୍ଷଣ କରିବ । ହେ ରାମ ! ସେହି ପମ୍ପା ସରୋବରରେ ଉତ୍କୃଷ୍ଟ ରୋହି, ଭେକଟା ଏବଂ ଶଙ୍ଗୁଡ଼ିମାଛମାନ ଶରଦ୍ୱାରା ମାରି, ତାହାର କାତି ଏବଂ ପକ୍ଷ ଛଡ଼ାଇ ସେହି ବଡ଼ ବଡ଼ ଏକକଣ୍ଟିଆ ମାଛମାନଙ୍କୁ ଲୁହାରେ ପୋଡ଼ି ଲକ୍ଷ୍ମଣ ଭକ୍ତିସହକାରେ ତୁମକୁ ପ୍ରଦାନ କରିବେ । ପମ୍ପାର ଜଳ ପୁଷ୍ପପ୍ରାଚୁର୍ଯ୍ୟହେତୁରୁ ପଦ୍ମଗନ୍ଧଯୁକ୍ତ, ସ୍ୱାସ୍ଥ୍ୟକର, ଶୀତଳ ସ୍ୱାଦୁ ଏବଂ ଶୁଭପ୍ରଦ । ଲକ୍ଷ୍ମଣ ସେହି ରୌପ୍ୟ ଓ ସ୍ଫଟିକସଦୃଶ ସ୍ୱଚ୍ଛ ଜଳକୁ ପଦ୍ମପତ୍ରଦ୍ୱାରା ଆଣି, ତୁମେ ଯଥେଷ୍ଟ ପରିମାଣରେ ମାଛ ସବୁ ଖାଉଥିବାବେଳେ ତୁମକୁ ପିଆଇବେ । ହେ ରାମ ! ତୁମେ ସନ୍ଧ୍ୟାସମୟରେ ଭ୍ରମଣ କଲାବେଳେ, ଲକ୍ଷ୍ମଣ ତୁମକୁ ଗିରିଗୁହାରେ ଶୟନ କରିଥିବା ବନଚାରୀ ସ୍ଥୂଳକାୟ ବାନରମାନଙ୍କୁ ଦେଖାଇଦେବେ । ହେ ନରଶ୍ରେଷ୍ଠ ରାମ ! ଜଳଲୋଭରେ ସେଠାକୁ ଆସି ବୃଷଭପରି ଗର୍ଜୁଥିବା ରୂପବାନ୍ ପୁଷ୍ପମାଲ୍ୟଧାରୀ ବାନରମାନଙ୍କୁ ତୁମେ ସନ୍ଧ୍ୟାସମୟରେ ପମ୍ପାତୀରରେ ବିଚରଣ କଲାବେଳେ ଦେଖିବ । ୧୪-୨୦ । ତୁମେ ସେ ପମ୍ପାର ଶୀତଳ ଜଳ ଦେଖି ଶୋକ ଦୂର କରିବ । ରାଘବ ! ସେଠାରେ ତିଳକ ଓ ନକ୍ତମାଳ ବୃକ୍ଷମାନେ ଫୁଲରେ ପରିପୂର୍ଣ୍ଣ ହୋଇଅଛନ୍ତି

ଉତ୍ପଳାନି ଚ ଫୁଲ୍ଲାନି ପଙ୍କଜାନି ଚ ରାଘବ ।
ନ ତାନି କଶ୍ଚିନ୍ମାଲ୍ୟାନି ତତ୍ରାରୋପୟିତା ନରଃ । ୨୨ ।
ନ ଚ ବୈ ମ୍ଲାନତାଂ ଯାନ୍ତି ନ ଚ ଶୀର୍ଯ୍ୟନ୍ତି ରାଘବ ।
ମତଙ୍ଗଶିଷ୍ୟାସ୍ତତ୍ରାସନ୍ନୃଷୟଃ ସୁସମାହିତାଃ । ୨୩ ।
ତେଷାଂ ଭାରାଭିତପ୍ତାନାଂ ବନ୍ୟମାହରତାଂ ଗୁରୋଃ ।
ଯେ ପ୍ରପେତୁର୍ମହୀଂ ତୂର୍ଣ୍ଣଂ ଶରୀରାତ୍ ସ୍ୱେଦବିନ୍ଦବଃ । ୨୪ ।
ତାନି ଜାତାନି ମାଲ୍ୟାନି ମୁନୀନାଂ ତପସା ତଦା ।
ସ୍ୱେଦବିନ୍ଦୁସମୁତ୍ଥାନି ନ ବିନଶ୍ୟନ୍ତି ରାଘବ । ୨୫ ।
ତେଷାମଦ୍ୟାପି ତତ୍ରୈବ ଦୃଶ୍ୟତେ ପରିଚାରିଣୀ ।
ଶ୍ରମଣୀ ଶବରୀ ନାମ କାକୁତ୍ସ୍ଥ ଚିରଜୀବିନୀ । ୨୬ ।
ତ୍ୱାଂ ତୁ ଧର୍ମେ ସ୍ଥିତା ନିତ୍ୟଂ ସର୍ବଭୂତନମସ୍କୃତମ୍ ।
ଦୃଷ୍ଟ୍ୱା ଦେବୋପମଂ ରାମ ସ୍ୱର୍ଗଲୋକଂ ଗମିଷ୍ୟତି । ୨୭ ।
ତତସ୍ତଦ୍ରାମ ପମ୍ପାୟାସ୍ତୀରମାଶ୍ରିତ୍ୟ ପଶ୍ଚିମମ୍ ।
ଆଶ୍ରମସ୍ଥାନମତୁଲଂ ଗୁହ୍ୟଂ କାକୁତ୍ସ୍ଥ ପଶ୍ୟସି । ୨୮ ।

---

ଏବଂ ନୀଳୋତ୍ପଳ ଓ ପଦ୍ମପୁଷ୍ପମାନ ପ୍ରସ୍ଫୁଟିତ ହୋଇ ରହିଅଛି । ସେହି ସବୁ ଫୁଲକୁ ମାଳକରି ପିନ୍ଧିବାକୁ ସେଠାରେ କୌଣସି ମନୁଷ୍ୟ ନାହାନ୍ତି । ୨୧-୨୨ । ରାଘବ ! ସେହି ପୁଷ୍ପମାନେ ମଳିନ ହୋଇ ଯାଆନ୍ତି ନାହିଁ ବା ଝଡ଼ି ପଡ଼ନ୍ତି ନାହିଁ । ମତଙ୍ଗ ଋଷିଙ୍କର ଶିଷ୍ୟମାନେ ସେଠାରେ ଅତିଶୟ ସାବଧାନରେ ବାସକରନ୍ତି । ୨୩ । ସେମାନେ ଗୁରୁଙ୍କ ନିମନ୍ତେ ବନ୍ୟ ଫଳ ମୂଳ ସଂଗ୍ରହ କରି ଆଣିବାବେଳେ ଭାରପୀଡ଼ିତ ହୋଇ, ସେମାନଙ୍କ ଶରୀରରୁ ଯେଉଁ ଘର୍ମବିନ୍ଦୁ ବାହାରି ଶୀଘ୍ର ପୃଥିବୀରେ ପଡ଼ିଥିଲା, ସେହି ଘର୍ମବିନ୍ଦୁମାନ ସେତେବେଳେ ମୁନିମାନଙ୍କ ତପସ୍ୟାବଳରେ ମାଳ୍ୟରୂପରେ ପରିଣତ ହୋଇଥିଲା । ସୁତରାଂ ହେ ରାଘବ ! ଏହି ଘର୍ମବିନ୍ଦୁଜାତ ମାଳ୍ୟଗୁଡ଼ିକ କଦାପି ମଳିନ ବା ନଷ୍ଟ ହୁଅନ୍ତି ନାହିଁ । ୨୪-୨୫ । କାକୁତ୍ସ୍ଥ ! ଅଦ୍ୟାପି ସେହି ମୁନିମାନଙ୍କର ସେବାକାରିଣୀ ଗୋଟିଏ ଚିରଜୀବିନୀ 'ଶବରୀ' ନାମକ ଶ୍ରମଣୀ ସେଠାରେ ଦେଖାଯାଏ । । ୨୬ । ରାମ ! ସର୍ବଲୋକପୂଜ୍ୟ ଦେବତୁଲ୍ୟ ତୁମକୁ ଦେଖି ସେହି ଧର୍ମନିରତା ଶବରୀ ସ୍ୱର୍ଗକୁ ଗମନ କରିବ । ୨୭ । କକୁତ୍ସ୍ଥନନ୍ଦନ ରାମ ! ତୁମେ ସେହି ପମ୍ପାସରୋବରର ପଶ୍ଚିମ ତୀରକୁ ଗଲେହିଁ ମତଙ୍ଗମହର୍ଷିଙ୍କର ଗୋପନୀୟ ଓ ଅନୁପମ ଆଶ୍ରମ ଦେଖିପାରିବ । ୨୮ ।

ନ ତତ୍ରାକ୍ରମିତୁଂ ନାଗାଃ ଶକ୍ନୁବନ୍ତି ତମାଶ୍ରମମ୍ ।
ବିବିଧାସ୍ତତ୍ର ବୈ ନାଗା ବନେ ତସ୍ମିଂଶ୍ଚ ପର୍ବତେ ।୨୯ ।
ଋଷେସ୍ତତ୍ର ମତଙ୍ଗସ୍ୟ ବିଧାନାତ୍ତଚ୍ଚ କାନନମ୍ ।
ମତଙ୍ଗବନମିତ୍ୟେବ ବିଶ୍ରୁତଂ ରଘୁନନ୍ଦନ । ୩୦ ।
ତସ୍ମିନ୍ନନ୍ଦନସଂକାଶେ ଦେବାରଣ୍ୟୋପମେ ବନେ ।
ନାନାବିହଗସଂକୀର୍ଣେ ରଂସ୍ୟସେ ରାମ ନିର୍ବୃତଃ । ୩୧ ।
ଋଶ୍ୟମୂକଶ୍ଚ ପମ୍ପାୟାଃ ପୁରସ୍ତାତ୍ ପୁଷ୍ପିତଦ୍ରୁମଃ ।
ସୁଦୁଃଖାରୋହଣୋ ନାମ ଶିଶୁନାଗାଭିରକ୍ଷିତଃ ।୩୨ ।
ଉଦାରୋ ବ୍ରହ୍ମଣା ଚୈବ ପୂର୍ବକାଲେ ବିନିର୍ମିତଃ ।
ଶୟାନଃ ପୁରୁଷୋ ରାମ ତସ୍ୟ ଶୈଲସ୍ୟ ମୂର୍ଧନି । ୩୩।
ଯତ୍ ସ୍ୱପ୍ନେ ଲଭତେ ବିତ୍ତଂ ତତ୍ ପ୍ରବୁଦ୍ଧୋଽଧିଗଚ୍ଛତି ।
ନ ତ୍ୱେନଂ ବିଷମାଚାରଃ ପାପକର୍ମାଧିରୋହତି । ୩୪ ।
ଯସ୍ତୁ ତଂ ବିଷମାଚାରଃ ପାପକର୍ମାଧିରୋହତି ।
ତତ୍ରୈବ ପ୍ରହରନ୍ତ୍ୟେନଂ ସୁପ୍ତମାଦାୟ ରାକ୍ଷସାଃ । ୩୫ ।

---

ସେଠାରେ ହସ୍ତୀମାନେ ସେ ଆଶ୍ରମକୁ ଆକ୍ରମଣ କରିପାରନ୍ତି ନାହିଁ । ସେହି ବନରେ ଓ ସେହି ପର୍ବତରେ ନାନାଜାତିର ହସ୍ତୀ ଅଛନ୍ତି । ୨୯ । ରଘୁନନ୍ଦନ ! ମତଙ୍ଗ ଋଷିଙ୍କର ବିଧାନ ଅନୁସାରେ ସେହି ବନ 'ମତଙ୍ଗବନ' ନାମରେ ବିଖ୍ୟାତ ହୋଇଅଛି । ୩୦ । ରାମ ! ଏହି ବନ ନନ୍ଦନବନ ଏବଂ ଦେବାରଣ୍ୟସଦୃଶ ଅଟେ । ସେଠାରେ ନାନା ଜାତିର ପକ୍ଷୀ ପରିପୂର୍ଣ୍ଣ ହୋଇ ରହିଛନ୍ତି । ତୁମେ ଆନନ୍ଦମନରେ ସେଠାରେ ବିହାର କରିବ । ୩୧ । ପମ୍ପାର ସମ୍ମୁଖରେହିଁ ପୁଷ୍ପିତ ବୃକ୍ଷପୂର୍ଣ୍ଣ ଋଷ୍ୟମୂକ ପର୍ବତ ରହିଛି । ସେଥିରେ ଆରୋହଣ କରିବା ବଡ଼ କଷ୍ଟକର ଏବଂ ତାହାକୁ ଶ୍ରେଷ୍ଠ ଶ୍ରେଷ୍ଠ ହାତୀମାନେ ଜଗି ରହିଛନ୍ତି ।୩୨। ଏହି ଉନ୍ନତ ପର୍ବତ ପୂର୍ବେ ବ୍ରହ୍ମାଙ୍କଦ୍ୱାରାହିଁ ନିର୍ମିତ ହୋଇଥିଲା । ରାମ ! ସେହି ଶୈଳଶିଖର ଉପରେ ପ୍ରସୁପ୍ତ ବ୍ୟକ୍ତି ସ୍ୱପ୍ନରେ ଯେଉଁ ଧନ ଲାଭକରେ, ଜାଗରିତ ହେବାମାତ୍ରେ ସେ ସେହି ଧନ ପାଇଥାଏ । କିନ୍ତୁ ଦୁଷ୍ଟବୃତ୍ତି ପାପକର୍ମା ଲୋକ ଏ ପର୍ବତରେ ଆରୋହଣ କରିପାରେ ନାହିଁ । ୩୩-୩୪ । କୌଣସି ଅଧର୍ମାବୃତ୍ତି ପାପକର୍ମା ବ୍ୟକ୍ତି ସେଥିରେ ଆରୋହଣ କଲେ, ସେ ଶୋଇଥିବା ସମୟରେ ରାକ୍ଷସମାନେ ତାକୁ ଧରି ସେହିଠାରେ ପ୍ରହାର କରନ୍ତି । ୩୫ । ରାମ !

ତତ୍ରାପି ଶିଶୁନାଗାନାମାକ୍ରନ୍ଦଃ ଶ୍ରୂୟତେ ମହାନ୍ ।
କ୍ରୀଡ଼ତାଂ ରାମ ପମ୍ପାୟାଂ ମତଙ୍ଗାରଣ୍ୟବାସିନାମ୍ । ୩୬ ।
ସିକ୍ତା ରୁଧିରଧାରାଭିଃ ସଂହତ୍ୟ ପରମଦ୍ୱିପାଃ ।
ପ୍ରଚରନ୍ତି ପୃଥକ୍‌କୀର୍ଣ୍ଣା ମେଘବର୍ଣ୍ଣାସ୍ତରସ୍ୱିନଃ । ୩୭ ।
ତେ ତତ୍ର ପୀତ୍ୱା ପାନୀୟଂ ବିମଲଂ ଶୀତମବ୍ୟୟମ ।
ନିର୍ବୃତାଃ ସଂବିଗାହନ୍ତେ ବନାନି ବନଗୋଚରାଃ । ୩୮ ।
ଋକ୍ଷାଂଶ୍ଚ ଦ୍ୱୀପିନଶ୍ଚୈବ ନୀଲକୋମଳକପ୍ରଭାନ୍ ।
ରୁରୂନପେତାପଜୟାନ୍ ଦୃଷ୍ଟ୍ୱା ଶୋକଂ ପ୍ରହାସ୍ୟସି । ୩୯ ।
ରାମ ତସ୍ୟ ତୁ ଶୈଳସ୍ୟ ମହତୀ ଶୋଭତେ ଗୁହା ।
ଶିଳାପିଧାନା କାକୁତ୍ସ୍ଥ ଦୁଃଖଂ ଚାସ୍ୟାଃ ପ୍ରବେଶନମ୍ । ୪୦ ।
ତସ୍ୟା ଗୁହାୟାଃ ପ୍ରାଗ୍‌ଦ୍ୱାରେ ମହାନ୍ ଶୀତୋଦକୋ ହ୍ରଦଃ ।
ଫଲମୂଳାନ୍ୱିତୋ ରମ୍ୟୋ ନାନାମୃଗସମାବୃତଃ । ୪୧ ।
ତସ୍ୟାଂ ବସତି ସୁଗ୍ରୀବଶ୍ଚତୁର୍ଭିଃ ସହ ବାନରୈଃ ।
କଦାଚିଚ୍ଛିଖରେ ତସ୍ୟ ପର୍ବତସ୍ୟାବତିଷ୍ଠତେ । ୪୨ ।

---

ମତଙ୍ଗବନବାସୀ କ୍ଷୁଦ୍ର ଗଜମାନେ ପମ୍ପାସରୋବରରେ କ୍ରୀଡ଼ା କରୁଥିବାବେଳେ, ସେମାନଙ୍କର ମହାନ୍ କୋଳାହଳ ଶବ୍ଦ ସେଠାରୁ ଶୁଣାଯାଏ । ୩୬ । ସେଠାରେ ରକ୍ତଧାରାସିକ୍ତ ମେଘବର୍ଣ୍ଣ ବେଗଶାଳୀ ଉତ୍କୃଷ୍ଟ ମତ୍ତହସ୍ତୀମାନେ ଦଳବଦ୍ଧ ହୋଇ ଏବଂ ପୃଥକ୍ ପୃଥକ୍ ଇତସ୍ତତଃ ବିଚରଣ କରୁଥାଆନ୍ତି । ୩୭ । ସେହି ବନଚାରୀ ଗଜମାନେ ସେଠାରେ ପମ୍ପାର ନିର୍ମଳ ଶୀତଳ ଏବଂ ଅସରନ୍ତି ଜଳ ପାନକରି ପରମତୁଷ୍ଟ ହୋଇ ବନମଧ୍ୟରେ ପ୍ରବେଶ କରନ୍ତି । ୩୮ । ତୁମେ ସେଠାରେ ଭଲ୍ଲୁକ, ଦ୍ୱିପୀ ଏବଂ ନୀଳପଦ୍ମସଦୃଶ କୋମଳକାନ୍ତିବିଶିଷ୍ଟ ରୁରୁ ମୃଗମାନଙ୍କୁ ଦେଖି ଶୋକ ପରିତ୍ୟାଗ କରିବ । ଏହି ମୃଗମାନେ କେବେ କାହାରିଦ୍ୱାରା ବିଜିତ ବା ଉତ୍ପୀଡ଼ିତ ହୋଇ ନାହାନ୍ତି । ୩୯ । କକୁତ୍ସ୍ଥନନ୍ଦନ ରାମ ! ସେହି ପର୍ବତରେ ଏକ ପ୍ରକାଣ୍ଡ ଗୁହା ଶୋଭାପାଉଛି । ତାହା ପ୍ରସ୍ତରଖଣ୍ଡମାନଙ୍କଦ୍ୱାରା ଆଚ୍ଛନ୍ନ ହୋଇରହିଛି । ସେଥିରେ ପ୍ରବେଶ କରିବା ଅତି କଷ୍ଟକର । ୪୦ । ସେହି ଗୁହାର ସମ୍ମୁଖଦ୍ୱାରରେ ଶୀତଳ ଜଳପୂର୍ଣ୍ଣ ଏକ ବିଶାଳ ହ୍ରଦ ଅଛି । ତାହା ଫଳମୂଳପରିପୂର୍ଣ୍ଣ ନାନା ଜାତୀୟ ମୃଗ-ସମନ୍ୱିତ ଏବଂ ରମଣୀୟ ଅଟେ । ୪୧ । ସେହି ଗୁହାରେ ସୁଗ୍ରୀବ ଚାରିଗୋଟି ବାନରଙ୍କ ସହିତ ବାସକରନ୍ତି । ସେ ବେଳେ ବେଳେ ସେହି ପର୍ବତର ଶିଖର-

କବନ୍ଧସ୍ତ୍ୱନୁଶାସ୍ୟୈବଂ ତାବୁଭୌ ରାମଲକ୍ଷ୍ମଣୌ ।
ସ୍ରଗ୍ୱୀ ଭାସ୍କରବର୍ଣାଭଃ ଖେ ବ୍ୟରୋଚତ ବୀର୍ଯବାନ୍ । ୪୩ ।
ତଂ ତୁ ଖସ୍ଥଂ ମହାଭାଗଂ କବନ୍ଧଂ ରାମଲକ୍ଷ୍ମଣୌ ।
ପ୍ରସ୍ଥିତୌ ତ୍ୱଂ ବ୍ରଜସ୍ୱେତି ବାକ୍ୟମୂଚତୁରନ୍ତିକେ । ୪୪ ।
ଗମ୍ୟତାଂ କାର୍ଯସିଦ୍ଧ୍ୟର୍ଥମିତି ତାବବ୍ରବୀଚ୍ଚ ସଃ ।
ସୁପ୍ରୀତୌ ତାବନୁଜ୍ଞାପ୍ୟ କବନ୍ଧଃ ପ୍ରସ୍ଥିତସ୍ତଦା । ୪୫ ।

ସ ତତ୍କବନ୍ଧଃ ପ୍ରତିପଦ୍ୟ ରୂପମ୍
ବୃତଃ ଶ୍ରିୟା ଭାସ୍କରତୁଲ୍ୟଦେହଃ ।
ନିଦର୍ଶୟନ୍ ରାମମବେକ୍ଷ୍ୟ ଖସ୍ଥଃ
ସଖ୍ୟଂ କୁରୁଷ୍ୱେତି ତଦାଭ୍ୟୁବାଚ । ୪୬ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ଅରଣ୍ୟକାଣ୍ଡେ ଋଶ୍ୟମୂକମାର୍ଗକଥନମ୍
ନାମ ଦ୍ୱିସପ୍ତତିତମଃ ସର୍ଗଃ

---

ଦେଶରେ ମଧ୍ୟ ରହିଁ ଥାଆନ୍ତି" । ୪୨ । ବୀର୍ଯ୍ୟବାନ୍ କବନ୍ଧ ରାମ ଲକ୍ଷ୍ମଣ ଦୁହିଁଙ୍କୁ ଏହିପରି ଉପଦେଶ ଦେଇ ସୂର୍ଯ୍ୟସଦୃଶ କାନ୍ତିବଶିଷ୍ଟ ଏବଂ ମାଲ୍ୟଧାରୀହୋଇ ଆକାଶରେ ଶୋଭାପାଇଲା । ୪୩ । ରାମ ଲକ୍ଷ୍ମଣ ଦୁହେଁ ସେହି ଆକାଶବିହାରୀ ମହାଭାଗ କବନ୍ଧକୁ କହିଲେ, "ଆମେ ଦୁହେଁ ଯାଉଛୁଁ, ତୁମେ ମଧ୍ୟ ଯାଅ"। ୪୪ । କବନ୍ଧ ସେ ଦୁହିଁଙ୍କୁ କହିଲେ, "କାର୍ଯ୍ୟସିଦ୍ଧି ପାଇଁ ତୁମେମାନେ ଯାଅ ।" ଅନନ୍ତର ପ୍ରୀତ ରାମ ଲକ୍ଷ୍ମଣଙ୍କଠାରୁ ବିଦାୟ ନେଇ କବନ୍ଧ ଚାଲିଗଲା । ୪୫ । କବନ୍ଧ ବିଦାୟ ନେଇ ପୂର୍ବରୂପ ଲାଭକରି ଶୋଭାନ୍ୱିତ ଏବଂ ସୂର୍ଯ୍ୟସଦୃଶ ଦେହବିଶିଷ୍ଟ ହୋଇ ଆକାଶରେ ଥାଇ ରାମଙ୍କ ଆଡ଼କୁ ଚାହିଁ ତାଙ୍କୁ ଉପଦେଶ ଦେଇ କହିଲେ, "(ସୁଗ୍ରୀବଙ୍କ ସହିତ) ସଖ୍ୟ ସ୍ଥାପନ କର" । ୪୬ ।

---

# ଚତୁଃସପ୍ତତିତମଃ ସର୍ଗଃ

## ଶବରୀସ୍ୱର୍ଗପ୍ରାପ୍ତିଃ

ତୌ କବନ୍ଧେନ ତଂ ମାର୍ଗଂ ପମ୍ପାୟା ଦର୍ଶିତଂ ବନେ ।
ପ୍ରତସ୍ଥତୁର୍ଦିଶଂ ଗୃହ୍ୟ ପ୍ରତୀଚୀଂ ନୃବରାତ୍ମଜୌ ।୧।
ତୌ ଶୈଳେଷ୍ୱାଚିତାନେକାନ୍ କ୍ଷୌଦ୍ରକଳ୍ପଫଳାନ୍ ଦ୍ରୁମାନ୍ ।
ବୀକ୍ଷନ୍ତୌ ଜଗ୍ମତୁର୍ଦ୍ରଷ୍ଟୁଂ ସୁଗ୍ରୀବଂ ରାମଲକ୍ଷ୍ମଣୌ । ୨ ।
କୃତ୍ୱା ଚ ଶୈଳପୃଷ୍ଠେ ତୁ ତୌ ବାସଂ ରାମ ଲକ୍ଷ୍ମଣୌ ।
ପମ୍ପାୟାଃ ପଶ୍ଚିମଂ ତୀରଂ ରାଘବାବୁପତସ୍ଥତୁଃ । ୩ ।
ତୌ ପୁଷ୍କରିଣ୍ୟାଃ ପମ୍ପାୟାସ୍ତୀରମାସାଦ୍ୟ ପଶ୍ଚିମମ୍ ।
ଅପଶ୍ୟତାଂ ତତସ୍ତତ୍ର ଶବର୍ଯା ରମ୍ୟମାଶ୍ରମମ୍ । ୪ ।
ତୌ ତମାଶ୍ରମମାସାଦ୍ୟ ଦ୍ରୁମୈର୍ବହୁଭିରାବୃତମ୍ ।
ସୁରମ୍ୟମଭିବୀକ୍ଷନ୍ତୌ ଶବରୀମଭ୍ୟୁପେୟତୁଃ । ୫ ।
ତୌ ଚ ଦୃଷ୍ଟ୍ୱା ତଦା ସିଦ୍ଧା ସମୁତ୍ଥାୟ କୃତାଞ୍ଜଳିଃ ।
ରାମସ୍ୟ ପାଦୌ ଜଗ୍ରାହ ଲକ୍ଷ୍ମଣସ୍ୟ ଚ ଧୀମତଃ । ୬ ।

---

## ୭୪ତମ ସର୍ଗ

### ( ଶବରୀର ସ୍ୱର୍ଗପ୍ରାପ୍ତି )

ଅନନ୍ତର ସେହି ରାଜକୁମାର ଦୁହେଁ କବନ୍ଧଦ୍ୱାରା ପ୍ରଦର୍ଶିତ ପମ୍ପାମାର୍ଗକୁ ଧରି ବନରେ ପଶ୍ଚିମ ଦିଗରେ ଯାତ୍ରାକଲେ । ୧ । ରାମ ଲକ୍ଷ୍ମଣ ସୁଗ୍ରୀବଙ୍କ ଦେଖିବାକୁ ଯିବାବେଳେ ପର୍ବତସ୍ଥ ମଧୁତୁଲ୍ୟ ସୁସ୍ୱାଦୁ ଫଳବୃକ୍ଷମାନ ଦେଖି ଦେଖି ଗଲେ । ୨ । ରାମ ଲକ୍ଷ୍ମଣ ପର୍ବତପୃଷ୍ଠରେ ବାସକରି ଶେଷରେ ଯାଇ ପମ୍ପାର ପଶ୍ଚିମ କୂଳରେ ଉପସ୍ଥିତ ହେଲେ । ୩ । ସେ ଦୁହେଁ ପମ୍ପାସରୋବରର ପଶ୍ଚିମ କୂଳରେ ପହଞ୍ଚି ସେଠାରେ ଶବରୀର ରମଣୀୟ ଆଶ୍ରମ ଦେଖିଲେ । ୪ । ସେମାନେ ବହୁ ବୃକ୍ଷ-ପରିବୃତ ସେହି ରମଣୀୟ ଆଶ୍ରମରେ ପହଞ୍ଚି ତାହାକୁ ଦେଖି ଦେଖି ଯାଇଁ ଯାଇଁ ଶବରୀ ନିକଟରେ ପହଞ୍ଚିଲେ । ୫ । ସେହି ସିଦ୍ଧା ଶବରୀ ସେ ଦୁହିଙ୍କୁ ଦେଖି ଉଠିପଡ଼ି କୃତାଞ୍ଜଳି ହୋଇ ରାମଙ୍କର ଏବଂ ଧୀମାନ୍ ଲକ୍ଷ୍ମଣଙ୍କର ଚରଣ ବନ୍ଦନା କଲା ।୬।

ପାଦ୍ୟମାଚମନୀୟଂ ଚ ସର୍ବଂ ପ୍ରାଦାଦ୍ୟଥାବିଧି ।
ତାମୁବାଚ ତତୋ ରାମଃ ଶ୍ରମଣୀଂ ସଂଶିତବ୍ରତାମ୍ । ୭ ।
କଚ୍ଚିତ୍ତେ ନିର୍ଜିତା ବିଘ୍ନାଃ କଚ୍ଚିତ୍ତେ ବର୍ଦ୍ଧତେ ତପଃ ।
କଚ୍ଚିତ୍ତେ ନିୟତଃ କ୍ରୋଧ ଆହାରଶ୍ଚ ତପୋଧନେ । ୮ ।
କଚ୍ଚିତ୍ତେ ନିୟମାଃ ପ୍ରାପ୍ତାଃ କଚ୍ଚିତ୍ତେ ମନସଃ ସୁଖମ୍ ।
କଚ୍ଚିତ୍ତେ ଗୁରୁଶୁଶ୍ରୂଷା ସଫଳା ଚାରୁଭାଷିଣି । ୯ ।
ରାମେଣ ତାପସୀ ପୃଷ୍ଟା ସା ସିଦ୍ଧା ସିଦ୍ଧସଂମତା ।
ଶଶଂସ ଶବରୀ ବୃଦ୍ଧା ରାମାୟ ପ୍ରତ୍ୟୁପସ୍ଥିତା । ୧୦ ।
ଅଦ୍ୟପ୍ରାପ୍ତା ତପଃସିଦ୍ଧିସ୍ତବ ସଂଦର୍ଶନାନ୍ମୟା ।
ଅଦ୍ୟ ମେ ସଫଳଂ ତପ୍ତଂ ଗୁରବଶ୍ଚ ସୁପୂଜିତାଃ । ୧୧ ।
ଅଦ୍ୟ ମେ ସଫଳଂ ଜନ୍ମ ସ୍ୱର୍ଗଶ୍ଚୈବ ଭବିଷ୍ୟତି ।
ତ୍ୱୟି ଦେବବରେ ରାମ ପୂଜିତେ ପୁରୁଷର୍ଷଭ । ୧୨ ।
ଚକ୍ଷୁଷା ତବ ସୌମ୍ୟେନ ପୂତାସ୍ମି ରଘୁନନ୍ଦନ ।
ଗମିଷ୍ୟାମ୍ୟକ୍ଷୟାଁଲ୍ଲୋକାଂସ୍ତ୍ୱତ୍ପ୍ରସାଦାଦରିନ୍ଦମ । ୧୩ ।

---

ସେ ଯଥାବିଧାନରେ ସେମାନଙ୍କୁ ପାଦ୍ୟ ଏବଂ ଆଚମନୀୟସମୂହ ପ୍ରଦାନ କଲା । ଅନନ୍ତର ରାମ ସେହି ଧର୍ମନିରତା ତପସ୍ୱିନୀକୁ କହିଲେ । ୭। "ହେ ତପୋଧନେ ! ତୁମ୍ଭର ବିଘ୍ନସମୂହ ଦୂର ହୋଇଛି ତ ? ତପୋବୃଦ୍ଧି ହେଉଛି ତ ? ତୁମେ କ୍ରୋଧ ଏବଂ ଆହାରକୁ ସଂଯତ କରିଛ ତ ?।୮। ହେ ମଧୁରଭାଷିଣି ! ତୁମେ ନିୟମ ପାଳନ କରୁଛ ତ ? ତୁମ୍ଭର ମନ ସୁଖୀ ଅଛି ତ ? ଏବଂ ତୁମ୍ଭର ଗୁରୁସେବା ଫଳବତୀ ହୋଇଅଛି ତ" ? ୯ । ରାମ ଏପରି ପଚାରିବାରୁ ସିଦ୍ଧମାନଙ୍କଦ୍ୱାରା ସମ୍ମାନିତା ତପଃସିଦ୍ଧା ବୃଦ୍ଧା ଶବରୀ ରାମଙ୍କ ସମ୍ମୁଖରେ ଠିଆହୋଇ କହିଲା । ୧୦ । "ଆଜି ତୁମ୍ଭର ଦର୍ଶନ ପାଇବା ଦ୍ୱାରା ମୋର ତପଃସିଦ୍ଧି ଲାଭହେଲା । ଆଜି ମୋର ତପସ୍ୟା ସଫଳ ହେଲା ଏବଂ ଗୁରୁପୂଜା ସାର୍ଥକ ହେଲା । ୧୧ । ହେ ନରଶ୍ରେଷ୍ଠ ରାମ ! ତୁମେ ଦେବତା-ମାନଙ୍କମଧ୍ୟରେ ଶ୍ରେଷ୍ଠ । ଆଜି ତୁମ୍ଭର ପୂଜା କଲେ ମୋର ଜନ୍ମ ସଫଳ ହେବ ଏବଂ ସ୍ୱର୍ଗଲାଭ ହେବ । ୧୨ । ହେ ଶତ୍ରୁସୂଦନ ରଘୁନନ୍ଦନ ! ତୁମ୍ଭର ଶୁଭଦୃଷ୍ଟିପାତ ଦ୍ୱାରା ମୁଁ ପବିତ୍ର ହୋଇଅଛି ! ତୁମ ଅନୁଗ୍ରହରୁ ମୁଁ ଅକ୍ଷୟ ଲୋକମାନଙ୍କୁ ଯିବି । ।୧୩।

ଚିତ୍ରକୂଟଂ ତ୍ୱୟି ପ୍ରାପ୍ତେ ବିମାନୈରତୁଲପ୍ରଭୈଃ ।
ଇତସ୍ତେ ଦିବମାରୂଢ଼ା ଯାନହଂ ପର୍ଯ୍ୟଚାରିଷମ୍ । ୧୪ ।
ତୈଶ୍ଚାହମୁକ୍ତା ଧର୍ମଜ୍ଞୈର୍ମହାଭାଗୈର୍ମହର୍ଷିଭିଃ ।
ଆଗମିଷ୍ୟତି ତେ ରାମଃ ସୁପୁଣ୍ୟମିମମାଶ୍ରମମ୍ । ୧୫ ।
ସ ତେ ପ୍ରତିଗ୍ରହୀତବ୍ୟଃ ସୌମିତ୍ରିସହିତୋଽତିଥିଃ ।
ତଂ ଚ ଦୃଷ୍ଟ୍ୱା ବରାଁଲ୍ଲୋକାନକ୍ଷୟାଂସ୍ତ୍ୱଂ ଗମିଷ୍ୟସି । ୧ ।
ମୟା ତୁ ବିବିଧଂ ବନ୍ୟଂ ସଂଚିତଂ ପୁରୁଷର୍ଷଭ ।
ତବାର୍ଥେ ପୁରୁଷବ୍ୟାଘ୍ର ପମ୍ପାୟାସ୍ତୀରସମ୍ଭବମ୍ । ୧୭ ।
ଏବମୁକ୍ତଃ ସ ଧର୍ମାତ୍ମା ଶବର୍ଯା ଶବରୀମିଦମ୍ ।
ରାଘବଃ ପ୍ରାହ ବିଜ୍ଞାନେ ତାଂ ନିତ୍ୟମବହିଷ୍କୃତାମ୍ । ୧୮ ।
ଦନୋଃ ସକାଶାତ୍ତତ୍ତ୍ୱେନ ପ୍ରଭାବଂ ତେ ମହାତ୍ମନଃ ।
ଶ୍ରୁତଂ ପ୍ରତ୍ୟକ୍ଷମିଚ୍ଛାମି ସଂଦ୍ରଷ୍ଟୁଂ ଯଦି ମନ୍ୟସେ । ୧୯ ।
ଏତତ୍ତୁ ବଚନଂ ଶ୍ରୁତ୍ୱା ରାମବକ୍ତ୍ରାଦ୍ୱିନିଃସୃତମ୍ ।
ଶବରୀ ଦର୍ଶୟାମାସ ତାବୁଭୌ ତଦ୍‌ବନଂ ମହତ୍ । ୨୦ ।

---

ମୁଁ ଯେଉଁମାନଙ୍କର ପରିଚର୍ଯ୍ୟା କରୁଥିଲି ସେମାନେ, ତୁମେ ଚିତ୍ରକୂଟରେ ଉପସ୍ଥିତ ହେବାମାତ୍ରେ, ଅନୁପମ ପ୍ରଭାବଶିଷ୍ଟ ବିମାନମାନଙ୍କରେ ଆରୋହଣ କରି ଏଠାରୁ ସ୍ୱର୍ଗକୁ ଆରୋହଣ କରିଅଛନ୍ତି । ୧୪ । ସେହି ଧର୍ମଜ୍ଞ ମହାଭାଗ ମହର୍ଷିମାନେ ମୋତେ କହିଥିଲେ ଯେ 'ତୋର ରାମ ଏହି ପବିତ୍ର ଆଶ୍ରମକୁ ଆସିବେ । ୧୫ । ତୁ ଲକ୍ଷ୍ମଣଙ୍କ ସହିତ ସେହି ଅତିଥିଙ୍କୁ ଆଦରରେ ପୂଜା କରିବୁ । ତାଙ୍କର ଦର୍ଶନ ପାଇ ତୁ ଅକ୍ଷୟ ଲୋକ ସକଳ ଲାଭ କରିବୁ' । ୧୬ । ହେ ନରଶ୍ରେଷ୍ଠ ! ମୁଁ ତୁମ ନିମନ୍ତେ ପମ୍ପାତୀରଜାତ ନାନା ଜାତୀୟ ବନ୍ୟ ଦ୍ରବ୍ୟ ସଂଚୟ କରି ରଖିଅଛି" । ୧୭ । ଶବରୀ ଏହିପରି କହିବାଉତ୍ତାରୁ ଧର୍ମାତ୍ମା ରାମ ବ୍ରହ୍ମଜ୍ଞାନରେ ସ୍ଥିର ରହିଥିବା ସେହି ଶବରୀକୁ କହିଲେ । ୧୮ । "ମୁଁ ମହାତ୍ମା କବନ୍ଧ ଦାନବ ନିକଟରୁ ତୁମ ପ୍ରଭାବ ଶୁଣିଅଛି । ଏବେ ଯଦି ତୁମେ ଉପଯୁକ୍ତ ମନେକର, ତେବେ ମୁଁ ତାହା ପ୍ରତ୍ୟକ୍ଷ ଦେଖିବାକୁ ଇଚ୍ଛାକରେଁ" । ୧୯ । ରାମଙ୍କ ମୁଖନିଃସୃତ ବଚନ ଶୁଣି ସେ ସେ ଦୁହିଁଙ୍କୁ ସେହି ବିଶାଳ ବନ ଦେଖାଇଲା । ୨୦ । ସେ କହିଲା,

ପଶ୍ୟ ମେଘଘନପ୍ରଖ୍ୟଂ ମୃଗପକ୍ଷିସମାକୁଳମ୍ ।
ମତଙ୍ଗବନମିତ୍ୟେବ ବିଶ୍ରୁତଂ ରଘୁନନ୍ଦନ ।୨୧।
ଇହ ତେ ଭାବିତାତ୍ମାନୋ ଗୁରବୋ ମେ ମହାବନେ ।
ଜୁହବାଂଚକ୍ରିରେ ଦେହଂ ମନ୍ତ୍ରବନ୍ମନ୍ତ୍ରପୂଜିତମ୍ ।୨୨।
ଇୟଂ ପ୍ରତ୍ୟକ୍ସ୍ଥଲୀ ବେଦିର୍ଯତ୍ର ତେ ମେ ସୁସତ୍କୃତାଃ ।
ପୁଷ୍ପୋପହାରଂ କୁର୍ବନ୍ତି ଶ୍ରମାଦୁଦ୍ବେପିଭିଃ କରୈଃ ।୨୩।
ତେଷାଂ ତପଃପ୍ରଭାବେଣ ପଶ୍ୟାଦ୍ୟାପି ରଘୂଦ୍ବହ ।
ଦ୍ୟୋତୟନ୍ତି ଦିଶଃ ସର୍ବା ଶ୍ରିୟା ବେଦ୍ୟୋଽତୁଲପ୍ରଭାଃ ।୨୪।
ଅଶକ୍ନୁବଦ୍ଭିସ୍ତୈର୍ଗନ୍ତୁମୁପବାସଶ୍ରମାଲସୈଃ ।
ଚିନ୍ତିତେଽଭ୍ୟାଗତାନ୍ ପଶ୍ୟ ସହିତାନ୍ ସପ୍ତସାଗରାନ୍ ।୨୫।
କୃତାଭିଷେକୈସ୍ତୈର୍ନ୍ୟସ୍ତା ବଲ୍କଲାଃ ପାଦପେଷ୍ୱିହ ।
ଅଦ୍ୟାପି ନାବଶୁଷ୍ୟନ୍ତି ପ୍ରଦେଶେ ରଘୁନନ୍ଦନ ।୨୬।
ଦେବକାର୍ଯ୍ୟାଣି କୁର୍ବଦ୍ଭିର୍ଯାନୀମାନି କୃତାନି ବୈ ।
ପୁଷ୍ପୈଃ କୁବଲୟୈଃ ସାର୍ଧଂ ମ୍ଲାନତ୍ୱଂ ନୋପଯାନ୍ତି ବୈ ।୨୭।

---

"ହେ ରଘୁନନ୍ଦନ ମୃଗ ଓ ପକ୍ଷିଗଣସମାକୁଳ ଏବଂ ନିବିଡ଼ ମେଘସଦୃଶ ଏହି ବନକୁ ଦେଖ । ଏହା 'ମତଙ୍ଗବନ' ନାମରେ ବିଖ୍ୟାତ ।୨୧। ଏହି ମହାବନରେ ମୋର ବିଶୁଦ୍ଧଚିତ୍ତ ଗୁରୁମାନେ ମନ୍ତ୍ର ଉଚ୍ଚାରଣପୂର୍ବକ ବେଦ-ମନ୍ତ୍ରାନୁସାରେ ଦେହକୁ ଆହୁତିରୂପେ ପ୍ରଦାନ କରିଥିଲେ ।୨୨। ଏହି ବେଦିର ନାମ ପ୍ରତ୍ୟକ୍ସ୍ଥଳୀ । ମୋର ପରମପୂଜିତ ଗୁରୁମାନେ ଏହିଠାରେ ଶ୍ରମ-ହେତୁରୁ ଥରୁଥିବା ହାତରେ ଦେବତାମାନଙ୍କୁ ପୁଷ୍ପାଦି ଉପହାର ଦାନ କରୁଥିଲେ ।୨୩। ହେ ରଘୁବଂଶସମ୍ଭୂତ ! ଦେଖ, ସେମାନଙ୍କର ତପୋବଳଦ୍ୱାରା ଆଜି ମଧ୍ୟ ଏହି ଅନୁପମ ପ୍ରଭାବିଶିଷ୍ଟ ବେଦିଗୁଡ଼ିକ ନିଜର ଦୀପ୍ତିଦ୍ୱାରା ସମସ୍ତ ଦିଗକୁ ଉଦ୍ଭାସିତ କରୁଅଛନ୍ତି ।୨୪। ସେମାନେ ଉପବାସକ୍ଲମହେତୁରୁ ଅଳସ ହୋଇ, ଯିବାକୁ ଅସମର୍ଥହେବାରୁ ସେମାନଙ୍କର ଚିନ୍ତାମାତ୍ରେହିଁ ଏହି ସପ୍ତସାଗର ଏଠାରେ ଆସି ଏକତ୍ର ହୋଇଅଛନ୍ତି ଦେଖ ।୨୫। ହେ ରଘୁନନ୍ଦନ ! ସେମାନେ ସ୍ନାନ କରିସାରି ଏ ସ୍ଥାନରେ ବୃକ୍ଷମାନଙ୍କରେ ଯେଉଁ ବଲ୍କଳ ସବୁ ଶୁଖାଇଥିଲେ ସେ ସବୁ ଏ ପର୍ଯ୍ୟନ୍ତ ଶୁଖି ନାହିଁ ।୨୬। ସେମାନେ ଦେବକାର୍ଯ୍ୟ ସାଧନନିମନ୍ତେ ନୀଳୋତ୍ପଳ ସହିତ ଏହି ଯେଉଁ ଫୁଲସବୁ ଦେବତାମାନଙ୍କୁ ଅର୍ପଣ କରିଥିଲେ, ତାହା ଅଦ୍ୟାପି ମଳିନ ହୋଇ ନାହିଁ ।୨୭। ତୁମେ ତ ଏ ସମସ୍ତ ବନ ଦେଖିଲ ଏବଂ ଯାହା

କୃତ୍ସ୍ନଂ ବନମିଦଂ ଦୃଷ୍ଟଂ ଶ୍ରୋତବ୍ୟଂ ଚ ଶ୍ରୁତଂ ତ୍ୱୟା ।
ତଦିଚ୍ଛାମ୍ୟଭ୍ୟନୁଜ୍ଞାତା ତ୍ୟକ୍ଷ୍ୟେମେତତ୍କଳେବରମ୍ । ୨୮ ।
ତେଷାମିଚ୍ଛାମ୍ୟହଂ ଗନ୍ତୁଂ ସମୀପଂ ଭାବିତାତ୍ମନାମ୍ ।
ମୁନୀନାମାଶ୍ରମୋ ଯେଷାମହଂ ଚ ପରିଚାରିଣୀ । ୨୯ ।
ଧର୍ମିଷ୍ଠଂ ତୁ ବଚଃ ଶ୍ରୁତ୍ୱା ରାଘବଃ ସହଲକ୍ଷ୍ମଣଃ ।
ପ୍ରହର୍ଷମତୁଲଂ ଲେଭେ ଆଶ୍ଚର୍ଯ୍ୟମିତି ଚାବ୍ରବୀତ୍ । ୩୦ ।
ତାମୁବାଚ ତତୋ ରାମଃ ଶବରୀଂ ସଂଶିତବ୍ରତାମ୍ ।
ଅର୍ଚ୍ଚିତୋଽହଂ ତ୍ୱୟା ଭକ୍ତ୍ୟା ଗଚ୍ଛ କାମଂ ଯଥାସୁଖମ୍ । ୩୧ ।
ଇତ୍ୟୁକ୍ତା ଜଟିଳା ବୃଦ୍ଧା ଚୀରକୃଷ୍ଣାଜିନାମ୍ବରା ।
ତସ୍ମିନ୍ମୁହୂର୍ତ୍ତେ ଶବରୀ ଦେହଂ ଜୀର୍ଣ୍ଣଂ ଜିହାସତୀ । ୩୨ ।
ଅନୁଜ୍ଞାତା ତୁ ରାମେଣ ହୁତ୍ୱାତ୍ମାନଂ ହୁତାଶନେ ।
ଜ୍ୱଲତ୍ପାବକସଂକାଶା ସ୍ୱର୍ଗମେବ ଜଗାମ ସା । ୩୩ ।
ଦିବ୍ୟାଭରଣସଂଯୁକ୍ତା ଦିବ୍ୟମାଲ୍ୟାନୁଲେପନା ।
ଦିବ୍ୟାମ୍ବରଧରା ତତ୍ର ବଭୂବ ପ୍ରିୟଦର୍ଶନା । ୩୪ ।

---

ଶୁଣିବାର କଥା ତାହା ଶୁଣିଲ । ଏବେ ତୁମ୍ଭର ଅନୁମତି ନେଇ ମୁଁ ଏ ଶରୀର ତ୍ୟାଗ କରିବାକୁ ଇଚ୍ଛାକରୁଅଛି । ୨୮ । ଯେଉଁ ମୁନିମାନଙ୍କର ଏ ଆଶ୍ରମ ଏବଂ ଯେଉଁମାନଙ୍କର ମୁଁ ସେବାକାରିଣୀ ଥିଲି ସେହି ମହାତ୍ମାମାନଙ୍କ ନିକଟକୁ ମୁଁ ଯିବା ପାଇଁ ଇଚ୍ଛାକରୁଅଛି" । ୨୯ । ରାମ ଲକ୍ଷ୍ମଣଙ୍କ ସହିତ ଏହି ଧର୍ମଯୁକ୍ତ କଥା ଶୁଣି ଅନୁପମ ଆନନ୍ଦ ଲାଭକଲେ ଏବଂ କହିଲେ, "ବଡ଼ ଆଶ୍ଚର୍ଯ୍ୟର କଥା" । ୩୦ । ଅନନ୍ତର ରାମ ସେହି ଦୃଢ଼ବ୍ରତା ଶବରୀକୁ କହିଲେ, "ମୁଁ ଭକ୍ତି ସହକାରେ ତୁମ୍ଭଦ୍ୱାରା ଅର୍ଚ୍ଚିତ ହୋଇଅଛି । ଏବେ ତୁମ୍ଭେ ଯଥାସୁଖରେ ନିଜର ଅଭିଳଷିତ ସ୍ଥାନକୁ ଗମନକର" । ୩୧ । ରାମ ଏହିପରି କହି ଅନୁଜ୍ଞା ଦେବା-ଉତ୍ତାରୁ ଜଟା, କୃଷ୍ଣାଜିନ ଏବଂ ବଲ୍କଳଧାରିଣୀ ସେହି ବୃଦ୍ଧା ଶବରୀ ସେହି ମୁହୂର୍ତ୍ତରେ ନିଜର ଜୀର୍ଣ୍ଣ କଳେବରକୁ ତ୍ୟାଗ କରିବାକୁ ଇଚ୍ଛାକରି ନିଜକୁ ଅଗ୍ନିରେ ଆହୁତି ଦେଇ ଏବଂ ପ୍ରଜ୍ୱଳିତ ଅଗ୍ନିସଦୃଶ ହୋଇ ସ୍ୱର୍ଗକୁ ଗମନକଲା । ୩୨-୩୩ । ସେତେବେଳେ ସେ ଦିବ୍ୟ ଅଳଙ୍କାରଶୋଭିତ, ଦିବ୍ୟ ପୁଷ୍ପମାଳା ଅନୁଲେପନ-ଧାରିଣୀ ହୋଇ ଏବଂ ଦିବ୍ୟ ବସ୍ତ୍ର ପରିଧାନ କରି ଦେଖିବାକୁ ଅତିଶୟ ମନୋହାରିଣୀ

ବିରାଜୟନ୍ତୀ ତଂ ଦେଶଂ ବିଦ୍ୟୁତ୍‌ସୌଦାମନୀ ଯଥା ।
ଯତ୍ର ତେ ସୁକୃତାତ୍ମାନୋ ବିହରନ୍ତି ମହର୍ଷୟଃ । ୩୫ ।
ତତ୍ପୁଣ୍ୟଂ ଶବରୀ ସ୍ଥାନଂ ଜଗାମାତ୍ମସମାଧିନା* । ୩୬ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ଅରଣ୍ୟକାଣ୍ଡେ ଶବରୀସ୍ୱର୍ଗପ୍ରାପ୍ତି ର୍ନାମ ଚତୁଃସପ୍ତତିତମଃ ସର୍ଗଃ

---

ହୋଇଗଲା । ୩୪ । ଯେଉଁଠାରେ ତାହାର ଗୁରୁ କୃତାତ୍ମା ମହର୍ଷିମାନେ ବିହରଣ କରୁଥିଲେ ସେ ଶବରୀ ସେହି ପୁଣ୍ୟ ସ୍ଥାନକୁ ନିଜ ସମାଧିପ୍ରଭାବରେ ଗମନ କଲା । ସେତେବେଳେ ସେ ସେହି ସ୍ଥାନକୁ ଦୀପ୍ତିଶାଳୀ ବିଦ୍ୟୁତ୍‌ସଦୃଶ ଆଲୋକିତ କରିଦେଇଥିଲା । ୩୫-୩୬ ।

---

* ପଦ୍ମପୁରାଣରେ ବର୍ଣ୍ଣିତ ଅଛି ଯେ ଶବରୀ ଫଳସବୁ ପ୍ରଥମେ ନିଜେ ଚାଖି ଯେଉଁଗୁଡ଼ିକ ସୁମିଷ୍ଟ ଜଣାଗଲା ସେଗୁଡ଼ିକ ରାମଙ୍କୁ ଦେଇଥିଲା ଏବଂ ରାମ ତାହା ଆଦରରେ ଖାଇଥିଲେ । ଭାଷାରାମାୟଣମାନଙ୍କରେ ଏହି ବିଷୟର ଉଲ୍ଲେଖ ଅଛି । ମାତ୍ର ଏ ମୂଳଗ୍ରନ୍ଥରେ ସେ ବିଷୟ ଲେଖା ନାହିଁ ।

# ପଞ୍ଚସପ୍ତତିତମଃ ସର୍ଗଃ

## ପମ୍ପାଦର୍ଶନମ୍

ଏବଂ ତୁ ତସ୍ୟାଂ ଯାତାୟାଂ ଶବର୍ଯାଂ ସ୍ୱେନ ତେଜସା ।
ଲକ୍ଷ୍ମଣେନ ସହ ଭ୍ରାତ୍ରା ଚିନ୍ତୟାମାସ ରାଘବଃ । ୧ ।
ସ ଚିନ୍ତୟିତ୍ୱା ଧର୍ମାତ୍ମା ପ୍ରଭାବଂ ତଂ ମହାତ୍ମନାମ୍ ।
ହିତକାରଣମେକାଗ୍ରଂ ଲକ୍ଷ୍ମଣଂ ରାଘବୋଽବ୍ରବୀତ୍ । ୨ ।
ଦୃଷ୍ଟୋଽୟମାଶ୍ରମଃ ସୌମ୍ୟ ବହ୍ୱାଶ୍ଚର୍ଯଃ କୃତାତ୍ମନାମ୍ ।
ବିଶ୍ୱସ୍ତମୃଗଶାର୍ଦ୍ଦୂଲୋ ନାନାବିହଗସେବିତଃ । ୩ ।
ସପ୍ତାନାଂ ଚ ସମୁଦ୍ରାଣାମେଷୁ ତୀର୍ଥେଷୁ ଲକ୍ଷ୍ମଣ ।
ଉପସ୍ପୃଷ୍ଟଂ ଚ ବିଧିବତ୍ପିତରଶ୍ଚାପି ତର୍ପିତାଃ । ୪ ।
ପ୍ରନଷ୍ଟମଶୁଭଂ ତତ୍ତତ୍କଲ୍ୟାଣଂ ସମୁପସ୍ଥିତମ୍ ।
ତେନ ତତ୍ତ୍ୱେନ ହୃଷ୍ଟଂ ମେ ମନୋ ଲକ୍ଷ୍ମଣ ସଂପ୍ରତି । ୫ ।
ହୃଦୟେ ହି ନରବ୍ୟାଘ୍ର ଶୁଭମାବର୍ତ୍ତିଷ୍ୟତି ।
ତଦାଗଚ୍ଛ ଗମିଷ୍ୟାବଃ ପମ୍ପାଂ ତାଂ ପ୍ରିୟଦର୍ଶନାମ୍ । ୬ ।

---

## ୭୫ତମ ସର୍ଗ

### ( ରାମ ଲକ୍ଷ୍ମଣଙ୍କର ପମ୍ପାଦର୍ଶନ )

ଶବରୀ ନିଜ ତେଜପ୍ରଭାବରେ ସ୍ୱର୍ଗକୁ ଯିବାଉତ୍ତାରୁ ରାମ ଭାଇ ଲକ୍ଷ୍ମଣଙ୍କ ସହିତ ଚିନ୍ତା କରିବାକୁ ଲାଗିଲେ । ୧ । ଧର୍ମାତ୍ମା ରାଘବ ମହାତ୍ମା ମହର୍ଷିମାନଙ୍କର ସେହି ପ୍ରଭାବ ଚିନ୍ତାକରି, ହିତକାରୀ ଓ ଏକାଗ୍ରଚିତ୍ତ ଲକ୍ଷ୍ମଣଙ୍କୁ କହିଲେ । ୨ । "ସୌମ୍ୟ ! ସେହି ବିଶୁଦ୍ଧଚିତ୍ତ ମହର୍ଷିମାନଙ୍କର ବହୁ ଆଶ୍ଚର୍ଯ୍ୟକର ଏହି ଆଶ୍ରମ ଆମେମାନେ ଦେଖିଲେଇଁ । ଏଠାରେ ମୃଗ ଓ ବ୍ୟାଘ୍ରମାନେ ବିଶ୍ୱସ୍ତଭାବରେ ବିଚରଣ କରୁଛନ୍ତି ଏବଂ ନାନା ଜାତୀୟ ପକ୍ଷୀମାନେ ବାସକରୁଛନ୍ତି । ୩ । ଲକ୍ଷ୍ମଣ ! ସପ୍ତସମୁଦ୍ରମାନେ ସମନ୍ୱିତ ହୋଇଥିବା ଏହି ତୀର୍ଥରେ ଆମେମାନେ ସ୍ନାନ କଲେଇଁ ଏବଂ ଯଥାବିଧାନରେ ପିତୃମାନଙ୍କୁ ତର୍ପଣକଲେଇଁ । ୪ । ଆମମାନଙ୍କର ପୂର୍ବ ଅଶୁଭ ସବୁ ନଷ୍ଟ ହୋଇଯାଇଛି ଏବଂ କଲ୍ୟାଣ ଉପସ୍ଥିତ ହୋଇଅଛି । ଲକ୍ଷ୍ମଣ ! ସେହିହେତୁରୁ ମୋ ମନ ବର୍ତ୍ତମାନ ଆହ୍ଲାଦିତ ହୋଇଅଛି । ୫ । ନରଶ୍ରେଷ୍ଠ ! ଏଣିକି ଆମ ହୃଦୟରେ ମଙ୍ଗଳ ଆବର୍ତ୍ତିତ ହେବ; ସୁତରାଂ ଆସ,

'ଋଶ୍ୟମୂକୋ ଗିରିର୍ଯତ୍ର ନାତିଦୂରେ ପ୍ରକାଶତେ ।
ଯସ୍ମିନ୍ ବସତି ଧର୍ମାତ୍ମା ସୁଗ୍ରୀବୋଂଽଶୁମତଃ ସୁତଃ । ୭ ।
ନିତ୍ୟଂ ବାଲିଭୟାତ୍ତ୍ରସ୍ତଶ୍ଚତୁର୍ଭିଃ ସହ ବାନରୈଃ ।
ଅଭିତ୍ୱରେ ଚ ତଂ ଦ୍ରଷ୍ଟୁଂ ସୁଗ୍ରୀବଂ ବାନରର୍ଷଭମ୍ । ୮ ।
ତଦଧୀନଂ ହି ମେ ସୌମ୍ୟ ସୀତାୟାଃ ପରିମାର୍ଗଣମ୍ ।
ଏବଂ ବ୍ରୁବାଣଂ ତଂ ଧୀରଂ ରାମଂ ସୌମିତ୍ରିରବ୍ରବୀତ୍ । ୯ ।
ଗଚ୍ଛାବସ୍ତ୍ୱରିତଂ ତତ୍ର ମମାପି ତ୍ୱରତେ ମନଃ ।
ଆଶ୍ରମାତ୍ତୁ ତତସ୍ତସ୍ମାନ୍ନିଷ୍କ୍ରମ୍ୟ ସ ବିଶାଂପତିଃ । ୧୦ ।
ଆଜଗାମ ତତଃ ପମ୍ପାଂ ଲକ୍ଷ୍ମଣେନ ସହ ପ୍ରଭୁଃ ।
ସ ଦଦର୍ଶ ତତଃ ପୁଣ୍ୟାମୁଦାରଜନସେବିତାମ୍ । ୧୧ ।
ନାନାଦ୍ରୁମଲତାକୀର୍ଣାଂ ପମ୍ପାଂ ପାନୀୟବାହିନୀମ୍ ।
ପଦ୍ମୈଃ ସୌଗନ୍ଧିକୈସ୍ତାମ୍ରାଂ ଶୁକ୍ଲାଂ କୁମୁଦମଣ୍ଡଳୈଃ ।୧୨।
ନୀଲାଂ କୁବଲୟୋଦ୍ଘାଟୈର୍ବହୁବର୍ଣାଂ କୁଥାମିବ ।
ସ ତାମାସାଦ୍ୟ ବୈ ରାମୋ ଦୂରାଦୁଦକବାହିନୀମ୍* । ୧୩ ।

---

ସେହି ଦେଖିବାକୁ ପ୍ରୀତିକର ପମ୍ପାସରୋବରକୁ ଯିବା । ୬ । ସେହିଠାରେ ଅନତି-ଦୂରରେ ଋଷ୍ୟମୂକ ପର୍ବତ ଦେଖାଯାଉଛି । ସେହି ପର୍ବତରେ ସୂର୍ଯ୍ୟଙ୍କ ପୁତ୍ର ଧର୍ମାତ୍ମା ସୁଗ୍ରୀବ ସର୍ବଦା ବାଳି ଭୟରେ ତ୍ରସ୍ତ ହୋଇ ଚାରିଗୋଟି ବାନରଙ୍କ ସହିତ ବାସ କରୁଛନ୍ତି । ମୁଁ ସେହି ବାନରଶ୍ରେଷ୍ଠ ସୁଗ୍ରୀବଙ୍କୁ ଦେଖିବାପାଇଁ ଉତ୍କଣ୍ଠିତ ହେଉଅଛି । ୭-୮ । ସୌମ୍ୟ ! ମୋ ସୀତାଙ୍କର ଅନ୍ୱେଷଣ ତାଙ୍କର ଉପରେ ନିର୍ଭର କରୁଛି ।'' ସୁବିଜ୍ଞ ରାମ ଏହିପରି କହିବାରୁ ଲକ୍ଷ୍ମଣ ତାଙ୍କୁ କହିଲେ । ୯ । "ହଁ ସେଠାକୁ ଅତିଶୀଘ୍ର ଯିବା; ମୋର ମନ ମଧ୍ୟ ଚଞ୍ଚଳ ହେଉଅଛି ।'' ଅନନ୍ତର ପ୍ରଭାବଶାଳୀ ରାଜା ରାମ ଲକ୍ଷ୍ମଣଙ୍କ ସହିତ ସେ ଆଶ୍ରମରୁ ବାହାରି ପମ୍ପା ନିକଟକୁ ଆସିଲେ ଏବଂ ସେହି ପବିତ୍ର ପ୍ରଶସ୍ତ ଜଳପୂର୍ଣ୍ଣ, ବହୁବୃକ୍ଷଲତାବିଶିଷ୍ଟ, ପଦ୍ମ ଏବଂ ପାଣିଶିଉଳି ପୁଷ୍ପଦ୍ୱାରା ତାମ୍ରବର୍ଣ୍ଣ ଓ କୁମୁଦ ପୁଷ୍ପରାଜିଦ୍ୱାରା ଶୁକ୍ଲବର୍ଣ୍ଣ ସେହି ଜଳପୂର୍ଣ୍ଣ ପମ୍ପାକୁ ଦେଖିଲେ । ତାହା ନୀଳୋତ୍ପଳସମୂହଦ୍ୱାରା ନୀଳବର୍ଣ୍ଣ ହୋଇ ବହୁବର୍ଣ୍ଣ-ବିଶିଷ୍ଟ ଚିତ୍ରକମ୍ବଳପରି ଦେଖାଯାଉଥିଲା । ରାମ ଦୂରରୁ ଜଳ ବହନକରି ଆଣୁଥିବା

---

* ପମ୍ପା ନଦୀ ବହୁଦୂରରୁ ଜଳ ବହନ କରି ଆସି ଏହି 'ପମ୍ପା' ସରୋବରକୁ ସୃଷ୍ଟି କରିଅଛି । ମତଙ୍ଗ ସରୋବର ପମ୍ପାର ଗୋଟିଏ ଅଂଶ ।

ମତଙ୍ଗସରସଂ ନାମ ହ୍ରଦଂ ସମବଗାହତ ।
ଅରବିନ୍ଦୋତ୍ପଳବତୀଂ ପଦ୍ମସୌଗନ୍ଧିକାୟୁତାମ୍ । ୧୪
ପୁଷ୍ପିତାମ୍ରବଣୋପେତାଂ ବର୍ହିଣୋଦ୍‌ଘୁଷ୍ଟନାଦିତାମ୍ ।
ତିଲକୈର୍ବୀଜପୂରୈଶ୍ଚ ଧବୈଃ ଶୁକ୍ଲଦ୍ରୁମୈସ୍ତଥା । ୧୫ ।
ପୁଷ୍ପିତୈଃ କରବୀରୈଶ୍ଚ ପୁଂନାଗୈଶ୍ଚ ସୁପୁଷ୍ପିତୈଃ ।
ମାଲତୀକୁନ୍ଦଗୁଲ୍ମୈଶ୍ଚ ଭଣ୍ଡୀରୈର୍ନିଚୁଳୈସ୍ତଥା । ୧୬ ।
ଅଶୋକୈଃ ସପ୍ତପର୍ଣ୍ଣୈଶ୍ଚ କେତକୈରତିମୁକ୍ତକୈଃ ।
ଅନ୍ୟୈଶ୍ଚ ବିବିଧୈର୍ବୃକ୍ଷୈଃ ପ୍ରମଦାମିବ ଭୂଷିତାମ୍ । ୧୭ ।
ସମୀକ୍ଷଣାଣ୍ଣୌ ପୁଷ୍ପାଢ଼୍ୟଂ ସର୍ବତୋ ବିପୁଳଦ୍ରୁମମ୍ ।
କୋୟଷ୍ଟିକୈଶ୍ଚାର୍ଜୁନକୈଃ ଶତପତ୍ରୈଶ୍ଚ କୀରକୈଃ ।୧୮ ।
ଏତୈଶ୍ଚାନ୍ୟୈଶ୍ଚ ବିହଗୈର୍ନାଦିତଂ ତୁ ବନଂ ମହତ୍ ।
ତତୋ ଜଗ୍ମତୁରବ୍ୟଗ୍ରୌ ରାଘବୌ ସୁସମାହିତୌ । ୧୯ ।
ତଦ୍‌ବନଂ ଚୈବ ସରସଃ ପଶ୍ୟନ୍ତୌ ଶକୁନୈର୍ଯୁତମ୍ ।
ସ ଦଦର୍ଶ ତତଃ ପମ୍ପାଂ ଶୀତବାରିନିଧିଂ ଶୁଭାମ୍ । ୨୦ ।
ପ୍ରହୃଷ୍ଟନାନାଶକୁନାଂ ପାଦପୈରୁପଶୋଭିତାମ୍ ।
ସ ରାମୋ ବିବିଧାନ୍ ବୃକ୍ଷାନ୍ ସରାଂସି ବିବିଧାନି ଚ । ୨୧ ।

---

ସେହି ପମ୍ପାନିକଟରେ ପହଞ୍ଚି 'ମତଙ୍ଗ' ସରୋବରରେ ଅବଗାହନ କଲେ । ଏହି ପମ୍ପାହ୍ରଦ ପଦ୍ମ, ନୀଳୋତ୍ପଳ ଏବଂ ସୌଗନ୍ଧିକ ପୁଷ୍ପରେ ପୂର୍ଣ୍ଣ । ୯-୧୪ । ଏହାର ଚାରିପାଖରେ ପୁଷ୍ପିତ ଆମ୍ର ଗଛର ବଣମାନ ରହିଛି । ମୟୂରମାନଙ୍କ ରାବରେ ଏହା ପ୍ରତିଧ୍ୱନିତ ହେଉଅଛି । ତିଳକ, ବୀଜପୂରକ, ଧବ ପ୍ରଭୃତି ଶୁକ୍ଳବର୍ଣ୍ଣ ବୃକ୍ଷ, ପୁଷ୍ପିତକରବୀର, ପୁନ୍ନାଗ, ମାଳତୀ, କୁନ୍ଦ, ଶିରିଷ, ହିଞ୍ଜଳ, ଅଶୋକ, ଛତିଅନା, କେତକୀ, ମାଧବୀ ଏବଂ ଅନ୍ୟାନ୍ୟ ନାନା ଶ୍ରେଣୀର ବୃକ୍ଷଦ୍ୱାରା ଏହି ପମ୍ପା ଗୋଟିଏ ରମଣୀପରି ବିଭୂଷିତ ହୋଇଅଛି । ୧୫-୧୭ । ରାମ ଲକ୍ଷ୍ମଣ ଦୁହେଁ ଚତୁର୍ଦ୍ଦିଗରେ ବିଶାଳ ଦ୍ରୁମପତ୍ରପୂର୍ଣ୍ଣ ପୁଷ୍ପବିଭୂଷିତ, ପକ୍ଷିପୂର୍ଣ୍ଣ ସେହି ହ୍ରଦତୀରବର୍ତ୍ତୀ ବନକୁ ଦେଖି ଦେଖି ଆନନ୍ଦମନରେ ଗଲେ । ସେହି ମହାବନ ବଗ, ମୟୂର, କାଠହଣା, ଶୁଆ ଏବଂ ଅନ୍ୟାନ୍ୟ ପକ୍ଷୀମାନଙ୍କଦ୍ୱାରା ନିନାଦିତ ହେଉଥିଲା । ଅନନ୍ତର ରାମ ଯାଇ ଶେଷରେ ଶୀତଳ ଜଳପୂର୍ଣ୍ଣ ସୁନ୍ଦର ପମ୍ପାସରୋବର ଦେଖିଲେ । ସେଠାରେ ନାନା ଜାତୀୟ ପକ୍ଷୀମାନେ ଆନନ୍ଦରେ ବିଚରଣ କରୁଥିଲେ ଏବଂ ବୃକ୍ଷରାଜିଦ୍ୱାରା ତାହା ସୁଶୋଭିତ ହୋଇଥିଲା । ରାମ ଏହି ସମସ୍ତ ନାନାବିଧ ବୃକ୍ଷ ଏବଂ

ପଶ୍ୟନ୍ କାମାଭିସଂତପ୍ତୋ ଜଗାମ ପରମଂ ହ୍ରଦମ୍ ।
ପୁଷ୍ପିତୋପବନୋପେତାଂ ସାଲଚମ୍ପକଶୋଭିତାମ୍ । ୨୨ ।
ଷଟ୍‌ପଦୌଘସମାବିଷ୍ଟାଂ ଶ୍ରୀମତୀମତୁଲପ୍ରଭାମ୍ ।
ସ୍ଫଟିକୋପମତୋୟାଢ଼୍ୟାଂ ଶ୍ଲକ୍ଷ୍ଣବାଲୁକସଂଯୁତାମ୍ । ୨୩ ।
ସ ତାଂ ଦୃଷ୍ଟ୍ୱା ପୁନଃ ପମ୍ପାଂ ପଦ୍ମସୌଗନ୍ଧିକୈର୍ଯୁତାମ୍ ।
ଇତ୍ୟୁବାଚ ତଦା ବାକ୍ୟଂ ଲକ୍ଷ୍ମଣଂ ସତ୍ୟବିକ୍ରମଃ । ୨୪ ।
ଅସ୍ୟାସ୍ତୀରେ ତୁ ପୂର୍ବୋକ୍ତଃ ପର୍ବତୋ ଧାତୁମଣ୍ଡିତଃ ।
ଋଶ୍ୟମୂକ ଇତି ଖ୍ୟାତଃ ପୁଣ୍ୟଃ ପୁଷ୍ପିତପାଦପଃ । ୨୫ ।
ହରେରୃକ୍ଷରଜୋନାମ୍ନଃ ପୁତ୍ରସ୍ତସ୍ୟ ମହାତ୍ମନଃ ।
ଅଧ୍ୟାସ୍ତେ ତଂ ମହାବୀର୍ଯଃ ସୁଗ୍ରୀବ ଇତି ବିଶ୍ରୁତଃ । ୨୬ ।
ସୁଗ୍ରୀବମଭିଗଚ୍ଛ ତ୍ୱଂ ବାନରେନ୍ଦ୍ରଂ ନରର୍ଷଭ ।
ଇତ୍ୟୁବାଚ ପୁନର୍ବାକ୍ୟଂ ଲକ୍ଷ୍ମଣଂ ସତ୍ୟବିକ୍ରମମ୍ । ୨୭ ।
ରାଜ୍ୟଭ୍ରଷ୍ଟେନ ଦୀନେନ ତସ୍ୟାମାସକ୍ତଚେତସା ।
କଥଂ ମୟା ବିନା ଶକ୍ୟଂ ସୀତାଂ ଲକ୍ଷ୍ମଣ ଜୀବିତୁମ୍ । ୨୮ ।

---

ସରୋବରମାନଙ୍କୁ ଦେଖି କାମପୀଡ଼ିତ ହୋଇ ସେହି ଶ୍ରେଷ୍ଠ ହ୍ରଦନିକଟକୁ ଗଲେ । ପୁଷ୍ପିତ ଉପବନବେଷ୍ଟିତ, ଶାଳ ଏବଂ ଚମ୍ପକବୃକ୍ଷସେବିତ, ଭ୍ରମରଶବ୍ଦପରିପୂର୍ଣ୍ଣ, ସ୍ଫଟିକସଦୃଶ ଜଳପୂର୍ଣ୍ଣ, ସୁଚିକ୍କଣ ବାଲୁକାଯୁକ୍ତ ଏବଂ ପଦ୍ମ ସୌଗନ୍ଧକପୂର୍ଣ୍ଣ ସେହି ପମ୍ପାସରୋବରକୁ ଦେଖି, ସତ୍ୟପରାକ୍ରମ ରାମ ସେତେବେଳେ ଲକ୍ଷ୍ମଣଙ୍କୁ କହିଲେ । ୧୮-୨୪ । "ପୂର୍ବେ କବନ୍ଧ ଆମମାନଙ୍କୁ ଯେଉଁ ପର୍ବତ କଥା କହିଥିଲା, ସେହି ଧାତୁ ବିଭୂଷିତ, ପୁଷ୍ପିତ ବୃକ୍ଷପୂର୍ଣ୍ଣ 'ଋଷ୍ୟମୂକ' ନାମରେ ବିଖ୍ୟାତ ପବିତ୍ର ପର୍ବତ ଏହାର କୂଳରେ ଅବସ୍ଥିତ ଅଛି । ମହାତ୍ମା 'ଋକ୍ଷରଜ' ନାମକ ବାନରଙ୍କର ପୁତ୍ର 'ସୁଗ୍ରୀବ' ନାମରେ ବିଖ୍ୟାତ ମହାପରାକ୍ରମୀ ବାନର ସେହି ପର୍ବତରେ ଥାଆନ୍ତି । ୨୫-୨୬ । ନରଶ୍ରେଷ୍ଠ ! ତୁମେ ସେହି ବାନରରାଜ ସୁଗ୍ରୀବଙ୍କ ନିକଟକୁ ଯାଅ ।" ସେ ଏହା କହି ପୁଣି ସତ୍ୟପରାକ୍ରମୀ ଲକ୍ଷ୍ମଣଙ୍କୁ କହିଲେ, "ଲକ୍ଷ୍ମଣ ! ମୁଁ ରାଜ୍ୟଭ୍ରଷ୍ଟ, ଦୀନ ଏବଂ ସୀତାଗତପ୍ରାଣ ହୋଇ କପରି ସୀତାଙ୍କ ବିରହରେ ଜୀବିତ ରହିବାକୁ ସମର୍ଥ ହେବି" ? ୨୭-୨୮ ।

ଇତ୍ୟେବମୁକ୍ତ୍ୱା ମଦନାଭିପୀଡ଼ିତଃ
ସ ଲକ୍ଷ୍ମଣଂ ବାକ୍ୟମନନ୍ୟଚେତସମ୍ ।
ବିବେଶ ପମ୍ପାଂ ନଳିନୀଂ ମନୋହରାମ୍
ରଘୂତ୍ତମଃ ଶୋକବିଷାଦଯନ୍ତ୍ରିତଃ । ୨୯ ।
ତତୋ ମହଦ୍‌ବର୍ତ୍ମ ସୁଦୂରସଂକ୍ରମଂ
କ୍ରମେଣ ଗତ୍ୱା ପ୍ରତିକୂଳଧନ୍ୱନମ୍ ।
ଦଦର୍ଶ ପମ୍ପାଂ ଶୁଭଦର୍ଶକାନନା-
ମନେକନାନାବିଧପକ୍ଷିଜାଳକାମ୍ । ୩୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ ଅରଣ୍ୟକାଣ୍ଡେ ପମ୍ପାଦର୍ଶନମ୍
ନାମ ପଞ୍ଚସପ୍ତତିତମଃ ସର୍ଗଃ

---

ରଘୁଶ୍ରେଷ୍ଠ ରାମ ମଦନପୀଡ଼ିତ ଏବଂ ଦୁଃଖଶୋକାଭିଭୂତ ହୋଇ ଅନନ୍ୟଚେତା ଲକ୍ଷ୍ମଣଙ୍କୁ ଏହି କଥା କହି ସେହି ପଦ୍ମପୂର୍ଣ୍ଣ ମନୋହର ପମ୍ପାସରୋବରରେ ପ୍ରବେଶ କଲେ । ୨୯ । ଅନନ୍ତର ଚାଲିବାକୁ କଷ୍ଟକର ଟାଙ୍ଗରା ଭୂମିରେ ପଡ଼ିଥିବା । ଗୋଟିଏ ଦୀର୍ଘପଥରେ କ୍ରମେ କ୍ରମେ ଅତିକ୍ରମ କରି ରାମ ନାନାବିଧ ପକ୍ଷିସମାକୁଳ ସୁଦୃଶ୍ୟ କାନନଶୋଭିତ ପମ୍ପାସରୋବର ଦେଖିଲେ ।୩୦।

ଅରଣ୍ୟକାଣ୍ଡ ସମ୍ପୂର୍ଣ୍ଣ



କଟକ, ସତ୍ୟବାଦୀ ପ୍ରେସରେ ଶ୍ରୀ ଉଦୟନାଥ ଷଡ଼ଙ୍ଗୀଙ୍କଦ୍ୱାରା ମୁଦ୍ରିତ—୧୯୫୫